

*Published by:*

Department of Information & Public Relations
Government of Orissa,
Bhubaneswar-753010

ଜୟଦେବ ଓ ଗୀତଗୋବିନ୍ଦ

(ସ୍ୱତନ୍ତ୍ର ବିଶେଷାଙ୍କ)

# ଉତ୍କଳ ପ୍ରସଙ୍ଗ

ଜୁଲାଇ ୨୦୦୯

# ଉତ୍କଳୀୟ ସଂସ୍କୃତି, ଶ୍ରୀଜୟଦେବ ଓ ଶ୍ରୀଗୀତଗୋବିନ୍ଦ

ଅଜିତ୍ କୁମାର ତ୍ରିପାଠୀ

ଶ୍ରୀଗୀତଗୋବିନ୍ଦ ଗୋଟିଏ ଗୀତି କାବ୍ୟ ବା ସଂଗୀତ ଧର୍ମୀ ମହାକାବ୍ୟ ଯେଉଁଥିରେ ସାହିତ୍ୟ, ନାଟକ, ସଂଗୀତ ଓ ନୃତ୍ୟର ଏକ ଅପୂର୍ବ ଯୌଗିକ ସମ୍ମିଶ୍ରଣ ହୋଇଛି । ଡକ୍ଟର ଭଗବାନ ଚନ୍ଦ୍ର ପଣ୍ଡାଙ୍କ ଭାଷାରେ ଏହା ଏପରି ଏକ କାବ୍ୟ ଯାହା ମାନବ ହୃଦୟର ଗଭୀରତମ ତନ୍ତ୍ରୀକୁ ସ୍ପର୍ଶ କରେ ଏବଂ ଜୀବନଦର୍ଶନର ସୂକ୍ଷ୍ମତମ ନିୟମକୁ ବ୍ୟାଖ୍ୟା ଓ ବୟାନ କରେ । ଏହି କାବ୍ୟର ସାହିତ୍ୟ, ରଚନା ଶୈଳୀ, ସାଂଗୀତିକତା ଓ ମାଧୁର୍ଯ୍ୟ ଜୀବନର ପ୍ରତ୍ୟେକଟି ମୁହୂର୍ତ୍ତକୁ ରସମୟ କରିପାରେ । କାବ୍ୟ ରଚନାର ଯଦି କୌଣସି ବିଜ୍ଞାନ ଥାଏ ତେବେ ତା'ର ପ୍ରତ୍ୟେକଟି ନୀତି ନିୟମ ପାଳନ କରି ଲେଖାଯାଇଛି ଗୀତଗୋବିନ୍ଦ ମହାକାବ୍ୟ ।



ଭାରତରେ ସଂସ୍କୃତରେ ରଚିତ ହୋଇଥିବା ଗୀତି କାବ୍ୟମାନଙ୍କ ମଧ୍ୟରେ ଶ୍ରୀଗୀତଗୋବିନ୍ଦ ସର୍ବଶ୍ରେଷ୍ଠ । ଉଭୟ ଶୈଳୀ ଓ ବିଷୟବସ୍ତୁ ଦୃଷ୍ଟିରୁ ଏହାକୁ ସଂସ୍କୃତ ସାହିତ୍ୟର ସର୍ବୋତ୍ତମ ସଂଗୀତ ରଚନା କୁହାଯାଇପାରେ । ପବିତ୍ର ପ୍ରାଚୀନଦୀ ତୀରରେ ଆଜିର ଖୋର୍ଦ୍ଧା ଜିଲ୍ଲାର ବାଲିଅନ୍ତା ବ୍ଲକ୍‌ରେ କେନ୍ଦୁବିଲ୍ୱ ନାମକ ବ୍ରାହ୍ମଣ ଶାସନରେ ଭୋଜଦେବ ଓ ବାମା ଦେବୀଙ୍କ ପରିବାରରେ ପବିତ୍ର ଅକ୍ଷୟ ତୃତୀୟା ଦିନ ଜନ୍ମ ହୋଇଥିଲେ ଜୟଦେବ । ସେ ଥିଲେ ଚୋଳଗଙ୍ଗ ଦେବଙ୍କ ଦୁଇପୁତ୍ର କାମାର୍ଣ୍ଣବ ଦେବ (ଖ୍ରୀ:୧୧୪୭ - ଖ୍ରୀ:୧୧୫୬) ଓ ରାଘବ ଦେବ (ଖ୍ରୀ:୧୧୫୬ରୁ ଖ୍ରୀ:୧୧୭୦)ଙ୍କ ସମସାମୟିକ । ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ବାସ କରି ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ସେ ରଚନା କରିଥିଲେ ଗୀତଗୋବିନ୍ଦ ।

ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କ ସ୍ୱର୍ଗୀୟ ପ୍ରେମ ଉପରେ ଆଧାରିତ ହୋଇଥିବା ଏହି ମଧୁର ସଙ୍ଗୀତ ସମ୍ବଳିତ କାବ୍ୟଟି କେବଳ ସାରା ଭାରତରେ କାହିଁକି ସାରା ବିଶ୍ୱରେ ଏବେ ସାହିତ୍ୟ, ସଂଗୀତ ଓ ବୈଷ୍ଣବଧର୍ମାବଲମ୍ବୀଙ୍କ ମହଲରେ ସୁପରିଚିତ । କିନ୍ତୁ ଓଡ଼ିଶାର ଏହି କାବ୍ୟଟି ଗାଁଗହଳିରେ ମଧ୍ୟ ବିଖ୍ୟାତ । ଓଡ଼ିଶାର ଅଶିକ୍ଷିତ ଲୋକମାନେ ମଧ୍ୟ ଗୀତଗୋବିନ୍ଦ କାବ୍ୟ ଓ ତା'ର ରଚୟିତା ଜୟଦେବଙ୍କ ନାମ ଶୁଣିଛନ୍ତି ଏବଂ କେବଳ **ଓଡ଼ିଶାରେ ମଙ୍ଗଳା ଠାକୁରାଣୀଙ୍କ ମନ୍ଦିରରେ ଓ ଶିବ ମନ୍ଦିରରେ ମଧ୍ୟ ଗୀତଗୋବିନ୍ଦ ପ୍ରାର୍ଥନା ବୋଲାଯାଏ ।**

କେବଳ ଗୋଟିଏ କ୍ଷୁଦ୍ର କାବ୍ୟ ଲେଖି ପୃଥିବୀର ଆଉ କୌଣସି କବି ଏତେ ଖ୍ୟାତି ଓ ଅମରତ୍ୱ ପାଇ ନାହାନ୍ତି । ପ୍ରାଚୀନ ଓଡ଼ିଶାର ଯାତ୍ରା ପରମ୍ପରାର ଶୈଳୀ ଓ ଓଡ଼ିଶୀ ସଂଗୀତ ଶୈଳୀକୁ ଭାରତ ସମକ୍ଷରେ ସଂସ୍କୃତ କାବ୍ୟ ମାଧ୍ୟମରେ ପ୍ରକାଶ କରି ଜୟଦେବ ଯେଉଁ ସାଂସ୍କୃତିକ ପରମ୍ପରା ସୃଷ୍ଟି କରିଛନ୍ତି ତାହା ବିଶ୍ୱରେ ବିରଳ । ଓଡ଼ିଶାର ସାହିତ୍ୟ, କଳା, ସଂଗୀତ, ସ୍ଥାପତ୍ୟ, ବୟନ ଶିଳ୍ପ, ନୃତ୍ୟକୁ ଗୀତଗୋବିନ୍ଦ କାବ୍ୟ ଏତେ ଗଭୀର ଭାବେ ପ୍ରଭାବିତ କରିଛି ଯେ ଏହା ଓଡ଼ିଶାର ଜୀବନ ଶୈଳୀର ଏକ ଅବିଚ୍ଛେଦ୍ୟ ଅଙ୍ଗରେ ପରିଣତ ହୋଇଛି ।

ଓଡ଼ିଶୀ ନୃତ୍ୟ ଓ ଓଡ଼ିଶୀ ସଂଗୀତର ମୂଳ ଆଧାର ହେଲା ଗୀତଗୋବିନ୍ଦ । ଓଡ଼ିଶୀ ନୃତ୍ୟ ମୁଖ୍ୟତଃ ଗୀତଗୋବିନ୍ଦ ବର୍ଣ୍ଣିତ ରାଧାକୃଷ୍ଣ ପ୍ରେମଲୀଳା ଉପରେ ନିର୍ମିତ । ଦଶାବତାର ନୃତ୍ୟ ଭାରତରେ ସର୍ବତ୍ର ଓଡ଼ିଶୀ ନୃତ୍ୟ ଭାବେ ପରିଚିତ, ଯଦିଓ ଏହା ସଂସ୍କୃତରେ ରଚିତ । ଶ୍ରୀଗୀତଗୋବିନ୍ଦର ପରମ୍ପରା ଗୋଟିପୁଅ ଓ ମାହାରୀ ନୃତ୍ୟର ପରମ୍ପରା ଓତଃପ୍ରୋତଃ ଭାବରେ ଜଡ଼ିତ । ଅର୍ଥ ନବୁଝିଲେ ମଧ୍ୟ ଗୀତଗୋବିନ୍ଦ ଗୀତଟି ଓଡ଼ିଶାରେ ଏକ ପ୍ରାର୍ଥନା ଓ ଧର୍ମ କାର୍ଯ୍ୟ ଭାବେ ପରିଗଣିତ ହୁଏ । ଶ୍ରୀଜଗନ୍ନାଥଙ୍କର ସବୁଠାରୁ ପ୍ରିୟ ସେବା ହେଲା ଗୀତଗୋବିନ୍ଦ ସେବା ।

ଓଡ଼ିଶାର ତାଳପତ୍ର, ହସ୍ତ ନିର୍ମିତ କାଗଜ ଏବଂ ରେଶମ କନା ଉପରେ ଅଙ୍କିତ କ୍ଷୁଦ୍ର ଚିତ୍ରକଳା ଶ୍ରୀଗୀତଗୋବିନ୍ଦଦ୍ୱାରା ବହୁଳ ଭାବେ ପ୍ରଭାବିତ । ସାରା ଭାରତରେ ଏବେ ମଧ ଗୀତଗୋବିନ୍ଦ କାବ୍ୟରେ ବର୍ଣ୍ଣିତ ଅନେକ ଦୃଶ୍ୟ ଏହି ପଟ୍ଟଚିତ୍ରର ବିଷୟବସ୍ତୁ ।

ଓଡ଼ିଶାର ବିଭିନ୍ନ ସ୍ଥାନରୁ ମିଳିଥିବା ତିରିଶିଟି ତାଳପତ୍ରରେ ଲିଖିତ ଗୀତଗୋବିନ୍ଦ ଭୁବନେଶ୍ୱରସ୍ଥିତ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ଅଛି । ଗୀତଗୋବିନ୍ଦର ସଂପୂର୍ଣ୍ଣ କାବ୍ୟ, ଦଶାବତାରର ସଚିତ୍ର ଉପସ୍ଥାପନ ଏ ସବୁ ପୋଥିରେ ଅନ୍ତର୍ଭୁକ୍ତ । ଭାରତର ଓ ବିଶ୍ୱର ବିଭିନ୍ନ ମିଉଜିୟମ ଓ ଲାଇବ୍ରେରୀରେ ସଂରକ୍ଷିତ ଅନେକ ଗୀତଗୋବିନ୍ଦ ପୋଥି ଏ କଥାର ସାକ୍ଷୀ ଯେ ରଚନା ହେବା ପରଠାରୁ ଏହି କାବ୍ୟର ଲୋକପ୍ରିୟତା ବୃଦ୍ଧି ପାଇବାରେ ଲାଗିଛି ।

ଗୀତଗୋବିନ୍ଦ ଏପରି ଏକ ଗୀତି କାବ୍ୟ ଯାହାର ସଂଗୀତରେ ମଣିପୁରୀ, ଓଡ଼ିଶୀ, କଥକ, କୁଚିପୁଡ଼ି ଓ ଭାରତ ନାଟ୍ୟମ୍ ଏ ପାଞ୍ଚଟି ଶାସ୍ତ୍ରୀୟ ନୃତ୍ୟ ଅନାୟାସରେ ଉପସ୍ଥାପନ କରାଯାଇପାରୁଛି ।

ଏଲ୍.ଡି. ଇନ୍‌ଷ୍ଟିଚ୍ୟୁଟ୍ ଅହମ୍ମଦାବାଦ, ଚଣ୍ଡୀଗଡ଼ ମିଉଜିୟମ, ହାଇଦରାବାଦର ସାଲାରଜଙ୍ଗ ମିଉଜିୟମ, କମାଲ ଓ ଜଗଦୀଶ ମିତଲ ମିଉଜିୟମ୍ ଅଫ୍ ଇଣ୍ଡିଆନ୍ ଆର୍ଟ, କଲିକତାର ଆଶୁତୋଷ ମିଉଜିୟମ ଅଫ୍ ଇଣ୍ଡିଆନ୍ ଆର୍ଟ, ନ୍ୟାସନାଲ ମିଉଜିୟମ କଲିକତା, ସୁଇଜରଲାଣ୍ଡର ଜୁରିଚ୍‌ର ରିଟ୍‌ବର୍ଗ ମିଉଜିୟମ, ଲଣ୍ଡନର ବ୍ରିଟିଶ୍ ମିଉଜିୟମ ଓ ଇଣ୍ଡିଆ ଅଫିସ୍ ଲାଇବ୍ରେରୀ, ଲଣ୍ଡନରେ ଶ୍ରୀଗୀତଗୋବିନ୍ଦ ପୋଥିର ଅନେକ ପ୍ରକାରର ସଂସ୍କରଣ ସଂରକ୍ଷିତ ହୋଇଛି ।

ନେପାଳ, ବଙ୍ଗ, ହିମାଚଳପ୍ରଦେଶ, ରାଜସ୍ଥାନ ଓ ଗୁଜରାଟର ଚିତ୍ରକଳା ଆନ୍ଧ୍ର, ତାମିଲନାଡୁ, କେରଳ, କର୍ଣ୍ଣାଟକ, ମଣିପୁର ଓ ଉତ୍ତରପ୍ରଦେଶର ସଂଗୀତ ଓ ନୃତ୍ୟକଳା ଗୀତଗୋବିନ୍ଦଦ୍ୱାରା ବହୁଳ ଭାବେ ପ୍ରଭାବିତ । ଗତ ଦୁଇବର୍ଷ ହେଲା କେନ୍ଦ୍ରୀୟ ସାହିତ୍ୟ ଓ ସଂଗୀତ ଏକାଡେମୀ ଆନୁକୂଲ୍ୟରେ ଦିଲ୍ଲୀରେ ଅନୁଷ୍ଠିତ ହେଉଥିବା ଜୟଦେବ ଉତ୍ସବରେ ପ୍ରମାଣିତ କରାଯାଇଛି ଯେ ଗୀତଗୋବିନ୍ଦ ଏପରି ଏକ ଗୀତି କାବ୍ୟ ଯାହାର ସଂଗୀତରେ ମଣିପୁରୀ, ଓଡ଼ିଶୀ, କଥକ, କୁଚିପୁଡ଼ି ଓ ଭାରତ ନାଟ୍ୟମ୍ ଏ ପାଞ୍ଚଟି ଶାସ୍ତ୍ରୀୟ ନୃତ୍ୟ ଅନାୟାସରେ ଉପସ୍ଥାପନ କରାଯାଇପାରୁଛି ।

ଶ୍ରୀଗୀତଗୋବିନ୍ଦ ପାଇଁ ହିଁ ଦଶାବତାରତତ୍ତ୍ୱ ସାରା ଭାରତରେ ପ୍ରିୟ ହୋଇଥିଲା । ରାଧାମାଧବ ଉପାସନା ଓଡ଼ିଶାରୁ ଆରମ୍ଭ ହୋଇ ଦେଶର ଅନ୍ୟାନ୍ୟ ପ୍ରାନ୍ତକୁ ଯାଇଥିଲା । ବିଷ୍ଣୁଙ୍କ ଷୋଳକଳାର ପ୍ରତିନିଧିତ୍ୱ କରୁଥିବା କୃଷ୍ଣଙ୍କୁ ମାଧବ ନାମରେ ପୂଜା, ରାଧାଙ୍କୁ ଦେବୀ ଭାବେ ଉପାସନା କରିବା ଇତ୍ୟାଦି ଓଡ଼ିଶାର ସୃଷ୍ଟି । ଜଗନ୍ନାଥଙ୍କଠାରେ କୃଷ୍ଣତ୍ୱର ଆରୋପ ଜୟଦେବଙ୍କଠାରୁ ଆରମ୍ଭ ।

କେନ୍ଦୁଲୀର ସନ୍ଥକବି ଜୟଦେବ ନିଆଳୀର ସଂସ୍କୃତ କବି ଗୋବର୍ଦ୍ଧନାଚାର୍ଯ୍ୟ ଓ ତାଙ୍କ ସାନଭାଇ ଉଦୟନଙ୍କଠାରୁ ବୟୋଜ୍ୟେଷ୍ଠ ଥିଲେ । କିନ୍ତୁ ସେ କାଳିଦାସଙ୍କ ପରବର୍ତ୍ତୀ ସମୟର କବି । ଉଇଲିୟମ୍ ଜୋନ୍‌ସଙ୍କର ଏକ ଭ୍ରାନ୍ତ ଧାରଣା ଥିଲା ଯେ ଜୟଦେବ କାଳିଦାସଙ୍କ ପୂର୍ବର କବି । ଡଃ ସତ୍ୟନାରାୟଣ ରାଜଗୁରୁଙ୍କ ଗବେଷଣାରୁ ଜଣାଯାଏ ଯେ ସେ ଓଡ଼ିଶାର ଗଙ୍ଗସମ୍ରାଟ କାମାର୍ଣ୍ଣବ ଦେବ ଓ ତାଙ୍କ ସାନଭାଇ ସମ୍ରାଟ ରାଘବ ଦେବଙ୍କ ସମସାମୟିକ ଥିଲେ । ଲିଙ୍ଗରାଜ ମନ୍ଦିରରେ ଥିବା ଶିଳାଲେଖରୁ ଏହା ପ୍ରମାଣିତ ହୁଏ । ରାଜା ଲକ୍ଷ୍ମଣସେନଙ୍କ ସମୟରେ ଥିବା ପଞ୍ଚରତ୍ନ ବିକ୍ରମାଦିତ୍ୟଙ୍କ ସମୟର ନବରତ୍ନ ପରି ଏକ କାଳ୍ପନିକ ଆଖ୍ୟାନ । ଗୀତଗୋବିନ୍ଦରେ ବାଚପଲ୍ଲବୟିତ୍ୟୁମାପତିଧର ଶ୍ଳୋକଟି ଏକ ପ୍ରକ୍ଷିପ୍ତ ଶ୍ଳୋକ । ପ୍ରାଚୀନ କବି ରାଣା କୁମ୍ଭଙ୍କର ରଚିତ ରସିକପ୍ରିୟ ଟୀକାରେ ଏହି ଅଂଶଟି ନାହିଁ ଏବଂ ସେ ଏହାକୁ ପ୍ରକ୍ଷେପ ବୋଲି ଆଖ୍ୟା ଦେଇଛନ୍ତି ।

ହରେକୃଷ୍ଣ ମୁଖୋପାଧାୟଙ୍କ ଲିଖିତ ବୀରଭୂମ ବିବରଣୀରେ ଲିଖିତ ଲକ୍ଷ୍ମଣସ୍ୟ ପଞ୍ଚରତ୍ନ ଶ୍ଳୋକର ମଧ କୌଣସି ଐତିହାସିକ ସତ୍ୟତା ନାହିଁ । ରୂପ ଓ ସନାତନ ଗୋସ୍ୱାମୀଙ୍କ ରଚନା କିମ୍ବା ଷୋଡ଼ଶ ଶତାବ୍ଦୀରୁ ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ କୌଣସି ବୈଷ୍ଣବ ସାହିତ୍ୟରେ ଏହି ଦୁଇ ଗୋସ୍ୱାମୀ ଏଭଳି ଏକ ଶ୍ଳୋକ ଦେଖିଥିଲେ ବୋଲି କୌଣସିଠାରେ ଉଲ୍ଲେଖ ନାହିଁ ।

ବନମାଳୀଦାସଙ୍କ 'ଜୟଦେବ ଚରିତ' ପୁସ୍ତକଟି ବିଂଶ ଶତାବ୍ଦୀର ପ୍ରଥମ ଦଶକ ବା ଉନବିଂଶ ଶତାବ୍ଦୀର ଲେଖା । ଯେହେତୁ ଏହି ପୁସ୍ତକଟି କେବଳ ଗୋଟିଏ ମାତ୍ର ମୂଳଲେଖାକୁ ଆଧାର କରି ଲେଖାଯାଇଛି ଏବଂ ଶହେ ତେର ବର୍ଷ ପର୍ଯ୍ୟନ୍ତ ଏ ପୁସ୍ତକର ସନ୍ଧାନ ବିଷୟରେ କେହି ଜାଣି ନଥିଲେ । ଏହାର ଐତିହାସିକ ମୂଲ୍ୟ କିଛି ନାହିଁ କହିଲେ ଚଳେ । ଦ୍ୱାଦଶ ଶତାବ୍ଦୀରେ ବର୍ଦ୍ଧମାନ ରାଜ ପରିବାରର କୌଣସି ଅସ୍ତିତ୍ୱ ନଥିଲା । ତେଣୁ ବର୍ଦ୍ଧମାନ ରାଜା ଜୟଦେବ ଓ ପଦ୍ମାବତୀଙ୍କର ବିବାହ କରାଇଥିବା କିମ୍ବଦନ୍ତୀ ନିତାନ୍ତ କପୋଳକଳ୍ପିତ ।

ସ୍ୱର୍ଗୀୟ ଡଃ ବଂଶୀଧର ମହାନ୍ତି ଏବଂ ଡଃ ନଗେନ୍ଦ୍ର ନାଥ ପ୍ରଧାନଙ୍କଦ୍ୱାରା ଜୟଦେବଙ୍କ ରଚିତ ପାଞ୍ଚଗୋଟି ଓଡ଼ିଆ ଗୀତିକବିତା ଆବିଷ୍କୃତ ହୋଇଛି । ଜୟଦେବଙ୍କର ସଂସ୍କୃତ ଭାଷାରେ ରଚିତ କବିତାମାନଙ୍କରୁ ଜଣାଯାଏ ଯେ ତାହା ମୂଳତଃ ପ୍ରଚଳିତ ଅଧୋବଂଶରେ ରଚିତ ହୋଇ ପରବର୍ତ୍ତୀ ସମୟରେ ଜୟଦେବଙ୍କଦ୍ୱାରା ଅନୁଦିତ ହୋଇଥିଲା ।

ଜୟଦେବଙ୍କ ପୂର୍ବରୁ ତାନ୍ତ୍ରିକ ବୌଦ୍ଧ ସିଦ୍ଧାଚାର୍ଯ୍ୟମାନଙ୍କର ଦୋହା ଜୟଦେବଙ୍କ ପ୍ରାୟ ଚାରିଶହ ବର୍ଷ ପୂର୍ବରୁ ରଚନା ଆରମ୍ଭ ହୋଇଥିଲା । ସେଗୁଡ଼ିକ ପୂର୍ବମାଗଧି ଅପଭ୍ରଂଶର ଶେଷ ସ୍ତମ୍ଭ ଏବଂ ଆଧୁନିକ ପୂର୍ବାଞ୍ଚଳୀୟ ଭାଷାମାନଙ୍କର ଉନ୍ମେଷକାଳୀନ ଭାଷାରେ ରଚିତ । ଡଃ ନଗେନ୍ଦ୍ର ନାଥ ପ୍ରଧାନଙ୍କ ମତରେ ପ୍ରାନ୍ତୀୟ ଭାଷାରେ ଦୁଇ ଗୋଟି ଧାରା । ଗୋଟିଏ ସଂସ୍କୃତ ପ୍ରଭାବିତ ଏବଂ ଅନ୍ୟଟି ମୌଖିକ । ଜୟଦେବଙ୍କ ଭାଷା ସଂସ୍କୃତ ପ୍ରଭାବିତ ଭାଷାର ପ୍ରତିନିଧି ଯାହା ତାଙ୍କର ଅଣସଂସ୍କୃତ କବିତାଗୁଡ଼ିକରୁ ଜଣାପଡ଼େ ।

ଓଡ଼ିଆ ଗୀତି କବିତାର ପରମ୍ପରା ଅତି ପ୍ରାଚୀନ । ଚଉତିଷା, କୋଇଲି, ଚର୍ଚ୍ଚା ପ୍ରଭୃତି ଲୋକ କବିତାର ପରମ୍ପରାରୁ ସୃଷ୍ଟ । ଓଡ଼ିଆ ଛନ୍ଦ ଓ ରାଗରାଗିଣୀର ପରମ୍ପରା ମଧ୍ୟ ଲୋକ କବିତାମାନଙ୍କ ପରି ପ୍ରାଚୀନ । ତେଣୁ ଦେଶୀୟ ଲୋକଭାଷା ଓ ଲୌକିକ ବୃତ୍ତିରେ ଜୟଦେବ ଅନେକ କବିତା ରଚନା କରିଥିଲେ । ସେଥିରୁ ଏବେ ପାଞ୍ଚଟି ମାତ୍ର ମିଳିପାରିଛି । ଡଃ ନଗେନ୍ଦ୍ର ନାଥ ପ୍ରଧାନଙ୍କ ଭାଷାରେ – ''ଜୟଦେବଙ୍କ ପୂର୍ବେ ଗୀତିକବିତାର ଧାରା ଅକ୍ଷୁଣ୍ଣ ଥିଲା ଏବଂ ଜୟଦେବ ଦେଶୀୟ ଭାଷାମାନଙ୍କରେ ତାଙ୍କର ନୂତନ ପ୍ରେମ ଭକ୍ତିମୂଳକ କବିତାମାନ ରଚନା ଆରମ୍ଭ କଲେ । ଓଡ଼ିଆ ଭାଷାରେ ତାଙ୍କର କବିତା ଯୁଗ ଯୁଗ ଧରି ଲୋକପ୍ରିୟ ହୋଇ ଆସିଅଛି ଏବଂ ପରବର୍ତ୍ତୀ ଷୋଡ଼ଶ ଶତାବ୍ଦୀ ସୁଦ୍ଧା ଅନ୍ୟାନ୍ୟ ବୈଷ୍ଣବ ଗୀତିକବିତାମାନଙ୍କର ପୁଷ୍କଳ ବିକାଶ ଘଟିବାରେ ତାହା ଲୋକସ୍ମୃତିରେ କ୍ରମେ ବିସ୍ମୃତ ହୋଇ ଇତସ୍ତତଃ ପାଣ୍ଡୁଲିପିମାନଙ୍କରେ ଲିପିବଦ୍ଧ ହୋଇ ପଡ଼ି ରହିଛି ।''

ଜୟଦେବଙ୍କ କବିତାରେ ବ୍ୟବହୃତ ଭାଷା ତାଙ୍କ ପୂର୍ବେ ଦୋହାମାନଙ୍କରେ ବ୍ୟବହୃତ ହେଉଥିଲା । ଦୋହାର ପଦରଚନା ଶୈଳୀ ଓ ଭାଷା ନିର୍ମିତ ମାର୍ଜିତ ଏବଂ ବିକଶିତ ହୋଇ ଜୟଦେବଙ୍କ କୃତିରେ ପୂର୍ଣ୍ଣତା ହାସଲ କରିଥିଲା । ଓଡ଼ିଆ ଗୀତିକବିତା ଏବଂ ରାଗରାଗିଣୀମାନଙ୍କର ପରମ୍ପରା ଅତି ପ୍ରାଚୀନ ଏବଂ ଜୟଦେବ ଏହି ପରମ୍ପରାର ଜଣେ ପ୍ରମୁଖ ପ୍ରତିନିଧି ।

ଜୟଦେବଙ୍କ ପୂର୍ବରୁ, ପରେ ସମସାମୟିକ ଉତ୍ତୀର୍ଣ୍ଣ ଅଭିଲେଖମାନଙ୍କରେ ଓଡ଼ିଆ ଭାଷା ବିକାଶର ଏକ କ୍ରମବର୍ଦ୍ଧିଷ୍ଣୁ ବଳିଷ୍ଠ ପରମ୍ପରା ଲକ୍ଷିତ ହୋଇଥାଏ । ଗଙ୍ଗ ରାଜତ୍ୱ କାଳରେ ସର୍ବପ୍ରଥମେ ଓଡ଼ିଆ ଭାଷା, ରାଜ୍ୟର ସର୍ବପ୍ରଥମେ ସରକାରୀ ଭାଷା ହିସାବରେ ସମ୍ମାନିତ ହେଲା ।

ଅତଏବ ଦ୍ୱାଦଶ ଶତାବ୍ଦୀରେ ଜୟଦେବ, ଓଡ଼ିଆ ଭାଷାରେ ଗୀତିକବିତା ରଚନା କରିଥିବା କଦାପି ଅସମ୍ଭବ ହୋଇନପାରେ ।

ଆଜିକାଲିର ଆଲୋଚକମାନଙ୍କ ମଧ୍ୟରେ ଡକ୍ଟର ସୁକୁମାର ସେନ୍, ଡକ୍ଟର ଆଶୁତୋଷ ଭଟ୍ଟାଚାର୍ଯ୍ୟ ଓ ଡକ୍ଟର ପରଶୁରାମ ଚତୁର୍ବେଦୀ ପ୍ରମୁଖ ବିଦ୍ୱାନମାନେ ମଧ୍ୟ ଜୟଦେବ ଓଡ଼ିଶାରେ ଜନ୍ମଗ୍ରହଣ କରିଥିବାର ଯୁକ୍ତିମାନ ଉପସ୍ଥାପିତ କରିଛନ୍ତି । ପ୍ରାଚୀନ ଓ ଅର୍ବାଚୀନ ଯୁକ୍ତିଗୁଡ଼ିକ ପ୍ରତି ଦୃଷ୍ଟି ନଦେଇ ଜଣେ ଅଧେ ତଥାକଥିତ ସମାଲୋଚକ ଜୟଦେବଙ୍କ ଜନ୍ମ 'ଅଜୟ' ନଦୀତଟସ୍ଥ କେନ୍ଦୁଲୀ ବୋଲି ଯୁକ୍ତି କରନ୍ତି । କିନ୍ତୁ ପ୍ରକୃତରେ ଯେଉଁ ବ୍ୟକ୍ତି ଥରେ ମାତ୍ର ବୀରଭୂମ ଜିଲ୍ଲାର ତଥାକଥିତ କେନ୍ଦୁଲୀ ଦେଖିଛି, ସେ କେବେ ହେଲେ କହିବ ନାହିଁ ଯେ ଜୟଦେବଙ୍କ ପରି ଜଣେ ପରମ ବୈଷ୍ଣବ ଓ 'ରାଧାମାଧବ'ଙ୍କ ଉପାସକ ସେପରି ଏକ ଅଖ୍ୟାତନାମା ଗ୍ରାମରେ ଜନ୍ମଗ୍ରହଣ କରିଥିବେ । କିନ୍ତୁ ପଶ୍ଚିମବଙ୍ଗର ସରକାରୀ ତଥା ବେସରକାରୀ କ୍ଷେତ୍ରରେ ଯେପରି ବହୁଳ ପ୍ରଚାର ଚାଲିଛି, ତା'ରି ଫଳରେ 'ବୀରଭୂମର କେନ୍ଦୁଲୀ' ଆଜି ସର୍ବଭାରତୀୟ ସ୍ତରରେ ଏତେ ପ୍ରଖ୍ୟାତ ହୋଇପାରିଛି ।

ବୋଲପୁର ରେଲୱେ ଷ୍ଟେସନଠାରୁ ଅଜୟତଟର କେନ୍ଦୁଲୀ ହେଉଛି ପଚିଶ ମାଇଲ ଦୂର । ବୋଲପୁର ଷ୍ଟେସନର ବାହାରକୁ ବାହାରି ଆସିବା ମାତ୍ରେ ହଠାତ୍ ଦର୍ଶକର ଦୃଷ୍ଟିପଡ଼େ ଲମ୍ୱ ଲମ୍ୱ ମୋଟରଗାଡ଼ି ଉପରେ । ମୋଟରଗୁଡ଼ିକର ନାମ ହେଉଛି 'ଜୟଦେବ ମୋଟର ସର୍ଭିସ' ଅର୍ଥାତ୍ ସେହି ମୋଟରଗୁଡ଼ିକ ଅଜୟତଟରେ ଥିବା 'ରାଧାବିନୋଦ' ମନ୍ଦିର ପର୍ଯ୍ୟନ୍ତ ଦିନରେ ଦୁଇଥର ଯାତାୟାତ କରେ ଏବଂ ବହୁ ସଂଖ୍ୟକ ଯାତ୍ରୀ 'ରାଧାବିନୋଦ'ଙ୍କ ଦର୍ଶନ ନିମିତ୍ତ ସେଠାକୁ ଯାଆନ୍ତି ।

ବୋଲପୁରଠାରୁ ରାଧାବିନୋଦ ମନ୍ଦିର ପର୍ଯ୍ୟନ୍ତ ଯାଇଥିବା ରାସ୍ତାଟି ବହୁଦିନରୁ ସବୁଦିନିଆ ରାସ୍ତାରେ ପରିଣତ ହୋଇଛି । ଏବଂ ପଶ୍ଚିମବଙ୍ଗ ସରକାର ସେଠାରେ ଏକ ସୂଚନାକେନ୍ଦ୍ର ଖୋଲିଛନ୍ତି । ପକ୍କା ରାସ୍ତାର ମାଇଲଖୁଣ୍ଟିଗୁଡ଼ିକରେ ମଧ୍ୟ 'ଜୟଦେବ କେନ୍ଦୁଲୀ' ବୋଲି ଲେଖାଯାଇଛି ।

ତଥାକଥିତ 'କେନ୍ଦୁଲୀ' ଗ୍ରାମଟିର ଅବସ୍ଥିତିରୁ ତାହା ଗୋଟିଏ ଦୀର୍ଘ ଆଠଶହ ବର୍ଷର ପ୍ରାଚୀନ ଗ୍ରାମ ବୋଲି ସାହସ କରି କହିହେବ ନାହିଁ । ବିଶେଷତଃ ଗ୍ରାମ ମଧ୍ୟରେ ଥିବା ଘରଗୁଡ଼ିକର ଅବସ୍ଥିତି ଓ ଅନ୍ୟାନ୍ୟ ପରିବେଶ ପ୍ରତି ଲକ୍ଷ୍ୟ କଲେ ତାହା ଯେ ଏକ ନିତାନ୍ତ ଅର୍ବାଚୀନ ଗ୍ରାମ ଏଥିରେ ସନ୍ଦେହର ଅବକାଶ ରହେ ନାହିଁ ।

ଗ୍ରାମର ଅଧିବାସୀଙ୍କ ମଧ୍ୟରେ ବ୍ରାହ୍ମଣେତର ଜାତିର ଅଧିକାଂଶ ଲୋକ ବାସ କରନ୍ତି ଏବଂ ବ୍ରାହ୍ମଣମାନଙ୍କର ସଂଖ୍ୟା ମାତ୍ର କୋଡ଼ିଏ, ଅର୍ଥାତ୍ ପ୍ରାଚୀନ କାଳର ଗୋଟିଏ ଦୁଇଟି ଘର ଆଜି କୋଡ଼ିଏଟି ପରିବାରରେ ବିଭକ୍ତ ହୋଇଛନ୍ତି । ବ୍ରାହ୍ମଣମାନେ ପ୍ରାୟ ସମସ୍ତେ ଗୌଡୀୟମାନଙ୍କ ପରି ତୁଳସୀ କାଠମାଳା କଣ୍ଠରେ ଧାରଣ କରିଥିବାରୁ ସେମାନେ ଶ୍ରୀଚୈତନ୍ୟ ଦେବଙ୍କ ପରବର୍ତ୍ତୀ କାଳରେ ଆସି ସେଠାରେ ବାସ କରିଥିବାପରି ମନେହୁଏ ।

ଗ୍ରାମଠାରୁ ପ୍ରାୟ ଏକ ଫର୍ଲଙ୍ଗ ଦୂର 'ଅଜୟ' ନଦୀତଟରେ 'କୁଶେଶ୍ୱର' ନାମକ ମହାଦେବ ମନ୍ଦିର ବିଦ୍ୟମାନ । ମନ୍ଦିରଟି ସଂପୂର୍ଣ୍ଣ ଆଧୁନିକ ଏବଂ ସେଠାରେ କୌଣସି ପ୍ରାଚୀନ ମନ୍ଦିର ଥିବାର ଭଗ୍ନାବଶେଷ କୁତ୍ରାପି ପରିଦୃଷ୍ଟ ହୁଏ ନାହିଁ ।

ସନ ୧୩୫୧ ସାଲ ଅର୍ଥାତ୍ ୧୯୪୪ ମସିହାରେ ନିର୍ମିତ ମନ୍ଦିରଟିର ଉଚ୍ଚତା ପ୍ରାୟ କୋଡ଼ିଏ ଫୁଟ । ମନ୍ଦିରର ଗର୍ଭଗୃହର ଲମ୍ବ ସାତ ଫୁଟ ଏବଂ ଓସାର ସାତ ଫୁଟ । ଠିକ୍ ମଧ୍ୟଭାଗରେ ମୁଗୁନି ପଥରରେ ନିର୍ମିତ ଶକ୍ତି ପରିବେଷ୍ଟିତ ଲିଙ୍ଗ । ଶକ୍ତିପୀଠର ଦକ୍ଷିଣ ପାର୍ଶ୍ୱରେ ଏକଫୁଟ ଲମ୍ବ ଓ ଏକଫୁଟ ଓସାରର ଖଣ୍ଡିଏ ପଥର ପଡ଼ିଛି । ସେହି ପଥର ଉପରେ 'ଆଲକାତରା'ରେ ଲେଖାଯାଇଛି :

ଜୟଦେବ ପଦ୍ମାସନ -

ସ୍ମରଗରଳଖଣ୍ଡନ

ଦେହି ପଦପଲ୍ଲବମୁଦାରମ୍ ।

'ଅଜୟ' ନଦୀର କୂଳରେ ଥିବା 'ରାଧାବିନୋଦ' ମନ୍ଦିରଟି ସପ୍ତଦଶ ଶତାବ୍ଦୀର ଶେଷ ଭାଗରେ ନିର୍ମିତ ହୋଇଛି । ଉକ୍ତ ମନ୍ଦିରକୁ ଆଜିକାଲିର ବଙ୍ଗୀୟ ଆଲୋଚକମାନେ 'ରାଧାମାଧବ'ଙ୍କ ମନ୍ଦିର ବୋଲି ସାଧାରଣ ଲୋକମାନଙ୍କ ମଧ୍ୟରେ ପ୍ରଚାର କରନ୍ତି । ଉକ୍ତ ମନ୍ଦିରଟିକୁ ବର୍ଦ୍ଧମାନର 'ନଈରାଣୀ' ଖ୍ରୀ:ଅ:୧୬୯୪ ମସିହାରେ ନିର୍ମାଣ କରି ସେଥିରେ 'ରାଧାବିନୋଦ'ଙ୍କ ମୂର୍ତ୍ତି ପ୍ରତିଷ୍ଠା କରିଥିଲେ ।

ସବୁଠାରୁ ଅଧିକ କୌତୁହଳର ବିଷୟ ହେଉଛି - ଉକ୍ତ ମନ୍ଦିରରେ ଖଣ୍ଡିଏ ହାତ ତିଆରି କାଗଜର ପୋଥି ରହିଛି । ପୋଥିଟିରେ ଶ୍ରୀମଦ୍ ଭାଗବତ (ସଂସ୍କୃତ) ପଞ୍ଚମ ସ୍କନ୍ଦଠାରୁ ନବମ ସ୍କନ୍ଦ ପର୍ଯ୍ୟନ୍ତ କେବଳ ମୂଳପାଠ ରହିଛି । ସେଠାରେ ଅପପ୍ରଚାରର କୌଶଳ ଏତେଦୂର ବୃଦ୍ଧି ପାଇଛି ଯେ ମନ୍ଦିରର ପୂଜକ ସେହି ପୋଥିଟିକୁ ଜୟଦେବଙ୍କ 'ସ୍ୱହସ୍ତ ଲିଖିତ ଗୀତଗୋବିନ୍ଦ' ପୋଥି ବୋଲି ଧାରଣା ଦେଉଛନ୍ତି ।

ହରେକୃଷ୍ଣ ମୁଖୋପାଧ୍ୟାୟଙ୍କ 'ବୀରଭୂମ ବିବରଣ'ରୁ ଜଣାଯାଏ ଯେ, ରାଧାବିନୋଦ ମନ୍ଦିର ପାର୍ଶ୍ୱରେ ଥିବା ମଠର ପ୍ରତିଷ୍ଠାତା ହେଉଛନ୍ତି ରାଧାରମଣ ବ୍ରଜବାସୀ । ବର୍ତ୍ତମାନ ଉକ୍ତ ମଠର ଉତ୍ତରାଧିକାରୀ ରାସବିହାରୀ ବ୍ରଜବାସୀ ନିଜ ଗୁରୁ ପରମ୍ପରାରେ ଦଶମ ପୁରୁଷର ବ୍ୟକ୍ତି । ସେହି ଦୃଷ୍ଟିରୁ ବିଚାର କଲେ, ମଠଟି ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଅର୍ଥାତ୍ 'ରାଧାବିନୋଦ' ମନ୍ଦିର ନିର୍ମାଣର ଅବ୍ୟବହିତ ପରେ ନିର୍ମିତ ହୋଇଥିଲା ।

ମୈଥିଳୀ କବି ଚନ୍ଦ୍ରଦତ୍ତଙ୍କ ବର୍ଣ୍ଣନାନୁସାରେ କବି ଜୟଦେବଙ୍କ ଜନ୍ମସ୍ଥାନ ହେଉଛି - 'ଗ୍ରାମଃ ବ୍ରାହ୍ମଣସଙ୍କୁଳଃ', ଅର୍ଥାତ୍ ଗୋଟିଏ ବ୍ରାହ୍ମଣ ଶାସନ । ଆଜକୁ ଆଠ ନଅ ଶହ ବର୍ଷ ପୂର୍ବେ କେବଳ ବ୍ରାହ୍ମଣ ଶାସନଗୁଡ଼ିକରେ ହିଁ ବିଦ୍ୟା ଚର୍ଚ୍ଚା ବିଶେଷତଃ ସଂସ୍କୃତ ଶାସ୍ତ୍ରଚର୍ଚ୍ଚା ସମ୍ଭବ ହେଉଥିଲା । ଶାସନଗୁଡ଼ିକର ଚତୁଷ୍ପାଠୀ ବା ଆଜିକାଲିର ଚଉପାଡୀରୁ ଶାସ୍ତ୍ରଚର୍ଚ୍ଚାରେ ଉତ୍ତୀର୍ଣ୍ଣ ହୋଇଥିବା ପଣ୍ଡିତମାନେ ରାଜଦରବାରରେ ସମ୍ମାନାସ୍ପଦ ସ୍ଥାନ ଅଧିକାର କରୁଥିଲେ । ସେହି ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଯେ, ଅଜୟ ତୀରବର୍ତ୍ତୀ ତଥାକଥିତ କେନ୍ଦୁଲୀ ଗ୍ରାମଟି ଆଦୌ ବ୍ରାହ୍ମଣ ଶାସନ ନୁହେଁ କିମ୍ବା ସେହି ଗ୍ରାମର ଚତୁର୍ଦ୍ଦିଗରେ ଜାନୁବଜାର, ପରାନ୍‌ଚକ୍, ଭରାଙ୍ଗି, ରାମପୁର, ସୁଗର, ଟିକରବେତା, ବୈଦିପୁର, ସାହାପୁର, ଭବାନୀପୁର, ରଙ୍ଗପୁର ଏବଂ ଅଜୟ ନଦୀର ଅପରପାର୍ଶ୍ୱରେ ଥିବା ବର୍ଦ୍ଧମାନ ଜିଲ୍ଲାର ନବଗ୍ରାମ, କାଟଲାଦିହି, ରାଉତଦିହି, ଶିବପୁର, ବିଷ୍ଣୁପୁର ଓ ରାଧାନଗର ପ୍ରଭୃତି ଗ୍ରାମଗୁଡ଼ିକ ମଧ୍ୟରୁ କୌଣସି ଗୋଟିଏ ହେଲେ ବ୍ରାହ୍ମଣ ଶାସନ ନୁହେଁ ଏବଂ କେବଳ ଶିବପୁର, ବିଷ୍ଣୁପୁର ଓ ତଥାକଥିତ କେନ୍ଦୁଲୀକୁ ଛାଡ଼ି ଦେଲେ ଅନ୍ୟ ଗ୍ରାମଗୁଡ଼ିକରେ ଆଦୌ ବ୍ରାହ୍ମଣ ବସତି ନାହିଁ ।

ଏଣୁ ନିଃସନ୍ଦେହରେ କୁହାଯାଇପାରେ ଯେ, ତଥାକଥିତ କେନ୍ଦୁଲୀ ଗ୍ରାମଟି ଏକ ଅର୍ବାଚୀନ ଗ୍ରାମ ସେଠାରେ 'କେନ୍ଦୁଲୀ' ବୋଲି କୌଣସି ଗ୍ରାମ ନଥିଲା । ଯଥାର୍ଥରେ ଡକ୍ଟର ସୁକୁମାର

ସେନ୍ ତାଙ୍କ 'ବଙ୍ଗଳା ସାହିତ୍ୟେର ଇତିହାସ'ରେ ଯାହା ଲେଖିଛନ୍ତି ତାହା ଅକ୍ଷରତଃ ସତ୍ୟ :

'ଅଜୟେର୍ ଧାରେ ବାଲୁତଟେ ପୌଷସଂକ୍ରାନ୍ତି ସ୍ଥାନେର୍ ମେଲା ନିକଟେ ଯେ ଗ୍ରାମ ଆଛେ ତାହାର୍ ନାମଓ କେନ୍ଦୁଲୀ ନୟ । ଏଖାନେ କେନ୍ଦୁଲୀ ଗ୍ରାମ ଛିଲ ବଲିୟା କୋନ୍ ପ୍ରମାଣଓ ନାଇ ।'

ତେଣୁ ଆନ୍ତର୍ଜାତୀୟ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଥିବା ବ୍ୟକ୍ତିମାନଙ୍କ ଦ୍ୱାରା ପ୍ରାଚୀ ନଦୀକୂଳର କେନ୍ଦୁଲୀ ବା କେନ୍ଦୁବିଲ୍ୱ ଜୟଦେବଙ୍କ ଜନ୍ମସ୍ଥାନ ରୂପେ ସ୍ୱୀକୃତ ହେଉଥିବାବେଳେ ଜଣେ ଅଧେ ଓଡ଼ିଆ କବିଙ୍କ ଭ୍ରମାତ୍ମକ ପ୍ରଚାର ଉପରେ ଗୁରୁତ୍ୱ ଆରୋପ କରିବା ଆଦୌ ବିଜ୍ଞତାର ପରିଚାୟକ ନୁହେଁ ।''

ଚୈତନ୍ୟଙ୍କ ସାମସାମୟିକ ବା ତାଙ୍କର ସାଢ଼େ ତିନିଶହ ବର୍ଷ ପର ପର୍ଯ୍ୟନ୍ତ କୌଣସି କାବ୍ୟ, ଗ୍ରନ୍ଥ, ସାହିତ୍ୟ ବା ବୈଷ୍ଣବ ଧର୍ମଗ୍ରନ୍ଥରେ ଏହି କେନ୍ଦୁଲୀର ନାମ ଉଲ୍ଲେଖ ନାହିଁ କିମ୍ବା ମେଳା କଥା କୁହାଯାଇନାହିଁ । ଜୟଦେବଙ୍କ ଏହି ତଥାକଥିତ ଜନ୍ମସ୍ଥାନର ନିକଟବର୍ତ୍ତୀ ଗ୍ରାମର ପ୍ରଭୁ ଶ୍ରୀନିତ୍ୟାନନ୍ଦ ବା ଶ୍ରୀଚୈତନ୍ୟ ସେମାନଙ୍କ ଜୀବନ କାଳରେ ଏ ଗାଁକୁ ଥରେ ବୁଲି ଆସିଛନ୍ତି ବୋଲି କେଉଁଠାରେ ଉଲ୍ଲେଖ କରି ନାହାନ୍ତି । ପରବର୍ତ୍ତୀ ବୈଷ୍ଣବ ସନ୍ଥମାନେ ଅର୍ଥାତ୍ ରୂପ ଗୋସ୍ୱାମୀ, ସନାତନ ଗୋସ୍ୱାମୀ, 'ଚୈତନ୍ୟ ଚରିତାମୃତ'ର ଲେଖକ କୃଷ୍ଣଦାସ କବିରାଜ କେହି ହେଲେ ଏ ଗ୍ରାମକୁ ଜୟଦେବଙ୍କ ଜନ୍ମସ୍ଥଳୀ ଭାବେ ବୁଲି ଆସିଛନ୍ତି, ଏ କଥା କେଉଁଠାରେ ଲେଖା ନାହିଁ । ଅଷ୍ଟାଦଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ପ୍ରକାଶିତ କୌଣସି ସାହିତ୍ୟ, ଇତିହାସ, କାବ୍ୟ ବା ପୁରାଣରେ ଏହି ଅଜୟ ତୀରବର୍ତ୍ତୀ କେନ୍ଦୁଲୀ କଥା ଉଲ୍ଲେଖ ନାହିଁ କିମ୍ବା ଜୟଦେବ ବଙ୍ଗୀୟ ବୋଲି କୁହାଯାଇନାହିଁ ।

ଅପରପକ୍ଷେ ଡଃ ଆଶୁତୋଷ ଭଟ୍ଟାଚାର୍ଯ୍ୟଙ୍କ ମତାମତ ଦେଖନ୍ତୁ -

'ଜୟଦେବ ଛିଲେନ୍ ଉଡ଼ିୟା ଏବଂ ବୀରଭୂମେର୍ କେନ୍ଦୁଲୀତେ ଅନୁଷ୍ଠିତ ବାତ୍ସରିକ ମେଲା ଆସଲେ ବାଉଲ୍ ମେଲା ଏବଂ ଜୟଦେବେର୍ ଜନ୍ମେର୍ ସଙ୍ଗେ ଏର୍ କୋନ୍ ସମ୍ପର୍କ ନେଇ । ଜୟଦେବ ଲକ୍ଷ୍ମଣ ସେନେର୍ ସଭାକବି ଛିଲେନ୍ ବଲେ ଏଯାବତ୍ ଯେ ସିଦ୍ଧାନ୍ତ ବିଦଗ୍ଧ ସମାଜେ ଗୃହୀତ ହୟେ ଛିଲ, ତା' ଗ୍ରହଣଯୋଗ୍ୟ ନୟ । ଲକ୍ଷ୍ମଣ ସେନେର୍ ଅନ୍ୟାନ୍ୟ କବିଦେର୍ ସଙ୍ଗେ କବି ଜୟଦେବ ନିଜେର୍ ନାମକେ ଯୁକ୍ତ କର୍‌ଲେ ଓ ତିନି ଲକ୍ଷ୍ମଣ ସେନେର୍ ସଭାକବି ଛିଲେନ୍, ତା' ପ୍ରମାଣିତ ହୟନା । ପ୍ରାଚୀନ ଯଶସ୍ୱୀ ସଂସ୍କୃତ କବିଦେର୍ ନାମେର୍ ସଙ୍ଗେ ନିଜେର୍ ନାମ ଯୁକ୍ତ କରାର୍ ରୀତି ଏଖନୋ ଓ ଉଡିଷ୍ୟାୟ ପ୍ରଚଳିତ ହୟେଛେ ।'

ଓଡ଼ିଶାର ପ୍ରାଚୀନଦୀ ତୀରବର୍ତ୍ତୀ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଲୀର ପ୍ରାଚୀନତା ଓ ଐତିହାସିକତା ସର୍ବଜନ ବିଦିତ । ଷୋଡ଼ଶ ଶତାବ୍ଦୀର ପ୍ରଥମ ଓ ଦ୍ୱିତୀୟ ଦଶକରେ ଶ୍ରୀଚୈତନ୍ୟ, ପଞ୍ଚସଖା ଓ ବୈଷ୍ଣବ ଭକ୍ତମଣ୍ଡଳୀ ପ୍ରତିବର୍ଷ ଏହି କେନ୍ଦୁଲୀକୁ ସଂକୀର୍ତ୍ତନ ପଦ ଯାତ୍ରାରେ ଆସି ଜୟଦେବଙ୍କ ଗୀତଗୋବିନ୍ଦ ପଦାବଳୀ ଗାଇ, ସେହି ତାଳରେ କେନ୍ଦୁଲୀର ରାସ୍ତାରେ ନୃତ୍ୟ କରୁଥିଲେ ଏବଂ ପ୍ରାଚୀର ତ୍ରିବେଣୀ ସଙ୍ଗମରେ ମକରମେଳାରେ ସ୍ନାନ କରୁଥିଲେ । ଜୟଦେବଙ୍କ ସ୍ମୃତିଚାରଣ କରି ତାଙ୍କୁ ସମ୍ମାନ ପ୍ରଦର୍ଶନ କରିଥିଲେ । ବୈଷ୍ଣବ କବି ମାଧବ ପଟ୍ଟନାୟକଙ୍କ ରଚିତ ବୈଷ୍ଣବ ଲୀଳାମୃତ (ରଚନା କାଳ ଖ୍ରୀ:୧୫୩୫)ରେ ଏ କଥା ସ୍ପଷ୍ଟ ଭାବେ ଉଲ୍ଲିଖିତ ଅଛି ।

ସ୍ୱନାମଧନ୍ୟ ଜୟଦେବ - ଗବେଷକ ଅଧ୍ୟାପକ ଡଃ ବନମାଳୀ ରଥ ଏ ବିଷୟରେ ଅନେକ ଗବେଷଣା ପରେ ଲେଖିଛନ୍ତି -

ପୁନଶ୍ଚ ଏହି ସିଦ୍ଧାନ୍ତର ସମର୍ଥନ ନିମନ୍ତେ କେନ୍ଦୁଲି ଗ୍ରାମର ରାଧାବିନୋଦ ମନ୍ଦିର ଓ ଗୋଟିଏ ବୈଷ୍ଣବ ମଠ ସହିତ କବି ଜୟଦେବଙ୍କ ସମ୍ପର୍କ ଥିବା କଥା କୁହାଯାଇଥାଏ । କଥିତ ଅଛି ଯେ, କବି ଜୟଦେବଙ୍କ ସ୍ମୃତି ଉଦ୍ଦେଶ୍ୟରେ ସେଠାର ମାଘ ପୂର୍ଣ୍ଣମୀ ଦିନ ଏକ ବାର୍ଷିକ ମେଳା ମଧ୍ୟ ଅନୁଷ୍ଠିତ ହୁଏ । ସେ ଯାହା ହେଉ ଏପରି ଯୁକ୍ତିର କୌଣସି ବଳିଷ୍ଠ ଭିତ୍ତି ନାହିଁ । କାରଣ ଯେଉଁ ରାଧାବିନୋଦ ମନ୍ଦିରରେ ଜୟଦେବ ପ୍ରତ୍ୟେକ ଦିନ ପୂଜା କରୁଥିବାର ପ୍ରବାଦ ଅଛି ତାହା ବର୍ଦ୍ଧମାନର ମହାରାଜା କୀର୍ତ୍ତିଚନ୍ଦ୍ରଙ୍କ ମାତା ୧୬୧୪ ଶକାବ୍ଦ ବା ୧୬୯୨ ଖ୍ରୀଷ୍ଟାବ୍ଦରେ ନିର୍ମାଣ କରିଥିଲେ । ବୈଷ୍ଣବ ମଠଟି ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ବ୍ରଜବାସୀ ରାଧାମୋହନଙ୍କଦ୍ୱାରା ନିର୍ମିତ ହୋଇଥିଲା । ତାଙ୍କର ନବମ ଉତ୍ତରାଧିକାରୀ ବର୍ତ୍ତମାନ ସେହି ମଠର ମହନ୍ତ ଅଛନ୍ତି । ଯଦି ଏହି କେନ୍ଦୁଲି ଗ୍ରାମ ଜୟଦେବଙ୍କ ଜନ୍ମସ୍ଥାନ ହୋଇଥାନ୍ତା, ତେବେ ଚୈତନ୍ୟ ଦେବ ସେହି ସ୍ଥାନ ନିଶ୍ଚିତ ଭାବରେ ପରିଦର୍ଶନ କରିଥାନ୍ତେ । ଚୈତନ୍ୟ ପରବର୍ତ୍ତୀ ବଙ୍ଗଳାର ବିପୁଳ ପଦାବଳୀ ସାହିତ୍ୟରେ ସେହି ପୁଣ୍ୟପୀଠ ବା ମନ୍ଦିରର ଖ୍ୟାତି ବହୁଭାବରେ ଉଦ୍‌ଘୋଷିତ ହୋଇଥାନ୍ତା । **ବିଶିଷ୍ଟ ବୈଷ୍ଣବ ଗୋସ୍ୱାମୀମାନଙ୍କର ନିରବଚ୍ଛିନ୍ନ ନୀରବତା ଦୃଷ୍ଟିରୁ ଏହା ନିର୍ବିବାଦରେ ଗ୍ରହଣ କରାଯାଇପାରେ ଯେ, ବୀରଭୂମ ଜିଲ୍ଲାର କେନ୍ଦୁଲି ଗ୍ରାମ**

**ଜୟଦେବଙ୍କ ଜନ୍ମସ୍ଥାନ ଭାବରେ ସପ୍ତଦଶ ଶତାବ୍ଦୀର ଶେଷଭାଗରେ ରାଧାବିନୋଦ ମନ୍ଦିରର ନିର୍ମାଣ ପରେ ଉଦ୍ଦେଶ୍ୟମୂଳକ ଭାବରେ ପ୍ରଚାରିତ ହୋଇଅଛି । କପୋଳ କଳ୍ପିତ 'ଜୟଦେବ ଚରିତ' ଉପରେ ଆଧାରିତ ତଥ୍ୟଟି ସମ୍ପୂର୍ଣ୍ଣ ଅନୈତିହାସିକ ଓ ଅନ୍ୟ କୌଣସି ସାହିତ୍ୟିକ ପ୍ରମାଣଦ୍ୱାରା ମଧ ସମର୍ଥିତ ନୁହେଁ ।'**

ଜୟଦେବଙ୍କ ଗୀତଗୋବିନ୍ଦ ବିନା ଓଡ଼ିଶା ସଂସ୍କୃତିର ପୃଥକ୍ ଅସ୍ତିତ୍ୱର କଳ୍ପନା କରାଯାଇ ନପାରେ ।

ଯେଉଁ ଉଦାରଚେତା ବ୍ୟକ୍ତିମାନେ କୁହନ୍ତି ଯେ ଜୟଦେବ ଭାରତୀୟ ଥିଲେ ଏବଂ ସେ ବଙ୍ଗରେ ବା ଓଡ଼ିଶାରେ ଯେଉଁଠାରେ ଜନ୍ମ ହୋଇଥାନ୍ତୁ, ସେଥିରେ ଯାଏ ଆସେ ନାହିଁ ସେମାନେ କ'ଣ ଆଦୌ ପ୍ରତିବାଦ କରିବେ ନାହିଁ ଯଦି କିଏ ତାଙ୍କୁ କହେ ଯେ ଜୟଦେବ ଶ୍ରୀଚୈତନ୍ୟଙ୍କଠାରୁ ଶିଖି ଓଡ଼ିଶାକୁ ଶ୍ରୀରାଧାଙ୍କୁ ଆଣିଥିଲେ । ଅଜୟ ନଦୀ ତୀରବର୍ତ୍ତୀ କେନ୍ଦୁଲୀ ଗ୍ରାମର ଖ୍ରୀ:୧୬୯୨ରେ ନିର୍ମିତ ରାଧାବିନୋଦ ମନ୍ଦିର ହିଁ ଦେଶର ପ୍ରଥମ ରାଧାମାଧବ ମନ୍ଦିର । ସଂଗୀତ ଓ ନୃତ୍ୟକଳା ବଙ୍ଗରୁ ଜୟଦେବ ଓଡ଼ିଶାକୁ ଆଣିଥିଲେ ଯାହା ପରବର୍ତ୍ତୀ ସମୟରେ ଓଡ଼ିଶୀ ଭାବେ ପରିଚିତ ହେଲା । ଯେଉଁ ଗୀତ ଗୋବିନ୍ଦର ଟୀକା ଓ ଅନୁକୃତି ଯାହା ଭାରତରେ ସବୁଠାରୁ ବେଶୀ ସଂଖ୍ୟାରେ ଓଡ଼ିଶାରେ ହିଁ ଦେଖାଯାଏ ତାହାର ମୂଳ ଲେଖା ବଙ୍ଗରୁ ଆସିଥିଲା । ଏଭଳି ମହାଭାରତୀୟ ପ୍ରେମରେ କ୍ଷୁଦ୍ରତାର ସ୍ଥାନ କେବେ ନଥିବ । ତେଣୁ ଓଡ଼ିଶା ଯେଉଁ ସାହିତ୍ୟ, ନୃତ୍ୟ, ସଂଗୀତ, ଚିତ୍ରକଳା, ବୟନଶିଳ୍ପ ଓ ମନ୍ଦିର ସ୍ଥାପତ୍ୟ ନେଇ ଗର୍ବ କରେ ସବୁ ଓଡ଼ିଶା ବାହାରୁ ଆସିଛି ବୋଲି ମାନିବା ଯାହା, ଜୟଦେବ ବଙ୍ଗରେ ଜନ୍ମ ଗ୍ରହଣ କରିଥିଲେ କହିବା ଠିକ୍ ତାହା । କାରଣ ଜୟଦେବଙ୍କ ଗୀତଗୋବିନ୍ଦ ବିନା ଓଡ଼ିଶା ସଂସ୍କୃତିର ପୃଥକ୍ ଅସ୍ତିତ୍ୱର କଳ୍ପନା କରାଯାଇ ନପାରେ ।

ବିଶିଷ୍ଟ ଲେଖକ ତଥା ମୁଖ୍ୟ ଶାସନ ସଚିବ
ଓଡ଼ିଶା, ଭୁବନେଶ୍ୱର



# ଶ୍ରୀଜଗନ୍ନାଥଙ୍କ ପରମଭକ୍ତ ଜୟଦେବ

କେଦାରନାଥ ମହାପାତ୍ର

**ଶ୍ରୀ**କ୍ଷେତ୍ରବାସୀ ଭକ୍ତକବି ଶ୍ରୀଜୟଦେବ ଉତ୍କଳର ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଜଣେ ପରମ ଭକ୍ତ ଥିବା ବିଷୟ ମୈଥିଳୀ ପଣ୍ଡିତ ଶ୍ରୀ ଚନ୍ଦ୍ରଦତ୍ତଙ୍କ କୃତ ପ୍ରସିଦ୍ଧ 'ଭକ୍ତମାଳା' ଗ୍ରନ୍ଥରେ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି ।

ଉତ୍କଳ ଦେଶର ଜଗନ୍ନାଥ ପୁରୀ ପ୍ରାନ୍ତରେ ବ୍ରାହ୍ମଣ ସଂକୁଳ କେନ୍ଦୁବିଲ୍ୱ ନାମକ ଗ୍ରାମରେ ଶ୍ରୀଜୟଦେବ ଜନ୍ମ ଗ୍ରହଣ କରିଥିଲେ । ଜୟଦେବ ଗୃହ ତ୍ୟାଗ କରି ସନ୍ନ୍ୟାସ ବ୍ରତ ଅବଲମ୍ବନପୂର୍ବକ ଶ୍ରୀକ୍ଷେତ୍ର ସୀମାରେ ନିର୍ମିତ ଏକ ପର୍ଣ୍ଣକୁଟୀରରେ ବାସ କରୁଥିଲେ । ଦେବଶର୍ମା ନାମକ ଜନୈକ ବିପ୍ର ଶ୍ରୀଜଗନ୍ନାଥଙ୍କ ବରପ୍ରସାଦରୁ ଲାଭ କରିଥିବା ସ୍ୱୀୟ ପ୍ରଥମ ଅପତ୍ୟ ପଦ୍ମାବତୀଙ୍କୁ ଶ୍ରୀକ୍ଷେତ୍ର ଆଗମନପୂର୍ବକ ମହାପ୍ରଭୁଙ୍କ ନିକଟରେ ପୂର୍ବକୃତ ଶପଥ ଅନୁଯାୟୀ ତାଙ୍କ ସେବା ପାଇଁ ଉତ୍ସର୍ଗ କରିଥିଲେ । କିନ୍ତୁ ସେ ଶ୍ରୀଜଗନ୍ନାଥଙ୍କ ସ୍ୱପ୍ନାଦେଶ ପ୍ରାପ୍ତ ହୋଇ ତାଙ୍କର ପ୍ରିୟ ଭକ୍ତ ଶ୍ରୀଜୟଦେବଙ୍କୁ ସ୍ୱକନ୍ୟାଙ୍କୁ ଅର୍ପଣ କରିଥିଲେ । ସନ୍ନ୍ୟାସୀ ଶ୍ରୀଜୟଦେବ ପ୍ରଥମେ ତାଙ୍କ ସହିତ ପରିଣୟ ପାଶରେ ଆବଦ୍ଧ ହେବା ପାଇଁ ଅନିଚ୍ଛା ପ୍ରକାଶ କରିଥିଲେ ମଧ୍ୟ ପରେ ଶ୍ରୀଜଗନ୍ନାଥଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ଯଥାବିଧି ତାଙ୍କର ପାଣିଗ୍ରହଣ କରିଥିଲେ । ଗଭୀର ପ୍ରେମାବଦ୍ଧ ଭକ୍ତ ଦମ୍ପତି ଏକପ୍ରାଣରେ ନୃତ୍ୟଗୀତାଦି ଦ୍ୱାରା ଶ୍ରୀକୃଷ୍ଣାର୍ଚ୍ଚନରେ କାଳାତିପାତ କଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଜୟଦେବଙ୍କୁ ବିବାହ କରିବା ପୂର୍ବରୁ ପଦ୍ମାବତୀ ଜଣେ ନୃତ୍ୟ ପଟୀୟସୀ ମହିଳା ଥିଲେ । ଦାକ୍ଷିଣାତ୍ୟର ତିନୋଟି ମନ୍ଦିରରେ ପଦ୍ମାବତୀଙ୍କ ନାମ ନୃତ୍ୟାଙ୍ଗନାଭାବେ ଶିଳାଲେଖରେ ଉଲ୍ଲେଖ ଅଛି । ଜୟଦେବ ମଧ୍ୟ କଳିଙ୍ଗର କୂର୍ମପାଟକରେ ଥିବା ସଂଗୀତ ନୃତ୍ୟ ଓ ଶାସ୍ତ୍ରୀୟ କଳା ବିଦ୍ୟାଳୟରେ ଅଧକ୍ଷ ଥିବାର ପ୍ରମାଣ ମନ୍ଦିର ଶିଳାଲେଖରେ ମିଳୁଛି ।



ତଦନନ୍ତର ଶ୍ରୀଜୟଦେବ ସ୍ୱୀୟ ପରମାରାଧ୍ୟ ଶ୍ରୀଜଗନ୍ନାଥଙ୍କ ସନ୍ତୋଷ ବିଧାନ ନିମିତ୍ତ ଶ୍ରୀଗୀତଗୋବିନ୍ଦ ରଚନାରେ ପ୍ରବୃତ୍ତ ହେଲେ । ଏକଦା ସଂଶୟାପନ୍ନ ହୋଇ ଉପଯୁକ୍ତ ଶବ୍ଦବିନ୍ୟାସଦ୍ୱାରା ସେ ଗୀତର ପାଦ ପୂରଣ କରିବା ପାଇଁ ଅସମର୍ଥ ହେବାରୁ ଶ୍ରୀକୃଷ୍ଣ ତାଙ୍କ ଅନୁପସ୍ଥିତ ସମୟରେ ଶ୍ରୀଜୟଦେବଙ୍କ ବେଶରେ ପର୍ଣ୍ଣକୁଟୀରରେ ପ୍ରବେଶପୂର୍ବକ ଏହି ପାଦ ପୂରଣ କରି ଅନ୍ତର୍ହିତ ହୋଇଗଲେ । ସ୍ନାନ ପ୍ରତ୍ୟାବୃତ କବି ଏହା ଦେଖି ବିସ୍ମୟାଭିଭୂତ ହେବାରୁ ଶ୍ରୀକୃଷ୍ଣ ସେଦିନ ରାତ୍ରିଶେଷରେ ସ୍ୱପ୍ନରେ ତାଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇ ଦେଲେ । ନିଜ ଚକ୍ଷୁରେ ଶ୍ରୀକୃଷ୍ଣଙ୍କ ଦର୍ଶନ ଲାଭ ରୂପକ ପରମ ସୌଭାଗ୍ୟ ପ୍ରାପ୍ତ ହୋଇଥିବାରୁ, ଭକ୍ତକବିଙ୍କର ସ୍ୱପତ୍ନୀ ପଦ୍ମାବତୀଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ବିଶେଷ ବୃଦ୍ଧି ଲାଭ କଲା । ଏହା ପରେ ସେ ପ୍ରତ୍ୟହ ପତ୍ନୀଙ୍କ ସହ ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ତନ୍ମୟ ହୋଇ ଶ୍ରୀଗୀତଗୋବିନ୍ଦ ଗାନ କରି ନୃତ୍ୟ କରିବାକୁ ଲାଗିଲେ । ଶ୍ରୀକ୍ଷେତ୍ରବାସ କାଳରେ ଏହାର ରଚନା ସମାପନାନ୍ତେ ସେ ଏହାକୁ ଶ୍ରୀଜଗନ୍ନାଥଙ୍କୁ ନୈବେଦ୍ୟ ରୂପେ ଅର୍ପଣ କରି ନିଜ ଜୀବନକୁ ଧନ୍ୟ କରିଥିଲେ ।

ଶ୍ରୀଗୀତଗୋବିନ୍ଦର ମହତ୍ୱ ଓ ଉତ୍କର୍ଷରେ ମୁଗ୍ଧ ହୋଇ ତତ୍କାଳୀନ ଉତ୍କଳାଧୀଶ ତାହାର ସମକକ୍ଷ ଅନ୍ୟ ଏକ 'ଗୀତଗୋବିନ୍ଦ'

ରଚନା ପୂର୍ବକ ଶ୍ରୀଜଗନ୍ନାଥଙ୍କ ସମକ୍ଷରେ ଏହାର ଗାନକୁ ବାଧ୍ୟତାମୂଳକ କରିଥିଲେ । ଦିନେ ରାଜା ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ସମୟରେ ଶ୍ରୀଜୟଦେବ ରାଜାଜ୍ଞା ଅମାନ୍ୟ କରି ଗୀତଗୋବିନ୍ଦ ଗାନରେ ପ୍ରବୃତ୍ତ ଥିବା ଜାଣି ପାରିଥିଲେ । ଏଥିରେ ସେ ବିରକ୍ତ ହୋଇ ଶ୍ରୀଜୟଦେବଙ୍କୁ ଏହାର କାରଣ ଜିଜ୍ଞାସା କରିବାରୁ, ସେ ଉତ୍ତରରେ କହିଲେ ଯେ, ତାଙ୍କର ଗ୍ରନ୍ଥ ଶ୍ରୀଜଗନ୍ନାଥଙ୍କ ଅଧିକ ସନ୍ତୋଷପ୍ରଦ ।

ତଦନନ୍ତର ରୁଦ୍ଧଦ୍ୱାର ଗର୍ଭଗୃହ ମଧ୍ୟରେ ମହାପ୍ରଭୁଙ୍କ ସମକ୍ଷରେ ଉଭୟ ଗ୍ରନ୍ଥର ମହତ୍ୱ ପରୀକ୍ଷା ପାଇଁ ରଖାଯାଇଥିଲା । କପାଟୋନ୍ମୋଚନ କଲା ପରେ ଜୟଦେବଙ୍କ ଶ୍ରୀଗୀତଗୋବିନ୍ଦ ରାଜରଚିତ ଗୀତଗୋବିନ୍ଦ ଉପରେ ରଖାଯାଇଥିବାର ଦେଖାଗଲା । ଏଥିରେ ରାଜା ଅତ୍ୟନ୍ତ କ୍ଷୁବ୍ଧ ଓ ନିରାଶ ହେବାରୁ ଶ୍ରୀଜଗନ୍ନାଥ ତାହାଙ୍କୁ ଶ୍ରୀଗୀତଗୋବିନ୍ଦର ମହତ୍ୱ ସ୍ୱୀକାରପୂର୍ବକ ଏହାକୁ ଲୋକ ସମାଜରେ ପ୍ରଚାର କରିବା ପାଇଁ ସ୍ୱପ୍ନରେ ଆଦେଶ ପ୍ରଦାନ କରିଥିଲେ । ରାଜା ମହାପ୍ରଭୁଙ୍କ ନିକଟରେ ସ୍ୱ-ଅପରାଧ କ୍ଷମା ପାଇଁ ପ୍ରାର୍ଥନା କରି ସେହିଦିନୁ ଶ୍ରୀଜୟଦେବଙ୍କ ପ୍ରତି ବିଶେଷ ଭକ୍ତିମାନ ହେଲେ ଏବଂ ପ୍ରତ୍ୟହ କଳି-କଳୁଷ-ନାଶନ ଶ୍ରୀଗୀତଗୋବିନ୍ଦ ପାଠ କଲେ । ଏହା ପରେ ଶ୍ରୀଗୀତଗୋବିନ୍ଦର ମାହାତ୍ମ୍ୟ ଚତୁର୍ଦ୍ଦିଗରେ ପ୍ରଚାରିତ ହେଲା । ଐତିହାସିକ ପ୍ରମାଣ ଅନୁଯାୟୀ ଯେଉଁ ଗଜପତି ସମ୍ରାଟଙ୍କ ସମୟରେ ''ଅଭିନବ ଗୀତଗୋବିନ୍ଦ'' ନାମରେ ଏକ କାବ୍ୟ ରଚିତ ହୋଇଥିଲା, ସେ ଥିଲେ ମହାନ୍ ପରାକ୍ରମଶାଳୀ ସମ୍ରାଟ ପୁରୁଷୋତ୍ତମ ଦେବ । କବିଚନ୍ଦ୍ର ରାୟ ଦିବାକର ମିଶ୍ର ଏହି କାବ୍ୟଟି ନିଜେ ରଚନା କରିଥିଲେ ମଧ୍ୟ ଗଜପତି ସମ୍ରାଟଙ୍କ ନାମରେ ଭଣିତା କରିଥିଲେ । ଏହି କାବ୍ୟଟି ଶ୍ରୀମନ୍ଦିରରେ ପ୍ରଚଳିତ ହୋଇଥିଲା । ଗଜପତି ସମ୍ରାଟ ପୁରୁଷୋତ୍ତମ ଦେବଙ୍କ ପୁତ୍ର ଗଜପତି ପ୍ରତାପରୁଦ୍ର ଦେବଙ୍କ ବେଳେ ଏହି ଦୁଇଟି କାବ୍ୟରୁ ଜଗନ୍ନାଥଙ୍କ ପ୍ରିୟ କେଉଁଟି ତାହାର ନିଷ୍ପତ୍ତି କରାଯାଇଥିଲା ଓ ତାହାପରେ ଶ୍ରୀମନ୍ଦିରର ଜୟବିଜୟ ଦ୍ୱାରରେ ଗଜପତିଙ୍କ ଆଦେଶ ଲିପିବଦ୍ଧ କରାଗଲା । ଜୟଦେବଙ୍କ ଗୀତଗୋବିନ୍ଦ କେଉଁ ସମୟରେ ଜଗନ୍ନାଥଙ୍କ ପାଖରେ ବୋଲାଯିବ ଏବଂ କିଏ ତାହା ବୋଲିବେ ଏକଥା ମଧ୍ୟ ସେଥିରେ ଲେଖା ଅଛି । ଗଜପତି ସମ୍ରାଟ ପୁରୁଷୋତ୍ତମ ଦେବଙ୍କ ସମୟ ଥିଲା ପଞ୍ଚଦଶ ଶତାବ୍ଦୀ ଏବଂ ଜୟଦେବ ଥିଲେ ଦ୍ୱାଦଶ ଶତାବ୍ଦୀର କବି । ତେଣୁ ଜଗନ୍ନାଥଙ୍କ ପାଖରେ ଏହି ପରୀକ୍ଷା ହେଲାବେଳକୁ ଜୟଦେବ ଜୀବିତ ନଥିଲେ । ଗଜପତି ପ୍ରତାପରୁଦ୍ର ଦେବଙ୍କ ସମୟରେ ହୋଇଥିବା ଏହି ପରୀକ୍ଷାଟିର କଥା କିମ୍ବଦନ୍ତୀ ବ୍ୟତୀତ ସେହି ସମୟରେ ଲେଖା ହୋଇଥିବା ''ବୈଷ୍ଣବ ଲୀଳାମୃତ'' କାବ୍ୟରେ ଉଲ୍ଲେଖ ମଧ୍ୟ ଅଛି ।

ଏକଦା ଶ୍ରୀକ୍ଷେତ୍ର ସମୀପବର୍ତ୍ତୀ ଏକ ଗ୍ରାମର ଶାକ ବିକ୍ରୟକାରିଣୀ ଶରତକାଳୀନ ଚନ୍ଦ୍ରିକା ବିଧୌତ ରଜନୀରେ ସ୍ୱ-ଉଦ୍ୟାନରୁ ବାଇଗଣ ତୋଳିବା ସମୟରେ ଅତି ତନ୍ମୟ ଭାବରେ ଶ୍ରୀଗୀତଗୋବିନ୍ଦର ମଧୁର-କୋମଳ-ପଦାବଳୀ ଉଚ୍ଚ ସ୍ୱରରେ ଗାନ କରୁଥିଲେ । ସର୍ବବ୍ୟାପୀ ଶ୍ରୀଜଗନ୍ନାଥ ନିଜର ଅତିପ୍ରିୟ ଶ୍ରୀଗୀତଗୋବିନ୍ଦର ମଧୁର ଗାନରେ ଅତ୍ୟନ୍ତ ମୁଗ୍ଧ ହୋଇ ଅଲକ୍ଷିତରେ ତାହାର ପଛେ ପଛେ ଚାଲିବାକୁ ଲାଗିଲେ । ଏହା ଫଳରେ ତାଙ୍କର ଶ୍ରୀଅଙ୍ଗ ଲୁଗା ବାଇଗଣ କଣ୍ଟାରେ ଛିନ୍ନଭିନ୍ନ ହୋଇଗଲା । କେତେ ସମୟ ପରେ ବାଇଗଣ ତୋଳା ସାରି ସ୍ତ୍ରୀ ଲୋକଟି ଘରକୁ ଚାଲିଯିବାରୁ ମହାପ୍ରଭୁ ଶ୍ରୀମନ୍ଦିରକୁ ଫେରି ଆସିଲେ ।

ତତ୍‌ପରଦିନ ପ୍ରଭାତରେ ପୂଜକମାନେ କପାଟୋନ୍ମୋଚନ ପୂର୍ବକ ପ୍ରଭୁଙ୍କ ଶ୍ରୀଅଙ୍ଗ ବସ୍ତ୍ର ବାଇଗଣ କଣ୍ଟାରେ ଛିନ୍ନଭିନ୍ନ ହୋଇଥିବାର ଦେଖି ବିସ୍ମୟାଭିଭୂତ ହୋଇଗଲେ । ପୂଜା ସମ୍ଭାର ନେଇ ମହାପ୍ରଭୁଙ୍କର ଦର୍ଶନ ପାଇଁ ଆଗତ ଗଜପତି ସମ୍ରାଟ ମଧ୍ୟ ଏହା ଲକ୍ଷ୍ୟ କରି ଅତ୍ୟନ୍ତ ବିସ୍ମିତ ହେଲେ । ଏଥିରେ ସମ୍ରାଟ ଓ ପୂଜକ ଅଶୁଭ ଆଶଙ୍କାରେ ବିଶେଷ ଉଦ୍‌ବିଗ୍ନ ଓ ଚିନ୍ତାମୟ ହୋଇ ପାନାହାର ତ୍ୟାଗ କଲେ । ଅନ୍ତର୍ଯ୍ୟାମୀ ମହାପ୍ରଭୁ ସେଦିନ ନିଶାବସାନ ସମୟରେ ଉଭୟଙ୍କୁ ଶ୍ରୀଅଙ୍ଗବସ୍ତ୍ର ଛିଣ୍ଡିଛାଣ୍ଡି ଯାଇଥିବାର କାରଣ ଜଣାଇବାରୁ, ଗଜପତି ତତ୍‌ପରଦିନ ଉକ୍ତ ଶାକ ବିକ୍ରୟକାରିଣୀଙ୍କୁ ଡକାଇ ଆଣି ତାଙ୍କୁ ମହାପ୍ରଭୁଙ୍କ ନିକଟରେ ନିତ୍ୟ ଶ୍ରୀଗୀତଗୋବିନ୍ଦ ଗାନ ପାଇଁ ନିଯୁକ୍ତି ଦେଲେ । ଗଜପତି ସମ୍ରାଟ ଶ୍ରୀଜୟଦେବଙ୍କୁ ମହାପ୍ରଭୁଙ୍କ ପରମଭକ୍ତ ରୂପେ ସ୍ୱୀକାର କରି ତାଙ୍କୁ ସମ୍ମାନ ପ୍ରଦର୍ଶନ କରିବା ନିମିତ୍ତ ତାଙ୍କ ବାସସ୍ଥାନକୁ ଯାଇଥିଲେ ।

ଏକଦା ଉତ୍କଳର ମହାରାଣୀ, ପଦ୍ମାବତୀଙ୍କ ସତୀତ୍ୱ ଓ ପତିପ୍ରାଣତା ପରୀକ୍ଷା କରିବା ଉଦ୍ଦେଶ୍ୟରେ ରାଜାଙ୍କ ସହିତ ଦେବ ଦର୍ଶନ ପାଇଁ ଯାଇଥିବା ଭକ୍ତକବି ଜୟଦେବଙ୍କ ମିଥ୍ୟା ଆକସ୍ମିକ ମୃତ୍ୟୁ ସମ୍ବାଦ ଛଳନାରେ କାନ୍ଦି ଜଣାଇ ଦେଲେ । ଏହା ଶ୍ରବଣ କରିବା ମାତ୍ରକେ ପତିଗତପ୍ରାଣା ପଦ୍ମାବତୀଙ୍କ ପ୍ରାଣବାୟୁ ଉଡ଼ିଗଲା । ତାଙ୍କର ହଠାତ୍ ମୃତ୍ୟୁ ଘଟିବାରୁ ରାଣୀ ଘୋର ଦୁଃଖ ଓ ଭୟରେ ବିଳାପ କରିବାକୁ ଲାଗିଲେ । ଇତ୍ୟବସରରେ ସମ୍ରାଟ ଶ୍ରୀଜୟଦେବଙ୍କ ସହ ଦେବ ଦର୍ଶନରୁ ଫେରି କ୍ରନ୍ଦନଜନିତ କୋଳାହଳର କାରଣ ଜାଣିବା ପାଇଁ ଅନ୍ତଃପୁରକୁ ଗମନ କଲେ ।

ସେଠାରେ ବିଗତପ୍ରାଣା ଶାୟିତା ପଦ୍ମାବତୀଙ୍କୁ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ । ରାଣୀଙ୍କଠାରୁ ପଦ୍ମାବତୀଙ୍କ ମୃତ୍ୟୁ ବୃତ୍ତାନ୍ତ ଜାଣି ରାଜା ତାଙ୍କ (ରାଣୀଙ୍କ) ଘୋର ପାପର ଦଣ୍ଡବିଧାନ ସ୍ୱରୂପ ତାଙ୍କୁ ଗୃହତ୍ୟାଗ କରିବା ପାଇଁ କ୍ରୋଧରେ ଆଦେଶ ଦେଲେ । ରାଣୀ କୌତୁକରେ ଏପରି କରିଥିବାରୁ ତାଙ୍କର ଅପରାଧ କ୍ଷମଣୀୟ ବୋଲି ଶ୍ରୀଜୟଦେବ ରାଜାଙ୍କୁ ସାନ୍ତ୍ୱନା ଦେଲେ । ତତ୍‌ପରେ ଭକ୍ତକବି ଶ୍ରୀଜଗନ୍ନାଥଙ୍କୁ ସ୍ମରଣ ପୂର୍ବକ ବାଦ୍ୟବାଦନ ସହ ସ୍ୱ-ମୃତପତ୍ନୀଙ୍କ ପାଖରେ ପ୍ରିୟ ଗୀତଗୋବିନ୍ଦ ତନ୍ମୟ ଚିତ୍ତରେ ଗାନ କରିବାକୁ ଲାଗିଲେ । ଭକ୍ତକବି କଣ୍ଠ ବିନିସୃତ ମଧୁର ସଂଗୀତର ମୃତ ସଂଜୀବନୀ ମୂର୍ଚ୍ଛନା ପଦ୍ମାବତୀଙ୍କ ପ୍ରାଣହୀନ ଶରୀରରେ ପୁନର୍ବାର ପ୍ରାଣସଂଚାର କରିବାରୁ, ସେ ନିଦ୍ରୋତ୍‌ଥିତା ପରି ଉଠି ବସିଥିଲେ । ସକଳ ଅନ୍ତଃପୁରବାସୀ ବିସ୍ମୟୋତ୍‌ଫୁଲ୍ଲ ଲୋଚନରେ ଏହି ଜୀବନ୍ୟାସ ପ୍ରକ୍ରିୟା ସନ୍ଦର୍ଶନରେ ଭକ୍ତକବିଙ୍କୁ ସାଧୁବାଦ ଅର୍ପଣ କରିଥିଲେ । ଏହାପରେ ଶ୍ରୀଜୟଦେବ ହୃଷ୍ଟ ଚିତ୍ତରେ ପ୍ରାଣପ୍ରିୟା ପଦ୍ମାବତୀଙ୍କ ସହ ସ୍ୱଗୃହକୁ ଗମନ କଲେ ।

ଏକଦା ସାଧୁପ୍ରବର ଶ୍ରୀଜୟଦେବ ସ୍ୱଭକ୍ତମାନଙ୍କ ନିମନ୍ତ୍ରଣ ରକ୍ଷା ନିମିତ୍ତ ଶ୍ରୀକ୍ଷେତ୍ର ଛାଡ଼ି ଏକ ଦୂର ଗ୍ରାମକୁ ଯାତ୍ରା କରିଥିଲେ । ସେଠାରେ ସେ ବିଶେଷ ସମ୍ମାନିତ ହୋଇ ବହୁ ବସ୍ତ୍ର, ଅଳଙ୍କାର ଓ ସୁବର୍ଣ୍ଣପ୍ରାପ୍ତ ହୋଇ ଅରଣ୍ୟ ମାର୍ଗରେ ପୁରୁଷୋତ୍ତମ ପୁରୀକୁ ପ୍ରତ୍ୟାବର୍ତ୍ତନ କଲେ । ପଥ ମଧ୍ୟରେ ନିଷ୍ଠୁର ଓ ଅତ୍ୟନ୍ତ ହିଂସା ପରାୟଣ ଚାରିଜଣ ଦସ୍ୟୁଙ୍କ ହାବୁଡ଼ରେ ପଡ଼ିଯିବାରୁ ପ୍ରାଣରକ୍ଷା ଉଦ୍ଦେଶ୍ୟରେ ସେମାନଙ୍କୁ ସମସ୍ତ ଅଳଙ୍କାରାଦି ଧନରତ୍ନ ଅର୍ପଣ କରିଥିଲେ । ତଥାପି ନିର୍ଦ୍ଦୟ ମହାଦୁଷ୍ଟ ଦୁର୍ବୃତ୍ତଗଣ ସାଧୁଙ୍କୁ ସ୍ୱଗୃହକୁ ଫେରିବାକୁ ସୁଯୋଗ ନଦେଇ ତାଙ୍କ ହାତଗୋଡ଼ ଏକାଠି ବାନ୍ଧି ହାତ ଓ ପାଦକୁ ଖଣ୍ଡାରେ ହାଣି ଦେଲେ ଏବଂ ତାଙ୍କୁ ଜଙ୍ଗଲ ମଧ୍ୟରେ ଏକ ନିର୍ଜନ ସ୍ଥାନରେ କ୍ଷତବିକ୍ଷତ ଅବସ୍ଥାରେ ପକାଇ ଦେଇ ଚାଲି ଗଲେ । କ୍ଷୁଧାତୃଷ୍ଣାର୍ତ୍ତ ସାଧୁ ଜୟଦେବ ନିଜର ଏହି ଘୋର ଦୁର୍ଦ୍ଦଶାରେ ବିଚଳିତ ନହୋଇ ଶ୍ରୀଜଗନ୍ନାଥଙ୍କ ସ୍ତୁତି ଗାନ କରିବାକୁ ଲାଗିଲେ ।

ଏକଦା ରାଜା ଅଶ୍ୱପୃଷ୍ଠରେ ଆରୋହଣ ପୂର୍ବକ ସେହି ବନରେ ମୃଗୟା କରୁଥିବା ସମୟରେ ଦୁର୍ଦ୍ଦଶାଗ୍ରସ୍ତ ଓ ପରିତ୍ୟକ୍ତ ସାଧୁ ଜୟଦେବଙ୍କ ଉପରେ ତାଙ୍କର ଦୃଷ୍ଟି ପଡ଼ିଗଲା । ସେ ତତ୍‌କ୍ଷଣାତ୍ ତାଙ୍କୁ ଶିବିକା (ପାଲିଙ୍କି)ରେ ରାଜପ୍ରାସାଦକୁ ଅଣାଇ ସାଧ୍ୱୀ ପଦ୍ମାପତୀଙ୍କ ତତ୍ତ୍ୱାବଧାନରେ ରଖି ଦେଲେ । ଏହାର କିଛି ଦିନ ପରେ ସାଧୁ ବେଶଧାରୀ ସେହି ଦସ୍ୟୁଗଣ ଭକ୍ତକବିଙ୍କ ଗୃହରେ ଅତିଥି ହେବାରୁ ତାଙ୍କ ଆଦେଶରେ ସତୀ ପଦ୍ମାବତୀ ଅତି ଯତ୍ନ ଓ ଆଦର ସହକାରରେ ସେମାନଙ୍କ ପରିଚର୍ଯ୍ୟା କରିଥିଲେ । ତାଙ୍କ ଅନୁରୋଧରେ ରାଜା ମଧ୍ୟ ସେମାନଙ୍କୁ ବିବିଧ ରତ୍ନ, ବସ୍ତ୍ର ଓ ଆଭରଣାଦି ଦାନ କରିଥିଲେ ଏବଂ ନିରାପଦରେ ବନାଞ୍ଚଳ ଅତିକ୍ରମ ନିମିତ୍ତ ସେମାନଙ୍କ ସହିତ କେତେକ ସଶସ୍ତ୍ର ପଦାତିକ ସୈନ୍ୟ ପଠାଇଥିଲେ ।

ଏହାପରେ ରାଜଭୃତ୍ୟମାନେ ସେମାନଙ୍କ ପ୍ରତି ସାଧୁ ଜୟଦେବଙ୍କର ଏପରି ଅତିଶୟ ଶ୍ରଦ୍ଧା ଓ ଭକ୍ତି ପ୍ରଦର୍ଶନର କାରଣ ଜିଜ୍ଞାସା କରିବାରୁ ସେମାନେ ତାଙ୍କ ବିରୁଦ୍ଧରେ ସଂପୂର୍ଣ୍ଣ ଏକ ମିଛ ଘଟଣା ବର୍ଣ୍ଣନା କରିଥିଲେ । ଯଥା- ସେମାନେ କର୍ଣ୍ଣାଟକାଧିପତିଙ୍କଦ୍ୱାରା ଅତିଥି ରୂପେ ସତ୍‌କୃତ ହେଉଥିବା ସମୟରେ ସେଠାରେ ଉପଗତ କବି ଜୟଦେବ ସେଠା ରାଜାଙ୍କଦ୍ୱାରା ଏକ ଚୌର୍ଯ୍ୟ ଅପରାଧରେ ଦଣ୍ଡିତ ହୋଇଥିଲେ । ରାଜାବେଶରେ ତାଙ୍କ ଦଣ୍ଡବିଧାନ ପାଇଁ ପ୍ରେରିତ କତିପୟ ଚାଣ୍ଡାଳ ତାଙ୍କୁ ରାଜ୍ୟରୁ ବହିଷ୍କାର କରି ହତ୍ୟା କରିବା ପାଇଁ ଉଦ୍ୟତ ହେଉଥିଲେ । କିନ୍ତୁ ଶ୍ରୀଜୟଦେବ ସେମାନଙ୍କୁ ଧନରତ୍ନ ଦାନ ଦ୍ୱାରା ସନ୍ତୁଷ୍ଟ କରି ପ୍ରାଣଭିକ୍ଷା କରିବାରୁ ସେମାନେ ତାଙ୍କୁ ଜୀବନରେ ନମାରି ହାତଗୋଡ଼ କାଟି ଏକ ଜଙ୍ଗଲରେ ଛାଡ଼ି ଦେଇ ଆସିଲେ । କାଳେ ସେମାନେ ତାଙ୍କ ପୂର୍ବ ଚୌର୍ଯ୍ୟକ୍ରିୟାଜନିତ ଦଣ୍ଡବିଧାନ ବିଷୟ ପ୍ରକାଶ କରି ଦେବେ, ଏହି ଆଶଙ୍କାରେ କପଟୀ ସାଧୁ ଶ୍ରୀଜୟଦେବ ସେମାନଙ୍କୁ ଏପରି ସାଦର ଅଭ୍ୟର୍ଥନା କରିଥିଲେ ।

ସାଧୁ ମହାତ୍ମାଙ୍କ ନାମରେ ଏପରି ଘୋର ମିଥ୍ୟାପବାଦ କରିବା ସମୟରେ ହଠାତ୍ ବଜ୍ରପାତଦ୍ୱାରା ସେମାନଙ୍କ ପ୍ରାଣନାଶ ଘଟିଥିଲା । ରାଜଭୃତ୍ୟଗଣ ରାଜାଙ୍କୁ ଦୁର୍ବୃତ୍ତଗଣଙ୍କ ଆକସ୍ମିକ ମୃତ୍ୟୁ ସମ୍ବାଦ ଜଣାଇ ସେମାନଙ୍କୁ ପ୍ରଦତ୍ତ ଧନରତ୍ନ ସମୂହ ପ୍ରତ୍ୟର୍ପଣ କରିଥିଲେ । ସେମାନଙ୍କ ମୃତ୍ୟୁର ଶୋକରେ ଅଧୀର ହୋଇ ଉଦାରଚେତା ଶ୍ରୀଜୟଦେବ ନିଜ ଛିନ୍ନ ହସ୍ତପଦ ଭୂଇଁରେ କଚାଡ଼ି କାନ୍ଦିବାରୁ, ପ୍ରଭୁ ଜଗନ୍ନାଥଙ୍କ କୃପାରୁ ପୁନର୍ବାର ତାଙ୍କ ହସ୍ତପଦର ଉଦ୍ଭବ ଘଟିଥିଲା । ଏତଦ୍ ଦର୍ଶନରେ ବିସ୍ମୟାଭିଭୂତ ରାଜାଙ୍କ ଅନୁରୋଧରେ ମହାପ୍ରାଣ ଜୟଦେବ ତାଙ୍କ ପ୍ରତି ଉକ୍ତ ସାଧୁ ବେଶଧାରୀ ଦସ୍ୟୁମାନଙ୍କ ପୂର୍ବ ଅତ୍ୟାଚାର ବୃତ୍ତାନ୍ତ ବର୍ଣ୍ଣନା କରିଥିଲେ । ଏହି ପ୍ରାଣଘାତକ ନୃଶଂସମାନଙ୍କପ୍ରତି ତାଙ୍କର କ୍ଷମା ଓ ମମତା ପ୍ରଦର୍ଶନରେ ରାଜା ବିମୁଗ୍ଧ ହୋଇଥିଲେ ।

ଦିନେ ଜରାଗ୍ରସ୍ତ ସାଧୁ ଶ୍ରୀଜୟଦେବ ବହୁ କଷ୍ଟରେ ନିତ୍ୟ ସଂକଳ୍ପିତ ପ୍ରାଚୀସ୍ନାନ ସାରି ସ୍ୱଗୃହକୁ ଫେରିବା ସମୟରେ ଦୁର୍ବଳତା

ଯୋଗୁଁ ବାଟରେ ପଡ଼ି ମୂର୍ଚ୍ଛିତ ହେଲେ । ପ୍ରାଚୀସ୍ନାନ ପାଇଁ ବହିର୍ଗତ ରାଜା ପଥ ମଧ୍ୟରେ ଭକ୍ତଙ୍କର ଏପରି ଦୁର୍ଦ୍ଦଶା ଅବଲୋକନ କରି ତାଙ୍କୁ ପାଲିଙ୍କିରେ ବସାଇ ନିଜ ଘରେ ଛାଡ଼ି ଦେଲେ । ଜରା ଜନିତ ଅସାମର୍ଥ୍ୟ ଘଟିଥିବା ଯୋଗୁଁ ତାଙ୍କୁ ନିତ୍ୟ ଶିବିକାରୋହଣ ପୂର୍ବକ ପ୍ରାଚୀସ୍ନାନ ପାଇଁ ଯିବାକୁ ବିନୀତ ଅନୁରୋଧ କଲେ । କିନ୍ତୁ ପ୍ରତ୍ୟହ ପଦଚାରୀ ହୋଇ ପ୍ରାଚୀସ୍ନାନ କରିବା ତାଙ୍କର ବ୍ରତ ହୋଇଥିବାରୁ, ସେ ଏହି ଅନୁରୋଧକୁ ପ୍ରତ୍ୟାଖ୍ୟାନ କଲେ । ଏଥିରେ ରାଜା ବିଶେଷ ଚିନ୍ତିତ ହେଲେ । ଉତ୍କଳର ରାଜା ପ୍ରାଚୀସ୍ନାନ କରିବା କଥା ଏକ କିମ୍ବଦନ୍ତୀ ହୋଇପାରେ, କିନ୍ତୁ ଐତିହାସିକ ସତ୍ୟ ଉପରେ ପର୍ଯ୍ୟବସିତ ନୁହେଁ ।

ସେଦିନ ରାତିରେ ରାଜା, ରାଜମାନ୍ୟ ପୁରୋହିତ, ରାଜାଦୃତ ମହନ୍ତଗଣ, ଉକ୍ତ ଗ୍ରାମବାସୀ ଦ୍ୱିଜବୃନ୍ଦ ଏବଂ ସ୍ୱୟଂ ଭକ୍ତପ୍ରବର ଶ୍ରୀଜୟଦେବ ଶୁକ୍ଳାମ୍ବରଧାରିଣୀ, ମକରବାହିନୀ, ପଦ୍ମହସ୍ତା ଗଙ୍ଗାଦେବୀଙ୍କର ଶ୍ରୀଜୟଦେବଙ୍କ ବାମ୍ପିରେ ଆବିର୍ଭାବ ସମ୍ପର୍କରେ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଥିଲେ । ତତ୍‌ପରଦିନ ରାଜା, ମନ୍ତ୍ରୀ ଓ ଗ୍ରାମର ବୃଦ୍ଧମାନେ ଶ୍ରୀଜୟଦେବଙ୍କୁ ମଧ୍ୟ ତାଙ୍କପ୍ରତି ଶ୍ରୀରୂପିଣୀ ଗଙ୍ଗାଦେବୀଙ୍କ ସ୍ୱପ୍ନାଦେଶ ବିଷୟ ପ୍ରକାଶ କରିଥିଲେ । ତହୁଁ ଶ୍ରୀଜୟଦେବ ଓ ପଦ୍ମାବତୀ ପୁରଃସର ସକଳଜନ ଉକ୍ତ ବାମ୍ପି ନିକଟରେ ସ୍ନାନ ପାଇଁ ଉପଗତ ହେଲେ । ମହାତ୍ମା ଜୟଦେବ ଭକ୍ତିପୂର୍ଣ୍ଣ ଚିତ୍ତରେ ମନ୍ତ୍ର ପାଠକରି ସ୍ନାନାରମ୍ଭ କରିବା ମାତ୍ରେ ଜଗତ୍‌ମାନ୍ୟା, ଜଗନ୍ମାତା, ଜଗତ୍ ଉଦ୍ଧାରକାରିଣୀ ଗଙ୍ଗାଦେବୀଙ୍କର ସେଠାରେ ଆବିର୍ଭାବ ଘଟିଥିଲା । ଏହା ଫଳରେ ଉକ୍ତ ପୀଠର ଜଳରାଶି ତରଙ୍ଗାୟିତ ହୋଇ ଦୁଗ୍ଧ, କୁନ୍ଦ, ଇନ୍ଦୁଙ୍କ ପରି ନିର୍ମଳ ଓ ଶୁଭ୍ରବର୍ଣ୍ଣ ଧାରଣ କଲା । ବହୁ ବିକଚକମଳଦ୍ୱାରା ଏହାର ଶୋଭା ବର୍ଦ୍ଧିତ ହେଲା । ଗଙ୍ଗାତୀର ପରି ଏହାର ଚତୁର୍ଦ୍ଦିଗ ସିକତାଚ୍ଛାଦିତ ହୋଇଗଲା । ସେହିଦିନୁ ଏହା ଏକ ସର୍ବାଭୀଷ୍ଟ ପ୍ରଦାୟକ ମହାତୀର୍ଥ ରୂପେ ପରିଗଣିତ ହେଉଅଛି । ଏହି ଅତ୍ୟାଶ୍ଚର୍ଯ୍ୟ ଘଟଣା ବର୍ଣ୍ଣନା ପରେ 'ଭକ୍ତମାଳା' ଗ୍ରନ୍ଥକାର ଶ୍ରୀ ଚନ୍ଦ୍ରଦତ୍ତ ଭକ୍ତାଗ୍ରଣୀ ଶ୍ରୀଜୟଦେବଙ୍କ ଜୀବନ ଚରିତ ବର୍ଣ୍ଣନା ସମାପ୍ତ କରିଛନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଖୋର୍ଦ୍ଧା ଜିଲ୍ଲା ବାଲିଅନ୍ତା ବ୍ଲକର ପ୍ରାଚୀନଦୀ କୂଳରେ ଥିବା ଜୟଦେବଙ୍କ ଜନ୍ମସ୍ଥାନଠାରୁ ପ୍ରାଚୀ ନଦୀର ବନମାଳୀପୁରସ୍ଥ ତ୍ରିବେଣୀ ସଂଗମ ଘାଟ ମାତ୍ର ଦୁଇ ମାଇଲ ବାଟ । ପ୍ରାଚୀକୁ ଉତ୍କଳରେ ଗଙ୍ଗାନଦୀ କୁହାଯାଉଥିଲା ଏବଂ ଏହାର ଉଲ୍ଲେଖ ଅନେକ ପୁରାଣରେ ଅଛି । ଏବେ ମଧ୍ୟ ଏଠାରେ ଥିବା ତ୍ରିବେଣୀ ଘାଟ ନାମକ ଏକ ଅତି ପବିତ୍ର ସ୍ଥଳ ଅଛି ଯେଉଁଠାରେ ଏକ ମେଳା ଅନୁଷ୍ଠିତ ହୁଏ ।

(ଓଡ଼ିଶାର ବିଶିଷ୍ଟ ଗବେଷକ ଓ ଲେଖକ ସ୍ୱର୍ଗୀୟ କେଦାରନାଥ ମହାପାତ୍ରଙ୍କର ଏହି ଲେଖାଟି ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ ଆନୁକୂଲ୍ୟରେ ପ୍ରାପ୍ତ ଓ ତାଙ୍କ ପରିବାରବର୍ଗଙ୍କ ନିକଟରେ ଆମେ କୃତଜ୍ଞ ।
- ମୁଖ୍ୟ ସଂପାଦକ)



# ଗୀତଗୋବିନ୍ଦ ଓ ଲଳିତମାଧବ

ଡକ୍ଟର ତ୍ରିନାଥ ପଟ୍ଟନାୟକ



ଓଡ଼ିଶାର ପ୍ରାଚୀନ ସଂସ୍କୃତି ଓ ପରମ୍ପରା ଅତି ଗୌରବମୟ । ଏବେ ମଧ୍ୟ ପ୍ରାଚୀ ଉପତ୍ୟକା ଐତିହାସିକ ତଥା ପ୍ରତ୍ନତାତ୍ତ୍ୱିକ ସଂପଦରେ ପରିପୂର୍ଣ୍ଣ । କବି ଜୟଦେବଙ୍କ ଜନ୍ମର ବହୁ ପୂର୍ବରୁ ଉତ୍କଳ ପ୍ରଦେଶରେ ତଥା ପ୍ରାଚୀ ନଦୀର ଉପତ୍ୟକାରେ ମାଧବ ଉପାସନାର କ୍ରମବିକାଶ ଘଟିଛି । ପରେ ଜୟଦେବ ମାଧବ ଉପାସନକୁ ଆକର୍ଷିତ କରିଛନ୍ତି ଓ ମାଧବଙ୍କୁ ସ୍ୱୟଂ ଶ୍ରୀଜଗନ୍ନାଥ ବୋଲି ଗ୍ରହଣ କରି ନେଇଛନ୍ତି । ଏଣୁ ଜଗନ୍ନାଥଙ୍କ ପ୍ରଥମ ନାମ ନୀଳମାଧବ ।

ଅଷ୍ଟମ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ପ୍ରାଚୀ ଉପତ୍ୟକାରେ ଚତୁର୍ଭୂଜ ମାଧବ ମୂର୍ତ୍ତିଙ୍କ ପୂଜା ହୋଇ ଆସୁଅଛି । ସଂସ୍କୃତ ପ୍ରାଚୀ ମାହାତ୍ମ୍ୟରେ ଦ୍ୱାଦଶ ଶମ୍ଭୁ ଓ ଦ୍ୱାଦଶ ମାଧବ ଥିବା କଥା ଉଲ୍ଲେଖ ଅଛି । ଲୋକମୁଖରେ ମାଧବ, ମାଧବାନନ୍ଦ ରୂପେ ପରିଚିତ । ଶାସ୍ତ୍ରମାନଙ୍କରେ ଉଲ୍ଲେଖ ଅଛି ପଦ୍ମାସନରେ ଚତୁର୍ଭୁଜ ହୋଇ ଛିଡ଼ା ହୋଇଥିବା ବିଷ୍ଣୁମୂର୍ତ୍ତିକୁ ମାଧବାନନ୍ଦ ବୋଲି କୁହାଯାଏ ।

'ନୀଳାଦ୍ରି ମହୋଦୟ' ଗ୍ରନ୍ଥରୁ ଜଣାଯାଏ ଯେ ଇନ୍ଦ୍ରଦ୍ୟୁମ୍ନ ଶ୍ରୀଜଗନ୍ନାଥଙ୍କୁ ମାଧବ ରୂପରେ ଉପାସନା କରୁଥିଲେ । ଶ୍ରୀଜଗନ୍ନାଥଙ୍କୁ ସପ୍ତଧା ମୂର୍ତ୍ତି ରୂପେ ଉପାସନା କରୁଥିଲେ । ସେହି ସାତଗୋଟି ବିଗ୍ରହ ହେଉଛନ୍ତି - ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସୁଦର୍ଶନ, ମାଧବ, ଭୂଦେବୀ ଓ ଶ୍ରୀଦେବୀ । ଶ୍ରୀ ଜୟଦେବ ମହାକବି ଶ୍ରୀଜଗନ୍ନାଥଙ୍କୁ ମାଧବ ବା ରାଧାମାଧବ ସମ୍ମିଳିତ ବିଗ୍ରହ ରୂପେ ପରିକଳ୍ପନା କରିଛନ୍ତି ଓ ରାଧାମାଧବଙ୍କର ଲୀଳାଗାନ ହିଁ ଗୀତଗୋବିନ୍ଦ କାବ୍ୟର ପ୍ରଧାନ ବିଷୟବସ୍ତୁ ଅଟେ ।

ପ୍ରାଚୀ ମାହାତ୍ମ୍ୟରେ ଉଲ୍ଲେଖ ଅଛି -

ଦ୍ୱାଦଶ ମାଧବ ନିବାସ । କରିଅଛନ୍ତି ତୀରେ ବାସ ।

୧. ମାଧବାନନ୍ଦ, ୨. ନୀଳମାଧବ (ନିଆଳୀ), ୩. ଜାଞ୍ଜଳି ମାଧବ, ୪. ଲଳିତ ମାଧବ, ୫. ବୋଲରା ମାଧବ, ୬. ରଘୁନାଥପୁର ମାଧବ, ୭. ମୁଦଗଲ ମାଧବ, ୮. ନଟାବୁ ମାଧବ, ୯. ନିଭରଣ ମାଧବ, ୧୦. ଅମରେଶ୍ୱର ମାଧବ, ୧୧. କାକଟପୁର ମଙ୍ଗଳା ମନ୍ଦିର ମାଧବ, ୧୨. ଲତାହରଣ ମାଧବ ।

ବିରଜା ମାହାତ୍ମ୍ୟରେ ମଧ୍ୟ ଦ୍ୱାଦଶ ମାଧବ କଥା ଉଲ୍ଲେଖ ଅଛି - ୧. ଆଦିମାଧବ, ୨. ଅନନ୍ତ ମାଧବ, ୩. ଭୋଗମାଧବ, ୪. ଚମ୍ପକ ମାଧବ, ୫. ରମା ମାଧବ, ୬. ପ୍ରସନ୍ନ ମାଧବ, ୭. ପୁରୁଷୋତ୍ତମ ମାଧବ, ୮. ସୁଦର୍ଶନ ମାଧବ, ୯. ଜନାର୍ଦ୍ଦନ ମାଧବ, ୧୦. ନିରକାନ୍ତକ ମାଧବ, ୧୧. ବାସୁଦେବ ମାଧବ, ୧୨. ଗୋବିନ୍ଦ ମାଧବ ।

ନିଆଳୀ ଶୋଭନେଶ୍ୱର ମନ୍ଦିର ପ୍ରାଙ୍ଗଣରେ ଥିବା ପ୍ରତ୍ନତତ୍ତ୍ୱ ବିଭାଗ ସଂଗ୍ରହାଳୟରେ ଏ ଅଞ୍ଚଳରୁ ସଂଗୃହୀତ ୧୦ ଗୋଟି ମାଧବ ବିଗ୍ରହ ସଂଗ୍ରହ କରାଯାଇ ରଖାଯାଇଛି । ଆଉମଧ୍

ନିଆଳୀର ବ୍ରହ୍ମା ମନ୍ଦିରରେ ଦୁଇଗୋଟି ମାଧବ ବିଗ୍ରହ ନିକଟସ୍ଥ ପୋଖରୀରୁ ଉଦ୍ଧାର କରାଯାଇ ରଖାଯାଇଛି ।

ମାଧବ ପୂଜା ଓଡ଼ିଆମାନଙ୍କର ଏକ ମୌଳିକ ବିଷ୍ଣୁ ଆରାଧନା । ସେଥିପାଇଁ ସେ ଗାଏ -

ମଙ୍ଗଳଂ ଭଗବାନ ବିଷ୍ଣୁ ମଙ୍ଗଳଂ ମଧୁସୂଦନଃ
ମଙ୍ଗଳଂ ପୁଣ୍ଡରୀକାକ୍ଷଃ ମଙ୍ଗଳଂ ଗରୁଡ଼ଧ୍ୱଜଃ
ମାଧବୋ ମାଧବୋ ବିଷ୍ଣୁ ମାଧବୋ ମାଧବୋ ହରିଃ
ସ୍ମରନ୍ତି ସାଧବୋ ନିତ୍ୟଂ ସର୍ବକାର୍ଯ୍ୟେଷୁ ମାଧବମ୍ ।

ମହାକବି ଜୟଦେବ ରାଧାମାଧବ ଉପାସନା ନିମନ୍ତେ ଏହି ପ୍ରାଚୀକୂଳରୁ ହିଁ ପ୍ରଭାବିତ ହୋଇଛନ୍ତି । କାରଣ ଏହି ଅଞ୍ଚଳ ତାଙ୍କର ଜନ୍ମସ୍ଥାନ । ରାଧାମାଧବଙ୍କୁ ନାୟକ ନାୟିକା ରୂପେ ଅବତୀର୍ଣ୍ଣ କରାଇ ଗୀତଗୋବିନ୍ଦ କାବ୍ୟ ରଚନା କରିଛନ୍ତି । ମାଧବ ଶବ୍ଦକୁ ସେ ଗୀତଗୋବିନ୍ଦର ବିଭିନ୍ନ ସର୍ଗରେ ପ୍ରୟୋଗ କରିଛନ୍ତି ।

ରାଧାମାଧବୟୋର୍ଜୟନ୍ତି ଯମୁନା କୂଳେ ରହଃ କେଳୟଃ
(୧ ସର୍ଗ ୧ ଶ୍ଳୋକ)
ରାଧାମାଧାୟ ହୃଦୟେ ତତ୍ୟାଜ ବ୍ରଜସୁନ୍ଦରୀ
(ତୃତୀୟ ସର୍ଗ ପ୍ରଥମ ଶ୍ଳୋକ)
ମାଧବ ମନସିଦ ବିଶିଖ ଭୟାଦିବ ଭାବନୟା ତ୍ୱୟିଲୀନା
(ଚତୁର୍ଥ ସର୍ଗ, ଅଷ୍ଟମ ପ୍ରବନ୍ଧ)
ତସ୍ମିନ୍ନେବ ନିକୁଞ୍ଜ ମନ୍ମଥ ମହାତୀର୍ଥେ ପୁନର୍ମାଧବଃ
(ପଞ୍ଚମ ସର୍ଗ ୧୦ମ ପ୍ରବନ୍ଧ)
ପ୍ରସରତି ଶଶଧର ବିମ୍ବେ ବିହିତ ବିଳମ୍ବେ ଚ ମାଧବେ ବିଧୁରା
(ସପ୍ତମସର୍ଗ)
ଅଥାଗତାଂ ମାଧବମନ୍ତରେଣ
(ସପ୍ତମସର୍ଗ ଚତୁର୍ଥ ଶ୍ଳୋକ)
କ୍ଷଣଂ ଜଗତ୍ପ୍ରାଣ ବିଧାୟ ମାଧବମ୍
(ସପ୍ତମସର୍ଗ ଷୋଡ଼ଶ ପ୍ରବନ୍ଧ)
ହରି ହରି ଯାହି ମାଧବ, ଯାହି କେଶବ ମାବଦ କୈତବବାଦମ୍
(ଅଷ୍ଟମସର୍ଗ ସପ୍ତଦଶ ପ୍ରବନ୍ଧ)
ମାଧବେ ମା କୁରୁ ମାନିନୀ ମାନମୟେ
(ନବମସର୍ଗ ଅଷ୍ଟାଦଶ ପ୍ରବନ୍ଧ)
ପ୍ରବିଶ ରାଧେ ମାଧବ ସମୀପମିହ
(ଏକାଦଶ ସର୍ଗ ଏକବିଂଶ ପ୍ରବନ୍ଧ)

କବି ଜୟଦେବ ତାଙ୍କର ବାଲ୍ୟକାଳରେ ପ୍ରାଚୀକୂଳରେ ଥିବା ଅଧିକାଂଶ ମାଧବ ବିଗ୍ରହ ସନ୍ଦର୍ଶନ କରିଛନ୍ତି । ମାଧବ ମୂର୍ତ୍ତିଗୁଡ଼ିକର କଳା ସୌଷ୍ଠବରେ ବିମୁଗ୍ଧ ହୋଇ ଶ୍ରୀଜଗନ୍ନାଥ ତଥା ଶ୍ରୀକୃଷ୍ଣଙ୍କୁ ମାଧବ ରୂପେ ଚିନ୍ତନ କରିଛନ୍ତି ଓ ନିଜ କବିତାରେ ମାଧବ ଚାପକୁ ପ୍ରତିଫଳିତ କରିଛନ୍ତି । ସେ ଲଳିତ ଶବ୍ଦ 'ଲଳିତ ମାଧବ' ବିଗ୍ରହର ଅପୂର୍ବ ରୂପମାଧୁରୀରୁ ଗ୍ରହଣ କରିଛନ୍ତି । ସେଥିପାଇଁ ପ୍ରଥମସର୍ଗ ୨୮ ଶ୍ଳୋକରେ ତାହା ପ୍ରକାଶ କରିଛନ୍ତି । ଯାହାକି ଉକ୍ତ ଶ୍ଳୋକଟି ସର୍ବଜନାଦୃତ ଅଟେ -

ଲଳିତ ଲବଙ୍ଗଲତା ପରିଶୀଳନ କୋମଳ ମଳୟ ସମୀରେ
ମଧୁକରନିକରକରମ୍ବିତ କୋକିଳ କୂଜିତ କୁଂଜ କୁଟୀରେ ।
ବିହରତି ହରିରିହ ସରସ ବସନ୍ତେ
ନୃତ୍ୟତି ଯୁବତି ଜନେନ ସମଂ ସଖି ବିରହିଜନସ୍ୟ ଦୁରନ୍ତେ ।

ଦେଖ ଦେଖ ମିତ ମଳୟ ମରୁତ
ପ୍ରସରି ଦକ୍ଷିଣୁ ଧୀରେ ଧୀରେ
ଲଳିତ ଲବଙ୍ଗ- ଲତିକାର ଅଙ୍ଗ
ମଧାଲିଙ୍ଗଇ ଆହା କିରୀତିରେ
ଦେଖ ଦେଖ ରାଧା, ମଦନ କିପରି କିଏ ବାଧା ।

ଆଉ ମଧ କବି ଜୟଦେବ ଗୀତଗୋବିନ୍ଦର ପଞ୍ଚମ ସର୍ଗରେ 'ଲଳିତ' ଶବ୍ଦ ପ୍ରୟୋଗ କରିଛନ୍ତି -

ବସତି ବିପିନବିତାନେ ତ୍ୟଜତି ଲଳିତମପି ଧାମ
ଲୁଠତି ଧରଣୀ ଶୟନେ ବହୁ ବିଳପତି ତବ ନାମ ।

ବରଜି ତାହାର ନିଜ ବାସ
ବିପିନେ ବସିଛି ପୀତବାସ
ଧରଣୀ ଶୟନେ ଶୋଇ ବିଳପିଣ
ତୋର ନାମ ଗୋଟି ସେ ଘୋଷଇ ଗୋ ।

'ଲଳିତ' ଶବ୍ଦର ଅର୍ଥ ହେଲା ଲାସ୍ୟ, ହସ୍ତ ପଦାଦି ବିନ୍ୟାସର ସ୍ୱାଭାବିକ ଶ୍ରୀ କୋମଳ, କମନୀୟ, ଚାରୁ ଇତ୍ୟାଦି ।

କବି ଜୟଦେବ ପ୍ରାଚୀକୂଳରେ ଥିବା ଲଳିତ ମାଧବଙ୍କୁ ଦର୍ଶନ କଲାପରେ ମାଧବଙ୍କର ଲାଳିତ୍ୟପୂର୍ଣ୍ଣ ବିଗ୍ରହ ତାଙ୍କ ମନ ମର୍ମରରେ ରସାଣିତ ହୋଇଛି । ସେ ଲଳିତ ମାଧବଙ୍କ କୋମଳ କମନୀୟ ନେତ୍ର ଯୁଗଳକୁ ଚାହିଁ ମୁଗ୍ଧ ହୋଇଛନ୍ତି ଏବଂ ଗାଇଛନ୍ତି-

ଅମଳକମଳ ଦଳ ଲୋଚନ
ଭବମୋଚନ ଏ
ତ୍ରିଭୁବନ ଭୁବନ ନିଧାନ
ଜୟ ଜୟ ଦେବ ହରେ ।
(ଗୀତଗୋବିନ୍ଦ-୨୧)

ଭଗବାନଙ୍କ ନେତ୍ର ସଦୃଶତା ସ୍ୱଚ୍ଛ କମଳଦଳ ସହିତ ତୁଳନା କରି କବି କହିଛନ୍ତି- ଅମଳ କମଳ ଦଳ ଲୋଚନ ଅର୍ଥାତ୍ ଅମଳେ ଯେ କମଳଦଳେ ତେ ଇବ ଲୋଚନେ ଯସ୍ୟା[illegible]ସୌ ତଥାବିଧଃ ତତ୍ ସମ୍ବୁଦ୍ଧୌ ।

ପୁରୀ ଜିଲ୍ଲା କାକଟପୁର ଥାନା ଅନ୍ତର୍ଗତ ତୁଳସୀପୁର ଗ୍ରାମ ନିକଟସ୍ଥ ଚୌରାଶୀ ଗ୍ରାମର ଉତ୍ତର ଦିଗରେ ପ୍ରାଚୀ ଓ ଲଳିତା ନଦୀର ମଧ୍ୟବର୍ତ୍ତୀ ସ୍ଥାନରେ ଲଳିତ ମାଧବ ମନ୍ଦିର ଅବସ୍ଥିତ । ଏବେ ସେହି ପ୍ରାଚୀ ମନ୍ଦିର ନାହିଁ । ଚହଟା ଗ୍ରାମ ନିକଟରେ ଏକ ମଣ୍ଡପରେ ଲଳିତ ମାଧବ ବିରାଜମାନ ଅଛନ୍ତି । ଲଳିତ ମାଧବ ମୂର୍ତ୍ତି ନୀଳ ମୁଗୁନି ପଥରରେ ନିର୍ମିତ । ଏହାର ସୁନ୍ଦର କାରୁକାର୍ଯ୍ୟ ଯୋଗୁଁ ବିଶେଷ ଆକର୍ଷଣୀୟ ଅଟେ । ଏହି ବିଗ୍ରହ ୩'୫" x ୧'୧୦" ବିଶିଷ୍ଟ ଅଟନ୍ତି । ବହୁ ପର୍ଯ୍ୟଟକ ଓ ଗବେଷକ ଏଠିକୁ ପ୍ରତିଦିନ ଆସନ୍ତି । ଅଞ୍ଚଳବାସୀ ମାଧବଙ୍କର ପୂଜାର୍ଚ୍ଚନା କରନ୍ତି ।

ଲଳିତ ମାଧବ ମଣ୍ଡପ (ମନ୍ଦିର) ପାଖ ଦେଇ ଲଳିତା ନଦୀ ପ୍ରବାହିତ । ପ୍ରାଚୀ ଏଠାରେ ଲଳିତ ମାଧବଙ୍କ ନାମ ଅନୁସାରେ ଲଳିତା ନାମ ଗ୍ରହଣ କରିଛନ୍ତି । ସଂସ୍କୃତ ପ୍ରାଚୀ ମାହାତ୍ମ୍ୟରେ ଉଲ୍ଲେଖ ଅଛି ।

ତତ୍‌କ୍ଷଣାଦ୍ ବିଲୟଂ ଯାତି କିଂ ପୁନର୍ଶୈକଜନ୍ମଦମ୍
ଲଳିତେନ ସ୍ୱରୂପେଣ ବହତେ ସା ସରସ୍ୱତୀ ।
(୧୨/୫୮)

ମଜ୍ଜନାଲ୍ଲାଳୟତ୍ୟେଷା ଲୋକାନ୍ ପାପସମନ୍ୱିତାନ୍
ଲଳିତେ ତି ସରିତ ଶ୍ରେଷ୍ଠା ମାହୁର୍ବେବିବିଦୋ ଜନାଃ ।
(୧୨/୫୯)

ଲଳିତା ସୈବ ସୁରସା ଦଶଗ୍ରୀବ ଫଳପ୍ରଦା
ଦୃଷ୍ଟମାତ୍ରାଃ ପୁନାତ୍ୟେଷ ଦେବଦେବୋ ମହେଶ୍ୱରଃ ।
(୧୨/୭୫)

ଗୀତଗୋବିନ୍ଦରେ ବର୍ଣ୍ଣିତ ପ୍ରାକୃତିକ ସୌନ୍ଦର୍ଯ୍ୟ ବୃକ୍ଷଲତା ସବୁକିଛି ପ୍ରାଚୀକୂଳର ବୃକ୍ଷଲତା ଓ ପ୍ରାକୃତିକ ପରିବେଶର ବର୍ଣ୍ଣନା । ପଶୁପକ୍ଷୀ ଲତାକୁଞ୍ଜ ପୁଷ୍କରିଣୀ ତଡ଼ାଗ ନଦୀର ବର୍ଣ୍ଣନା ସବୁକିଛି ଉତ୍କଳୀୟ । ଚୌରାଶୀ ଗ୍ରାମର ଲକ୍ଷ୍ମୀନାରାୟଣ ବିଗ୍ରହର ପ୍ରତିଫଳନ ଗୀତଗୋବିନ୍ଦରେ ହୋଇଅଛି । କବି ଉଲ୍ଲେଖ କରିଛନ୍ତି-

- ଶ୍ରୀତକମଳାକୁଚମଣ୍ଡଳ-ଧୃତକୁଣ୍ଡଳ-କଳିତ ଲଳିତ ବନମାଳା ଜୟ ଜୟ ଦେବ ହରେ ।

ବଙ୍ଗୀୟମାନେ ଶ୍ରୀ ଜୟଦେବଙ୍କୁ ବଙ୍ଗଳାର ବୋଲି ଯୁକ୍ତି କରନ୍ତି ମାତ୍ର ସେଠାକାର ଗବେଷକମାନେ ଯଦି ପ୍ରାଚୀକୂଳର ମାଧବ ବିଗ୍ରହ ଓ ପ୍ରକୃତିକୁ ଦେଖନ୍ତେ ଓ ପରୀକ୍ଷା କରନ୍ତେ ତେବେ ସେମାନଙ୍କର ଯୁକ୍ତି କେତେଦୂର ସତ୍ୟ ଅନୁଭବ କରିପାରନ୍ତେ । କାରଣ ଦ୍ୱାଦଶ ଶତାବ୍ଦୀ ବେଳକୁ ବଙ୍ଗ ଦେଶରେ ଗୋପୀନାଥ ପୂଜା ଏବଂ ରାଧାକୃଷ୍ଣ ଭାବଧାରାର କୌଣସି ଚିହ୍ନ ବର୍ଣ୍ଣ ନଥିଲା । ଦଶଅବତାର କଥା ବଙ୍ଗ ଭାଷାରେ ସେହି ସମୟରେ ଉଲ୍ଲେଖ ନଥିଲା କିମ୍ବା ମନ୍ଦିର ଗାତ୍ରରେ ବିଗ୍ରହ ମଧ୍ୟ ନଥିଲେ । ମାଧବ ପୂଜା ବା ମାଧବ ବିଗ୍ରହର ପ୍ରଚଳନ ମଧ୍ୟ ବଙ୍ଗ ଦେଶରେ ନଥିଲା ।

କବି ମାଧବ ପଟ୍ଟନାୟକଙ୍କ 'ବୈଷ୍ଣବ ଲୀଳାମୃତ'ରେ ଜୟଦେବ ଚରିତ ଅତ୍ୟନ୍ତ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି । ସେ ଲେଖିଛନ୍ତି-

ବିପ୍ର ସେ ଜୟଦେବ ନାମ । କ୍ଷେତ୍ର ବରକୁ ଆଗମନ
କେନ୍ଦୁଲି ଶାସନ ତା' ଗ୍ରାମ । ପ୍ରାଚୀନଦୀର ତଟପୁଣ ।
ନିଆଳୀ ମାଧବ ସମୀପେ । ଭଗତି କଲା ନାନ ରୂପେ
ଶାସ୍ତ୍ର ପୁରାଣେ ବିଚକ୍ଷଣ । କବିତ୍ୱ ମାର୍ଗେ ତାରମନ ।

x x x x

ଶ୍ରୀରାଧା ମାଧବର ଲୀଳା । ମଧୁର ସ୍ୱରେ ସେ ଗାଇଲା ।

ଶ୍ରୀମାଧବଙ୍କର ମାଧୁର୍ଯ୍ୟ ଗୀତଗୋବିନ୍ଦର ଛତ୍ରେ ଛତ୍ରେ ବର୍ଣ୍ଣିତ ହେଲେ ସୁଦ୍ଧା ଲଳିତମାଧବଙ୍କର ଲାଳିତ୍ୟ ରୂପଶ୍ରୀ ଓ ସୌଷ୍ଠବ ଗୀତଗୋବିନ୍ଦର ମାଧବ ଚରିତ୍ରରେ ଚିତ୍ରିତ ହୋଇଅଛି ଯାହାକି ଆମ ଓଡ଼ିଆ ସଂସ୍କୃତି ଓ ସାହିତ୍ୟପ୍ରତି ଜୟଦେବଙ୍କର ଅତୁଳନୀୟ ଦାନ ଅଟେ ।

ସଂପାଦକ, ପୁରାଣ ପତ୍ରିକା
ନିଆଳୀ, କଟକ-୭୫୪୦୦୪

- - - - -

# ଶ୍ରୀଗୀତଗୋବିନ୍ଦର ଲୀଳାତତ୍ତ୍ୱ

ପ୍ରଫୁଲ୍ଲ ଚନ୍ଦ୍ର ତ୍ରିପାଠୀ





**ଶ୍ରୀ**କୃଷ୍ଣ ହିଁ ପରମ ପୁରୁଷ ଓ ଶ୍ରୀମତୀ ରାଧିକା ହିଁ ପରାପ୍ରକୃତି । ପ୍ରକୃତିର ଆୟୋଜନ ପର ନିମନ୍ତେ ହୋଇଥିବାରୁ ଏହାର ନାମକରଣ ଏପରି ହୋଇଛି । ଶାସ୍ତ୍ରକାରମାନେ ଏହି ପରକୁ ପୁରୁଷ ଆଖ୍ୟା ଦେଇଥାନ୍ତି । ସେହି ପୁରୁଷଙ୍କ ସୁଖ ନିମନ୍ତେ ପ୍ରକୃତି ବିବିଧ ଚେଷ୍ଟା କରୁଛି । ପ୍ରକୃତି ତା'ର ଦେହ, ମନ, ପ୍ରାଣ ସମସ୍ତ ହିଁ ଢାଳି ଦେଇଛି ସେହି ପରମ ପୁରୁଷଙ୍କ ସୁଖ ନିମିତ୍ତ । କିନ୍ତୁ ଉଦାସୀନ ପୁରୁଷ ସନ୍ତୁଷ୍ଟ ହୋଇ ପାରୁନାହାନ୍ତି । ପ୍ରକୃତିର ବ୍ୟାକୁଳତା ଦେଖି ସେ ମୁଗ୍ଧ । ଅଚଳ, ଅଟଳ, ନିର୍ବିକାର ପୁରୁଷର ସ୍ଥିରତା ଓ ପ୍ରକୃତି ପୁରୁଷଠାରେ ଆତ୍ମ ବିସର୍ଜନ ଦେଖି ଜଗତ ବିମୋହିତ । ପ୍ରକୃତି ବି ପୁରୁଷଙ୍କ ସ୍ଥିତାବସ୍ଥା ଦେଖି ଯେତିକି ମୁଗ୍ଧ ପୁରୁଷ ବି ପ୍ରକୃତିର ଆତ୍ମ ବିସର୍ଜନରେ ସେତିକି ବିସ୍ମିତ । କେବଳ ପୁରୁଷଙ୍କ ଇଚ୍ଛାକୁ ରୂପ ଦେବାକୁ ପ୍ରକୃତି ବ୍ୟାକୁଳ । ସେଥିପାଇଁ ସେ ଚିର ଚଞ୍ଚଳା । ନିର୍ବିକାର ଓ ନିର୍ଗୁଣ ପୁରୁଷ ସମ୍ଭୋଗ ମଧରେ ବୁଡ଼ିରହି ବି ବିନ୍ଦୁମାତ୍ର ବାସନା ନଥିବାରୁ ପ୍ରକୃତିର ସଂକୋଚତା ନାହିଁ । ନିବିଡ଼ରୁ ନିବିଡ଼ତମ ଭାବେ ମିଶିଯାଇଛି ସେ ପୁରୁଷ ସହିତ । ପୁରୁଷ ଓ ପ୍ରକୃତିର ଏଭଳି ମିଳନରେ ସୃଷ୍ଟିରେ ସୃଷ୍ଟି ହୁଏ ବୃନ୍ଦାବନ । ପରମ ପୁରୁଷଙ୍କ ସତ୍ତା ଲାଭ କରି ପ୍ରକୃତି ତନ୍ମୟ ହୋଇ ସମାଧିସ୍ଥ ହୁଏ । ପ୍ରକୃତିର ଏଭଳି ନିସଙ୍କୋଚ ସମର୍ପଣ ବିମୁଗ୍ଧ ନିର୍ଗୁଣ ପୁରୁଷ ମନରେ ଆସେ ପ୍ରେମ । ଆଉ ସେ ପ୍ରକୃତି ଆଗରେ ନତଜାନୁ ହୋଇ କହି ଉଠନ୍ତି, 'ଦେହି ପଦପଲ୍ଲବ ମୁଦାରଂ' ।

ବସନ୍ତର ଆଗମନରେ ଚିର ଚଞ୍ଚଳା ଲାସ୍ୟ ହାସ୍ୟମୟୀ ପ୍ରକୃତି ଆଜି ନବୀନ ଉନ୍ମାଦନାରେ ଉନ୍ମାଦିତ । ପୁରୁଷର ସନ୍ତୋଷ ନିମନ୍ତେ ସେ ଏ ରୂପ ଧାରଣ କରିଛି । ପୁରୁଷର ପ୍ରତ୍ୟେକ ଆଭା ପ୍ରକୃତି ଦେହରେ ଫୁଟି ଉଠି ସେ ଆଜି ଋତୁନାଂ କୁସୁମାକରଃ । ପରମ ପୁରୁଷଙ୍କୁ ରସମୟ ରୂପରେ ସଜାଇ ଦେଇ ସେହି ନୀଳାଭତନୁ ଜଗତ୍‌ପତିଙ୍କ କୋଳରେ ସେ ଲୀଳାୟିତ । ପୁରୁଷ ଓ ପ୍ରକୃତିର ଏହି ମିଳନ ହିଁ ରାଧା ମାଧବଙ୍କ ସମ୍ଭୋଗ ଲୀଳାରେ ରୂପାୟିତ । ଗୀତଗୋବିନ୍ଦ ବର୍ଣ୍ଣିତ ବସନ୍ତ ଲୀଳା ହିଁ ସେହି ଲୀଳାମୟଙ୍କ ଅନନ୍ତ ଲୀଳାର ଏକ ଆଲେଖ୍ୟ ମାତ୍ର ।

ଭଗବାନଙ୍କ ଅନନ୍ତ ଶକ୍ତି ମଧ୍ୟରୁ ତିନିଗୋଟି ପ୍ରଧାନ । ୧. ମାୟା, ୨. ସ୍ୱରୂପା ଓ ୩. ତଟସ୍ଥା । ମାୟା ଶକ୍ତିରେ ସୃଷ୍ଟି ଲୀଳା, ସ୍ୱରୂପ ଶକ୍ତିରେ ନିତ୍ୟ ଲୀଳା ଓ ତଟସ୍ଥା ଶକ୍ତିରେ ସଂସାର ଲୀଳା ସାଧିତ ହୁଏ । ସ୍ୱରୂପ ଶକ୍ତି ପୁଣି ତିନି ପ୍ରକାର - ସତ, ଚିତ ଓ ଆନନ୍ଦ । ସତ୍ ଅର୍ଥାତ୍ ସେ ସର୍ବଦା ଅଛନ୍ତି । ତାଙ୍କର ସତ୍ତାର ପରିସ୍ଫୁରଣ ହେଉଛି ଜୀବ ଜଗତ । ଭଗବାନ୍ ନିଜର ଅନନ୍ତ ଶକ୍ତିରେ ନିଜେ ଶକ୍ତିମାନ ହୋଇ ଅପରକୁ ସତ୍ତାବାନ କରନ୍ତି । ଏହା ହିଁ ହେଉଛି ସନ୍ଧିନୀ ଶକ୍ତି । ଚିତ୍‌ଶକ୍ତିରେ ସେ ଜ୍ଞାନ ମୟ । ତାଙ୍କର ଅସୀମ ଜ୍ଞାନ । ତାଙ୍କର ଜ୍ଞାନ ପ୍ରସବଣରୁ ଜଗତ୍ କିୟତ୍ କଣା ପାଇ ଜ୍ଞାନ ଯୁକ୍ତ ହେଉଛି । ନିଜର ଶକ୍ତିରେ ଜ୍ଞାନଯୁକ୍ତ

ହୋଇ ଅନ୍ୟକୁ ଜ୍ଞାନଯୁକ୍ତ କରାଉଥିବାରୁ ତାକୁ ସମ୍ବିତ୍ ଶକ୍ତି କୁହାଯାଏ । ଭଗବାନଙ୍କ ଶେଷ ଶକ୍ତିଟି ହେଉଛି ଆନନ୍ଦ । ସେ ଆନନ୍ଦମୟ । ସମଗ୍ର ଆନନ୍ଦ ତାଙ୍କରିଠାରୁ ଉତ୍ପତ୍ତି ଲାଭ କରିଛି । ତାଙ୍କରି ଆନନ୍ଦରେ ଜଗତ ଆହ୍ଲାଦିତ । ଯେଉଁ ଶକ୍ତି ଦ୍ୱାରା ସେ ନିଜେ ଆହ୍ଲାଦିତ ଓ ଅପରକୁ ଆନନ୍ଦିତ କରନ୍ତି ସେହି ଶକ୍ତିଙ୍କ ନାମ ହ୍ଲାଦିନୀ ଶକ୍ତି । ଆନନ୍ଦ ସ୍ୱରୂପ ଭଗବାନଙ୍କ ସହିତ ଜୀବର ନିତ୍ୟ ସମ୍ବନ୍ଧ ଥିବାରୁ ଜୀବ ମଧ୍ୟରେ ସୁଖ ବାସନାର ଉଦୟ ହୁଏ । ଜୀବର ସୁଖ ବାସନା ଆନନ୍ଦ ବା ରସ ସ୍ୱରୂପ ଓ ତାହା ଭଗବାନଙ୍କ ନିମନ୍ତେ ଅଟେ । ମାତ୍ର ତାହା ସେ ବୁଝିପାରେ ନାହିଁ । ତେଣୁ ମାୟା ଜଗତରେ ସେ ଘୂରି ବୁଲେ । ଆନନ୍ଦମୟ ରସ ସ୍ୱରୂପ ପରମବ୍ରହ୍ମଙ୍କଠାରେ ଜୀବର ସୁଖ ବାସନାର ତୃପ୍ତି ହୁଏ । ତେଣୁ ଉପନିଷଦରେ ଅଛି - ରସୋବୈଶଃ ରସଂ ହୋବାୟଂ ଲବ୍ଧାନନ୍ଦୀ ଭବତି । ଅର୍ଥାତ୍ ରସ ସ୍ୱରୂପ ଭଗବାନଙ୍କୁ ପାଇଲେ ଜୀବ ଆନନ୍ଦ ଲାଭ କରେ ।

ପ୍ରତ୍ୟେକ ଜୀବ ସୁଖ ଆସ୍ୱାଦନ କରିବା ପାଇଁ ଇଚ୍ଛା କରେ । ଏହି ସୁଖ ଆସ୍ୱାଦନ ହିଁ ରସସ୍ୱାଦନ । ପ୍ରତ୍ୟେକ ସୁଖ ବା ସ୍ୱାଦ ନିମନ୍ତେ ଅନୁକୂଳ ଭାବ ଦରକାର । ଭାବ ଜାଗରିତ ନ ହେଲେ ସ୍ୱାଦର ଚମତ୍କାରିତା ଉପଲବ୍ଧି କରିହୁଏ ନାହିଁ । ଜୀବର ଏହି କ୍ଷଣିକ ସୁଖ ବ୍ୟତୀତ ନିତ୍ୟ ସୁଖର ନାମ ଅମୃତ । ରସରାଜ ଶ୍ରୀକୃଷ୍ଣ ହିଁ ଅମୃତମୟ ପୁରୁଷ । ସ୍ୱାଦ ବା ରସ ଆସ୍ୱାଦନ ନିମନ୍ତେ ଯେପରି ଭାବର ଆବଶ୍ୟକ, ସେପରି ରସରାଜଙ୍କୁ ପାଇବାକୁ ହେଲେ ମହାଭାବ ଆବଶ୍ୟକ । ଆମେ ତାଙ୍କୁ ନିଜ ଭୋଗ ନିମନ୍ତେ ପାଇବାକୁ ଇଚ୍ଛାକଲେ ସେ ଧରା ଦେବେ ନାହିଁ । ସେଥିପାଇଁ ତ୍ୟାଗ ଦରକାର, ତାଙ୍କର ତୃପ୍ତି ପାଇଁ ଓ ତାଙ୍କୁ ଲାଭ କରିବା ହିଁ ଆମର ଲକ୍ଷ୍ୟ ହେଉ । ସେ ସର୍ବକାମ ଓ ସିଦ୍ଧକାମ । ମହାକବି ଜୟଦେବଙ୍କ ଗୀତଗୋବିନ୍ଦରେ ଅଛି -

ହରିରିତିମାନି ରଜନୀର ଦାନିମିୟମପି ଜାତି ବିରାମଂ
କୁରୁମମ ବଚନଂ ସତ୍ୱର ରଚନଂ ପୁରୟ ମଧୁରିପୁକାମଂ ।

ସେହି ଶ୍ରୀକୃଷ୍ଣ ହିଁ ମଧୁରିପୁ । ତାଙ୍କର କାମନା ହିଁ ସତ୍ୟ । ସେହି କାମନାର ପରିପୂରଣ ହେଉଛି ଜୀବର ଏକାନ୍ତ କାମ୍ୟ । ଯେ ନିଜ ପାଇଁ ସର୍ବଦା ଚିନ୍ତିତ ସେ ଭଗବାନଙ୍କ ନିମନ୍ତେ କେତେବେଳେ ବା ଚିନ୍ତା କରିବେ ? ତେଣୁ ସାଧନ, ଭଜନ ଓ ଶ୍ରବଣ ଦ୍ୱାରା ଚିତ୍ତ ଶୁଦ୍ଧି କରି ତାଙ୍କୁ ପାଇପାରିବ ଓ ତାଙ୍କର କାମନାକୁ ପୂର୍ଣ୍ଣ କରିବାକୁ ସମର୍ଥ ହେବ ।

ପ୍ରେମ ହିଁ ଅପ୍ରାକୃତ ଓ ଭଗବାନଙ୍କ ସ୍ୱରୂପ । ଆଉ ଭଗବାନ ହିଁ ପ୍ରେମର ପ୍ରସ୍ରବଣ । ପ୍ରତ୍ୟେକ ଜୀବର ଯେଉଁ ପ୍ରେମପ୍ରୀତି ଭାବ ଅଛି ତାହା କେଉଁଠାରୁ ଆସୁଛି ଓ ତାହାର ପରିଣତି କ'ଣ ଆମେ ତାହା ଜାଣି ପାରୁ ନାହୁଁ । ଭଗବାନଙ୍କ ଏହି ଅନନ୍ତଲୀଳାର ଅନ୍ତ କେଉଁଠି ତାହା ମଧ ବୁଝି ହୁଏ ନାହିଁ । ତେଣୁ ସେହି ପୁରୁଷୋତ୍ତମ ହିଁ ଏହି ଲୀଳାର ସ୍ରଷ୍ଟା ଓ ଜୀବଜଗତର ଅଭ୍ୟନ୍ତରରେ ଓ ବର୍ହିଦେଶରେ ସର୍ବତ୍ର ବିଦ୍ୟମାନ । ପ୍ରେମର ପ୍ରଥମ ଅବସ୍ଥା ହିଁ ଭକ୍ତି । ଭକ୍ତି ମାର୍ଗରେ ପ୍ରେମ ପାଇବା ହିଁ ଭଗବାନଙ୍କ ଇଚ୍ଛା । ଯାହାର ଇଚ୍ଛାରେ ଏ ଜଗତ ପରିଚାଳିତ, ତାଙ୍କରି ଇଚ୍ଛାରେ ହିଁ ଏ ଜଗତରେ ପ୍ରେମ ଆପ୍ଲାବିତ । ଏହି ପ୍ରେମ ସଂପତ୍ତିକୁ ଉର୍ଦ୍ଧ୍ୱମୁଖୀ କରି ଭଗବତ୍‌ଗାମୀ କଲେ ତାହା ହିଁ ହେବ ଭଗବତ୍ ପ୍ରେମ । ଜୀବ ଭଗବତ ପ୍ରେମ ଆଡ଼କୁ ଧାଇଁଲେ ଏ ଜଗତରେ ତାକୁ ସବୁ ତୁଚ୍ଛ ଜଣା ପଡ଼ିବ । ସେହି ଭଗବତ୍ ପ୍ରେମ ପାଇବାକୁ ହେଲେ କର୍ମ ଜ୍ଞାନ ଓ ଭକ୍ତି ଆବଶ୍ୟକ । ଏଥିପାଇଁ କେତେ ସାଧୁ, ସନ୍ଥଙ୍କୁ କଠିନ କଷ୍ଟ କରିବାକୁ ପଡ଼ିଛି ତାହାର ହିସାବ ନାହିଁ । ମାତ୍ର ଆଧୁନିକ ଶିକ୍ଷା ପ୍ରାପ୍ତ ଲୋକେ ଏହି ପ୍ରେମକୁ ଅଶ୍ଳୀଳ ଆଖ୍ୟା ଦେଇ ହାସ୍ୟ ରସରେ ସମୟ କଟାଇଥାନ୍ତି । ମାତ୍ର ଏ ପ୍ରେମର ଉତ୍ସ କେଉଁଠି ପଚାରିଲେ ସେମାନେ ନିରୁତ୍ତର ରହିବେ । ଯେତେଦିନ ପର୍ଯ୍ୟନ୍ତ ଏ ଜୀବଜଗତ ଥିବ, ଜଗତପତିଙ୍କ ପ୍ରେମଲୀଳା ପ୍ରତ୍ୟେକଙ୍କ ଅନ୍ତରରେ ଅଙ୍କୁରିତ ହେଉଥିବ । ତାହା ନ ହେଲେ ଜୀବଜଗତ ଧ୍ୱଂସ ପାଇଯିବ ।

ଅନ୍ତରର କାମନା ଭସ୍ମିଭୂତ ନ ହେଲେ ପ୍ରେମ ଅନୁଭବ ହୁଏ ନାହିଁ । ଏହି କାମନାକୁ ଭସ୍ମିଭୂତ କରିବାର ବହ୍ନି ସଦୃଶ ତପସ୍ୟା ଏକମାତ୍ର ଉପାୟ । କାମନାର ବିନାଶରେ ଜୀବର ପ୍ରେମଭାବ ଜାତ ହୁଏ ଓ ଏହି ପ୍ରେମ ଭାବ ମହାଭାବରେ ପରିଣତ ହୋଇ ପରଂବ୍ରହ୍ମଙ୍କ ସହିତ ମିଳିତ ହୁଏ । ଗୋପୀମାନେ ବିବିଧ ତପସ୍ୟାରେ ନିଜର କାମନାକୁ ଭସ୍ମିଭୂତ କରିଥିଲେ । ଫଳରେ ଭଗବାନଙ୍କ ସାନ୍ନିଧ ପାଇ ପାରିଥିଲେ । ଚିତ୍ତ ଶୁଦ୍ଧ ନ ହେଲେ କିଏ ନିଜ ବାସନା ବା କିଏ ଭଗବତ୍ ବାସନା ତାହା ଜାଣି ହୁଏ ନାହିଁ । କେତେକ ଭ୍ରମ ପରିବେଶରେ ନିଜର ଇଚ୍ଛାକୁ ଭଗବାନଙ୍କ ଇଚ୍ଛା ବୋଲି କହିଥାନ୍ତି । ମାତ୍ର ତାହା ନିର୍ବୋଧତାର ପରିଚୟ । କେବଳ ଗୋପୀ ଭାବ ହୋଇପାରିଲେ ଭଗବାନଙ୍କ ଇଚ୍ଛା ଜାଣିପାରିବାକୁ ସକ୍ଷମ ହୋଇପାରିବ ।

ଭଗବାନଙ୍କ ଇଚ୍ଛା ଜାଣିଲେ ଲୀଳାନନ୍ଦ ଭୋଗ କରିବ । ଗୋପୀ ପ୍ରେମ ଦୁର୍ଲଭ । କାରଣ ଗୋପୀ ହେବାକୁ ହେଲେ ବହୁ

ଜନ୍ମ ଓ ସାଧନା କରିବାକୁ ପଡ଼ିଥାଏ । ଭାଗବାନଙ୍କଠାରେ ଶ୍ରଦ୍ଧାଭକ୍ତି ଥିଲେବି ବିନା ସାଧନାରେ ଚିତ୍ତ ସ୍ଥିର ଭାବ ଧାରଣ କରିବ ଯାହାକୁକି ପ୍ରକୃତ ସମାଧି କୁହାଯାଏ । କେବଳ ଭଗବାନଙ୍କ ପ୍ରତି ଐକାନ୍ତିକ ଆକର୍ଷଣ ଯୋଗୁଁ ଏହା ସମ୍ଭବ ହୋଇପାରେ ।

ବୈଷ୍ଣବ ମତରେ ଭଗବାନଙ୍କ ପ୍ରେମରେ ଭଗବାନଙ୍କ ରାସଲୀଳା ହିଁ ପ୍ରେମର ପୂର୍ଣ୍ଣତା ଲାଭ କରିଥିଲା । ଏହି ପ୍ରେମ ହିଁ ରୂପାନ୍ତରିତ ହୋଇଛି ଆନନ୍ଦ ସ୍ୱରୂପରେ । ଭଗବାନଙ୍କୁ ବା ଜଗତକୁ ସୁଖ ପାଇବାକୁ ପ୍ରେମ କୁହାଯାଏ । ଇନ୍ଦ୍ରିୟ ନିମିତ୍ତ ଅନିତ୍ୟ ବସ୍ତୁ ପ୍ରତି ଆକାଂକ୍ଷାକୁ କାମ କୁହାଯାଏ । କାମ ଅନ୍ଧକାର ଓ ପ୍ରେମ ଉଜ୍ଜ୍ୱଳ ଦିନମଣି ସଦୃଶ । ବୃନ୍ଦାବନ ରାସଲୀଳାରେ କାମ ପ୍ରଶମିତ ହୋଇଥିଲା । ପ୍ରେମ ପ୍ରୀତିର ପ୍ରଥମ ଦେବତା ହେଲେ ମନସିଜ ବା ମଦନ । ମନରୁ ଜନ୍ମ ହୋଇଥିବାରୁ ତାଙ୍କର ଏପରି ନାମକରଣ ହୋଇଛି । ମନଟି ସର୍ବଦା ଉଭୟମୁଖୀ । ଗୋଟିଏ ହେଲା ସତ୍, ଅନ୍ୟଟି ଅସତ୍ । ଜୀବଜଗତରେ କାମ ଓ ପ୍ରେମକୁ ସାଧାରଣତଃ ପୃଥକ୍ କରାଯାଇପାରେ ନାହିଁ । ସେହି ମଦନ ଦେବତାଙ୍କୁ ଦହନ ନକରି କେବଳ ମୁଗ୍ଧ କରି ଭଗବତ୍ ଆଭିମୁଖ୍ୟରେ ନେବାକୁ ପଡ଼ିବ । ଫଳରେ ଜୀବ ନିଜର ଅଭିଷ୍ଟ ଲାଭ କରିପାରିବ । ରାସଲୀଳା ହିଁ ନିଜେ ପ୍ରେମ ପୂର୍ଣ୍ଣ । କାମ ଗନ୍ଧ ଶୂନ୍ୟ ଏହି ରାସଲୀଳା ହିଁ ଭାଗବତର ପ୍ରାଣ ଓ ଏହା ବେଦାନ୍ତର ଭାସ୍ୟ । କାରଣ ପ୍ରଥମେ ତତ୍ତ୍ୱ ଓ ପରେ ଲୀଳା । ଶ୍ରୀଗୀତଗୋବିନ୍ଦରେ ବର୍ଣ୍ଣିତ ଲୀଳାକୁ ପ୍ରଥମେ ତତ୍ତ୍ୱରେ ବୁଝିବାକୁ ହେବ । ତତ୍ତ୍ୱଜ୍ଞାନ ନହେଲେ ଲୀଳା ତତ୍ତ୍ୱ ବୁଝିହେବ ନାହିଁ । ତତ୍ତ୍ୱ ମଧ୍ୟରେ ରାସ ଲୀଳା ହିଁ ସର୍ବୋତ୍ତମ । ଚିତ୍ତ ଶୁଦ୍ଧି ନହେଲେ ଲୀଳା ତତ୍ତ୍ୱ ବୁଝିବା କଷ୍ଟକର ହୋଇଥାଏ । ତେଣୁ ଏହାର ନାମ ଅଚିନ୍ତ ଭେଦାଭେଦ ।

ସର୍ବ ଭୂତାତ୍ମା ଶ୍ରୀକୃଷ୍ଣ ହିଁ ଜଗତର ପରିଚାଳକ । ସେହି ଅନନ୍ତ ଶ୍ୟାମଘନ ଦେହରେ ଅସଂଖ୍ୟ, ଗ୍ରହ, ନକ୍ଷତ୍ରପୁଞ୍ଜ ବେଷ୍ଟିତ ଓ ତାଙ୍କରି ନିର୍ଦ୍ଦେଶରେ ହିଁ ପ୍ରତ୍ୟେକ ପରିଚାଳିତ । ଏହିଭଳି ପରିଚାଳକଙ୍କୁ କ'ଣ ସହଜରେ ବଶୀଭୂତ କରାଯାଇପାରେ ? ହଁ, ତାଙ୍କୁ କେବଳ ପ୍ରେମ ଦ୍ୱାରା ବଶୀଭୂତ କରାଯାଇପାରେ । ତପସ୍ୱୀମାନଙ୍କ ପରି ବହୁକଷ୍ଟ ନକରି ସହଜ ଉପାୟରେ ତାଙ୍କୁ ଏହି ପ୍ରେମ ଦ୍ୱାରା ଆକର୍ଷିତ କରାଯାଇପାରେ । ଶ୍ରୀମତୀ ରାଧାରାଣୀ ହିଁ ଏହି ବିଦ୍ୟାର ମହାଶକ୍ତି । ବ୍ରହ୍ମ ନିର୍ଗୁଣ । ସେ ସମସ୍ତ ଐଶ୍ୱର୍ଯ୍ୟମୟ । ମାତ୍ର ତାଙ୍କର କାମନା ଅଛି । ସେ ତାଙ୍କ ସୃଷ୍ଟିଠାରୁ କିଞ୍ଚିତ ଆଶା କରନ୍ତି । ତାହା ହିଁ ହେଉଛି ପ୍ରେମ । ପ୍ରେମର ଭିକାରୀ ହୋଇ ସେ ଘୂରି ବୁଲନ୍ତି ତାଙ୍କ ସୃଷ୍ଟି ନିକଟରେ । ସେହି ଭିକାରୀର ଥାଳପୂର୍ଣ୍ଣ କରିବାକୁ ସକ୍ଷମା ହେବେ ଏକମାତ୍ର ଶ୍ରୀମତୀ ।

ଜ୍ଞାନର ଚରମ ସୀମାକୁ ଗଲେ ଭାବ ରାଜ୍ୟ ମିଳିଥାଏ । ଭାବ ଜଗତର ପ୍ରତ୍ୟେକ ଅଣୁ ଆନନ୍ଦରେ ଗଠିତ । ଭାବ ଜଗତରୁ କଣିକାଏ ଆସି ଆତ୍ମା ରୂପେ ବିଦ୍ୟମାନ । ଏହି ଭାବ ଜଗତର ଭାବମୟ ମୂର୍ତ୍ତି ହେଉଛନ୍ତି ନିରାକାର । ତାଙ୍କର ଧ୍ୟାନ ନିମନ୍ତେ ଯେଉଁ ମୂର୍ତ୍ତି ପରିକଳ୍ପନା ତାହା ଅବଲମ୍ବନ ମାତ୍ର । ସ୍ଥୂଳ ମୂର୍ତ୍ତିର ଧ୍ୟାନରେ ସୂକ୍ଷ୍ମ ରୂପକୁ ଲାଭ କରିହୁଏ । ମୂର୍ତ୍ତି କଳ୍ପନା ବ୍ୟତୀତ ସହଜରେ ସୂକ୍ଷ୍ମ ରୂପୀ ବିଗ୍ରହ କଳ୍ପନାରେ ଏହା ହିଁ ଭିତ୍ତିଭୂମି । ଗୋପୀମାନେ ଭାବର ସାଧିକା ଓ ସାଧନାର ଶ୍ରେଷ୍ଠ ଗୋପୀକୁ ରାଧିକା ବୋଲି ଶାସ୍ତ୍ରକାରମାନେ କହିଥାନ୍ତି । ସାଧକମାନେ ରାଧାଙ୍କୁ ଅବଲମ୍ବନ କରି ସିଦ୍ଧ ହୋଇପାରିବେ ।

ଉପନିଷଦରେ ଆନନ୍ଦକୁ ବ୍ରହ୍ମ କୁହାଯାଏ । ଏହି ଆନନ୍ଦ ନିମନ୍ତେ ସୃଷ୍ଟି ତିଆରି ହୋଇଛି ଓ ଏହି ଆନନ୍ଦରେ ହିଁ ହେବ ତା'ର ବିଲୟ । ସେହି ଆନନ୍ଦ ବ୍ରହ୍ମ ହିଁ ଯଶୋଦା ନନ୍ଦନ ଶ୍ରୀକୃଷ୍ଣ । ଋଷିମାନଙ୍କର ତପୋବନର ସାଧନା ଶେଷରେ ବୃନ୍ଦାବନ ଲୀଳାରେ ତାହାର ପରିସମାପ୍ତି ହେଲା । ସେହି ଚିର ସୁନ୍ଦରଙ୍କୁ ଅପେକ୍ଷା କରି ସେମାନେ ଯୁଗ ଯୁଗ ରହିଥିଲେ । ପରିଶେଷରେ ସେହି ନିତ୍ୟାନନ୍ଦଙ୍କ ଲୀଳାରେ ସେମାନେ ଝାସ ଦେଲେ ଓ ପରମ ପୁରୁଷଙ୍କ ବୃନ୍ଦାବନ ଲୀଳାର ଅନୁଭବ କରି ନିଜକୁ କୃତାର୍ଥ କଲେ । ସେହି ନିତ୍ୟ ଲୀଳା ଯାହା ଦ୍ୱାରା ସାଧିତ ହେଉଛି ତାହା ହିଁ ହ୍ଲାଦିନୀ ଶକ୍ତି । ସେହି ଶକ୍ତି ହେଉଛନ୍ତି ଶ୍ରୀମତୀ ରାଧିକା । ମହାଭାବ ସ୍ୱରୂପିଣୀ ହ୍ଲାଦିନୀ ଶକ୍ତିଙ୍କୁ ପାଇବାକୁ ହେଲେ ମହାପୁରୁଷଙ୍କ ଆଶ୍ରୟ ନେବାକୁ ହେବ । ସାଧକ ହୃଦୟରେ ହ୍ଲାଦିନୀ ଶକ୍ତି ଜାଗ୍ରତ ନ ହେଲେ ବୃନ୍ଦାବନ ଲୀଳାର ଆସ୍ୱାଦନ ଜୀବ କରିପାରିବ ନାହିଁ । ସେହି ଭଗବତ୍ ପ୍ରେମ କେବଳ ମୁକ୍ତିଲାଭ ପରେ ମିଳିପାରେ । ସାଂସାରିକ ଲୀଳାରୁ ମୁକ୍ତିଲାଭ କଲେ ପ୍ରକୃତ ପ୍ରେମ ମିଳିଥାଏ । ମୁକ୍ତ ଜୀବାତ୍ମା ହୃଦୟରେ ନୂତନ ଅମୃତ ପ୍ରେମ ସୃଷ୍ଟି ହୋଇଥାଏ । ଯାହାକୁ କି ବୃନ୍ଦାବନ କୁହାଯାଏ । ହ୍ଲାଦିନୀ ଶକ୍ତି ମହାଭାବ ସ୍ୱରୂପିଣୀ ଶ୍ରୀମତୀ ହିଁ ସେହି ବୃନ୍ଦାବନର ଅଧିଶ୍ୱରୀ । ଜୀବଜଗତ କେବଳ ରାଧାଙ୍କୁ ଖୋଜୁଛନ୍ତି । ରାଧା ଖୋଜୁଛନ୍ତି କେବଳ ଆନନ୍ଦ ବ୍ରହ୍ମଙ୍କୁ । ବିରହ ବିଚ୍ଛେଦ ପରେ ମିଳନ ହେଉଛି । ସୃଷ୍ଟି ଥିବା ଯାଏଁ ନିତ୍ୟାନନ୍ଦଙ୍କ ସହ ନିତ୍ୟ ସୁଖ ପାଇଁ ସେହି ନିତ୍ୟ ଲୀଳା ଲାଗିଥିବ, ତାକୁ କେହି ରୋକି ପାରିବେ ନାହିଁ ।

ଚିତ୍ ପୁରୁଷକୁ ଜାଗ୍ରତ କରିବାକୁ ହେଲେ ଚିତ୍ତଶୁଦ୍ଧି ଆବଶ୍ୟକ । ଭଗବାନଙ୍କ ନିମିତ୍ତ ଏଥିପାଇଁ ସାଧକ ମନପ୍ରାଣ ସମର୍ପଣ କରିଦେବା ଉଚିତ୍ । ପ୍ରକୃତିର ଯେ ହିଁ ଭର୍ତ୍ତା ସେ ହେବ

ସାଧକ ଜୀବନର ଦେବତା । ଶ୍ରୀଅରବିନ୍ଦଙ୍କ ପୁରୁଷୋତ୍ତମ ତତ୍ତ୍ୱ ହିଁ ଏହି ତଥ୍ୟ ଦେଇଥାଏ । ଜୀବ ଭଗବାନଙ୍କୁ ପାଇ ସାରିବା ପରେ ସୋ'ହଂରେ ପରିଣତ ହୁଏ । ସାଧକ ପ୍ରେମ ପ୍ରୀତି ବଳରେ ହିଁ ଭଗବାନଙ୍କୁ ପାଇପାରିବ । ଭଗବାନଙ୍କୁ ପାଇବା ପାଇଁ କଠିନ ସାଧନା କରିପାର । ମାତ୍ର ପ୍ରେମ ପ୍ରୀତି ବଳରେ ତାଙ୍କୁ ପାଇବା ଅତି ସହଜ । ତାଙ୍କ କଥା ସବୁବେଳେ ଭାବ, ତାଙ୍କ ନାମ ଶ୍ରବଣରେ ତୁମ ଦେହ ପୁଲକିତ କର । ତାହା ହିଁ ତତ୍ତ୍ୱ ରାଜ୍ୟର ପ୍ରେମ ତତ୍ତ୍ୱ । ଅବତାର ସ୍ୱରୂପୀ ଶ୍ରୀ ଚୈତନ୍ୟ ଦେବ ତାହା ଜଗତବାସୀଙ୍କୁ ଶିଖାଇ ଥିଲେ । ଭଗବାନଙ୍କୁ ନିଜର ଭାବି ସାଧକଙ୍କ ଅନ୍ତରରେ ଏକ ନୂଆ ଚେତନା ଉଦ୍ଭବ ହେବ । ସାଧକ ନିଜର ଅନ୍ତରରେ ଦେଖିବ ନବ ବୃନ୍ଦାବନ । ଜୀବ ଓ ବ୍ରହ୍ମଙ୍କ ଲୀଳା ଭୂମି ନିତ୍ୟ ବୃନ୍ଦାବନ । ନିତ୍ୟ ଲୀଳାର ନିତ୍ୟ ପୁରୁଷ ସହିତ ସେ ଲୀଳା କରିବ । ସେତେବେଳେ ସାଧକ ଭକ୍ତି ଓ ପ୍ରେମର ଚରମ ସୀମାରେ ଉପନୀତ ହେବେ । ଏହିଭଳି ଭାବରେ ଜୀବ ବ୍ରହ୍ମ ସହିତ ଲୀନ ହୋଇଯିବ ।

ତେଣୁ ପ୍ରେମର ସାରତତ୍ତ୍ୱ ହେବ ଭାବ । ଭାବର ସାର ତତ୍ତ୍ୱ ହେବ ମହାଭାବ । ଶ୍ରୀମତୀ ରାଧିକା ହିଁ ସେହି ମହାଭାବ ସ୍ୱରୂପିଣୀ । ତେଣୁ ରାଧା ଭାବ ଜାଗ୍ରତ ହେଲେ ହିଁ ପରମ ପୁରୁଷଙ୍କ ସହିତ ନିତ୍ୟଲୀଳାରେ ସାଧକ ଲୀନ ହୋଇଯିବ । **ଭଗବଦ୍ ପ୍ରେମର ଶେଷ ପରିଣତି ରାଧାଭାବ ଜାଗ୍ରତ ଜୀବଜଗତର ଧ୍ୟେୟ ହେବା ଉଚିତ୍ ।** ଭଗବାନ ହେଉଛନ୍ତି ଅନନ୍ତ ଓ ସୌନ୍ଦର୍ଯ୍ୟର ମୂଳ । ତାଙ୍କର ସତ୍ତା ଜଗତର ପ୍ରତ୍ୟେକ ସତ୍ତାରେ ଥିବା ହେତୁ ଜୀବଜଗତ ସୌନ୍ଦର୍ଯ୍ୟମୟ । ଚିତ୍ତ କର୍କଶ ହେଲେ ସୌନ୍ଦର୍ଯ୍ୟର ସତ୍ତା ଉପଲବ୍ଧି କରିହୁଏ ନାହିଁ । ଶିଶୁସୁଲଭ କୋମଳ ଚିତ୍ତ ଥିବା ବ୍ୟକ୍ତି ମହିମାମୟ ସୌନ୍ଦର୍ଯ୍ୟ ଭାସ୍କରଙ୍କ ପ୍ରତିମୂର୍ତ୍ତି ପ୍ରତ୍ୟେକଙ୍କଠାରେ ଦେଖିପାରେ । କେବଳ ଭକ୍ତି ଭାବରେ ହିଁ ଶିଶୁ ସୁନ୍ଦର କୋମଳତା ଲାଭ କରିହୁଏ ।

୧୧୮୧, ଦେବରାଜ ବିଦ୍ୟାପୀଠ ରାସ୍ତା
ଗୋବିନ୍ଦ ପ୍ରସାଦ (ବମିଖାଲ), ଭୁବନେଶ୍ୱର



# ଶ୍ରୀଗୀତଗୋବିନ୍ଦ ଗ୍ରନ୍ଥର କାବ୍ୟିକ ବୈଶିଷ୍ଟ୍ୟ

ଡାଃ ଦୀନବନ୍ଧୁ ମହାରଣା

ଯୋଗଜନ୍ମା ଉତ୍କଳୀୟ କବିରାଜ ଶ୍ରୀ ଜୟଦେବ ରଚିତ 'ଶ୍ରୀଗୀତଗୋବିନ୍ଦମ୍' ସଂସ୍କୃତ ସାହିତ୍ୟ ଭଣ୍ଡାରରେ ଏକ ଚିର ଦେଦୀପ୍ୟମାନ ଅମୂଲ୍ୟରତ୍ନ । ଏହି ଅନବଦ୍ୟ କୃତିର ମଧୁର-କୋମଳ-କାନ୍ତ ପଦାବଳୀ ସମସାମୟିକ ତଥା ପରବର୍ତ୍ତୀ କାଳରେ ଅଗଣିତ ସଂସ୍କୃତଜ୍ଞ ପଣ୍ଡିତ ମଣ୍ଡଳୀ ଓ ଜନସାଧାରଣଙ୍କ ମଧ୍ୟରେ ଅଭୂତପୂର୍ବ ଆକର୍ଷଣ ଉତ୍ପନ୍ନ କରିଥିଲା । ଏହା ଏକ କ୍ଷୁଦ୍ର ମହାକାବ୍ୟ ହେଲେ ମଧ୍ୟ ଭାରତର ବିଭିନ୍ନ ପ୍ରାନ୍ତରେ ରଚିତ ଏହାର ବହୁସଂଖ୍ୟକ ଅନୁକୃତି ଓ ଟୀକା ପରିଦୃଷ୍ଟ ହୁଏ । ଅନେକ ପ୍ରାନ୍ତୀୟ ଓ ସର୍ବଭାରତୀୟ କବି ପଣ୍ଡିତ ଏହି ଅନବଦ୍ୟ କୃତିର ଭକ୍ତିରସ ପ୍ଲାବିତ ମଧୁର-କୋମଳ-କାନ୍ତ ପଦାବଳୀରେ ମୁଗ୍ଧ ଓ ତନ୍ମୟ ହୋଇ ଏହାର ଅଷ୍ଟପଦୀ ଅନୁକରଣରେ ଗୀତମାନ ରଚନା କରିଥିଲେ । ସଂସ୍କୃତ ସାହିତ୍ୟ ଭଣ୍ଡାର ବହୁ ଅନବଦ୍ୟ ମହାକାବ୍ୟ ରତ୍ନଦ୍ୱାରା ସମୃଦ୍ଧ ହେଲେ ମଧ୍ୟ ସେଥିମଧ୍ୟରୁ ଅନ୍ୟ କୌଣସିଟିର ଏପରି ସୌଭାଗ୍ୟ ଘଟିନଥିଲା ।



ବିଭିନ୍ନ ବୃତ୍ତରେ ରଚିତ ୭୨ଟି ଶ୍ଲୋକ ଏବଂ ବିଭିନ୍ନ ରାଗରେ ନିବଦ୍ଧ ୨୪ଟି ଗୀତ ସମାବେଶରେ ରଚିତ ଦ୍ୱାଦଶ ସର୍ଗ ବିଶିଷ୍ଟ ଶ୍ରୀଗୀତଗୋବିନ୍ଦର ପଦଗୁଡ଼ିକର ଲାଳିତ୍ୟ, ମାଧୁର୍ଯ୍ୟ ଓ ସାବଲୀଳତା ଏହାକୁ ଅନ୍ୟ ସଂସ୍କୃତ ଭକ୍ତି ରସାତ୍ମକ ଗୀତିକାବ୍ୟ ମଧ୍ୟରେ ଅନନ୍ୟ କରି ଗଢ଼ି ତୋଳିଛି । ଶ୍ରୀଗୀତଗୋବିନ୍ଦ ମୂଳ କାବ୍ୟରେ ବାରଟି ରାଗ ବର୍ଣ୍ଣନା କରାଯାଇଛି, ଯଥା- କର୍ଣ୍ଣାଟ, ମଙ୍ଗଳ ଗୁର୍ଜ୍ଜରୀ, ଗୋଣ୍ଡରୀ, ଦେଶୀ ବରାଡ଼ୀ, ବରାଡ଼ୀ, ବସନ୍ତ, ବିଭାସ, ଭୈରବୀ, ମାଳବ ଓ ରାମକେରୀ ।

ପୁନଶ୍ଚ ଉତ୍କଳୀୟ କବିରାଜ ଶ୍ରୀ ଜୟଦେବଙ୍କ ଅମର କୃତି 'ଶ୍ରୀଗୀତଗୋବିନ୍ଦ' ଅନ୍ତର୍ଗତ ଦଶାବତାର ସ୍ତୁତି ଏକ ହୃଦୟସ୍ପର୍ଶୀ, ଭାବଗର୍ଭକ ଓ ଲୋକପ୍ରିୟ ଗୀତ ଭାବରେ ଏ ଦେଶର ଶିକ୍ଷିତ ତଥା ଅଶିକ୍ଷିତ ଲୋକମାନଙ୍କଦ୍ୱାରା ଆଦୃତ ହୋଇଛି । ଅତି ପ୍ରାଚୀନ କାଳରୁ ବିଷ୍ଣୁଙ୍କ ବିଭିନ୍ନ ଅବତାର ଭାରତୀୟ ସମାଜରେ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିବା ବୈଦିକ ସାହିତ୍ୟ, ମହାଭାରତ, ଗୀତା, ବିଭିନ୍ନ ପୁରାଣ, ବହୁ ପ୍ରାଚୀନ ଅଭିଲେଖ ଓ କାବ୍ୟ, ଅନେକ ପ୍ରାଚୀନ ମନ୍ଦିର ଓ ବିଷ୍ଣୁ ବିଗ୍ରହ ଚତୁଃପାର୍ଶ୍ୱରେ ଖୋଦିତ ଦଶାବତାର ବିଗ୍ରହ ସମୂହର ପରୀକ୍ଷାଦ୍ୱାରା ଜଣାଯାଏ । ତେଣୁ ଶ୍ରୀଗୀତଗୋବିନ୍ଦସ୍ଥ 'ଦଶାବତାର ସ୍ତୁତି'ର ବୈଶିଷ୍ଟ ଓ ସମାଜର ସମ୍ବନ୍ଧରେ ଧାରଣା କରିବା ପାଇଁ ଏହାର ପରମ୍ପରା ଓ ଐତିହ୍ୟ ସମ୍ବନ୍ଧରେ ଅନୁସନ୍ଧାନମୂଳକ ଚିନ୍ତାଧାରା ପୋଷଣ କରିବାକୁ ପଡ଼େ ।

ଶ୍ରୀଗୀତଗୋବିନ୍ଦର ମହତ୍ତ୍ୱ ଓ ଉତ୍କର୍ଷରେ ମୁଗ୍ଧ ହୋଇ ତତ୍କାଳୀନ ଉତ୍କଳାଧୀଶ ତାହାର ସମକକ୍ଷ ଅନ୍ୟ ଏକ ଗୀତଗୋବିନ୍ଦ 'ଅଭିନବ ଗୀତଗୋବିନ୍ଦ' ରଚନା କରି ଶ୍ରୀଜଗନ୍ନାଥଙ୍କ ସମକ୍ଷରେ ଏହାର ଗାନକୁ ବାଧ୍ୟତାମୂଳକ କରିଥିଲେ । ଦିନେ ରାଜା ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ସମୟରେ ଶ୍ରୀ ଜୟଦେବ ରାଜାଜ୍ଞା ଅମାନ୍ୟ କରି ଗୀତଗୋବିନ୍ଦ ଗାନରେ ପ୍ରବୃତ୍ତ ଥିବା ଜାଣିପାରିଥିଲେ । ଏଥିରେ ସେ ବିରକ୍ତ ହୋଇ ଶ୍ରୀ ଜୟଦେବଙ୍କୁ ଏହାର କାରଣ ଜିଜ୍ଞାସା କରିବାରୁ, ସେ ଉତ୍ତରରେ କହିଲେ ଯେ, ତାଙ୍କର ଗ୍ରନ୍ଥ ଶ୍ରୀଜଗନ୍ନାଥଙ୍କର ଅଧିକ ସନ୍ତୋଷପ୍ରଦ ।

ତଦନନ୍ତରୁ ରୁଦ୍ଧଦ୍ୱାର ଗର୍ଭଗୃହ ମଧ୍ୟରେ ମହାପ୍ରଭୁଙ୍କ ସମକ୍ଷରେ ଉଭୟ ଗ୍ରନ୍ଥର ମହତ୍ୱ ପରୀକ୍ଷା ପାଇଁ ରଖାଯାଇଥିଲା ।

କପାଟୋନ୍ମଚନ କଲାପରେ ଜୟଦେବଙ୍କ ଶ୍ରୀଗୀତଗୋବିନ୍ଦ ରାଜରଚିତ ଗୀତଗୋବିନ୍ଦ ଉପରେ ରଖାଯାଇଥିବାର ଦେଖାଗଲା । ଏଥିରେ ରାଜା ଅତ୍ୟନ୍ତ କ୍ଷୁବ୍ଧ ଓ ନିରାଶ ହେବାରୁ ଶ୍ରୀଜଗନ୍ନାଥ ତାହାଙ୍କୁ ଶ୍ରୀଗୀତଗୋବିନ୍ଦର ମହତ୍ୱ ସ୍ୱୀକାରପୂର୍ବକ ଏହାକୁ ଲୋକ ସମାଜରେ ପ୍ରଚାର କରିବା ପାଇଁ ସ୍ୱପ୍ନରେ ଆଦେଶ ପ୍ରଦାନ କରିଥିଲେ । ରାଜା ମହାପ୍ରଭୁଙ୍କ ନିକଟରେ ସ୍ୱଅପରାଧ କ୍ଷମା ପାଇଁ ପ୍ରାର୍ଥନା କରି ସେହିଦିନୁ ଶ୍ରୀ ଜୟଦେବଙ୍କ ପ୍ରତି ବିଶେଷ ଭକ୍ତିମାନ ହେଲେ ଏବଂ ପ୍ରତ୍ୟହ କଳିକଳୁଷ ନାଶନ ଶ୍ରୀଗୀତଗୋବିନ୍ଦ ପାଠ କଲେ । ଏହାପରେ ଶ୍ରୀଗୀତଗୋବିନ୍ଦର ମାହାତ୍ମ୍ୟ ଚତୁର୍ଦ୍ଦିଗରେ ପ୍ରଚାରିତ ହେଲା । ଐତିହାସିକ ପ୍ରମାଣ ଅନୁସାରେ ଯେଉଁ ଗଜପତି ସମ୍ରାଟଙ୍କ ସମୟରେ 'ଅଭିନବ ଗୀତଗୋବିନ୍ଦ' ନାମରେ ଏକ କାବ୍ୟ ରଚିତ ହୋଇଥିଲା, ସେ ଥିଲେ ମହାନ୍ ପରାକ୍ରମଶାଳୀ ସମ୍ରାଟ ପୁରୁଷୋତ୍ତମ ଦେବ । କବିଚନ୍ଦ୍ର ରାୟ ଦିବାକର ମିଶ୍ର ସେହି କାବ୍ୟଟି ନିଜେ ରଚନା କରିଥିଲେ ମଧ୍ୟ ଗଜପତି ସମ୍ରାଟଙ୍କ ନାମରେ ଭଣିତା କରିଥିଲେ । ସେହି କାବ୍ୟଟି ଶ୍ରୀମନ୍ଦିରରେ ପ୍ରଚଳିତ ହୋଇଥିଲା । ଗଜପତି ସମ୍ରାଟ ପୁରୁଷୋତ୍ତମ ଦେବଙ୍କ ପୁତ୍ର ଗଜପତି ପ୍ରତାପରୁଦ୍ରଙ୍କ ବେଳେ ଏହି ଦୁଇଟି କାବ୍ୟରୁ ଜଗନ୍ନାଥଙ୍କ ପ୍ରିୟ କେଉଁଟି ନିର୍ଣ୍ଣିତ ହୋଇଥିଲା ଓ ତାହାପରେ ଶ୍ରୀମନ୍ଦିରର ଜୟବିଜୟ ଦ୍ୱାରରେ ଗଜପତିଙ୍କ ଆଦେଶ ଲିପିବଦ୍ଧ କରାଗଲା । ଜୟଦେବଙ୍କ ଗୀତଗୋବିନ୍ଦ କେଉଁ ସମୟରେ ଜଗନ୍ନାଥଙ୍କ ପାଖରେ ବୋଲାଯିବ ଏବଂ କିଏ ତାହା ବୋଲିବେ ଏକଥା ମଧ୍ୟ ସେଥିରେ ଲେଖାଅଛି । ଗଜପତି ସମ୍ରାଟ ପୁରୁଷୋତ୍ତମ ଦେବଙ୍କ ସମୟ ଥିଲା ପଞ୍ଚଦଶ ଶତାବ୍ଦୀ ଏବଂ ଜୟଦେବ ଥିଲେ ଦ୍ୱାଦଶ ଶତାବ୍ଦୀର କବି । ତେଣୁ ଜଗନ୍ନାଥଙ୍କ ପାଖରେ ସେହି ପରୀକ୍ଷା ହେଲାବେଳକୁ ଜୟଦେବ ଜୀବିତ ନଥିଲେ । ଗଜପତି ପ୍ରତାପରୁଦ୍ର ଦେବଙ୍କ ସମୟରେ ହୋଇଥିବା ସେହି ପରୀକ୍ଷାଟି କଥା କିମ୍ବଦନ୍ତୀ ବ୍ୟତୀତ ସେହି ସମୟରେ ଲେଖା ହୋଇଥିବା 'ବୈଷ୍ଣବ ଲୀଳାମୃତ' କାବ୍ୟରେ ମଧ୍ୟ ଉଲ୍ଲେଖ ରହିଛି ।

ଏକଦା ଶ୍ରୀକ୍ଷେତ୍ର ସମୀପବର୍ତ୍ତୀ ଏକ ଗ୍ରାମର ମାଳିଆଣୀ (ଶାକ ଓ ପୁଷ୍ପ ବିକ୍ରୟକାରିଣୀ) ଶରତକାଳୀନ ଚନ୍ଦ୍ରିକା ବିଧୌତ ରଜନୀରେ ସ୍ୱଉଦ୍ୟାନରେ ବାଇଗଣ ତୋଳିବା ସମୟରେ ଅତି ତନ୍ମୟ ଭାବରେ ଶ୍ରୀଗୀତଗୋବିନ୍ଦର ମଧୁର-କୋମଳ-ପଦାବଳୀ ଉଚ୍ଚ ସ୍ୱରରେ ଗାନ କରୁଥିଲେ । ସର୍ବବ୍ୟାପୀ ଶ୍ରୀଜଗନ୍ନାଥ ନିଜର ଅତିପ୍ରିୟ ଶ୍ରୀଗୀତଗୋବିନ୍ଦର ମଧୁର ଗାନରେ ଅତ୍ୟନ୍ତ ମୁଗ୍ଧ ହୋଇ ଅଲକ୍ଷିତରେ ତାହାର ପଛେ ପଛେ ଚାଲିବାକୁ ଲାଗିଲେ । ଏହାଫଳରେ ତାଙ୍କର ଶ୍ରୀଅଙ୍ଗ ଲୁଗା ବାଇଗଣ କଣ୍ଟାରେ ଲାଗି ଛିନ୍ନଭିନ୍ନ ହୋଇଗଲା । କେତେ ସମୟ ପରେ ବାଇଗଣ ତୋଳାସାରି ସ୍ତ୍ରୀ ଲୋକଟି ଘରକୁ ଚାଲିଯିବାରୁ ମହାପ୍ରଭୁ ଶ୍ରୀମନ୍ଦିରକୁ ଫେରି ଆସିଲେ । ତତ୍‌ପରଦିନ ପ୍ରଭାତରେ ପୂଜକମାନେ କପାଟୋନ୍ମଚନ ପୂର୍ବକ ପ୍ରଭୁଙ୍କ ଶ୍ରୀଅଙ୍ଗ ବସ୍ତ୍ର ବାଇଗଣ କଣ୍ଟାରେ ଛିନ୍ନଭିନ୍ନ ହୋଇଥିବାର ଦେଖି ବିସ୍ମୟାଭିଭୂତ ହୋଇଗଲେ । ପୂଜା ସମ୍ଭାର ନେଇ ମହାପ୍ରଭୁଙ୍କର ଦର୍ଶନ ପାଇଁ ଆଗତ ଗଜପତି ସମ୍ରାଟ ମଧ୍ୟ ଏହା ଲକ୍ଷ୍ୟକରି ଅତ୍ୟନ୍ତ ବିସ୍ମିତ ହେଲେ । ଉଭୟ ସମ୍ରାଟ ଓ ପୂଜକ ଅଶୁଭ ଆଶଙ୍କାରେ ବିଶେଷ ଉଦବିଗ୍ନ ଓ ଚିନ୍ତାମଗ୍ନ ହୋଇ ପାନାହାର ତ୍ୟାଗ କଲେ । ଅନ୍ତର୍ଯ୍ୟାମୀ ମହାପ୍ରଭୁ ସେଦିନ ନିଶାବସାନ ସମୟରେ ଉଭୟଙ୍କ ଶ୍ରୀଅଙ୍ଗବସ୍ତ୍ର ଛିଣ୍ଡିଛାଣ୍ଡି ଯାଇଥିବାର କାରଣ ଜଣାଇବାରୁ, ଗଜପତି ତତ୍‌ପରଦିନ ଉକ୍ତ ମାଳିଆଣୀଙ୍କୁ ଡକାଇ ଆଣି ତାଙ୍କୁ ମହାପ୍ରଭୁଙ୍କ ନିକଟରେ ନିତ୍ୟ ଶ୍ରୀଗୀତଗୋବିନ୍ଦ ଗାନ ପାଇଁ ନିଯୁକ୍ତି ଦେଲେ । ଗଜପତି ସମ୍ରାଟ ଶ୍ରୀ ଜୟଦେବଙ୍କୁ ମହାପ୍ରଭୁଙ୍କ ପରମଭକ୍ତ ରୂପେ ସ୍ୱୀକାର କରି ତାଙ୍କୁ ସମ୍ମାନ ପ୍ରଦର୍ଶନ କରିବା ନିମିତ୍ତ ତାଙ୍କ ବାସସ୍ଥାନକୁ ଯାଇଥିଲେ । ତେଣୁ ପ୍ରୋକ୍ତ ଘଟଣାବଳୀରୁ ଜଣାଯାଏ ଯେ, ଭକ୍ତିରସ ପ୍ଲାବିତ ଶୃଙ୍ଗାର କାବ୍ୟ ଶ୍ରୀଗୀତଗୋବିନ୍ଦ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଅତିପ୍ରିୟ ଥିଲା ଏବଂ ଏହା ଉତ୍କଳ ତଥା ଉତ୍କଳ ବାହାରର ଅଗଣିତ ଭକ୍ତି ସାହିତ୍ୟ ପ୍ରେମୀ ଜନଗଣଙ୍କୁ ରାଧାକୃଷ୍ଣଙ୍କ ଅତିମାନବୀୟ ପ୍ରେମଲୀଳା ଓ ଭକ୍ତିରସ ଭାବଧାରା ସହିତ ଓତଃପ୍ରୋତ ଭାବରେ ଜଡ଼ିତ କରାଇବାରେ ବିଶେଷ ସହାୟକ ହୋଇଥିଲା । ଏହା ହିଁ ଉକ୍ତ କାବ୍ୟର ମୁଖ୍ୟ କାବ୍ୟିକ ବୈଶିଷ୍ଟ୍ୟ ।

ସଭାପତି
ଭକ୍ତକବି ଜୟଦେବ ସାଂସ୍କୃତିକ ପରିଷଦ
୧୧୧, ମ୍ୟୁନିସିପାଲିଟି ମାର୍କେଟ
ଓ.ଏମ୍.ପି. ଛକ, କଟକ

------

# ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଲୀର ପ୍ରାଚୀନ କୀର୍ତ୍ତି

ଦୁର୍ଗାଚରଣ ପଣ୍ଡା

**ପୁ**ଣ୍ୟତୋୟା ପ୍ରାଚୀ ନଦୀର ସ୍ରୋତ ସହିତ ତା'ର ତୀରରେ ବିଭିନ୍ନ ଧର୍ମଧାରା ନିରନ୍ତର ପ୍ରବାହିତ ହେଉଥିଲା । ଏହାର ଅବବାହିକାରେ ବ୍ରାହ୍ମଣ୍ୟ ଧର୍ମର ବହୁ ମନ୍ଦିର, ଅସଂଖ୍ୟ ଦେବଦେବୀ ପ୍ରତିମା, ତୀର୍ଥ, ମଠ ଓ ଆଶ୍ରମ ସମେତ ଜୈନ ଓ ବୌଦ୍ଧ କୀର୍ତ୍ତିର ପ୍ରତ୍ନାବଶେଷ ମଧ୍ୟ ଦେଖିବାକୁ ମିଳେ । ଏହି ପୁଣ୍ୟାଞ୍ଚଳର କେନ୍ଦୁବିଲ୍ୱ ବା କେନ୍ଦୁଲୀ ଗ୍ରାମରେ ଜୟଦେବ ଜନ୍ମଲାଭ କରି ଅନତିଦୂରରେ ଥିବା ଶ୍ରୀକ୍ଷେତ୍ରକୁ ଧର୍ମାଚରଣ ନିମନ୍ତେ ନିଜର କର୍ମଭୂମି ଭାବେ ଗ୍ରହଣ କରିଥିଲେ । ତାଙ୍କ ରଚିତ ଶ୍ରୀଗୀତଗୋବିନ୍ଦ ମୁଖ୍ୟତଃ ଶ୍ରୀମନ୍ଦିରର ଶ୍ରୀଜଗନ୍ନାଥଙ୍କଠାରେ ଗାନ ନିମନ୍ତେ ଉଦ୍ଦିଷ୍ଟ ଥିଲା । ଏହା ପ୍ରତ୍ୟେକ ଓଡ଼ିଆ ହୃଦୟଙ୍ଗମ କରିଥିବା ସତ୍ତ୍ୱେ, ପଡ଼ୋଶୀ ରାଜ୍ୟ ବଙ୍ଗଳା 'ଜୟଦେବ ବଙ୍ଗଳାର କେନ୍ଦୁଲୀଠାରେ ଜନ୍ମ' ବୋଲି ଦାବି କଲେ । ଏହି ଉକ୍ତିକୁ ଓଡ଼ିଶାର କେତେକ ବିଦ୍ୱାନ ଓ ଐତିହାସିକ ବଳିଷ୍ଠ ପ୍ରମାଣ ସହ ଦୃଢ଼ ଭାବରେ ଖଣ୍ଡନ କରିଛନ୍ତି । ବର୍ଦ୍ଧମାନ ଜିଲ୍ଲା ଅଜୟ ନଦୀତୀର କେନ୍ଦୁଲୀରେ ଖ୍ରୀ:୧୬ଶ-୧୭ଶ ଶତାବ୍ଦୀର ଅଳ୍ପ କେତେକ ପ୍ରତ୍ନାବଶେଷ ରହିଥିବାବେଳେ ଓଡ଼ିଶାର କେନ୍ଦୁଲୀ ପ୍ରାଚୀନ, ମଧ୍ୟଯୁଗୀୟ ଓ ପରବର୍ତ୍ତୀକାଳୀନ କୀର୍ତ୍ତିରାଜିରେ ସମୃଦ୍ଧ । ଗୀତଗୋବିନ୍ଦର ମୁଖ୍ୟ ଚରିତ୍ର 'ମାଧବ' । ଓଡ଼ିଶାରେ ବିଷ୍ଣୁ 'ମାଧବ' ନାମରେ ଲୋକପ୍ରିୟ । ପ୍ରାଚୀନଦୀ ଅବବାହିକା ତଥା ରାଜ୍ୟର ବିଭିନ୍ନ ପ୍ରାନ୍ତରେ ଥିବା ବହୁ ସଂଖ୍ୟକ ମାଧବ ମନ୍ଦିର ଓ ମାଧବ ମୂର୍ତ୍ତି ଏହାର ପ୍ରମାଣ । ଏହି ପରମ୍ପରା ବଙ୍ଗଳାରେ ନାହିଁ । ତେବେ, କେନ୍ଦୁଲୀସ୍ଥ ପ୍ରାଚୀନ କୀର୍ତ୍ତିଗୁଡ଼ିକର ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିକୋଣରୁ ଅନୁଶୀଳନର



ବିଷ୍ଣୁ, କେନ୍ଦୁଳି



ଭୈରବ, କେନ୍ଦୁଳି

ଅଭାବ ପରିଲକ୍ଷିତ ହୁଏ । ଲିଖିତ ପ୍ରବନ୍ଧରେ ଏହାର ଏକ ସମ୍ୟକ ସୂଚନା ଉପସ୍ଥାପିତ ହୋଇଛି ।

ପୂର୍ବରୁ କେନ୍ଦୁଲୀର ପ୍ରତ୍ନତାତ୍ତ୍ୱିକ ବିଭବ କେତେକ ବୁଦ୍ଧିଜୀବୀ ଓ ଐତିହାସିକଙ୍କ ଦୃଷ୍ଟିକୁ ଆସିଥିବାବେଳେ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଏହି ସ୍ଥାନ ୧୯୬୪ ମସିହାରେ ହାତକୁ ନେଲେ । ଏହାର ପ୍ରତ୍ନାବଶେଷ ମଧ୍ୟରେ ଥିଲା ଇଟା ତିଆରି ଭଗ୍ନ ଚଣ୍ଡୀମନ୍ଦିର, ଏକ ଶିବମନ୍ଦିରର ମୂଳଦୁଆ ସହିତ ଗର୍ଭଗୃହର ଶିବଲିଙ୍ଗ, କେତେକ ମୂର୍ତ୍ତି, ମୂର୍ତ୍ତିଖଣ୍ଡ ଓ ଅନ୍ୟ କେତେକ ଗୌଣ ବସ୍ତୁ । ଏହା ମଧ୍ୟରେ ଚଣ୍ଡୀ ମନ୍ଦିରର ଗର୍ଭଗୃହରେ ଗୋଟିଏ ଦେବୀମୂର୍ତ୍ତି ରହିଥିବାବେଳେ ଅନ୍ୟ ଗୋଟିଏ ଅନୁରୂପ ମୂର୍ତ୍ତି ନିକଟସ୍ଥ ବୃକ୍ଷମୂଳେ ସ୍ଥାନିତ ହୋଇଥିଲା । ମନ୍ଦିର ପରିସରରେ ଇତସ୍ତତଃ ଭାବେ ପଡ଼ିଥିବା ଅନ୍ୟ ମୂର୍ତ୍ତିଗୁଡ଼ିକୁ ଗ୍ରାମବାସୀ ସଂଗ୍ରହ କରି ଚଣ୍ଡୀମନ୍ଦିର ସମ୍ମୁଖରେ, ଗୋଟିଏ ଧାଡ଼ିରେ ସଜାଇ ରଖିଥିଲେ । ସରକାରୀ ଅନୁଦାନରେ ସେହିବର୍ଷ ଭଗ୍ନ ମନ୍ଦିରର ଚତୁଃପାର୍ଶ୍ୱ ଓ ଭିତର ପରିଷ୍କାର ହେବା ଦ୍ୱାରା ଦେଉଳର ପ୍ରାୟ ୮ ଫୁଟ ଉଚ୍ଚର ବାଡ଼, ଜଗମୋହନର ପ୍ରାୟ ୩-୫ ଫୁଟ ଉଚ୍ଚର ବାଡ଼, ଉଭୟ କୋଠରୀର ଗର୍ଭଗୃହ, ପଥରର ଦୁଇ ପ୍ରବେଶ ଦ୍ୱାରବନ୍ଧ ସମେତ ନବଗ୍ରହପାଟ ସ୍ପଷ୍ଟ ହୋଇଥିଲା । ମନ୍ଦିର ନିକଟରେ ପଡ଼ିଥିବା ଦେଉଳ, ମସ୍ତକ ଭାଗର ମନ୍ଦିରଚାରିଣୀ ମୂର୍ତ୍ତି ଓ ଆନୁଷଙ୍ଗିକ ଭଗ୍ନାବଶେଷରୁ ସୂଚୀତ ହେଉଥିଲା ଯେ, ମୂଳ ନିର୍ମାଣଟି ଥିଲା ଏକ ପଞ୍ଚରଥ ଶୈଳୀର ରେଖ ଦେଉଳ ସହ ନହଡାଳିଆ ଜଗମୋହନ, ଯାହାକି ଖ୍ରୀ: ୧୦ମ-୧୧ଶ ଶତାବ୍ଦୀର କୃତିହେବା ସମ୍ଭବ । ଏହାବ୍ୟତୀତ ମନ୍ଦିର ମଧ୍ୟରେ ନିକଟ ବୃକ୍ଷମୂଳେ

ଥିବା ଦେବୀ ପ୍ରତିମା ମଧ୍ୟ ଏହି ସମୟର ବୋଲି କଳାଶୈଳୀରୁ ପ୍ରତୀୟମାନ ହୁଏ । ସରକାରଙ୍କ ପରବର୍ତ୍ତୀ ଅନୁଦାନରେ, ୧୯୬୭ରେ ମନ୍ଦିର ସଂରକ୍ଷଣ ସମେତ ସଂଗ୍ରହାଳୟ ନିମନ୍ତେ ଗୃହ ନିର୍ମାଣ ଆରମ୍ଭ ହେଲା । ପ୍ରାଚୀନ ମନ୍ଦିର ସଂରକ୍ଷଣ ସମୟରେ ତା'ର ମୌଳିକତା ଓ ସ୍ଥିତାବସ୍ଥା ଯଥାସମ୍ଭବ ଅକ୍ଷୁଣ୍ଣ ରଖିବା ଅନିବାର୍ଯ୍ୟ । କିନ୍ତୁ, ଓଡ଼ିଶାରେ ପ୍ରାଚୀନ କୀର୍ତ୍ତି ସଂରକ୍ଷଣ ନାମରେ ତା'ଉପରେ ଏକ ନୂତନ ନିର୍ମାଣ ଗଢ଼ି ଦିଆଯାଏ କିମ୍ବା ପ୍ରାଚୀନ ନିର୍ମାଣ ସହିତ ନୂତନ ନିର୍ମାଣ ମିଶାଇ ଦେବା ଦ୍ୱାରା ପ୍ରାଚୀନ କୀର୍ତ୍ତିଟିର ମୌଳିକତ୍ୱ ଆଂଶିକ କିମ୍ବା ସଂପୂର୍ଣ୍ଣ ଲୋପ ପାଇଯାଏ ।

ଚଣ୍ଡୀମନ୍ଦିରର ଅନତି ଦୂରରେ ଥିବା ଶିବ ମନ୍ଦିରର ପଥର ମୂଳଦୁଆ ମଧ୍ୟରୁ ମାଟି କଢ଼ାଯିବା ପରେ ଭୂପତନରୁ ନିମ୍ନରେ ଥିବା ଗର୍ଭଗୃହର ଚଟାଣ ଓ ଅନୁଚ୍ଚ ଶିବଲିଙ୍ଗ ଦୃଶ୍ୟମାନ ହେଲା । ମନ୍ଦିର ଚଟାଣର ଗଭୀରତା ଓ ଲିଙ୍ଗର ଆକାରକୁ ଅନୁଶୀଳନ କରି କୁହାଯାଇପାରେ ଯେ, ଶିବ ମନ୍ଦିରଟି ଚଣ୍ଡୀମନ୍ଦିରର ଯଥେଷ୍ଟ ପୂର୍ବବର୍ତ୍ତୀ । ଏହାବ୍ୟତୀତ ମନ୍ଦିର ପରିସରର ପାଚେରୀ ଓ କେତେକ ଇଟା କୁଦ କାଳକ୍ରମେ ଲୋପ ପାଇଯାଇଛି । ଯାହାକି, ପୂର୍ବେ ଏଠାରେ ଏକାଧିକ ମନ୍ଦିର ଥିବା ସୂଚନା ଦିଏ । ଏହି ପ୍ରାଚୀନ ନିର୍ମାଣର ଭଗ୍ନାବଶେଷ, ଶିବଲିଙ୍ଗ ଓ ବିଭିନ୍ନ ସମୟର ମୂର୍ତ୍ତି ଯଥା : ଭୈରବ, ଆସ୍ତିକଜରତ୍କାରୁ, ଦୁଇ ଚଣ୍ଡୀ ପ୍ରତିମା, ଲକ୍ଷ୍ମୀନାରାୟଣ ଓ ଦୁଇ ବିଷ୍ଣୁ ପ୍ରତିମା ପ୍ରମାଣ କରେ ଯେ, ଏହି ସ୍ଥାନ ଦୀର୍ଘକାଳ ଧରି ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମଧାରାର ଏକ ପ୍ରମୁଖ କେନ୍ଦ୍ର ଥିଲା । ତେବେ, କେନ୍ଦୁଲୀସ୍ଥିତ ଏହି ମୁଖ୍ୟ ମୂର୍ତ୍ତିଗୁଡ଼ିକର କଳାଶୈଳୀ ଓ କାଳ ନିରୂପଣ ଗୁରୁତ୍ୱପୂର୍ଣ୍ଣ ଅଟେ ।


ଲକ୍ଷ୍ମୀନାରାୟଣ, କେନ୍ଦୁଳି

ଶିବଙ୍କ ଉଗ୍ର ରୂପ 'ଭୈରବ' । କେନ୍ଦୁଲୀର ଏହି ପ୍ରକାର ଏକ ମୂର୍ତ୍ତିରେ ସେ ଶବ ଉପରେ ଅଳିଧ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି । ବହୁ ମୂର୍ତ୍ତିରେ ଭୈରବ-ଶିବଙ୍କ ଉର୍ଦ୍ଧ୍ୱଲିଙ୍ଗ ଦେଖାଯାଉଥିବାବେଳେ ଏଠାରେ ଉଲଗ୍ନ ମୂର୍ତ୍ତିର ଲିଙ୍ଗ ନମନୀୟ । ଚତୁର୍ଭୁଜ ମୂର୍ତ୍ତିର ଏକ ଦକ୍ଷିଣହସ୍ତରେ ତ୍ରିଶୂଳ ଓ ଏକ ବାମ ହସ୍ତରେ ଛିନ୍ନମସ୍ତକ ଦେଖାଯାଉଥିବାବେଳେ ଅନ୍ୟ ଦୁଇ ଆୟୁଧ ଭଗ୍ନ ଯୋଗୁଁ ଅସ୍ପଷ୍ଟ । ମୂର୍ତ୍ତିର ମସ୍ତକରେ ଚକ୍ରାକାର କୁଞ୍ଚିତକେଶ, କର୍ଣ୍ଣରେ କୁଣ୍ଡଳ ଗଳାରେ ବଳୟ ଓ ମୁଣ୍ଡମାଳା, ହସ୍ତରେ ବାଜୁବନ୍ଧ ଓ ବଳୟ, କଟିରେ ମେଖଳା ଏବଂ ପାଦରେ ବଳୟ ଓ କିଙ୍କିଣି ଦେଖିବାକୁ ମିଳେ । ଏହାବ୍ୟତୀତ ମୂର୍ତ୍ତି ନିମ୍ନର ଶବାଧାର ସହିତ ଏକ ଶୃଗାଳ ଓ ଉର୍ଦ୍ଧ୍ୱର ବାମ କୋଣରେ ପେଚକଯୁଗଳ ରହିଛି । କନ୍ଦାପଥରରେ ନିର୍ମିତ ମୂର୍ତ୍ତିର ଉଚ୍ଚତା ପ୍ରାୟ ୧.୧୦ ମିଟର ଓ ପ୍ରସ୍ଥ ୦.୫୦ ମିଟର ହୋଇଥିବାବେଳେ ଏହା ଖ୍ରୀ: ୮ମ-୯ମ ଶତାବ୍ଦୀର କୃତି ହୋଇଥିବା ସମ୍ଭବ

ନାଗପୂଜା ପରମ୍ପରା ଅତି ପ୍ରାଚୀନ । ଅନ୍ୟଭାବରେ ଏହା ଶୈବଧର୍ମ ଧାରାର ଏକ ଶାଖା । କେତେକ ପୁରାଣରେ ନାଗମାତା ମନସାଙ୍କୁ ଶିବଙ୍କ ଭଗିନୀ ବୋଲି କୁହାଯାଇଛି । ମହାଭାରତର ଆସ୍ତିକ, ଜରତ୍କାରୁ ଆଖ୍ୟାନ ଲୋକପ୍ରିୟ ହେବାପରେ ଅନେକ ଗ୍ରାମ ଉପକଣ୍ଠର ଶିବମନ୍ଦିର ପରିସରରେ ନାଗମାତା ଜଗତ୍କାରୁ ତାଙ୍କ ପୁତ୍ର ଆସ୍ତିକଙ୍କୁ କୋଳରେ ଧରି ବସିଥିବା ପ୍ରତିମା ପୂଜା ନିମନ୍ତେ ସ୍ଥାପନ କରାଯାଇଥିଲା । କେନ୍ଦୁଲୀର ଏହି ମୂର୍ତ୍ତିରେ ଏକ ସମୀବୃକ୍ଷ ମୂଳେ ନାଗମାତା ଜରତ୍କାରୁ ଆସ୍ତିକଙ୍କୁ କୋଳରେ ଧରି ଲଳିତାସନରେ ବସିଥିବା ଦେଖାଯାଏ । ମାତା, ପୁତ୍ରଙ୍କ ଦେହରେ ପାରମ୍ପରିକ ବସ୍ତ୍ରାଳଙ୍କାର ଶୋଭା ପାଉଥିବାବେଳେ ଦେବୀଙ୍କ ବିଶ୍ୱପଦ୍ମ ଆସନର ନିମ୍ନରେ ଏକ ନାଗ ସମ୍ମୁଖରେ ଜଣେ ଭକ୍ତ ଓ ମୂର୍ତ୍ତିର ଉର୍ଦ୍ଧ୍ୱ ଦୁଇ କୋଣରେ ଉଡ୍‌ଡୀୟମାନ ଅପ୍ସରା, ଗନ୍ଧର୍ବଙ୍କ ମୂର୍ତ୍ତିସହ ଦୁଇ ପାର୍ଶ୍ୱ ପରିଚାରକ, ପରିଚାରିକାଙ୍କ ପିତୁଳା ଅବକ୍ଷୟ ଅବସ୍ଥାରେ ରହିଛି । କନ୍ଦାପଥରରେ ଉତ୍କୀର୍ଣ୍ଣ ମୂର୍ତ୍ତିଟିର ଉଚ୍ଚତା ପ୍ରାୟ ୦.୯୫ ମିଟର ଓ ପ୍ରସ୍ଥ ପ୍ରାୟ ୦.୪୮ ମିଟର ହୋଇଥିବାବେଳେ କଳାଶୈଳୀରୁ ଏହା ଆନୁମାନିକ ଖ୍ରୀ: ୮ମ-୯ମ ଶତାବ୍ଦୀର କୃତି ଅଟେ ।

କେନ୍ଦୁଲୀର ଶାକ୍ତ ମୂର୍ତ୍ତିମାନଙ୍କ ମଧ୍ୟରେ ମନ୍ଦିର ମଧ୍ୟରେ ଅଧିଷ୍ଠାତ୍ରୀ ଦେବୀ ଅମ୍ବିକା ଓ ପୂର୍ବେ ବୃକ୍ଷମୂଳେ ଥିବା ଅମ୍ବାଙ୍କ ମୂର୍ତ୍ତି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଉଭୟ ଦେବୀ ବିଶ୍ୱପଦ୍ମ ଉପରେ କମନୀୟ ପାରାୟଣିକ ଭଙ୍ଗୀରେ ଆସନ ଗ୍ରହଣ କରିଥିବାବେଳେ ପ୍ରତ୍ୟେକଙ୍କ ମସ୍ତକ ଉପରେ ନାଗର ପ୍ରସାରିତ ସପ୍ତଫଣା ଦେଖିବାକୁ ମିଳେ । ଦେବୀମାନଙ୍କ ମସ୍ତକର ଉର୍ଦ୍ଧ୍ୱ ଯୁଡ଼ାରେ ରତ୍ନମାଳାର ବନ୍ଧ, କ୍ଷୁଦ୍ର ଅଳକା ମୁକୁଟ, କର୍ଣ୍ଣରେ କୁଣ୍ଡଳ ଓ କେଉର, ଗଳାରେ ରତ୍ନହାର, ସ୍କନ୍ଧରେ ଦୀର୍ଘ ଉପବିତ, ବାହୁରେ ବାଜୁବନ୍ଧ, ହସ୍ତରେ କଙ୍କଣ,

କଟିରେ ମେଖଳା ଓ ପାଦରେ ନୂପୁର ରହିଛି । ଉଭୟଙ୍କ ଅଳଙ୍କାରର କାରୁକାର୍ଯ୍ୟ ଓ ଶୈଳୀରେ କେତେକ ପାର୍ଥକ୍ୟ ଦେଖାଯାଏ । ଉଭୟ ଦେବୀ ଦ୍ୱିଭୁଜା ଓ ପ୍ରତ୍ୟେକଙ୍କ ବାମ ହସ୍ତରେ ଗୋଟିଏ ଲମ୍ବବୃନ୍ତଯୁକ୍ତ ପ୍ରସ୍ଫୁଟିତ ପଦ୍ମ ରହିଥିବାବେଳେ ଅମ୍ବିକା ଦକ୍ଷିଣ ହସ୍ତରେ ବୃନ୍ତଯୁକ୍ତ ପାଞ୍ଚଗୋଟି ଆମ୍ରକଳିକା ଓ ଅମ୍ବା ସେହି ହସ୍ତରେ ବୀଜପୂରକ ଧାରଣ କରିଛନ୍ତି । ମୂର୍ତ୍ତିଦ୍ୱୟର ଉର୍ଦ୍ଧ୍ୱ ଦୁଇ କୋଣରେ ଉଡ୍‌ଡ଼ୀୟମାନ ଅପ୍‌ସରା ଓ ଗନ୍ଧର୍ବଙ୍କ ପିତୁଳା ରହିଥିବାବେଳେ ଅମ୍ବିକାଙ୍କ ଆସନ ନିମ୍ନରେ କେତେକ ଭକ୍ତ, ନୃତ୍ୟାଙ୍ଗନାଙ୍କ ସମେତ ଏକ ସିଂହର ମୂର୍ତ୍ତି ଉତ୍କୀର୍ଣ୍ଣ ହୋଇଛି । ଅମ୍ବାଙ୍କ ଆସନ ତଳେ ପୂଜା ସାମଗ୍ରୀସହ କେବଳ କେତେକ ଭକ୍ତ ଉଭା ହୋଇଥିବା ଦେଖାଯାଏ ।


ଅମ୍ବା,କେନ୍ଦୁଳି

ପୂର୍ବେ ସ୍ଥାନୀୟ ଲୋକେ ମନ୍ଦିରର ଅଧିଷ୍ଠାତ୍ରୀ ଦେବୀଙ୍କୁ ଚଣ୍ଡୀ ଓ ବୃକ୍ଷମୂଳେ ଥିବା ଦେବୀଙ୍କୁ ଯାଗେଶ୍ୱରୀ ବା ଯଜ୍ଞେଶ୍ୱରୀ ବୋଲି ନାମିତ କରିଥିଲେ । ପରବର୍ତ୍ତୀ ସମୟରେ ଏହି ନାମରେ ପରିବର୍ତ୍ତନ ଘଟିଛି । ପ୍ରଥମ ଦେବୀଙ୍କ ଆସନ ନିମ୍ନରେ ସିଂହ ଥିବାରୁ ସେ ପାର୍ବତୀ ବା ଅମ୍ବିକା ହୋଇପାରନ୍ତି । ଅନ୍ୟ ଦେବୀଙ୍କ ନାମ ରଖାଯାଇଛି 'ଅମ୍ବା' ବା ମାତା । ଉଲ୍ଲେଖଯୋଗ୍ୟ ଯେ, କେନ୍ଦୁଳୀର ମନ୍ଦିର ପରିସରରେ ଥିବା ଏକାଧିକ ଯୂପସ୍ତମ୍ଭ ପୂର୍ବେ ଏହି ସ୍ଥାନ ଯଜ୍ଞାନୁଷ୍ଠାନର ଏକ ପୀଠ ଥିବା ସୂଚନା ଦିଏ । ଏଣୁ ଏହି ଦେବୀଙ୍କ ନାମ ଯାଗେଶ୍ୱରୀ ମଧ୍ୟ ସମୀଚୀନ ମନେହୁଏ । ତେବେ, ଦୁଇ ଦେବୀଙ୍କ ମୂର୍ତ୍ତିତତ୍ତ୍ୱ ପାର୍ବତୀ ଓ ତାଙ୍କ ନାମନ୍ତର ଦେବୀମାନଙ୍କ ମୂର୍ତ୍ତିତତ୍ତ୍ୱଠାରୁ ଭିନ୍ନ । ଏହି ସ୍ୱତନ୍ତ୍ର ପରିକଳ୍ପିତ ମସୃଣ ମୂର୍ତ୍ତିଦ୍ୱୟର କଳାଶୈଳୀ ଉଚ୍ଚକୋଟୀର । ମୁଖମଣ୍ଡଳ ଓ ଶରୀର ଗଠନର ପାର୍ଥକ୍ୟ ଯୋଗୁଁ ପ୍ରତିମାଦ୍ୱୟ ଏକ ସମୟର ହେଲେହେଁ ଭିନ୍ନ ଭିନ୍ନ ଶିଳ୍ପୀଙ୍କ ଦ୍ୱାରା ନିର୍ମିତ ବୋଲି ପ୍ରତୀୟମାନ ହୁଏ । ଏହା ମଧ୍ୟରେ ଅମ୍ବିକାଙ୍କ ମୂର୍ତ୍ତିର ଉଚ୍ଚତା ପ୍ରାୟ ୧,୦୫ ମିଟର ଓ ପ୍ରସ୍ତ ୦.୫୧ ମିଟର ହୋଇଥିବାବେଳେ ଅମ୍ବାଙ୍କ ମୂର୍ତ୍ତିର ଉଚ୍ଚତା ପ୍ରାୟ ୧.୦୭ ମିଟର ଓ ପ୍ରସ୍ଥ ୦.୫୫ ମିଟର ଅଟେ ।

ବୈଷ୍ଣବ କବି ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଳୀର ବିଭିନ୍ନ ସମୟରେ ତିନୋଟି ବିଷ୍ଣୁ ପ୍ରତିମା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏଠାର ପ୍ରଥମ ମୂର୍ତ୍ତିରେ ନାରାୟଣ ବିଶ୍ୱପଦ୍ମ ଉପରେ ଯୋଗାସନରେ ବସିଥିବାବେଳେ ତାଙ୍କ ଦୁଇ ଜାନୁରେ ଭୂଦେବୀ ଓ ଶ୍ରୀଦେବୀ ଆସନ ଗ୍ରହଣ କରିଛନ୍ତି । କିଞ୍ଚିତ୍ ପୃଥୁଳ ଶରୀର, ଚତୁର୍ଭୁଜ ଦେବତାଙ୍କ ଉପରେ ଦକ୍ଷିଣ ହସ୍ତରେ ପଦ୍ମ, ତଳ ହସ୍ତରେ ଶଙ୍ଖ, ଉପର ବାମ ହସ୍ତରେ ଗଦା ଓ ତଳ ହସ୍ତରେ ଚକ୍ର ରହିଛି । କୃତିଟିର ଉପର କେତେକାଂଶ ଭଗ୍ନ ହେଲେହେଁ ପ୍ରଚ୍ଛଦରେ ମାଳା ସଦୃଶ ଏକ ତୋରଣ ଓ ଉର୍ଦ୍ଧ୍ୱକୋଣ ଦ୍ୱୟରେ ଉଡ୍‌ଡ଼ୀୟମାନ ଅପ୍‌ସରା ଓ ଗନ୍ଧର୍ବଙ୍କ ପିତୁଳା ଥିବା ସୂଚନା ମିଳେ । ମୂର୍ତ୍ତିଟିର ବିଶେଷତ୍ୱ ଏହିକି, ବେଦର କେତେକ ସ୍ଥାନରେ ବିଷ୍ଣୁଙ୍କୁ 'ଯକ୍ଷ ବୋଲି ଉଲ୍ଲେଖ କରାଯାଇଛି । ଯକ୍ଷମାନେ ଖର୍ବକାୟ ଓ ପୃଥୁଳ ଅଟନ୍ତି । ଏଣୁ ଭାରତର ବିଭିନ୍ନ ପ୍ରାନ୍ତର ଅତି ପ୍ରାଚୀନ ମୂର୍ତ୍ତିଗୁଡ଼ିକରେ ବିଷ୍ଣୁଙ୍କ ଶରୀର ପୃଥୁଳ । ତେବେ, ଦୁଇ ପତ୍ନୀଙ୍କ ସହ ଏହି ପ୍ରକାର ଯୋଗାସନ ବିଷ୍ଣୁ ପ୍ରତିମା ବିରଳ କହିଲେ ଅତ୍ୟୁକ୍ତି ହେବନାହିଁ । ପ୍ରାୟ ୦.୩୫ ମିଟର ଉଚ୍ଚତା ଓ ୦.୧୭ ମିଟର ପ୍ରସ୍ଥ ବିଶିଷ୍ଟ ପ୍ରତିମା ଗୁପ୍ତକାଳୀନ ହୋଇଥିବା ସମ୍ଭବ ।

ଲାଲ୍ କନ୍ଦାପଥରରେ ନିର୍ମିତ କେନ୍ଦୁଳୀର ଦ୍ୱିତୀୟ ବିଷ୍ଣୁ ପ୍ରତିମାଟିର ଅପରିପକ୍ୱ କଳାଶୈଳୀରୁ ଖ୍ରୀ: ୭ମ-୮ମ ଶତାବ୍ଦୀର କୃତିଭଳି ମନେହୁଏ । ସ୍ଥାନକ ମୂର୍ତ୍ତିରେ ବିଷ୍ଣୁ ସମଭଙ୍ଗୀରେ ଦଣ୍ଡାୟମାନ ହୋଇଥିବାବେଳେ ତାଙ୍କ ଉପର ଦକ୍ଷିଣହସ୍ତରେ ଚକ୍ର, ତଳହସ୍ତରେ ପଦ୍ମ, ଉପର ବାମହସ୍ତରେ ଶଙ୍ଖ ଓ ତଳହସ୍ତରେ ଗଦା ରହିଛି । ପ୍ରାଚୀନ ଶୈଳୀ ବସ୍ତ୍ରଭୂଷଣରେ ତାଙ୍କ ମସ୍ତକରେ କିରୀଟମୁକୁଟ, କର୍ଣ୍ଣରେ କୁଣ୍ଡଳ, କଣ୍ଠରେ ରତ୍ନହାର ଓ ବନମାଳ ସ୍କନ୍ଧରେ ଯଜ୍ଞୋପବିତ ଓ ଉତ୍ତରୀୟ, ବାହୁରେ ବାଜୁବନ୍ଧ, ହସ୍ତରେ କଙ୍କଣ, କଟିର ବସ୍ତ୍ର ଉପରେ କଟିସୂତ୍ର ଏବଂ ପାଦରେ ନୂପୁର ଦେଖିବାକୁ ମିଳେ । ମସ୍ତକର ପ୍ରଚ୍ଛଦରେ ସରଳ ଅଣ୍ଡାକୃତି ପ୍ରଭାମଣ୍ଡଳର ଦୁଇ ପାର୍ଶ୍ୱରେ ଉଡ୍‌ଡ଼ୀୟମାନ ଅପ୍‌ସରା ଓ ଗନ୍ଧର୍ବଙ୍କ ପିତୁଳା ସ୍ଥାନିତ ହୋଇଛି । ଏହାବ୍ୟତୀତ ବିଷ୍ଣୁଙ୍କ ଦୁଇ ବାମା, ଭୂ-ଦେବୀ ଓ ଶ୍ରୀଦେବୀ ତାଙ୍କୁ ଦୁଇ ପାର୍ଶ୍ୱରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି । ଗରୁଡ଼ ବାହନ ବିହୀନ ଏହି କୃତିଟି ନିଶ୍ଚିତଭାବେ ପ୍ରାଚୀନ ।

ନବତାଳ ମାନରେ ଉତ୍କୀର୍ଣ୍ଣ କେନ୍ଦୁଳୀର ତୃତୀୟ ବିଷ୍ଣୁ ପ୍ରତିମାଟି ସମ୍ପୂର୍ଣ୍ଣ ବିକଶିତ କଳାଶୈଳୀର ଅଟେ । ଏଠାରେ ଚତୁର୍ଭୁଜ ଦେବତା ବିଶ୍ୱପଦ୍ମ ଉପରେ ସମଭଙ୍ଗୀରେ ଦଣ୍ଡାୟମାନ ହୋଇଥିବାବେଳେ ପୂର୍ବ ମୂର୍ତ୍ତିଭଳି ତାଙ୍କ ହସ୍ତର ଆୟୁଧ ଓ ବେଶଭୂଷାର ମୌଳିକତାରେ କୌଣସି ପରିବର୍ତ୍ତନ ଘଟିନାହିଁ ।

କିନ୍ତୁ ଏଗୁଡ଼ିକର କାରୁକଳା ଉଚ୍ଚକୋଟୀର । ମୂର୍ତ୍ତିର ପ୍ରଚ୍ଛଦ ମକରତୋରଣର ଊର୍ଦ୍ଧ୍ୱରେ ଶିବ ଓ ବ୍ରହ୍ମାଙ୍କ ମୂର୍ତ୍ତିସହିତ ଗନ୍ଧର୍ବ, ଅପ୍ସରା, ବାଦକ, ବାଦିକା ଓ ନର୍ତ୍ତକୀଙ୍କ ପିତୁଳାମାନ ଦେଖିବାକୁ ମିଳେ । ଏହାବ୍ୟତୀତ ବିଷ୍ଣୁଙ୍କ ଦୁଇପାର୍ଶ୍ୱରେ ଭୂ-ଦେବୀ, ଶ୍ରୀଦେବୀ ଓ ଦୁଇ ପରିଚାରିକା ତ୍ରିଭଙ୍ଗୀ ଠାଣୀରେ ଦଣ୍ଡାୟମାନ ହୋଇଥିବାବେଳେ ନିମ୍ନର ଦକ୍ଷିଣ ପାର୍ଶ୍ୱରେ ଦୁଇ ଭକ୍ତ ଓ ବାହନ ପକ୍ଷୀରାଜ ଗରୁଡ଼ ନତଯାନୁସହ ନମସ୍କାର ମୁଦ୍ରାରେ ଉଭା ହୋଇଛନ୍ତି । କଳା ମୁଗୁନି ପଥରରେ ନିର୍ମିତ ଖ୍ରୀ:୧୨ଶ-୧୩ଶ ଶତାବ୍ଦୀର ଏହି ମସୃଣ କୃତିଟିର ଉଚ୍ଚତା ପ୍ରାୟ ୦.୮୦ ମିଟର ଓ ପ୍ରସ୍ଥ ପ୍ରାୟ ୦.୩୮ ମିଟର ଅଟେ ।

ଦକ୍ଷିଣରୁ ଆଗତ ଗଙ୍ଗ ଶାସକମାନଙ୍କ ସମୟରେ ଓଡ଼ିଶାରେ ନୃସିଂହ ଓ ଲକ୍ଷ୍ମୀନୃସିଂହଙ୍କ ପୂଜାର ପ୍ରସାର ଘଟିଥିଲା । କେନ୍ଦୁଲୀ ଗ୍ରାମର ଦକ୍ଷିଣ ସୀମାରେ ଥିବା ପୋଖରୀ ମଧ୍ୟରୁ ପ୍ରାପ୍ତ ଏକ ତାମ୍ରପତ୍ର ଲେଖରୁ ଜଣାଯାଏ ଯେ, ସେଠାରେ ଥିବା ତତ୍କାଳୀନ ଜଗନ୍ନାଥ ବିଗ୍ରହଙ୍କ ଅମୃତ ମଣୋହି ନିମନ୍ତେ ଗଙ୍ଗ ସମ୍ରାଟ ୪ର୍ଥ, ନରସିଂହ ଦେବ ଖ୍ରୀ: ୧୪ଶ ଶତାବ୍ଦୀରେ କିଛି ଗ୍ରାମ ଓ ଭୂସଂପତ୍ତି ଦାନ କରିଥିଲେ । ଏହାର ପ୍ରମାଣ ସ୍ୱରୂପ ପୋଖରୀ ନିକଟରେ ଏକ ଭଗ୍ନ ମନ୍ଦିର ଓ ମଠ ରହିଥିଲା ଓ ଏଠାରେ ଗୋଟିଏ ବିଷ୍ଣୁ ଓ ଦୁଇ ନୃସିଂହ ପ୍ରତିମା ପୂଜା ପାଉଥିଲେ । ପ୍ରାଚୀନ ମନ୍ଦିର ସ୍ଥାନରେ ଗ୍ରାମବାସୀ ଓ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଏକ ନୂତନ ମନ୍ଦିର ନିର୍ମାଣ କରିଥିବାବେଳେ ମଠଟି ଜୀର୍ଣ୍ଣାବସ୍ଥାରେ ରହିଛି । ଏଠାର ବିଷ୍ଣୁ ପ୍ରତିମାର ମୂର୍ତ୍ତିତତ୍ତ୍ୱ କେନ୍ଦୁଲୀର ଅନ୍ୟ ଦୁଇ ବିଷ୍ଣୁ ପ୍ରତିମା ଅନୁରୂପ ହୋଇଥିବାବେଳେ, ଦୁଇଟି ନୃସିଂହ ବିଗ୍ରହ ମଧ୍ୟରୁ ଗୋଟିଏ କାଶ୍ୟପୁବିଦାରଣ-ନୃସିଂହ ଓ ଅନ୍ୟଟି ଯୋଗାସନରେ ଥିବା ଲକ୍ଷ୍ମୀନୃସିଂହ ଅଟନ୍ତି । ଏହି ତିନୋଟି ପ୍ରତିମା ଗଙ୍ଗକାଳୀନ ଅଟେ ।

ଉପରୋକ୍ତ ଅଧ୍ୟୟନରୁ ଜଣାଯାଏ ଯେ, କେନ୍ଦୁଲୀରେ ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମର ସମନ୍ୱୟତା ସତ୍ତ୍ୱେ ଦୀର୍ଘ ଏକ ହଜାର ବର୍ଷରୁ ଅଧିକ କାଳ ଏଠାରେ ବୈଷ୍ଣବଧର୍ମର ବଳିଷ୍ଠ ପ୍ରଭାବ ରହିଥିଲା । **ଜୟଦେବଙ୍କ ପୂର୍ବପୁରୁଷ ବୈଷ୍ଣବ ଥିବା ସମ୍ଭବ । ଅଦ୍ୟାବଧି ପ୍ରାଚୀନଦୀ ଅବବାହିକାର ବହୁ ଗ୍ରାମରେ ବୈଷ୍ଣବ ସଂପ୍ରଦାୟର ଲୋକେ ବସବାସ କରନ୍ତି । ପୂର୍ବ ତଥ୍ୟ ଅନୁଯାୟୀ ଜୟଦେବଙ୍କ ସମୟରେ କେନ୍ଦୁଲୀ ଗ୍ରାମରେ ବିଷ୍ଣୁପୂଜା ସମେତ ଜଗନ୍ନାଥଙ୍କ ପୂଜା ମଧ୍ୟ ପ୍ରଚଳନ ଥିଲା । ଏଣୁ ସାଧୁପ୍ରଧାନ, ଜୟଦେବ ବିଷ୍ଣୁ-ମାଧବ ଓ ଜଗନ୍ନାଥଙ୍କ ଭକ୍ତିରେ ଉଦ୍‌ବୁଦ୍ଧ ଓ ଅନୁପ୍ରାଣୀତ ହୋଇ ତାଙ୍କ ଅମର କୃତି ଶ୍ରୀ ଗୀତଗୋବିନ୍ଦ ରଚନା କରିଥିଲେ ।**

ଏମ୍.ବି.-୮୩, ବ୍ରିଟ୍ ବଡ଼ଗଡ଼
ଭୁବନେଶ୍ୱର- ୭୫୧୦୧୮



# ଗୀତଗୋବିନ୍ଦ ଓ ଜୟଦେବ

ବୈକୁଣ୍ଠନାଥ ପ୍ରଧାନ

**କ**ଳିତ ଲଳିତ ପଦ୍ୟାବଳୀ ସଂଯୁକ୍ତ ଭୂବନ ବିଖ୍ୟାତ ସଂସ୍କୃତ ଗୀତିକାବ୍ୟର ରଚୟିତା କବି ଜୟଦେବ ଓଡ଼ିଶା ମାଟିରେ ଜନ୍ମ ଗ୍ରହଣ କରିଥିଲେ ହେଁ କେତେକ ସମାଲୋଚକ ଜୟଦେବଙ୍କୁ ବଙ୍ଗାଳୀ ବୋଲି ପ୍ରମାଣିତ କରିବାପାଇଁ ଭ୍ରମାତ୍ମକ ଓ ଅବାନ୍ତର ଯୁକ୍ତି କରି ଆସୁଛନ୍ତି । ଜୟଦେବ ତାଙ୍କ ସ୍ୱରଚିତ ଗୀତଗୋବିନ୍ଦ କାବ୍ୟରେ ନିଜ ଜନ୍ମସ୍ଥାନ କେନ୍ଦୁବିଲ୍ୱ ବୋଲି ଉଲ୍ଲେଖ କରିଛନ୍ତି ।



‘ବର୍ଣ୍ଣିତ ଜୟଦେବ କେନ ହରେ
ରିଦଂ ପବଣେନ,
କେନ୍ଦୁବିଲ୍ୱ ସମୁଦ୍ର ସମ୍ଭବ ରୋହିଣୀ ରମଣେନ ।’

ଯେହେତୁ ଜୟଦେବ ତାଙ୍କ କାବ୍ୟ ବର୍ଣ୍ଣିତ କେନ୍ଦୁବିଲ୍ୱ କେଉଁଠାରେ ଅବସ୍ଥିତ ବୋଲି ଲେଖି ନାହାନ୍ତି, ତେଣୁ କେତେକ ଚକ୍ରାନ୍ତକାରୀ ଏହା ବଙ୍ଗଳାରେ ଅବସ୍ଥିତ ବୋଲି କହି ଆସୁଛନ୍ତି । ବଙ୍ଗଳା ସାହିତ୍ୟର ଲେଖକ ସ୍ୱର୍ଗତ ରମେଶ ଚନ୍ଦ୍ର ଦତ୍ତଙ୍କ ଲେଖାକୁ ଭିତ୍ତିକରି ଯୁକ୍ତି କରାଯାଉଛି ଯେ ପଶ୍ଚିମବଙ୍ଗର ବୀରଭୂମ ଜିଲ୍ଲାର ଅଜୟନଦୀ କୂଳବର୍ତ୍ତୀ କେନ୍ଦୁଲି ଗ୍ରାମ ଏବଂ ପୋଷ୍ଟ ଅଫିସ ତଥା ଟେଲିଫୋନ ଅଫିସର ନାମ ଜୟଦେବ କେନ୍ଦୁଲି । ସେହି ଗ୍ରାମଟିର ନାମ ବହୁ ଆଗରୁ କେନ୍ଦୁଲି ଥିଲାବୋଲି କେତେକ ଯୁକ୍ତି ଦର୍ଶାଉ ଥିଲେ ହେଁ ଏବେ ତାର ନାମ ବଦଳିଯାଇ ଜୟଦେବ ହୋଇଅଛି । ବୋଲିପୁର ବସଷ୍ଟାଣ୍ଡରୁ ଇଲାମ ବଜାର ଦେଇ ଯେଉଁ ରାସ୍ତା ସେଇ ଗାଁ ଆଡ଼କୁ ଯାଇଛି, ସେଇ ଛକର ନାମ ଜୟଦେବ ରଖାଯାଇଛି । ପ୍ରତିବର୍ଷ ମକର ସଂକ୍ରାନ୍ତି ଦିନ ସେଠାରେ ‘ଜୟଦେବ ମେଳା’ ହୁଏ । ମାତ୍ର, ଜୟଦେବ ଯେ ଓଡ଼ିଶାର ଏବଂ ସେ ଜଣେ ଯେ ଓଡ଼ିଆ, ନିମ୍ନଲିଖିତ ଗବେଷକମାନଙ୍କ ବିବରଣୀରୁ ତାହା ସ୍ପଷ୍ଟ ପ୍ରତୀୟମାନ ହୁଏ ।

୧. He was an Oriya Brahmin and lived in the twelvth century. (P. Samba Murty, Head of the Deptt., Indian Music University, Madras).

୨. ଭୂବନ ବିଦିତ ‘ଗୀତଗୋବିନ୍ଦ’ର ରଚୟିତା ଜୟଦେବ ଉତ୍କଳୀୟ ବ୍ରାହ୍ମଣ ଦେବ ବଂଶୀୟ ଏବଂ ରାଜକବି ଥିଲେ ।

(ଶ୍ରୀ ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ - କେଦାର ନାଥ ମହାପାତ୍ର)

୩. ପ୍ରତିଭାର ପ୍ରସାର ଓ ପ୍ରଚାର ଅଭାବରୁ ଏବଂ ସମରକ୍ଳାନ୍ତ ଓଡ଼ିଆ ଜାତି ନିଦ୍ରିତ ଥିବାବେଳେ ପାଶ୍ଚାତ୍ୟ ଅଭିମୁଖୀ ନଥିବା ହେତୁ ରାଜକବି ଜୟଦେବ ପ୍ରମାଦବଶରେ ଅଣ ଓଡ଼ିଆ ଭାବରେ ଚିହ୍ନିତ ହେଉଥିଲେ ମଧ୍ୟ ସେ ଜଣେ ଖାଣ୍ଟି ଓଡ଼ିଆ । (ଉତ୍କଳ ଇତିହାସରେ ଏକ ଅଜ୍ଞାତ ଅଧ୍ୟାୟ - ଚକ୍ରଧର ମହାପାତ୍ର)

୪. ଶ୍ରୀଜଗନ୍ନାଥ କ୍ଷେତ୍ର ସମୀପ ଜାଣ
କେନ୍ଦୁବିଲ୍ୱ ଗ୍ରାମ ନାମାଭିଧାନ
ତୁ ଜୟଦେବ ରୂପଂ ଅବତାର
ଘେନି କରି ଜନାଂଚ ଉଦ୍ଧାର

(ମହୀପତି)

୫. କେନ୍ଦୁବିଲ୍ୱ ଗ୍ରାମ ତାମୈଭୟ କବି ରାଜରାଜ
ଭଖ୍ୟୋ ରସରାଜ ସ୍ମୃତୟ ମନ ମନ ଚାଖିୟେ
କହୀ ଜେବେଁ ବିପ୍ରସୁତା ଜଗନ୍ନାଥ ଦେବ
ଜୁଙ୍କୋଭୟୋ ଜନସମେ ଚଲ୍ୟୋଖା ଜୈନ ପ୍ରଭୁ ରଖିୟେ ।

(ଗୁରୁ ନାରାଜୀ)

୬. ପ୍ରଖ୍ୟାତ ଗବେଷକ ତଥା ଏସିୟାଟିକ ସୋସାଇଟିର ପ୍ରତିଷ୍ଠାତା ସାର୍ ଉଇଲିୟମ୍ ଜୋନସ୍ ତାଙ୍କର 'ଏସିୟାଟିକ୍ ରିସର୍ଚ୍ଚ' ପତ୍ରିକାରେ ୧୭୯୪ରେ ଲେଖିଛନ୍ତି -

"The Loves of Krishna & Radha are subject of a little pastoral drama entitled 'Gita Govinda'. It was the work of Jaydev, who was born, he tells himself, in Kenduli which may be believed to be in Kalinga."

୭. ସଂସ୍କୃତ ସାହିତ୍ୟର ଇତିହାସରେ ଲେଖକ ପଣ୍ଡିତ ବରଦାଚାରୀ ମହୋଦୟ ଜୟଦେବଙ୍କ ଜନ୍ମସ୍ଥାନ ବିଷୟରେ ତାଙ୍କ ଇତିହାସ ଗ୍ରନ୍ଥରେ ଲେଖିଛନ୍ତି -

"He (Jaydev) is the author of a Lyric 'Gita Gobinda' twelve cantos. He was born in Kendu Vilya, a place of Orissa."

ବଙ୍ଗଳା ସାହିତ୍ୟର ଇତିହାସ ପୁସ୍ତକରେ ପ୍ରଖ୍ୟାତ ବଙ୍ଗାଳୀ ଗବେଷକ ଡକ୍ଟର ସୁକୁମାର ସେନ୍ ଲେଖିଛନ୍ତି -

ଓଡ଼ିଶାର ପୁରୀର ଅନତିଦୂରରେ ପ୍ରାଚୀ ନଦୀ କୂଳରେ କେନ୍ଦୁବିଲ୍ୱ ଗ୍ରାମ ଅଛି । ମନେ ହୁଏ ଯେ ଗୀତଗୋବିନ୍ଦର ଛନ୍ଦ ଆଦିରସ, ଓଡ଼ିଶାର ମନ୍ଦିରରେ ଗୋଟିଏ ପ୍ରକାରର ସ୍ଥାପତ୍ୟରୁ ଶିଳ୍ପ ରୂପେ ପ୍ରତିଫଳନ, ସୁତରାଂ ଜୟଦେବ ଓଡ଼ିଶା ନିବାସୀ ହୋଇଥିବେ ।

୯. ଅନ୍ତଃରାଷ୍ଟ୍ରୀୟ ଖ୍ୟାତି ସମ୍ପନ୍ନା ଗବେଷିକା ଡକ୍ଟର କପିଳା ବାତ୍ସାୟନ 'ଭାରତୀୟ ଭାଷା ପରିଷଦ' ପକ୍ଷରୁ ପ୍ରକାଶିତ 'ସନ୍ଦର୍ଭ ଭାରତୀ' ପତ୍ରିକାର ଅଗ୍ରଲେଖାରେ ଜୟଦେବ ଓଡ଼ିଶାରେ ଜନ୍ମ ଗ୍ରହଣ କରିଥିବା ଉଲ୍ଲେଖ କରିଛନ୍ତି ।

୧୦. ପ୍ରସିଦ୍ଧ ବଙ୍ଗାଳୀ ଗବେଷକ ସ୍ୱର୍ଗତ ଡକ୍ଟର ଆଶୁତୋଷ ଭଟ୍ଟାଚାର୍ଯ୍ୟ ୧୯୬୯ ମସିହା ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ ଆୟୋଜିତ ବିଷୁବ ମିଳନ ଭାଷଣରେ ସ୍ପଷ୍ଟ କହିଛନ୍ତି -

'ମୁଁ ଏଠାକୁ ଆସି ଆପଣଙ୍କ ସମ୍ମୁଖରେ ଭାଷଣ ଦେଉଛି ବୋଲି କହୁ ନାହିଁ । ଜଣେ ଗବେଷକ ହିସାବରେ ମୁଁ ଦୃଢ଼ତାର ସହିତ କହୁଛି ଯେ ଜୟଦେବଙ୍କ ଜନ୍ମ ଓଡ଼ିଶାରେ, ତେଣୁ ବଙ୍ଗଳାରେ ତାଙ୍କ ଜନ୍ମ ବୋଲି ଯାହା କୁହାଯାଉଛି, ସେଥିରେ ଐତିହାସିକ ପ୍ରମାଣ କିଛି ନାହିଁ ।'

୧୧. ବାରାଣସୀ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରଫେସର ପ୍ରଖ୍ୟାତ ପଣ୍ଡିତ ଆଚାର୍ଯ୍ୟ ଶେଷରାଜ ଶର୍ମା ଜୟଦେବ କୃତ 'ପ୍ରସନ୍ନ ରାଘବ' ନାଟକର ମୁଖବନ୍ଧରେ ଲେଖିଛନ୍ତି -

'ସଂସ୍କୃତ ସାହିତ୍ୟେ ଜୟଦେବ ନାମଧେୟ ଭାଜୋ ବହବୋ ବିପଣ୍ଡିତ ସଂଜାତା । ତତ୍ରୈବ ସ୍ତାବତ୍ ଗୀତଗୋବିନ୍ଦ କରୋ ଜୟଦେବ ସଚ ଉତ୍କଳଦେଶୀୟ ଆସିତ୍ ।'

୧୨. ହିନ୍ଦୀ ସାହିତ୍ୟର ପ୍ରଖ୍ୟାତ ଗବେଷକ ଡକ୍ଟର ପର୍ଶୁରାମ ଚତୁର୍ବେଦୀ କବି ଜୟଦେବଙ୍କ ଜନ୍ମସ୍ଥାନ ଉତ୍କଳର ପ୍ରାଚୀ ନଦୀ କୂଳସ୍ଥ କେନ୍ଦୁବିଲ୍ୱ ବୋଲି 'ଉତ୍ତର ଭାରତକା ସନ୍ଥ ପରମ୍ପରା'ରେ ଲିପିବଦ୍ଧ କରିଛନ୍ତି ।

୧୩. କେରଳର ପ୍ରଖ୍ୟାତ କବି ତଥା ସଂଗୀତକାର ଶ୍ରୀ ଜନାର୍ଦ୍ଦନ ନାଡୁଗାଡ଼ଡ଼୍ୟ 'ମହାକବି ଶ୍ରୀ ଜୟଦେବ ରୂତେ ଚରିତ୍ରମ୍' ପୁସ୍ତକର ମୁଖବନ୍ଧରେ କବି ଜୟଦେବ ଜଗନ୍ନାଥ କ୍ଷେତ୍ର ନିକଟସ୍ଥ କେନ୍ଦୁବିଲ୍ୱ ଗ୍ରାମବାସୀ ବୋଲି ସ୍ପଷ୍ଟ ଭାବେ ଦର୍ଶାଇଛନ୍ତି ।

୧୪. ମୈଥିଳୀ ପଣ୍ଡିତ ଚନ୍ଦ୍ରଦତ୍ତଙ୍କ ଦ୍ୱାରା ଷୋଡ଼ଶ ଶତାବ୍ଦୀରେ ସଂସ୍କୃତ ଭାଷାରେ ଲେଖାଯାଇଥିବା 'ଭକ୍ତିମାଳା' ପୁସ୍ତକରେ ଭାରତର ବହୁ ବିଶିଷ୍ଟ ଭକ୍ତ କବିଙ୍କ ଜୀବନ ବୃତ୍ତାନ୍ତ ସହିତ ଜୟଦେବ ଜୀବନ ଚରିତ ମଧ୍ୟ ବର୍ଣ୍ଣନା କରାଯାଇଛି ।

'ଜଗନ୍ନାଥ ପୁରୀ ପ୍ରାନ୍ତେ
ଦେଶେ ଚୈବୋତ୍କଳାଭିଧେ
କେନ୍ଦୁବିଲ୍ୱ ଇତି ଖ୍ୟାତୋ
ଗ୍ରାମେ ବ୍ରାହ୍ମଣ ସଙ୍କୁଳଃ
ତତ୍ରୋତ୍କଳେ ଦ୍ୱିଜୋଜାତୋ
ଜୟଦେବ ଇତି ଶ୍ରୁତଃ
ବେଦାଃଭ୍ୟାସ ରତଃ ଶାନ୍ତଃ
ପୁରୁଷୋତ୍ତମ ପୂଜକଃ
ନିବେଦ୍ୟକୃତ କେତ୍ୟାଭୁତ୍
ଜୟଦେବୋ ମହାମନାଃ ।'

ପଶ୍ଚିମବଙ୍ଗର ବୀରଭୂମ ଜିଲ୍ଲାର ତଥାକଥିତ ଜୟଦେବ ଗ୍ରାମସ୍ଥିତ ଜୟଦେବ ମନ୍ଦିର ସହିତ ଜୟଦେବଙ୍କର କୌଣସି ସମ୍ପର୍କ ନାହିଁ କିମ୍ବା ଏ ସ୍ଥାନରେ ଅନୁଷ୍ଠିତ ହେଉଥିବା ବୈଷ୍ଣବ ମେଳା ସହିତ ମଧ୍ୟ ଜୟଦେବଙ୍କ ମୂଳ ଓଡ଼ିଶା ଜନ୍ମସ୍ଥାନ କେନ୍ଦୁବିଲ୍ୱ ଗ୍ରାମର କୌଣସି ସମ୍ପର୍କ ନାହିଁ । ଏହି ବୈଷ୍ଣବ ମେଳା ପଶ୍ଚିମ ବଙ୍ଗଳାର ବା ଭଲ ସମ୍ପ୍ରଦାୟର ତଥାକଥିତ ଏକ ବାର୍ଷିକ ମେଳା । ପ୍ରକୃତରେ ତାହା

ଜୟଦେବଙ୍କ ବୈଷ୍ଣବ ମେଳା ନୁହେଁ । ସୁତରାଂ, ଏ ଯୁକ୍ତି ଭିତ୍ତିରେ ଜୟଦେବଙ୍କ ଜନ୍ମସ୍ଥାନ ପଶ୍ଚିମ ବଙ୍ଗଳାର ବୀରଭୂମ ଜିଲ୍ଲାରେ କହିବା ସମ୍ପୂର୍ଣ୍ଣ ଅବାନ୍ତର । ଏହି ମେଳା ସମ୍ପର୍କରେ ପ୍ରସିଦ୍ଧ ବଙ୍ଗଳା ଐତିହାସିକ ଡକ୍ଟର ସୁକୁମାର ସେନ ତାଙ୍କ 'ବଙ୍ଗଳା ସାହିତ୍ୟର ଇତିହାସ' ଗ୍ରନ୍ଥରେ ଲେଖିଛନ୍ତି - 'ଅଜୟାକୂଳରେ ବାଲୁକାମୟ ପ୍ରାନ୍ତରରେ ପୌଷ ସଂକ୍ରାନ୍ତି ଦିନ ହେଉଥିବା ମେଳା ନିକଟରେ ଯେଉଁ ଗ୍ରାମ ଅଛି, ତାହା କେନ୍ଦୁଲି ନୁହେଁ । ଏଠାରେ କେନ୍ଦୁଲି ଗ୍ରାମ ଥିଲା ବୋଲି କିଛି ପ୍ରମାଣ ମଧ୍ୟ ନାହିଁ । ଚୈତନ୍ୟଙ୍କ ସମୟରେ ଜୟଦେବ ସ୍ମୃତି ସମ୍ବଳିତ ଏ ମେଳାର କୌଣସି ଉଲ୍ଲେଖ ନାହିଁ ଏବଂ ଜୟଦେବ ଜନ୍ମସ୍ଥାନ ବା ବାସସ୍ଥାନ ରୂପେ କେନ୍ଦୁଲି ବା ଅନ୍ୟ କୌଣସି ଗ୍ରାମର କଥା ମଧ୍ୟ ନାହିଁ ।

କବି ଜୟଦେବ ଅଜୟା ନଦୀକୂଳସ୍ଥ ତଥାକଥିତ କେନ୍ଦୁଲି ଗ୍ରାମରେ ଜନ୍ମ ଗ୍ରହଣ କରିଥିବାର ଏକ ଭ୍ରମାତ୍ମକ ପ୍ରଚାର ସର୍ବପ୍ରଥମେ ବନମାଳୀ ଦାସ ନାମରେ ଜଣେ ବଙ୍ଗୀୟ ଲେଖକଙ୍କ ଦ୍ୱାରା ୧୮୦୧ ମସିହାରେ ଲିଖିତ ଏବଂ ବଙ୍ଗୀୟ ସାହିତ୍ୟ ପରିଷଦ ଦ୍ୱାରା ପ୍ରକାଶିତ 'ଜୟଦେବ ଚରିତ' ଗ୍ରନ୍ଥରୁ ଜଣାଯାଏ । ଏହି ଗ୍ରନ୍ଥ ସମ୍ବନ୍ଧରେ ଆଲୋଚନା କରି ହରେକୃଷ୍ଣ ମୁଖୋପାଧ୍ୟାୟ 'ବୀରଭୂମି' ବିବରଣୀରେ କହିଛନ୍ତି - 'କେଉଁ ଆଦର୍ଶ ପୁସ୍ତକରୁ ଏହି ଗ୍ରନ୍ଥ ନକଲ କରାଯାଇଛି, ତାହା ଜଣାପଡ଼େ ନାହିଁ । ଏ ପୁସ୍ତକ କେଉଁଠି ମିଳେ ନାହିଁ ।' ସୁତରାଂ, ଏଭଳି ଏକମାତ୍ର ପୁସ୍ତକ ଉପରେ ନିର୍ଭର କରି କବି ଜୟଦେବ ବଙ୍ଗଳାରେ ଜନ୍ମଲାଭ କରିଥିବା କହିବା ଯୁକ୍ତି ସଂଗତ ତଥା ଗ୍ରହଣୀୟ ନୁହେଁ ।

ପୁନଶ୍ଚ କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ସ୍ୱର୍ଗତ ଆଶୁତୋଷ ଭଟ୍ଟାଚାର୍ଯ୍ୟ ବଙ୍ଗଳା ସାପ୍ତାହିକ 'ଯୁବବାଣୀ'ରେ ତା.୭.୯.୬୯ରେ ପ୍ରକାଶିତ ଜୟଦେବ ପ୍ରବନ୍ଧରେ ଲେଖିଛନ୍ତି -

'ଜୟଦେବ ଓଡ଼ିଆ ଥିଲେ ଏବଂ ବୀରଭୂମର କେନ୍ଦୁଲିଠାରେ ଅନୁଷ୍ଠିତ ବାତ୍ସରିକ ମେଳା ପ୍ରକୃତରେ 'ବାଉଲ୍‌ମେଳା' ଓ ଏହାର ଜୟଦେବଙ୍କ ଜନ୍ମ ସହିତ କୌଣସି ସମ୍ପର୍କ ନାହିଁ ।'

କବି ଜୟଦେବ ରାଜା ଲକ୍ଷ୍ମଣ ସେନଙ୍କ ସଭାକବି ଥିଲେ ବୋଲି ବଙ୍ଗାଳୀମାନେ ଯୁକ୍ତି କରିଥାନ୍ତି । ଏ ସମ୍ବନ୍ଧରେ ଅଧ୍ୟାପକ ସ୍ୱର୍ଗତ ଡକ୍ଟର ଆଶୁତୋଷ ଭଟ୍ଟାଚାର୍ଯ୍ୟ 'ଯୁବବାଣୀ'ରେ ଲେଖିଛନ୍ତି -

'ଜୟଦେବ ଲକ୍ଷ୍ମଣ ସେନଙ୍କ ସଭାକବି ଥିଲେ ବୋଲି ଏ ପର୍ଯ୍ୟନ୍ତ ଯେ ସିଦ୍ଧାନ୍ତ ସୁଧୀ ସମାଜରେ ଗୃହୀତ ହୋଇଅଛି, ତାହା ଗ୍ରହଣଯୋଗ୍ୟ ନୁହେଁ । ଲକ୍ଷ୍ମଣ ସେନଙ୍କ ଅନ୍ୟାନ୍ୟ କବିମାନଙ୍କ ସହିତ ଜୟଦେବ ନିଜର ନାମକୁ ସଂଯୋଗ କରିବା ଓ ସେ ଲକ୍ଷ୍ମଣ ସେନଙ୍କ ସଭାକବି ଥିଲେ, ତାହା ପ୍ରମାଣିତ ହୋଇନାହିଁ । ପ୍ରାଚୀନ ନବାଗଧି ସଂସ୍କୃତି କବିମାନଙ୍କ ନାମ ସହିତ ନିଜ ନାମର ଯୁକ୍ତ କରିବା ପ୍ରଥା ସେଠାରେ ଓଡ଼ିଶାରେ ପ୍ରଚଳିତ ହୋଇଅଛି ।'

କବି ଜୟଦେବ ଜଣେ ଆନ୍ତର୍ଜାତିକ କବି ଭାବରେ ସ୍ୱୀକୃତି ଲାଭ କରି ସାରିଛନ୍ତି । ତାଙ୍କୁ କୌଣସି ରାଜ୍ୟ, ଦେଶ କିମ୍ବା ଜାତିର ସଂକୀର୍ଣ୍ଣ, ସୀମିତ ସ୍ଥାନ କିମ୍ବା ଗଣ୍ଡି ମଧ୍ୟରେ ଆବଦ୍ଧ କରି ରଖିବା ଯେମିତି ନିନ୍ଦନୀୟ, ସେହିପରି ହୀନମନ୍ୟତାର ପରିଚାୟକ । ପୃଥିବୀର ବିଭିନ୍ନ ଭାଷାରେ କବି, ପଣ୍ଡିତ, ଗବେଷକ, ସଙ୍ଗୀତ ଶାସ୍ତ୍ରଜ୍ଞ, ଆଳଙ୍କାରିକ, ସାହିତ୍ୟିକ ତଥା ଟୀକାକାରମାନେ ପୃଥିବୀ ପ୍ରସିଦ୍ଧ ଗୀତିକାବ୍ୟ 'ଗୀତଗୋବିନ୍ଦ'ର ଲେଖକ କବି ଜୟଦେବଙ୍କ ଘର ଓଡ଼ିଶାରେ ବୋଲି ପ୍ରମାଣ କରି ସାରିଛନ୍ତି ।

ଜର୍ମାନର ମହାନ୍ କବି ଗେଟେ ଗୀତଗୋବିନ୍ଦରେ ନିହିତ ଆଧ୍ୟାତ୍ମିକ ଜୀବନ ଜିଜ୍ଞାସାର ବିକାଶର ମନୋଜ୍ଞ ମୂର୍ଚ୍ଛନାରେ ଆମୋଦିତ ତଥା ବିମୁଗ୍ଧ ହୋଇଥିଲେ । ସେ ଉକ୍ତ ଗୀତିକାବ୍ୟର ମୂଳ ଗ୍ରନ୍ଥକୁ ପାଠ କରିବାର ସୁଯୋଗରୁ ବଞ୍ଚିତ ହୋଇଥିଲେ । ଖ୍ରୀ: ଅ: ୧୭୯୪ରେ ସେ ଉଇଲିୟମ ଜୋନ୍ସଙ୍କ ଦ୍ୱାରା ଅନୁଦିତ ଇଂରାଜୀ ସଂସ୍କରଣ ପାଠ କରି ମହାକବି କାଳିଦାସଙ୍କ 'ଅଭିଜ୍ଞାନଂ ଶାକୁନ୍ତଳମ୍' ଓ ମେଘଦୂତମ୍' କାବ୍ୟ ପରି 'ଗୀତଗୋବିନ୍ଦ' କାବ୍ୟର ଭୂୟସୀ ପ୍ରଶଂସା କରିଥିଲେ ।

**ସହାୟକ ଗ୍ରନ୍ଥସୂଚୀ -**


୧. ଶ୍ରୀ ଜୟଦେବ - ଚକ୍ରଧର ମହାପାତ୍ର

୨. Gita Gobinda & Its Imitation - Dr. B. Rath.



ସା: ନାଇଦୋଳି
ପୋ: କୁମ୍ଭାରମୂଳି, ବାଲେଶ୍ୱର

# ବଙ୍ଗୀୟ ବିଦ୍ୱାନଙ୍କ ଦୃଷ୍ଟିରେ ଓଡ଼ିଶାର ଜୟଦେବ

ତାରାକାନ୍ତ ମହାନ୍ତି

ପୂର୍ବ ଭାରତର ପ୍ରାଚ୍ୟବିତ୍ ଓ ବିଭିନ୍ନ କବିମାନଙ୍କର ମତ ହେଉଛି ଯେ ଜୟଦେବ ଓଡ଼ିଶାର କେନ୍ଦୁବିଲ୍ୱଠାରେ ଦ୍ୱାଦଶ ଶତାବ୍ଦୀରେ ଜନ୍ମଗ୍ରହଣ କରିଥିଲେ । ଏହା ରାଜଧାନୀ ଭୁବନେଶ୍ୱରଠାରୁ ୩୭ କିଲୋମିଟର ବାଲିପାଟଣା ବ୍ଲକ୍‌ର ଅଡ଼ଙ୍ଗପୁର ପଞ୍ଚାୟତରେ ଅବସ୍ଥିତ ।

ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାୟ ୬ ଶହ ବର୍ଷରୁ ଊର୍ଦ୍ଧ୍ୱ ହେବ କେହି କବି ଜୟଦେବଙ୍କୁ ଅନ୍ୟ ରାଜ୍ୟର ବୋଲି ଦାବି କରୁନଥିଲେ ମାତ୍ର ପଶ୍ଚିମବଙ୍ଗର ବନମାଳୀ ଦାସ (୧୮୦୩) ନାମରେ ଜଣେ କବି ଊନବିଂଶ ଶତାବ୍ଦୀରେ ତାଙ୍କ କୃତ 'ଜୟଦେବ ଚରିତ'ରେ ଜୟଦେବଙ୍କୁ ଲକ୍ଷ୍ମଣ ସେନଙ୍କ ରାଜସଭାରେ ଦରବାରୀ କବି ରୂପେ ଉଲ୍ଲେଖ କରିଥିଲେ । ସେ ଆହୁରି ମଧ୍ୟ କାରଣ ନ ଦର୍ଶାଇ ମତବ୍ୟକ୍ତ କରିଥିଲେ ଯେ କବି ଜୟଦେବ ପଶ୍ଚିମବଙ୍ଗର କେନ୍ଦୁଲିଠାରେ ଜନ୍ମ ହୋଇଥିଲେ । ବଙ୍ଗୀୟ ଅଭିଧାନରେ କେନ୍ଦୁଲିର ଅର୍ଥ ପର୍ବପର୍ବାଣି । ବଙ୍ଗୀୟ ରାଜସ୍ୱ ମାନଚିତ୍ରରେ ବୀରଭୂମ ଜିଲ୍ଲାରେ କେନ୍ଦୁଲି ବୋଲି କୌଣସି ଗ୍ରାମ ନାହିଁ ।

ଏପରି ଭ୍ରମାତ୍ମକ ସମ୍ବାଦ ଊନବିଂଶ ଓ ବିଂଶ ଶତାବ୍ଦୀରେ କବି ଓ ଲେଖକମାନଙ୍କୁ ଅଡୁଆରେ ପକାଇ ଦେଇଥିଲା । ଜର୍ଜ କିଟ୍ ନାମକ ଜଣେ ଶ୍ରୀଲଙ୍କାର କବି ବନମାଳୀ ଦାସଙ୍କ ଭ୍ରମାତ୍ମକ ଲେଖାରେ ପ୍ରଭାବିତ ହୋଇ ଏକ ଇଂରାଜୀ କାବ୍ୟ 'ସଙ୍ଗ୍ ଅଫ୍ ଲଭ୍' ଲେଖିଛନ୍ତି ଯେ କବି ଜୟଦେବ ପଶ୍ଚିମବଙ୍ଗର ରାଜା ଲକ୍ଷ୍ମଣ ସେନ୍‌ଙ୍କ ଦରବାରୀ କବି ଥିଲେ ।

ସମ୍ପ୍ରତି ବଙ୍ଗୀୟ ବିଦ୍ୱାନ ଓ ପଣ୍ଡିତମାନେ ସ୍ୱୀକାର କଲେଣି ଯେ ଜୟଦେବ ଓଡ଼ିଶାର । ଫଳରେ ଜୟଦେବ ବିବାଦର ଊର୍ଦ୍ଧ୍ୱରେ ଅଛନ୍ତି । ତାହା ଇଂରାଜୀ ସମ୍ବାଦପତ୍ର ଷ୍ଟେଟସ୍‌ମ୍ୟାନ୍ ଭୁବନେଶ୍ୱର ସଂସ୍କରଣରେ ୧୨.୧୧.୨୦୦୩ରେ ପ୍ରକାଶ ପାଇଛି । ଭୁବନେଶ୍ୱରର ସଂସ୍କୃତି ବିଶ୍ୱବିଦ୍ୟାଳୟ ତରଫରୁ ଅନୁଷ୍ଠିତ ଏକ ଆଲୋଚନାଚକ୍ରରେ କଲିକତାର ବିଦ୍ୱାନମାନେ ମତବ୍ୟକ୍ତ କରିଛନ୍ତି ଯେ କବି ଜୟଦେବ ବଙ୍ଗଳାର ନୁହଁନ୍ତି ସେ ହେଉଛନ୍ତି ଓଡ଼ିଶାର । କଲିକତାର ଗୁରୁ ସଦନ ସଂଗ୍ରହାଳୟର ଅଧୀକ୍ଷକ ଯେ ଗତ ୧୯୭୯ ମସିହାରେ ଡଃ କପିଳା ବାତ୍ସାୟନଙ୍କୁ ଏକ ରିପୋର୍ଟରେ ପ୍ରମାଣ କରି ଜଣାଇ ଥିଲେ ଯେ ପଶ୍ଚିମବଙ୍ଗର ବୀରଭୂମ ଜିଲ୍ଲାର କେନ୍ଦୁବିଲ୍ୱ ଗ୍ରାମ କବି ଜୟଦେବଙ୍କର ଜନ୍ମସ୍ଥାନ ନୁହେଁ । ପ୍ରଫେସର ସତ୍ୟକାମ ସେନ୍‌ଗୁପ୍ତ ମତପୋଷଣ କଲେ ଯେ କେନ୍ଦୁଲି ଗ୍ରାମ ହେଉଛି ପୁରୀ ଜିଲ୍ଲାର ପ୍ରାଚୀନଦୀ କୂଳରେ ଏକ ଗ୍ରାମ, ଯେଉଁଠି କବି ଜୟଦେବ ଜନ୍ମଗ୍ରହଣ କରିଥିଲେ । ଏହି ଦୁଇଜଣ ପଣ୍ଡିତ ସେମାନଙ୍କର ମତକୁ ସାବ୍ୟସ୍ତ କରିବା ପାଇଁ ବିଭିନ୍ନ ସାମାଜିକ - ସାଂସ୍କୃତିକ ଦିଗକୁ ଆଧାର କରି ମତବ୍ୟକ୍ତ କରିଥିଲେ ଯେ କବି ଜୟଦେବ ହେଉଛନ୍ତି ଓଡ଼ିଶାର କବି ।

ଗୀତଗୋବିନ୍ଦ ଗାନ ପୁରୀ ଶ୍ରୀମନ୍ଦିରରେ ନରସିଂହ ଦେବଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା । ପରେ ଗଜପତି ପ୍ରତାପରୁଦ୍ର ଦେବ ଏକ ଶିଳାଲିପିରେ ଆଦେଶ ଦେଇଥିଲେ ଯାହା ସମ୍ପ୍ରତି ଜୟ-ବିଜୟ ଦ୍ୱାରରେ ରହିଛି - 'The Geeta Govinda of Bada Thakur should be sung and danced at the time of offering to the Lord' ଅର୍ଥାତ୍ ବଡ଼ ଠାକୁରଙ୍କ ପହୁଡ଼ ନୀତିବେଳେ ଗୀତଗୋବିନ୍ଦ ବୋଲାଯିବ ଓ ମାହାରୀମାନେ ନୃତ୍ୟ ପରିବେଷଣ କରିବେ । ଭାରତର ଅନ୍ୟ କେଉଁ ମନ୍ଦିରରେ ଗୀତଗୋବିନ୍ଦ ଆବୃତ୍ତି ଓ ମାହାରୀ ନୃତ୍ୟ ପ୍ରଦର୍ଶନ ହୁଏ ନାହିଁ । ଏଥିରୁ ନିଶ୍ଚିତ ଭାବେ ଜଣାଯାଏ ଯେ ଉତ୍କଳର କୌଣସି କବି ଗଜପତିଙ୍କ ପୃଷ୍ଠପୋଷକତାରେ ଶ୍ରୀଜଗନ୍ନାଥଙ୍କ ନିକଟରେ ଆବୃତ୍ତି ହେବା ପାଇଁ ଗୀତଗୋବିନ୍ଦ ଲେଖିଥିଲେ । ଏଥିରୁ ପ୍ରମାଣ ମିଳେ ଯେ କବି ଜୟଦେବ ଗୀତଗୋବିନ୍ଦ ରଚନା କରିଥିଲେ ।

ଅନ୍ୟ ଏକ ପ୍ରମାଣ ହେଉଛି ଯେ ରାତିରେ ଶ୍ରୀଜଗନ୍ନାଥଙ୍କୁ ଯେଉଁ ଖଣ୍ଡୁଆରେ ଆଚ୍ଛାଦିତ କରାଯାଏ, ସେହି ଖଣ୍ଡୁଆରେ ଦେହସାରା ଗୀତଗୋବିନ୍ଦ ଲେଖାଯାଇ ବୁଣାହୁଏ ଓ ଏହା କଟକ ଜିଲ୍ଲାର ନୂଆପାଟଣା ଓ ମାଣିଆବନ୍ଧରେ ସ୍ଥାନୀୟ ତନ୍ତୀମାନଙ୍କଦ୍ୱାରା ବୁଣାଯାଇଥାଏ ।

ଡି-୩୫, ଷ୍ଟାର ସିଟି
ପଟିଆ, ଭୁବନେଶ୍ୱର

# ଶ୍ରୀଜୟଦେବକୃତ ଶ୍ରୀଗୀତଗୋବିନ୍ଦ

ନମିତା ଶତପଥୀ

ଶ୍ରୀଜୟଦେବଙ୍କ ପ୍ରଣୀତ 'ଶ୍ରୀଗୀତଗୋବିନ୍ଦ' ଓଡ଼ିଶାର ପ୍ରତ୍ୟେକ ଘରେ ସୁପରିଚିତ । ଶ୍ରୀଜୟଦେବ ଥିଲେ ଦ୍ୱାଦଶ ଶତାବ୍ଦୀର କବି । ପବିତ୍ର ପ୍ରାଚୀନଦୀ ତଟସ୍ଥ କେନ୍ଦୁବିଲ୍ୱ (କେନ୍ଦୁଲି) ଗ୍ରାମରେ ମହାନ କବି ଶ୍ରୀଜୟଦେବ ଜନ୍ମ ଗ୍ରହଣ କରିଥିଲେ । ଶ୍ରୀଜୟଦେବ ସଂସ୍କୃତ ଭାଷାରେ ଅଗାଧ ପାଣ୍ଡିତ୍ୟ ଲାଭ କରିଥିଲେ । 'ଜୟ ଜଗଦୀଶ ହରେ' କବି ଶ୍ରୀଜୟଦେବ ଥିଲେ କୃଷ୍ଣଗତ ପ୍ରାଣ । ତେଣୁ ପ୍ରାଚୀ ତଟବର୍ତ୍ତୀ ନିଆଳୀ ମାଧବ ମନ୍ଦିରସ୍ଥ ଶ୍ରୀବିଗ୍ରହ ମାଧବଙ୍କୁ ନିଜର ଇଷ୍ଟ ଦେବତା ରୂପେ ଗ୍ରହଣ କରି ପରିଶେଷରେ ସକଳ ଜଗତର ଆଧାର ଚିଦାନନ୍ଦମୟ ଅଚିନ୍ତ୍ୟ ସ୍ୱରୂପ ଶ୍ରୀଜଗନ୍ନାଥଙ୍କ ପଦାରବିନ୍ଦରେ ନିଜକୁ ସେ ସମର୍ପଣ କରି ଦେଇଥିଲେ । ସେଥିପାଇଁ ହିଁ ତାଙ୍କର ଭାବଧାରାରେ ପ୍ରତିଫଳିତ ହୋଇଥିଲା ନୈଷଧ କାବ୍ୟର ପଦଲାଳିତ୍ୟ ଏବଂ ତା' ସହିତ ଶ୍ରୀଜୟଦେବ ତାଙ୍କର ରଚିତ 'ଶ୍ରୀଗୀତଗୋବିନ୍ଦ' ମାଧ୍ୟମରେ ସଂସ୍କୃତ ଭାଷାକୁ ସାବଲୀଳ ଓ ହୃଦୟଗ୍ରାହୀ କରିବାକୁ ଆପ୍ରାଣ ଉଦ୍ୟମ କରିଥିଲେ ।

ପ୍ରାୟ ଏଗାରଶହ ଶତାବ୍ଦୀର ମଧ୍ୟଭାଗରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ଜାତିର ଗୌରବ ଭକ୍ତ ମହାକବିରାଜ ଶ୍ରୀଜୟଦେବ ନିଜର ସାଧନାପୀଠ ଭାବରେ ଗ୍ରହଣ କରି ନେଇଥିଲେ । ଜଣାଯାଏ ଯେ, ଉକ୍ତ କ୍ଷେତ୍ରରେ ଦିନେ ଧ୍ୟାନ ଅବସ୍ଥାରେ ଶ୍ରୀଜୟଦେବଙ୍କ କଣ୍ଠରୁ ସ୍ୱତଃ ସ୍ଫୁରିତ ହୋଇଥିଲା । ଶ୍ରୀଗୀତଗୋବିନ୍ଦର ମଙ୍ଗଳାଚରଣ ଏବଂ ତା'ପରେ ପରେ ସେ ରଚନା କରିଥିଲେ ଶୃଙ୍ଗାର ରସର ଅଦ୍ୱିତୀୟ ମହାଶାସ୍ତ୍ର ଶ୍ରୀଗୀତଗୋବିନ୍ଦ, ଯାହାଫଳରେ ଉକ୍ତ ମଧୁର କୋମଳ କାନ୍ତ ପଦାବଳୀର ମଧୁ ଝଙ୍କାର ଝଙ୍କୃତ ହୋଇ ସମଗ୍ର ଜଗତକୁ ସ୍ତବଧ କରି ଦେଇଥିଲା ।

ଭାରତୀୟ ସଂସ୍କୃତିରେ ଦ୍ୱାଦଶ ଶତାବ୍ଦୀ ପରଠାରୁ ବୈଷ୍ଣବ ଦର୍ଶନ ଓ ଧାର୍ମିକ ଚିନ୍ତାଧାରାକୁ ଭିତ୍ତିକରି ଯେଉଁ ଆଧ୍ୟାତ୍ମିକ ଚେତନା ବା ଭକ୍ତିବାଦର ସୂତ୍ରପାତ ହୋଇଥିଲା, ସେଥିରେ ଉତ୍କଳୀୟ ମହାକବି ଶ୍ରୀଜୟଦେବ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଭକ୍ତି ଆନ୍ଦୋଳନ ମୁଖ୍ୟତଃ ବୈଷ୍ଣବ ଦର୍ଶନ ଓ କୃଷ୍ଣପ୍ରେମକୁ ଭିତ୍ତିକରି ପ୍ରସାର ଲାଭ କରିଥିଲା । ବୈଷ୍ଣବ ଧର୍ମରେ ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କୁ ଏକ ଓ ଅଭିନ୍ନ ରୂପେ ପରିକଳ୍ପନା କରାଯାଉଥିବାରୁ ମହାକବି ଶ୍ରୀଜୟଦେବ ଶ୍ରୀଜଗନ୍ନାଥଙ୍କୁ ରାଧାମାଧବଙ୍କ ମିଳିତ ବିଗ୍ରହ ରୂପେ ଗ୍ରହଣ କରିଛନ୍ତି । ଭାରତୀୟ ଆଧ୍ୟାତ୍ମିକ ସଂସ୍କୃତିର ଏକ ମହନୀୟ ପରମ୍ପରାକୁ ଆଧାର କରି ଭକ୍ତକବି ଶ୍ରୀଜୟଦେବ ରାଧା ମାଧବଙ୍କର ମଧୁର ଓ ଅପ୍ରାକୃତ ପ୍ରେମଲୀଳାକୁ ସାବଲୀଳ ଓ ସୁଲଳିତ ପଦାବଳୀ ମାଧ୍ୟମରେ ଶ୍ରୀଗୀତଗୋବିନ୍ଦରେ ଲିପିବଦ୍ଧ କରିଥିଲେ । କେବଳ ସେତିକି ନୁହେଁ ମହାକବି ଶ୍ରୀଜୟଦେବ ପ୍ରକୃତି ଓ ପୁରୁଷଙ୍କ ଏକତ୍ର ଅବସ୍ଥାକୁ ଦେଖିପାରିଥିଲେ । ତେଣୁ ସେ ପ୍ରକୃତି ଓ ପୁରୁଷର ମହାମିଳନର ବର୍ଣ୍ଣନା ଶ୍ରୀଗୀତଗୋବିନ୍ଦରେ ଲିପିବଦ୍ଧ କରିଛନ୍ତି । ବିଶେଷତଃ 'ଶ୍ରୀଗୀତଗୋବିନ୍ଦ'ରେ ଶ୍ରୀଜଗନ୍ନାଥଙ୍କୁ ଶ୍ରୀକୃଷ୍ଣଙ୍କ ତତ୍ତ୍ୱ ଓ ଆଦର୍ଶରେ ଲିପିବଦ୍ଧ କରାଯାଇଥିବା ବହୁ କ୍ଷେତ୍ରରେ ଲକ୍ଷ୍ୟ କରାଯାଏ ।

'ଶ୍ରୀଗୀତଗୋବିନ୍ଦ'ରେ ବର୍ଣ୍ଣିତ ଦଶାବତାର ଓ ମଙ୍ଗଳଗୀତିକା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମଙ୍ଗଳ ଆଳତୀ ସମୟରେ ଭକ୍ତଗଣଙ୍କ କଣ୍ଠରେ ଅପୂର୍ବ ମୂର୍ଚ୍ଛନା ସୃଷ୍ଟି କରିଥାଏ । କେବଳ ମଙ୍ଗଳ ଆଳତୀ ସମୟରେ ନୁହେଁ, ଶ୍ରୀମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିରର ଦୁଆର ଫିଟା ନୀତିଠାରୁ ଆରମ୍ଭ କରି ଦୁଆର ମୁଦା ପର୍ଯ୍ୟନ୍ତ ପ୍ରତ୍ୟେକ ରୀତି ନୀତି ବେଳେ ଏହି ପଦାବଳୀକୁ ଗାନ କରାଯାଇଥାଏ । ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରକୁ ଛାଡ଼ି ଦେଲେ ଓଡ଼ିଶା ମଧ୍ୟରେ ଓ ବାହାରେ ଗଢ଼ି ଉଠିଥିବା ପ୍ରତ୍ୟେକ ଶ୍ରୀଜଗନ୍ନାଥ ମନ୍ଦିର ତଥା ମଣ୍ଡପମାନଙ୍କରେ ମଧ୍ୟ ଏହାକୁ ଗାନ କରାଯାଇଥାଏ ।

ଐତିହାସିକମାନଙ୍କ ଗବେଷଣାରୁ ଜଣାଯାଇଥାଏ ଯେ ତତ୍‌କାଳୀନ କଳିଙ୍ଗ ସମ୍ରାଟ ଲାଙ୍ଗୁଳା ନରସିଂହ ଦେବଙ୍କ ସମୟରେ

ଶ୍ରୀଗୀତଗୋବିନ୍ଦକୁ ରାଜ ମାନ୍ୟତା ଦିଆଯାଇ ଶ୍ରୀମନ୍ଦିରରେ ଶ୍ରୀଜୀଉମାନଙ୍କ ସମ୍ମୁଖରେ ଗାନ କରିବାର ପରମ୍ପରା ସୃଷ୍ଟି ହୋଇଥିଲା ଏବଂ ଶ୍ରୀଗୀତଗୋବିନ୍ଦ ବର୍ଣ୍ଣିତ କାବ୍ୟାବଳୀ ସାଧାରଣ ଜନତାର ବୋଧଗମ୍ୟ ହେଉ ନଥିଲେ ମଧ୍ୟ ଏହାର ପଦଲାଳିତ୍ୟରେ ଆକୃଷ୍ଟ ହୋଇ ଗୃହ ମଧ୍ୟରେ ଲଳନାଠାରୁ ଆରମ୍ଭ କରି ବିଲରେ ଚାଷୀ ମୂଲିଆ ପର୍ଯ୍ୟନ୍ତ ସମସ୍ତେ ଗାଇବାର ଦେଖିବାକୁ ମିଳିଥିଲା । ଶ୍ରୀଜୟଦେବଙ୍କ ପଦାଙ୍କ ଅନୁସରଣ କରି ସମସାୟମିକ ଓ ପରବର୍ତ୍ତୀ ଓଡ଼ିଆ କାବ୍ୟ କବିତା ଛନ୍ଦୋମୟ, ଭାବମୟ, ରସମୟ ଓ ଗୀତିମୟ ହୋଇ କାବ୍ୟକାରମାନଙ୍କ ଲେଖନୀରେ ଝଙ୍କୃତ ହେବାକୁ ଲାଗିଲା ।

ଭକ୍ତକବି ଶ୍ରୀଜୟଦେବଙ୍କ ରଚିତ ପ୍ରେମ, ଭକ୍ତି ଓ ଶୃଙ୍ଗାରରସର ଅଦ୍ୱିତୀୟ ମହାଶାସ୍ତ୍ର 'ଶ୍ରୀଗୀତଗୋବିନ୍ଦ'ରେ ରାଧାକୃଷ୍ଣଙ୍କ ମାଧୁର୍ଯ୍ୟ ପ୍ରେମର ଯେଉଁ ସୂକ୍ଷ୍ମ ଓ ତାତ୍ତ୍ୱିକ ବର୍ଣ୍ଣନା ରହିଛି ତାହା ଭାରତୀୟ ଆଧ୍ୟାତ୍ମିକ ସାହିତ୍ୟର ଏକ ଅମୂଲ୍ୟ ସମ୍ପଦ ।

ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ବିଜୁ ପଟ୍ଟନାୟକ ବିଜ୍ଞାନ ଓ ଶିକ୍ଷା ମହାବିଦ୍ୟାଳୟ
ଭୁବନେଶ୍ୱର



# ମହାକବି ଜୟଦେବ ଓ ଗୀତଗୋବିନ୍ଦ

ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର

**ମ**ହାକବି ଜୟଦେବଙ୍କ ଅମର ଲେଖନୀରୁ ନିଃସୃତ ହୋଇଥିଲା ରାଧାକୃଷ୍ଣ ଲୀଳା ସମ୍ବଳିତ ଦ୍ୱାଦଶ ସର୍ଗ ବିଶିଷ୍ଟ ଲଳିତକୋମଳ କାନ୍ତ ପଦାବଳୀ ହେଉଛି 'ଗୀତଗୋବିନ୍ଦ'। ମହନୀୟତା ହେଉଛି, ପବିତ୍ର ନୀଳାଚଳଧାମରୁ ଗୀତଗୋବିନ୍ଦର ସ୍ୱର ଝଙ୍କୃତ ହୋଇ ସମଗ୍ର ଭାରତବର୍ଷରେ ରାଧାକୃଷ୍ଣ ଲୀଳାର ପ୍ରସାର କରିଥିଲା । ଏହି ପ୍ରଥିତଯଶା ମହାକବି ଓଡ଼ିଶାର ପ୍ରାଚୀନଦୀ ତୀରସ୍ଥ କେନ୍ଦୁବିଲ୍ୱ ଗ୍ରାମରେ ଏକାଦଶ ଶତାବ୍ଦୀର ଶେଷ ପ୍ରାନ୍ତରେ ଜନ୍ମଗ୍ରହଣ କରିଥିଲେ । ତଦୀୟ ପିତୃଦେବ ଥିଲେ ଶ୍ରୀ ଭୋଜଦେବ ଏବଂ ମାତୃଦେବୀ ଥିଲେ ରାଧାଦେବୀ ତଥା ସଖା ଥିଲେ ପରାଶର ପ୍ରଭୃତି ପ୍ରିୟବର୍ଗ । ସ୍ୱରଚିତ ଗୀତଗୋବିନ୍ଦର ଦ୍ୱାଦଶ ସର୍ଗ ଦଶମ ଶ୍ଳୋକରେ କବି ଆପଣାର ପରିଚୟ ପ୍ରଦାନ ପୂର୍ବକ ଉଲ୍ଲେଖ କରିଛନ୍ତି -



ଶ୍ରୀଭୋଜଦେବ ପ୍ରଭବସ୍ୟ ରାଧାଦେବୀସୁତ ଜୟଦେବସ୍ୟ
ପରାଶରାବ ପ୍ରିୟବର୍ଗ କଣ୍ଠେ ଶ୍ରୀଗୀତଗୋବିନ୍ଦ କବିତ୍ୱମସ୍ତୁ ।

ଦ୍ୱାଦଶ ଶତାବ୍ଦୀରେ ମହାକବି ଜୟଦେବ ଶ୍ରୀକ୍ଷେତ୍ରରେ ନିବାସ କରି ଶ୍ରୀଜଗନ୍ନାଥଙ୍କ ବୈଷ୍ଣବୀୟ ଦାର୍ଶନିକ ଧାରା ପ୍ରତିପାଦନ କାମନାରେ ନିମ୍ବାର୍କମତର ମଧୁର ମୂର୍ଚ୍ଛନାରେ ଗୀତଗୋବିନ୍ଦ ରଚନା କରିଥିଲେ । ମହାବାହୁଙ୍କ ଅପାର କରୁଣାରୁ ସ୍ୱଳ୍ପକାଳ ମଧ୍ୟରେ ଏହା ସର୍ବଭାରତୀୟ ସ୍ତରରେ ପ୍ରସିଦ୍ଧି ଲାଭ କରିଥିଲା । ଦ୍ୱାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଉତ୍କଳୀୟ କବି ଉଦୟନ ଗୀତଗୋବିନ୍ଦର ପ୍ରଥମ ଟୀକା ରଚନା ପୂର୍ବକ ଶ୍ରୀପୁରୁଷୋତ୍ତମ ଚରିତକୁ ବୈଷ୍ଣବୀୟ ଦର୍ଶନର ଭବ୍ୟ ରୂପ ପ୍ରଦାନ କରିଥିଲେ । 'ଗୀତଗୋବିନ୍ଦ'ର ଏହି ପ୍ରଥମ ଭାଷ୍ୟର ନାମ 'ଭାଗବିଭାଗିନୀ' ଟୀକା । ପରବର୍ତ୍ତୀ କାଳରେ ଓଡ଼ିଶାର କବି ଧୃତିଦାସ 'ସନ୍ଦର୍ଭ ଦୀପିକା' ଏବଂ କବିରାଜ ନାରାୟଣ ଦାସ 'ସର୍ବାଙ୍ଗ ସୁନ୍ଦରୀ' ଟୀକା ରଚନା କରି ଗୀତଗୋବିନ୍ଦକୁ ବିଶ୍ୱବିଖ୍ୟାତ କରିପାରିଥିଲେ । ଅନ୍ୟମାନଙ୍କ ମଧ୍ୟରେ ଅବଶ୍ୟ ଓଡ଼ିଆକବି ଧରଣୀଧର ମିଶ୍ର, ବୃନ୍ଦାବନ ଦାସ, ଦୀନକୃଷ୍ଣ ଦାସ, ଉଦ୍ଧବ ଦାସ, ତ୍ରିଲୋଚନ ଦାସ, ବଜରୀ ଦାସ, ବ୍ରଜନାଥ ମିଶ୍ର ପ୍ରଭୃତି ଏହି ଅମରକୃତୀର ଓଡ଼ିଆ ପଦ୍ୟ ଓ ଗଦ୍ୟାନୁବାଦ କରିଛନ୍ତି । ଅଧିକନ୍ତୁ, ପିଣ୍ଡିକି ଶ୍ରୀଚନ୍ଦନ ପ୍ରଭୃତି କବି କୋବିଦବୃନ୍ଦ ଏହାକୁ ରାସରୂପ ପ୍ରଦାନ ପୂର୍ବକ ଓଡ଼ିଶାରେ ଗୀତଗୋବିନ୍ଦକୁ ଅଧିକରୁ ଅଧିକ ଲୋକପ୍ରିୟ କରିପାରିଛନ୍ତି । ଓଡ଼ିଆ ସାହିତ୍ୟରେ ଏହି ମହାକାବ୍ୟର ପ୍ରଭାବ ବିଶେଷ ଭାବରେ ପରିଲକ୍ଷିତ । ଓଡ଼ିଶାର କୋଣେ ଅନୁକୋଣେ ଗୀତଗୋବିନ୍ଦ ମୂଳକାବ୍ୟ ତଥା ଏହାର ଟୀକା ସମୂହର ପୋଥି ବହୁଳ ଭାବରେ ଉପଲବ୍ଧ, ଯାହା ଭାରତର ଅନ୍ୟ ଅଞ୍ଚଳରେ ଅନୁପଲବ୍ଧ ।

ଗୌରବର ବିଷୟ, ମହାକବି ଜୟଦେବଙ୍କର ପ୍ରତିଷ୍ଠାକୁ ଗୋବର୍ଦ୍ଧନାଚାର୍ଯ୍ୟ ସ୍ୱୀକାର କରିଥିବା କଥା ଷୋଡ଼ଶ ଶତାବ୍ଦୀର ମୈଥିଳୀ ପଣ୍ଡିତ କେଶବ ମିଶ୍ର ସ୍ୱରଚିତ 'ଅଳଙ୍କାର ଶେଖର' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ମିଥିଳାର ଭକ୍ତକବି ଚନ୍ଦ୍ରଦତ୍ତ ସ୍ୱରଚିତ 'ଭକ୍ତମାଳା'ରେ ମହାକବି ଜୟଦେବଙ୍କ ପରିଚୟ ପ୍ରଦାନ ପୂର୍ବକ ଲେଖିଛନ୍ତି -

ଜଗନ୍ନାଥ ପୁରୀ ପ୍ରାନ୍ତେ ଦେଶେ ଚୈବୋତ୍କଳାଭିଧେ,
କେନ୍ଦୁବିଲ୍ୱ ଇତିଖ୍ୟାତଃ ଗ୍ରାମଃ ବ୍ରାହ୍ମଣସଙ୍କୁଳଃ ।
ତତ୍ରୋତ୍କଳେ ଦ୍ୱିଜା ଜାତୋ ଜୟଦେବ ଇତି ଶ୍ରୁତଃ,
ବିଦ୍ୟାଭ୍ୟାସରତଃ ଶାନ୍ତଃ ପୁରୁଷୋତ୍ତମ ପୂଜକଃ ।

ନାଭାଦାସଙ୍କ ରଚିତ 'ଭକ୍ତମାଳା'ରୁ ଜଣାଯାଏ ଜୟଦେବ ଉତ୍କଳୀୟ କବି ଥିଲେ । ସର୍ବୋପରି ମହାକବି ଜୟଦେବ ସ୍ୱୟଂ ଉଲ୍ଲେଖ କରିଛନ୍ତି ।

ବର୍ଣ୍ଣିତଃ ଜୟଦେବକନ୍ ହରେଭିଦଂ ପ୍ରଣତେନ,
କେନ୍ଦୁବିଲ୍ୱ ସମୁଦ୍ର ସମ୍ଭବ ରୋହିଣୀ ରମଣେନ ।

ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁଙ୍କ ସମସାମୟିକ ତଥା ରାୟ ରାମାନନ୍ଦଙ୍କ ସଚିବ ଭକ୍ତ ମାଧବ ପଟ୍ଟନାୟକ ସ୍ୱରଚିତ 'ବୈଷ୍ଣବ ଲୀଳାମୃତ'ରେ ଉଲ୍ଲେଖ କରିଛନ୍ତି -

ବିପ୍ର ସେ ଜୟଦେବ ନାମ, କ୍ଷେତ୍ରବରକୁ ଆଗମନ,
କେନ୍ଦୁଲି ଶାସନ ତା ଗ୍ରାମ, ପ୍ରାଚୀନଦୀର ତଟ ପୁଣ ।
ରଚିଲା ଶ୍ରୀଗୀତଗୋବିନ୍ଦ, ଲଭିଲା ପରମ ଆନନ୍ଦ ।

ଜୟଦେବଙ୍କ ସ୍ମୃତିରେ ଶ୍ରୀଚୈତନ୍ୟ ସଂକୀର୍ତ୍ତନ ସହ କେନ୍ଦୁବିଲ୍ୱ ମଧ ଯାତ୍ରା କରିଥିଲେ ।

ସ୍ମରଣଯୋଗ୍ୟ ଯେ, ଦ୍ୱାଦଶ ଶତାବ୍ଦୀରୁ ଷୋଡ଼ଶ ଶତାବ୍ଦୀ ମଧ୍ୟରେ 'ଗୀତଗୋବିନ୍ଦ' ଶ୍ରୀଜଗନ୍ନାଥଙ୍କ ନିତ୍ୟସେବାର ଅଙ୍ଗୀଭୂତ ହୋଇ ଆଧାତ୍ମିକ ସୌରଭ ମଣ୍ଡିତ ହୋଇସାରିଥିଲା । ଅଧିକନ୍ତୁ, ଦ୍ୱାଦଶ ଶତାବ୍ଦୀରୁ କବିପତ୍ନୀ ପଦ୍ମାବତୀଙ୍କ ନୃତ୍ୟର ତାଳେ ତାଳେ ରସମୟ ଗୀତଗୋବିନ୍ଦର ଗାନ ଶ୍ରୀମନ୍ଦିରରେ ଏକ ଭବ୍ୟ ପରମ୍ପରା ସୃଷ୍ଟି କରିଥିଲା, ଯାହା ଏବେବି ଉଜ୍ଜୀବିତ । ଆଜି ମଧ୍ୟ, ଅଗଣିତ ଓଡ଼ିଆଙ୍କର ଗୀତଗୋବିନ୍ଦ ଏକ ନିତ୍ୟ ପଠନୀୟ ଗ୍ରନ୍ଥ, ଯାହା ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଦୃଷ୍ଟିଗୋଚର ହୁଏ ନାହିଁ । ଗୀତଗୋବିନ୍ଦକୁ କେନ୍ଦ୍ରକରି ଓଡ଼ିଶାରେ ଯେତେ ନାଟକ, ରାସଲୀଳା, ଗୀତିନାଟ୍ୟ ପ୍ରଭୃତି ରଚିତ ତାହା ଭାରତରେ ଅନ୍ୟତ୍ର ବିରଳ ।

ମହାକବି ଜୟଦେବ ପୁରୀରେ ଗୀତଗୋବିନ୍ଦ ରଚନା କରି ଜଗନ୍ନାଥ ଧର୍ମ ଓ ଦର୍ଶନକୁ ବୈଷ୍ଣବୀୟ ଭାବଧାରାରେ ସର୍ବଜନବୋଧ୍ୟ କରିବାର ପ୍ରୟାସ କରିଥିଲେ ହେଁ କେତେକ ତାଙ୍କୁ ବଙ୍ଗୀୟ କବି ଭାବରେ ପ୍ରତିପାଦନ କରିବାର ଅପଚେଷ୍ଟା କରିଛନ୍ତି । ସେମାନଙ୍କ ମତରେ ପଶ୍ଚିମବଙ୍ଗର ଅଜୟ ନଦୀ ତଟସ୍ଥ କେନ୍ଦୁଲୀ ଗ୍ରାମରେ ଜୟଦେବ ଜନ୍ମଗ୍ରହଣ କରିଥିଲେ ତଥା ବଙ୍ଗରାଜା ଲକ୍ଷ୍ମଣ ସେନ୍‌ଙ୍କ ସଭାମଣ୍ଡନ କରିଥିଲେ । ସେମାନେ ପ୍ରତିପାଦନ କରିଥାନ୍ତି ଯେ, ଅଜୟ ନଦୀର ବାଲୁକା ତଟରେ ଅନୁଷ୍ଠିତ ବାଉଲ୍‌ମେଳା ଜୟଦେବଙ୍କ ସ୍ମୃତି ବହନ କରୁଛି । ଏ ସଂପର୍କରେ ସ୍ପଷ୍ଟ କରାଯାଇପାରେ ଯେ, ଜୟଦେବଙ୍କର ଜନ୍ମ ଏକାଦଶ ଶତାବ୍ଦୀର ଶେଷ ଭାଗ ଏବଂ ଗୀତଗୋବିନ୍ଦର ରଚନା ଦ୍ୱାଦଶ ଶତାବ୍ଦୀର ଆଦ୍ୟଭାଗ, ଅଥଚ ଲକ୍ଷ୍ମଣ ସେନ୍‌ଙ୍କ ରାଜତ୍ୱର ସମୟ ୧୧୭୯ଠାରୁ ୧୨୦୫ । ସେହି ସମୟକୁ ଉଦୟନଙ୍କ ଟୀକା ରଚନା ହୋଇଗଲାଣି । ଅତଏବ ପ୍ରମାଣିତ ହୁଏ ଯେ ଜୟଦେବ କସ୍ମିନ୍‌କାଳେ ଲକ୍ଷ୍ମଣ ସେନ୍‌ଙ୍କ ରାଜପଣ୍ଡିତ ନଥିଲେ । ତଥାପି ଏକ କପୋଳକଳ୍ପିତ ଶ୍ଳୋକ ମାଧ୍ୟମରେ ଜୟଦେବଙ୍କୁ ଲକ୍ଷ୍ମଣ ସେନ୍‌ଙ୍କ ସଭାରତ୍ନ ଭାବରେ ଚିତ୍ରଣ କରାଯାଉଛି । ସେହି ଶ୍ଳୋକଟି ହେଉଛି -

ଗୋବର୍ଦ୍ଧନଶ୍ଚ ଶରଣଃ ଜୟଦେବ ଉମାପତିଃ
କବି ରାଜଶ୍ଚ ପଞ୍ଚେତେ ରତ୍ନାନି ଲକ୍ଷ୍ମଣସ୍ୟଃ ।

ଏହି ଶ୍ଳୋକଟି ସେନ୍ ରାଜାଙ୍କ ଦରବାରରେ ଖୋଦିତ ହୋଇଥିବା କେହି କେହି ମତ ଦିଅନ୍ତି । କିନ୍ତୁ ମହମ୍ମଦ ବକ୍ତିଆର ଖିଲିଜଙ୍କଦ୍ୱାରା ଲକ୍ଷ୍ମଣ ସେନ୍‌ଙ୍କ ରାଜଧାନୀ ଧ୍ୱଂସ ହେବା ପରେ କେଉଁଠାରୁ ଏହି ଶ୍ଳୋକଟି ଉଦ୍ଧାର କରାଗଲା ଏବଂ ଶିଳାଲେଖଟି କାହିଁକି ଅଦ୍ୟାବଧି ବିଧିବଦ୍ଧ ଭାବରେ ସଂପାଦନ ହୋଇନାହିଁ ସେ ସଂପର୍କରେ ଠିକ୍ ତଥ୍ୟ ଅନୁପଲବ୍‌ଧ ।

ବିଖ୍ୟାତ ପାଶ୍ଚାତ୍ୟ ଗବେଷକ ସାର୍ ଉଇଲିୟମ୍ ଜୋନ୍‌ସ ଅଧ୍ୟୟନ ଓ ଅନୁଧ୍ୟାନ ପରେ ୧୭୯୯ ଖ୍ରୀଷ୍ଟାବ୍ଦରେ 'ଏସିଆଟିକ୍ ରିସର୍ଚ୍ଚ' ପତ୍ରିକାରେ ଜୟଦେବ ଓଡ଼ିଶାର ବୋଲି ଏକ ପ୍ରବନ୍ଧ ପ୍ରକାଶ କରିଥିଲେ । ୧୮୭୫ ମସିହାରେ ଅନ୍ୟତମ ଗବେଷକ ସାର୍.ଏଚ୍.ଉଇନ୍ ଅନୁରୂପ ମତ ପ୍ରଦାନ କରିଛନ୍ତି । କଲିକତା ବିଶ୍ୱବିଦ୍ୟାଳୟର ଅଧାପକ ଆଶୁତୋଷ ଭଟ୍ଟାଚାର୍ଯ୍ୟ ଉଲ୍ଲେଖ କରିଛନ୍ତି ଯେ- 'ଜୟଦେବ ଛିଲେନ୍ ଉଡ଼ିଆ... । ଜୟଦେବ ଲକ୍ଷ୍ମଣ ସେନ୍‌ର ସଭାକବି ଛିଲେନ୍ ବାଲେ ଏ ଯାବତ୍ ଗ୍ରହନି ଯୋଗ୍ୟ ନୟ ।' ପ୍ରଖ୍ୟାତ ବଙ୍ଗୀୟ ଐତିହାସିକ ଡକ୍ଟର ସୁକୁମାର ସେନ୍ 'ବଙ୍ଗଲା ସାହିତ୍ୟେର ଇତିହାସ'ରେ ଉଲ୍ଲେଖ କରିଛନ୍ତି -

'ଅଜୟାର ଧାରେ ବାଲୁତଟେ ପୌଷ ସଂକ୍ରାନ୍ତି ସ୍ଥାନେର ମେଲା ନିକଟେ ଯେ ଗ୍ରାମେ ଆଛେ ତାହା କେନ୍ଦୁଲୀ ନୟ । ଏଖାନେ କେନ୍ଦୁଲୀ ଗ୍ରାମ ଛିଲ ବଲିୟା କୋନ୍ ପ୍ରମାନ ନୟ । ଚୈତନ୍ୟର

ସମୟେ ଜୟଦେବ ସ୍ମୃତି ସମ୍ବଳିତ ଏ ମେଳାର କୋନ୍ ଉଲ୍ଲେଖ ନୟ ଏବଂ ଜୟଦେବର ଜନ୍ମସ୍ଥାନ ବା ବାସସ୍ଥାନ ରୂପେ କେନ୍ଦୁଲୀର ଅନ୍ୟ କୋନ୍ ଗ୍ରାମେର କଥାଏ ନାଇ ।'

ଏଥିରୁ ପ୍ରମାଣିତ ହେଉଛି ଏକ ମିଥ୍ୟା ଶିଳାଲେଖର ଶ୍ଳୋକକୁ ଆଧାର କରି ତଥା ମାତ୍ର ଶହେ ବର୍ଷ ମଧ୍ୟରେ ଅନୁଷ୍ଠିତ ବାଉଲମେଳାକୁ ଉପଜୀବ୍ୟ କରି ଅଜୟ ନଦୀ ତୀର କେନ୍ଦୁଲି ଗ୍ରାମକୁ ଜୟଦେବଙ୍କ ବାସସ୍ଥାନ ଏବଂ ତାଙ୍କୁ ବଙ୍ଗୀୟ କବି ଭାବରେ ପ୍ରତିପାଦନ କରିବାକୁ ହୀନ ଉଦ୍ୟମ କରାଯାଇଛି । ସୂଚନାଯୋଗ୍ୟ ଯେ, ଏ ଅବଧି ପଶ୍ଚିମ ବଙ୍ଗରେ ଗୀତଗୋବିନ୍ଦର ପରମ୍ପରା ବା ଭାବଧାରା ସଂଚାରିତ ହୋଇପାରିନାହିଁ ।

ନିର୍ବିବାଦରେ ବ୍ୟକ୍ତ କରାଯାଇପାରେ ଯେ, ମହାକବି ଜୟଦେବ ଓଡ଼ିଶାର ପ୍ରାଚୀତଟ କେନ୍ଦୁଳି ଗ୍ରାମରେ ଜନ୍ମଗ୍ରହଣ କରି ଶ୍ରୀକ୍ଷେତ୍ରରେ ଗୀତଗୋବିନ୍ଦ ରଚନା କରିଥିଲେ ତଥା ଜଗନ୍ନାଥ ଧର୍ମ ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ହୋଇ ଏହି ରସମୟ ଗୀତିକାବ୍ୟ ଓଡ଼ିଶାର ବିଜ୍ଞ, ପ୍ରାଜ୍ଞ, କବି କୋବିଦବୃନ୍ଦଙ୍କଦ୍ୱାରା ଭାରତୀୟ ଆଧ୍ୟାତ୍ମିକ ପ୍ରଜ୍ଞାର ବାଙ୍ମୟ ପ୍ରକାଶ ରୂପେ ପ୍ରତିଭାତ ହୋଇଥିଲା । ମହନୀୟତା ହେଉଛି, ପୁରୁଷୋତ୍ତମ ଜଗନ୍ନାଥଙ୍କ ଦିବ୍ୟଲୀଳାଭୂମିରୁ ଭାରତୀୟ ଦର୍ଶନ ଓ ସାରସ୍ୱତ ସୌଷ୍ଠବ ସମ୍ବଳିତ ଏହି ଅଲୌକିକ କୃତିର ସ୍ୱର ଝଙ୍କୃତ ହୋଇ ସମଗ୍ର ବିଶ୍ୱକୁ ରାଧାକୃଷ୍ଣ ଲୀଳାରେ ପ୍ଲାବନ କରିଥିଲା ।

ବଡ଼ପଣ୍ଡା ସାହି
ଢେଙ୍କାନାଳ



# ମହାକବି ଶ୍ରୀଜୟଦେବ

ଇଂ ଗଦାଧର ମିଶ୍ର

**ବି**ଶାଳ ଆର୍ଯ୍ୟାବର୍ତ୍ତରେ ପ୍ରାଗ୍‌ବୈଦିକ ଯୁଗରୁ ବହୁ ମୁନି, ଋଷି ତପସ୍ୱୀ ଓ କବିମାନେ ଜନ୍ମ ଗ୍ରହଣ କରି ସ୍ୱ ସ୍ୱ କୃତି ସଂପାଦନ ପୂର୍ବକ ଜନମାନସରେ ନିଜକୁ ପ୍ରତିଷ୍ଠିତ କରିଯାଇଅଛନ୍ତି । ମହାକାଳ ବା ସମୟ ତା'ର ହିସାବ ରଖିଅଛି । ସମୟକୁ ଗାଣିତିକ ସୂତ୍ରରେ କିପରି ଭାବରେ କିଏ ଭାଗ ଭାଗ କରି ତା'ର ନିର୍ଦ୍ଦିଷ୍ଟ ସୀମା ନିର୍ଦ୍ଧାରଣ କରି ଓ ତା'ର ନାମକୁ 'ଯୁଗ' ବୋଲି ଅଭିହିତ କରିଥିଲେ ସେ ସଂପର୍କରେ ଆମେ ଅଜ୍ଞ । ସେ ଯାହାହେଉ, ଉପରୋକ୍ତ ଯୁଗ ଚାରିଭାଗରେ ବିଭକ୍ତ ଯଥା- ସତ୍ୟ, ତ୍ରେତା, ଦ୍ୱାପର ଓ କଳି । ସତ୍ୟ ଯୁଗଠାରୁ ତ୍ରେତୟା, ଦ୍ୱାପର ପର୍ଯ୍ୟନ୍ତ ଆର୍ଯ୍ୟଭୂମି ଭାରତବର୍ଷରେ ଯାହା ଯାହା ଘଟି ଯାଇଅଛି ତା'ର ବିବରଣୀ ଆମେ ବେଦ, ଉପନିଷଦ ପୁରାଣ, ଧର୍ମଶାସ୍ତ୍ର ମାଧ୍ୟମରେ ପାଇଥାଉଁ । ଅଧୁନା କଳିଯୁଗରେ ଆମେ ଇତିହାସ ପୃଷ୍ଠା ଓଲଟାଇଲେ ଘଟିଥିବା ଓ ଏବେ ଘଟୁଥିବା ବିଷୟ ଜାଣିପାରୁଅଛେଁ । ତ୍ରେତୟା ଯୁଗରେ ଆର୍ଯ୍ୟଶ୍ରେଷ୍ଠ ରାମ ଲଙ୍କାର ଦ୍ରାବିଡ଼ ରାଜା ରାବଣକୁ ତା'ର କୁକର୍ମ, ନାରୀ ଅପହରଣ ପାଇଁ ଯୁଦ୍ଧରେ ପରାସ୍ତ କରି ବଧ କରିଥିଲେ । ଖାଲି ସେତିକି ନୁହେଁ ସେ ଯେଉଁ ବାନର ସେନାଙ୍କ (ବାନର ନାମକ ପଦ୍ଧତିଧାରୀ) ଦ୍ୱାରା ଶ୍ରେଷ୍ଠ ସ୍ଥପତି ରୂପେ ଭାରତ ଓ ଲଙ୍କା ମଧ୍ୟରେ ଥିବା ସମୁଦ୍ର ବକ୍ଷରେ ସେତୁବନ୍ଧ ନିର୍ମାଣ କରି ଯୁଦ୍ଧ ଯାତ୍ରା କରିଥିଲେ ତାହା ଅତୀବ ଆଶ୍ଚର୍ଯ୍ୟ ।

ରାମ ଏକାଧାରାରେ ଥିଲେ ପ୍ରଜାବତ୍ସଳ ଓ ନ୍ୟାୟବନ୍ତ । ସେ ଜଣେ ସାଧାରଣ ପ୍ରଜାର କଥାରେ ସ୍ୱୀୟ ପତ୍ନୀ ସୀତା ଦେବୀଙ୍କୁ ତ୍ୟାଗ କରିଥିଲେ । ଏ ସମସ୍ତ ଘଟଣା ପ୍ରଥମ କରି ଋଷି ବାଲ୍ମିକୀଙ୍କଦ୍ୱାରା ମହାନାଟକ (ରାମାୟଣ) ମହାକାବ୍ୟରେ ପ୍ରକାଶ ପାଇଥିଲା - ସଂସ୍କୃତ ଭାଷାରେ । ଏହି କାବ୍ୟକୁ ମହାକାବ୍ୟ ରୂପେ ଆଖ୍ୟାୟିତ କରାଯାଇଥିଲା । ତା'ପରବର୍ତ୍ତୀ ଦ୍ୱାପରରେ ଘଟିଥିଲା ମହାଭାରତ ଯୁଦ୍ଧ । ଏହି ଯୁଦ୍ଧର ସମସ୍ତ ଘଟଣାବଳୀକୁ ଦ୍ୱିତୀୟ ମହାକାବ୍ୟ ମହାଭାରତରେ ଲିପିବଦ୍ଧ କରିଥିଲେ ବ୍ୟାସଦେବ ସଂସ୍କୃତ ଭାଷାରେ । ବ୍ୟାସଦେବ ପରମ ଶାସ୍ତ୍ର ଭାଗବତ ଓ ଅଷ୍ଟାଦଶ ପୁରାଣର ମଧ୍ୟ ରଚୟିତା । ଏଣୁ ଏହି ଦୁଇ ତୁଙ୍ଗ ବିଦ୍ୱାନ ସ୍ୱୀୟ ପ୍ରତିଭା ବଳରେ ସାତକାଣ୍ଡରେ ରାମାୟଣ ଓ ଅଠର ପର୍ବ ମଧ୍ୟରେ ମହାଭାରତ ରଚନା କରି ଆଜି ସୁଦ୍ଧା ତ୍ରିଯୁଗ ଜୟୀ ହୋଇପାରିଛନ୍ତି । ଅଧୁନା କଳିଯୁଗରେ ବହୁ ସଂସ୍କୃତ ପଣ୍ଡିତ ସ୍ୱ-ପ୍ରତିଭା ବଳରେ କାଳଜୟୀ କାବ୍ୟ, ସାହିତ୍ୟ, ଇତିହାସ ଆଦି ରଚନା କରି ଜନସମାଜରେ ସମାଦୃତ ହୋଇପାରିଛନ୍ତି । ସେମାନଙ୍କ ମଧ୍ୟରେ ମହାକବି କାଳିଦାସ, ଭାରବୀ, ବାଟଭଟ ଇତ୍ୟାଦି ଅଗ୍ରଗଣ୍ୟ । କାବ୍ୟ ରଚନାରେ କାଳିଦାସଙ୍କର ଶ୍ରେଷ୍ଠ କାବ୍ୟ ରଘୁବଂଶ, କୁମାର ସମ୍ଭବ ତଥା ମେଘଦୁତ ବିଜ୍ଞ ସମାଜରେ ଆଦୃତ । ଯଥା- ଶ୍ଳୋକ-

ଉପମା କାଳିଦାସସ୍ୟ ଭାରବେ ଚାର୍ଥ ଗୌରବମ୍ ।
ନୈଷଧେ ପଦଲାଳିତ୍ୱଂ ମାଘେ ସନ୍ତି ତ୍ରୟୋଗୁଣା ।

କାଳିଦାସ ଥିଲେ ଆର୍ଯ୍ୟବର୍ତ୍ତର ମହାନ୍ ତଥା ଅଦ୍ୱିତୀୟ କବି । ତାଙ୍କ ରଚନାରେ ଛାୟା ପରବର୍ତ୍ତୀ କବିମାନେ ଗ୍ରହଣ କରିଅଛନ୍ତି । ଏହା ସେମାନଙ୍କ କାବ୍ୟରେ ଦେଖାଯାଏ । ଭାରବୀଙ୍କର କାବ୍ୟ ରଚନାର ଶୈଳୀ ଅର୍ଥବୋଧ ଓ ବାଣଭଟଙ୍କର କାବ୍ୟରେ ପ୍ରୟୋଗ ଲାଳିତ୍ୟ ପଦ ସେମାନଙ୍କୁ ଶ୍ରେଷ୍ଠ କବି ରୂପେ ପରିଚିତ କରାଇଥାଏ । ଏମାନଙ୍କ ପରେ ଭାରତବର୍ଷରେ ବହୁକବି ସ୍ୱ ସ୍ୱ ପ୍ରତିଭା ବଳରେ ପ୍ରତିଭାତ ଓ ସ୍ମରଣୀୟ ହୋଇଛନ୍ତି ନିଜର କୃତି ପାଇଁ । ଭାରତ ଭୂମିର ପୂର୍ବ ଭାଗରେ ଥିବା ତତ୍‌କାଳୀନ ଉଡ୍ର, ଓଡ୍ର, କଳିଙ୍ଗ, ଉତ୍କଳ କଙ୍ଗୋଦ, କୋଶଳ ଅଧୁନା ଓଡ଼ିଶାର ଭିନ୍ନ ଭିନ୍ନ ଅଂଶକୁ ନେଇ ନାମିତ ହୋଇଥିଲା ।

ଓଡ଼ିଶାର ଇତିହାସ ମାଦଳାପାଞ୍ଜି ଅନୁସାରେ କବି ଜୟଦେବ ଉତ୍କଳରେ ଥିବା ପୁରୁଷୋତ୍ତମ କ୍ଷେତ୍ରଠାରୁ ବିଂଶକ୍ରୋଶ ଦୂରରେ ପ୍ରବାହିତ ପୁଣ୍ୟତୋୟା ପ୍ରାଚୀ ନଦୀ ଓ କୁଶଭଦ୍ରା ମଧ୍ୟ

ଅବବାହିକାର କେନ୍ଦୁବିଲ୍ୱ ଗ୍ରାମରେ ଭୂମିଷ୍ଠ ହୋଇଥିଲେ । ଉପରୋକ୍ତ ପ୍ରାଚୀ ନଦୀ ତୀରରେ ଦ୍ୱାଦଶ ମାଧବ ମନ୍ଦିର, ବହୁତୀର୍ଥ ଓ ମଠ ଇତ୍ୟାଦି ଥିଲା । ପୁରୁଷୋତ୍ତମ ବା ପୁରୀର କ୍ଷେତ୍ରାଧିପତି ମହାବାହୁ ଜଗନ୍ନାଥଙ୍କୁ ଏହି ଗ୍ରାମ ଦେଇ ଅଗଣିତ ଭକ୍ତ ଦର୍ଶନେଚ୍ଛାରେ ପଦବ୍ରଜରେ ଯାଉଥିଲେ । ଏହି ଗ୍ରାମରେ ୧୧୬୭ ମସିହା ମାଘ ଶୁକ୍ଳ ବସନ୍ତ ପଞ୍ଚମୀ ତିଥିରେ ଜୟଦେବ ଏକ କୁଳୀନ ବ୍ରାହ୍ମଣ ପରିବାରରେ ଜନ୍ମିଥିଲେ । ତାଙ୍କ ପିତାଙ୍କ ନାମ ଭୋଜ ଦେବ ଓ ମାତାଙ୍କ ନାମ ରାଧାଦେବୀ ବୋଲି ଗୀତଗୋବିନ୍ଦ କାବ୍ୟର ଦ୍ୱାଦଶ ସର୍ଗଃ ଚତୁର୍ବିଂଶ ପ୍ରବନ୍ଧରେ ଉଲ୍ଲେଖିତ କରିଅଛନ୍ତି । ଯଥା- 'ଶ୍ରୀଭୋଜଦେବ ପ୍ରଭବସ୍ୟ, ରାଧାଦେବୀ ସୂତ ଜୟଦେବ କସ୍ୟ ।' ନିଜ ଜନ୍ମଭୂମିର ପରିଚୟ ସହିତ ମଧ୍ୟ ପଦ୍ମାବତୀଙ୍କ ପରିଚୟ ଗୀତଗୋବିନ୍ଦରେ ଦେଇଛନ୍ତି । ଯଥା- 'ଶ୍ରୀଜୟଦେବ କେନ ହରେରିହ ପ୍ରଣବେନ । କେନ୍ଦୁବିଲ୍ୱ ସମୁଦ୍ର ସମ୍ଭବ ରୋହିଣୀ ରମଣେନ ।' ଏହା ଗୀତଗୋବିନ୍ଦର ତୃତୀୟ ସର୍ଗଃ ଅଷ୍ଟମ ପ୍ରବନ୍ଧରେ ପ୍ରଦାନ କରିଅଛନ୍ତି । ପତ୍ନୀ ପଦ୍ମାବତୀଙ୍କୁ ମଧ୍ୟ କବି ତାଙ୍କ କାବ୍ୟରେ ସ୍ଥାନିତ କରିଅଛନ୍ତି ଦଶମ ସର୍ଗରେ । ଯଥା- ଜୟତି ପଦ୍ମାବତୀ ରମଣ ଜୟଦେବ କବି ଭାରତୀ ଭଣିତ ମିତି ଗୀତମ୍ । କୌଣସି ବ୍ୟକ୍ତିଙ୍କୁ ଜାଣିବାକୁ ହେଲେ ଆମେ ତାଙ୍କର ନାମ, ଧାମ ପିତୃମାତୃ, କୁଳର ପରିଚୟ ସହିତ ସେହି ରାଜ୍ୟର ନାମ ତଥା ପରିଚୟ ସଂପର୍କରେ ପ୍ରଶ୍ନ କରୁ । ଏ ସମସ୍ତ ଜାଣିବା ପରେ ତାଙ୍କ କୃତି ବା ଶିକ୍ଷାଦୀକ୍ଷା ସଂପର୍କରେ ଜାଣିବାକୁ ଇଚ୍ଛାହୁଏ । ଜୟଦେବଙ୍କ ଜନ୍ମ ପୂର୍ବରୁ ଆମ ରାଜ୍ୟ ଓଡ଼ିଶା ଶାସନ, ଶିକ୍ଷା ସଭ୍ୟତା, ସାହିତ୍ୟ, ସଂସ୍କୃତି ଓ କଳା (ଲଳିତକଳା, ଚିତ୍ରକଳା ଓ ଭାସ୍କର୍ଯ୍ୟ) ଇତ୍ୟାଦି କ୍ଷେତ୍ରରେ ଉତ୍କର୍ଷ ଲାଭ କରିଥିଲା । କେବଳ ସେତିକି ନୁହେଁ, ଏ ରାଜ୍ୟର ଜନତାଙ୍କର ଧର୍ମଧାରଣା ଐଶ୍ୱରୀୟ ଚିନ୍ତା ଓ ଭକ୍ତି ନିବେଦନ ଅନନ୍ୟ ଥିଲା । ଏହି ପ୍ରଦେଶର ଜନସାଧାରଣ ବିଷ୍ଣୁ, ଶିବ, ସୂର୍ଯ୍ୟ, ଦୁର୍ଗା ଇତ୍ୟାଦିଙ୍କର ଆରାଧନା କରିବାର ଜ୍ୱଳନ୍ତ ଉଦାହରଣ ହେଉଛି କଳାକୌଶଳରେ ନିର୍ମିତ ମନ୍ଦିରମାନ । ଯଯାତି କେଶରୀ ଏକାମ୍ରରେ ବହୁଶିବ ମନ୍ଦିର ନିର୍ମାଣ କରି ମନ୍ଦିରମାଳିନୀ ଏକାମ୍ର ନଗର ବୋଲି ଘୋଷଣା କରିଥିଲେ । ନରସିଂହ ଦେବ ଭାରତର ପୂର୍ବଦିଗର ଅର୍କ କୋଣରେ ପ୍ରସିଦ୍ଧ କାରୁକଳା ପୂର୍ଣ୍ଣ ସୂର୍ଯ୍ୟ ମନ୍ଦିର ନିର୍ମାଣ କରିଥିଲେ ଯାହାକି ବହୁ ଶତାବ୍ଦୀ ଧରି କୋଣାର୍କ ନାମରେ ପ୍ରସିଦ୍ଧ ।

ଇନ୍ଦ୍ରଦ୍ୟୁମ୍ନ ପୁରୁଷୋତ୍ତମ କ୍ଷେତ୍ରରେ ନୀଳକନ୍ଦର ଉପରେ ନିର୍ମାଣ କରିଥିଲେ ଶ୍ରୀମନ୍ଦିର ଯାହାକୁ ଲୋକେ ଜଗନ୍ନାଥ ମନ୍ଦିର ବୋଲି ଅଭିହିତ କରିଅଛନ୍ତି । ତତ୍କାଳୀନ ଉତ୍କଳରେ ମଧ୍ୟ ବହୁ ସଂସ୍କୃତ ଭାଷାର କବି, ବିଦ୍ୱାନ ଓ ପଣ୍ଡିତଗଣ ବହୁ ବିଶିଷ୍ଟ କୃତି ଓ କୀର୍ତ୍ତିର ଅଧିକାରୀ ହୋଇଥିଲେ । ଯଥା- ନୈଷଧ କାବ୍ୟ, ବେଣୀ ସଂହାର, ସାହିତ୍ୟଦର୍ପଣ ଅନର୍ଘ ରାଘବ, ପ୍ରବୋଧ ଚନ୍ଦ୍ରୋଦୟ ଓ ଭଗବଦ୍ ଗୀତାର ଭାଷା ଇତ୍ୟାଦି ଇତ୍ୟାଦି । ତତ୍କାଳୀନ ଉତ୍କଳର ସୁଶାସକ ବର୍ଗ ଆଗଙ୍ଗା ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ରାଜ୍ୟର ନିରଙ୍କୁଶ ଶାସକ ଥିଲେ ଏହି ରାଜ୍ୟ (କଳିଙ୍ଗ)ର ରାଜଚକ୍ରବର୍ତ୍ତୀ ଐର ମହାମେଘବାହନଙ୍କର ଦିଗ୍‌ବିଜୟର ବାର୍ତ୍ତା ପ୍ରସାରିତ ହୋଇଥିଲା ଉତ୍ତରରେ ମଥୁରା, ପଶ୍ଚିମରେ ନାସିକ ପର୍ଯ୍ୟନ୍ତ । ପ୍ରଥିତ ଯଥା ଖାରବେଳ ଖଣ୍ଡଗିରିର ଶିଳାଲେଖରେ ତାଙ୍କର ସୁଶାସନ ଓ କୀର୍ତ୍ତିରାଜି ଖୋଦିତ କରିଥିଲେ । ଗାନ୍ଧର୍ବ ବିଦ୍ୟାର ଚର୍ଚ୍ଚା ଓ ସଂଗୀତକାର ଗଣ ଓଡ଼ିଶୀ ସଂଗୀତର ଯଥେଷ୍ଟ ଆଦର ଲାଭକରି ଏହି ରାଜ୍ୟର ସୁଖ୍ୟାତି ବିସ୍ତାର କରିଥିଲେ । ଏହି ସମସ୍ତ ବିଶିଷ୍ଟ ସମ୍ଭାରରେ ପରିପୂର୍ଣ୍ଣ ଉତ୍କଳ ଭୂମିରେ ଭକ୍ତକବି ଶ୍ରୀଜୟଦେବଙ୍କର ଜନ୍ମ ହୋଇଥିଲା । ପିଲାଟି ଦିନରୁ ଜୟଦେବ ଅତି ଗେଲବସରରେ ପିତୃମାତୃଙ୍କଦ୍ୱାରା ଲାଳିତପାଳିତ ହୋଇଥିଲେ । ତାଙ୍କୁ ଯେତେବେଳେ ସାତବର୍ଷ ସେତେବେଳେ ତାଙ୍କ ପିତା ତାଙ୍କର ବ୍ରତୋପନୟନ କର୍ମ କରିଥିଲେ । ଏହାପରେ ଜୟଦେବଙ୍କର ପିତା ଓ ମାତାଙ୍କର ମୃତ୍ୟୁ ହୋଇଥିଲା । ଜୟଦେବ କିଛି ଦିନ ନିଜ ଗୃହରେ ରହିବାପରେ ନିଜ କକେଇଙ୍କ ଦ୍ୱାରା ବିତାଡ଼ିତ ହେଲେ । ସେହି ସମୟରେ ନିଜ ଗ୍ରାମର ତାଙ୍କ ଅନ୍ତରଙ୍ଗ ବନ୍ଧୁ ପରାଶରଙ୍କ ଅନୁରୋଧକ୍ରମେ ତାଙ୍କ ପିତାମାତାଙ୍କ ଇଚ୍ଛାରେ ତାଙ୍କ ଘରେ ରହିଲେ । ଉଭୟ ବନ୍ଧୁ ସାଥି ହୋଇ ପାଠପଢ଼ିବା ଖେଳିବାରେ ସମୟ ବିତାଉଥିଲେ । ସେତେବେଳେ ଶିକ୍ଷାର ମୂଳପୀଠ ଥିଲା ଗ୍ରାମ ଚାଟଶାଳୀ । ଏଠାରେ ଅବଧାନଙ୍କ ଶିକ୍ଷକତାରେ ଓଡ଼ିଆ ଭାଷାର ସ୍ୱରବର୍ଣ୍ଣ ବ୍ୟଞ୍ଜନ-ବର୍ଣ୍ଣ ଶିକ୍ଷା ସହିତ, ବ୍ୟାକରଣ, ଅମରକୋଷ ଓ ସଂସ୍କୃତଭାଷାର ବହୁ କାବ୍ୟ, କବିତା, ଚୌପଦୀ ଇତ୍ୟାଦି ଓ ଗଣିତ ଶାସ୍ତ୍ର ପାଠ କରୁଥିଲେ ।

ଜୟଦେବ ପିଲାଟି ଦିନରୁ ବିଷ୍ଣୁଭକ୍ତ ଥିଲେ । ବନ୍ଧୁ ପରାଶର ଓ ଜୟଦେବ ନିଜ ଗ୍ରାମଠାରୁ ଅନତି ଦୂରରେ ପ୍ରବାହିତ ପ୍ରାଚୀ ନଦୀରେ ଦୈନିକ ସ୍ନାନ କରୁଥିଲେ । ତା'ପରେ କେନ୍ଦୁବିଲ୍ୱରେ ଥିବା ଚତୁର୍ଭୁଜ ବିଷ୍ଣୁ, ଅମ୍ବିକାଦେବୀ ଓ ଶିବଙ୍କର ପୂଜା ଆରାଧନା କରିସାରିଲା ପରେ ଗୃହ ଦେବତାଙ୍କୁ ପୂଜା କରି ଅନ୍ନ ଗ୍ରହଣ କରୁଥିଲେ । ଖୁବ୍ ଅଳ୍ପ ବୟସରେ ପିତୃମାତୃ ହୀନ ହୋଇଥିବା ଜୟଦେବ ମୁଖ୍ୟତଃ ଧାର୍ମିକ ଚିନ୍ତାଧାରାର ଥିଲେ । ଦିନେ ରାତିରେ ତାଙ୍କ ସ୍ୱପ୍ନ ସତ୍ୟ ହେଲା । ଜୟଦେବ ମଧ୍ୟ ସ୍ନାନାନ୍ତେ ରାଧାମାଧବଙ୍କୁ କାନ୍ଧରେ ବହନ କରି ଆଣି ସ୍ୱପ୍ନାଦେଶ ପାଳନ

କଲେ କେନ୍ଦୁମୂଳରେ ସ୍ଥାପନ କରି । ଏହାପରେ ବୈଶାଖ ଶୁକ୍ଳ ଅକ୍ଷୟ ତୃତୀୟା ତିଥିରେ ରାଧାମାଧବଙ୍କ ଯୁଗଳ ପ୍ରତିମାଙ୍କର ପ୍ରତିଷ୍ଠା ସହିତ ଯଜ୍ଞ କାର୍ଯ୍ୟ ମଧ୍ୟ କରାଗଲା । ଏହି କାର୍ଯ୍ୟରେ ସ୍ଥାନୀୟ ଜନସାଧାରଣ ସଂପୂର୍ଣ୍ଣ ସହଯୋଗ କରିଥିଲେ । ସେହି ଅକ୍ଷୟ ତୃତୀୟା ତିଥିରେ ଅଧୁନା କେନ୍ଦୁଲି-ଦେଉଳି (କେନ୍ଦୁବିଲ୍ୱ ଗ୍ରାମ)ଠାରେ ଏହି ତିଥିକୁ ସ୍ମରଣ କରିବା ପାଇଁ ନାମକୀର୍ତ୍ତନ, ଯଜ୍ଞ ଇତ୍ୟାଦି ଆୟୋଜିତ କରାଯାଉଅଛି । ଏଥିରେ ରାଜ୍ୟ ସରକାରଙ୍କର ସୂଚନା ଓ ଲୋକ ସଂପର୍କ ବିଭାଗ, ସଂସ୍କୃତି ବିଭାଗ ଓ ସ୍ଥାନୀୟ ଜନସାଧାରଣ ଓ ଇସ୍କନ ସନ୍ନ୍ୟାସୀଗଣ ଭାଗ ନେଉଛନ୍ତି । ଏହି ଦିନଟିକୁ ରାଜ୍ୟ ସରକାର ଜୟଦେବଙ୍କ ଜୟନ୍ତୀ ରୂପେ ପାଳନ କରୁଛନ୍ତି ତାଙ୍କୁ ସ୍ମରଣ କରି । ସେ ତାଙ୍କ ପ୍ରିୟ ଠାକୁର ରାଧାମାଧବଙ୍କର ପରମଭକ୍ତ ଥିଲେ ଓ ତାଙ୍କୁ ପୂଜା ଆରାଧନା ସ୍ତୁତି କରି ଆତ୍ମ ପ୍ରସାଦ ଲାଭ କରୁଥିଲେ । ତାଙ୍କର ଇଚ୍ଛା ନଥିଲା ଗୃହସ୍ଥାଶ୍ରମରେ ଆବଦ୍ଧ ହେବା ପାଇଁ । ଦକ୍ଷିଣ ଓଡ଼ିଶାର ଜଣେ ବୃଦ୍ଧ ବ୍ରାହ୍ମଣ ତାଙ୍କ କନ୍ୟା ସୁନ୍ଦରୀ ପଦ୍ମାବତୀଙ୍କୁ ସାଥିରେ ଧରି ପୁରୀରେ ପହଞ୍ଚି ମହାପ୍ରଭୁ ଜଗନ୍ନାଥଙ୍କ ଚରଣରେ ଏହି କନ୍ୟାଟିକୁ ସମର୍ପଣ କରିବାକୁ ଇଚ୍ଛାପ୍ରକାଶ କରିବାରୁ ପ୍ରଭୁଙ୍କଠାରୁ ସ୍ୱପ୍ନାଦେଶ ହେଲା କେନ୍ଦୁବିଲ୍ୱରେ ଥିବା ମୋର ପରମ ଭକ୍ତ ଜୟଦେବଙ୍କୁ ଏ କନ୍ୟା ବିବାହ ଦେବା ପାଇଁ । ତଦନୁଯାୟୀ ବୃଦ୍ଧ ବ୍ରାହ୍ମଣ କେନ୍ଦୁବିଲ୍ୱକୁ ଯାଇ ଜୟଦେବଙ୍କୁ ପ୍ରଭୁଙ୍କ ଇଚ୍ଛା ଜଣାଇଥିଲେ । ଜୟଦେବ ଏହା ବିଶ୍ୱାସ ନକରି ତାଙ୍କୁ ଫେରିଯିବା ପାଇଁ କହିଲେ । ସେହିଦିନ ରାତ୍ରିରେ ସେ ଜଗନ୍ନାଥଙ୍କର ଆଦେଶ ପ୍ରାପ୍ତ ହେଲେ ସ୍ୱପ୍ନରେ କନ୍ୟାକୁ ଗ୍ରହଣ କରିବା ପାଇଁ । ଏହି ଘଟଣା ପରେ ଜୟଦେବ ପ୍ରଭୁଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ପଦ୍ମାଙ୍କୁ ନିଜ ଆଶ୍ରମରେ ରହିବା ପାଇଁ ସ୍ୱୀକୃତି ଦେଲେ । ଜୟଦେବ ସ୍ୱଭାବତଃ ଥିଲେ ବିଷ୍ଣୁଭକ୍ତ ଓ ଗାନ୍ଧର୍ବ ବିଦ୍ୟାନୀପୁଣ ଓ ପଦ୍ମାବତୀ ଥିଲେ ନୃତ୍ୟ ପଟ୍ଟୟସୀ ନାରୀ । ଏଣୁ ଉଭୟ ଏକ ପ୍ରଶସ୍ତ ପଥରେ ହେଲେ ପଥିକ । ଆରମ୍ଭ ହେଲା କାବ୍ୟ ରଚନା । କେନ୍ଦୁବିଲ୍ୱ ଗ୍ରାମଟିରେ ଥିବା ନାନା ଜାତିର ବୃକ୍ଷ-ଯଥା- ତାଳ, ତମାଳ, ନାରିକେଳ ପୁନାଙ୍ଗ, ଗୁଜାକ, ବଟ, ଅଶ୍ୱତ୍ଥ, ବକୁଳ ଓ ଆମ୍ର ଇତ୍ୟାଦି ଫଳପ୍ରସୂ ବୃକ୍ଷ ଓ ମାଧବୀ, ମାଳତୀ ମଲ୍ଲୀ, କେତକୀ, କରବୀର, ପାଟଳୀ, ପଳାସ ଓ ଲବଙ୍ଗଲତା ଇତ୍ୟାଦି ବହୁ କୁସୁମ ଶୋଭିତ ବୃକ୍ଷ ସମୂହ ତଥା ବହୁ ପୁଷ୍କରିଣୀ, ଡୋଗ, କୂପ ଇତ୍ୟାଦି ଥିଲା । ଏଥିସହିତ ସେଠାରେ ଯୋଗୀଜନ ମନଭୁଲା ବହୁ ବିହଙ୍ଗଙ୍କର କାକଳି ଶୁଣିବାକୁ ମିଳୁ ଥିଲା । ସେଭଳି ଶୋଭାଯୁକ୍ତ ପ୍ରାକୃତିକ ପରିବେଶ କବିବର ଜୟଦେବଙ୍କୁ ପ୍ରେରଣା ପ୍ରଦାନ କଲା ଗୀତ ଗୋବିନ୍ଦ କାବ୍ୟ ରଚନା କରିବା ପାଇଁ । ଏହି କାବ୍ୟ ରାଧାମାଧବଙ୍କୁ ନେଇ ରଚିତ ଓ ତାଙ୍କ ଚରଣରେ ଅର୍ପିତ କରିବା ପାଇଁ କବି ମନସ୍ଥିର କରିଥିଲେ । ଏହି କାବ୍ୟଟି ଦ୍ୱାଦଶ ସର୍ଗ ଓ ଚବିଶ ଗୋଟି ପ୍ରବନ୍ଧରେ ରଚିତ ହୋଇଥିଲା । ସଂସ୍କୃତ ଭାଷାରେ ପ୍ରତ୍ୟେକ ସର୍ଗରେ ଆଠଟି ପଦ ଓ ଏହାର ଗାୟନ ଶୈଳୀ ପାଇଁ ନିର୍ଦ୍ଦିଷ୍ଟ ରାଗ ତାଳ, ଲୟ ଯତିପାତ ଇତ୍ୟାଦି ମଧ୍ୟ ସୂଚିତ ହୋଇଥିଲା । ସର୍ଗଃର ଗାୟନ ପଦ୍ଧତିର ଲକ୍ଷଣମାନ ମଧ୍ୟ ଲିପିବଦ୍ଧ ହୋଇଥିଲା । ତତ୍କାଳୀନ ସଂସ୍କୃତ ଭାଷାରେ ରଚିତ ସଂଗୀତରେ ବହୁ ରାଗ ରାଗିଣୀର ସ୍ଥାନ ଥିଲା ।

ଗୀତଗୋବିନ୍ଦର ପ୍ରଥମ ସର୍ଗର ତୃତୀୟ ଶ୍ଳୋକର 'ଯଦି ହରି ସ୍ମରଣେ ସରସଂ ମନୋ ଯଦ୍ ବିଳାସ କଳାସୁ କତୁ ହଳଂ ମଧୁର କୋମଳ କାନ୍ତ ପଦାବଳୀ ଶୃଣୁତଦା ଜୟଦେବ ସରସ୍ୱତୀ ।' ଯେଉଁ ଭକ୍ତଜନଙ୍କ ମନ ହରିଙ୍କ ଚରଣରେ ସମର୍ପିତ ସେମାନେ ବିଳାସ କଳାରେ କୌତୁହଳ ହୋଇ ଏହି ମଧୁର କୋମଳ ସୁନ୍ଦର ପଦମାନ ଶୁଣିଲେ କୃତାର୍ଥ ହେବେ । ଜୟଦେବଙ୍କ ସହିତ ପଦ୍ମାବତୀଙ୍କର ଏକତ୍ର ବାସ ପ୍ରଭୁଙ୍କ ଚରଣରେ ସମର୍ପିତ ମନ ଓ ଏକଚିନ୍ତାର ବୈଷ୍ଣବୀୟ ସ୍ରୋତରେ ଭାସମାନ ଭକ୍ତି ରସାପ୍ଲୁତ ଆତ୍ମା ଇତ୍ୟାଦିର ପରିସ୍ଫୁଟନ ହୋଇଛି ଗୀତଗୋବିନ୍ଦରେ । ଗୀତଗୋବିନ୍ଦର ପ୍ରଥମ ସର୍ଗରେ ପ୍ରଥମ ଗୀତ ଦଶାବତାର ବର୍ଣ୍ଣନା ଓ ଦ୍ୱିତୀୟ ଗୀତରେ ଶ୍ରିତ କମଳାକଚେ ମଣ୍ଡନମ୍ ଓ ତୃତୀୟ ଗୀତରେ ବସନ୍ତ ଋତୁର ବିସ୍ତୃତ ବର୍ଣ୍ଣନା ସହିତ କୁଂଜରେ ରାଧାମାଧବଙ୍କର ଏକାନ୍ତ ଉପସ୍ଥିତି କାମନା ବିଷୟରେ ସେ ତାଙ୍କ ସଖୀଙ୍କୁ ଜଣାଇଥିଲେ ।

ବସନ୍ତ ରାଗରେ - ଯତି ତାଳରେ ଗାଇବାର ନିର୍ଦ୍ଦେଶ କରାଯାଇଅଛି କାବ୍ୟରେ । କବି ଜୟଦେବଙ୍କର ଲେଖା ସର୍ଗ ପରେ ସର୍ଗ ଚାଲିଥାଏ । ଦଶମ ସର୍ଗର ଲେଖା ଆରମ୍ଭ ହେଲା । ମାଧବ ରାଧାଙ୍କୁ ଚାଟୁ ବଚନ କହି ଭୁଲାଇବାକୁ ଚାହୁଁଥାଆନ୍ତି ପ୍ରେମ ନିବେଦନ କରି । ରାଧା କିନ୍ତୁ ନିଶ୍ଚଳ ସ୍ତମ୍ଭପରି ଠିଆ ହୋଇ ଶୁଣୁ ଥାଆନ୍ତି । ଏହିପରି ମାଧବଙ୍କର ପ୍ରେମ ଜର୍ଜରିତ ମନର ଅବସ୍ଥା ଥାଏ । ଏହାର ପରବର୍ତ୍ତୀ ପଦ କବିଙ୍କର ମନକୁ ଛୁଇଁଲା ଯେ - ନାଗର ରାଜ ମାଧବ ରାଧାଙ୍କୁ ଅତି ବିନୟ ହୋଇ ପ୍ରେମ ନିବେଦନ କରିବେ- ହେ ସୁନ୍ଦରି ! 'ସ୍ଥଳ କମଳ ରଞ୍ଜନଂ ମମ ହୃଦୟ ରଞ୍ଜନମ୍, ଜନିତ ରତି ରଙ୍ଗ ପରଭରଗମ୍' ଓ ତା' ପରବର୍ତ୍ତୀ ଶ୍ଳୋକରେ ଏକ ପଦ ଜୟଦେବଙ୍କୁ ବିଚଳିତ କଲା - 'ସ୍ମର ଗରଳ ଖଣ୍ଡନମ୍ ମମ ଶିରସି ମଣ୍ଡନଂ, ଦେହି ପଦ

ପଲ୍ଲବ ମୁଦାରଂ ।' ସେ ଲେଖା ବନ୍ଦ କରି ସ୍ନାନ କରିବା ପାଇଁ ପ୍ରସ୍ତୁତ ହେଲେ । ସ୍ନାନ ପାଇଁ ପ୍ରାଚୀ ନଦୀକୁ ଗଲେ । ଏହି ପଦଟିକୁ ଯେ ମୋ' ଭକ୍ତ କେବେ ହେଲେ ଲେଖିବ ନାହିଁ ଏହା ଜାଣିଲେ ଭକ୍ତପ୍ରିୟ ମାଧବ । ମହାପ୍ରଭୁ କିଛି ସମୟ ପରେ ଜୟଦେବଙ୍କ ରୂପରେ ଫେରିଆସି ପଦ୍ମାଙ୍କୁ ଖେଦା ଓ ଲେଖନୀ ଆଣିବା ପାଇଁ କହିଲେ । ଯେଉଁ ପଦଗୋଟି ଜୟଦେବ ଲେଖିବା ପାଇଁ ମନସ୍ଥ କରି ପ୍ରଭୁଙ୍କୁ ଅପମାନ ହେବ ଭାବି ଲେଖାବନ୍ଦ କରିଥିଲେ, ତାହା ପୂରଣ କରି ସ୍ୱପଥରେ ବାହାରିଗଲେ । ପଦ୍ମାବତୀଙ୍କୁ ପଥ ମଧ୍ୟରେ ପଦଟି ମନେ ପଡ଼ିବାରୁ ଏପରି ଫେରି ଆସି ଲେଖି ଦେଲି ବୋଲି କହି ଫେରିଗଲି । ନଦୀରୁ ସ୍ନାନ ସାରି ଜୟଦେବ ଫେରି ନିଜ ଆଶ୍ରମରେ ପହଞ୍ଚି ଦେବତା ପୂଜା ପରେ ଭୋଜନ କରି ବିଶ୍ରାମ ନେଲେ । ତା'ପରେ ଯେତେବେଳେ ପୁନରାୟ ଲେଖା ଆରମ୍ଭ କଲେ ଦେଖିଲେ ତାଙ୍କ ମନ ମଧ୍ୟରେ ଚିନ୍ତା କରିଥିବା ପଦ ଗୋଟି ଖେଦାରେ ଲେଖା ହୋଇଅଛି । ଏ କି ଆଶ୍ଚର୍ଯ୍ୟ, କିଏ ଏହା ଲେଖିଲା । ପଦ୍ମାଙ୍କ ବର୍ଣ୍ଣନାରୁ ସବୁ ଜାଣି ଉକ୍ତିରେ ପାଗଳ ପ୍ରାୟ ହୋଇ ବିଶ୍ୱାସ କଲେ ଏହା ନିଜେ ମାଧବ ହିଁ ଲେଖିଛନ୍ତି । ପଦ୍ମା ଓ ଜୟଦେବ ସ୍ୱର୍ଗୀୟ ଆନନ୍ଦରେ ନିଜକୁ ଭୁଲି ଗଲେ । ପ୍ରଭୁଙ୍କର ଅଶେଷ କରୁଣା ଯେ ଆମ ଦୁହିଁଙ୍କ ପାଇଁ ଏହାଠାରୁ ଅଧିକ କ'ଣ ବା ଦରକାର । ପ୍ରଭୁ ସ୍ୱପ୍ନରେ ସମସ୍ତ ବୃତ୍ତାନ୍ତ ଜୟଦେବଙ୍କୁ କହିଲେ 'ରାଧା ଓ ମାଧବ ଏକ ମଞ୍ଜିର ଦୁଇ ଗୋଟି ଫାଳ । ସେ ଓ ମୁଁ ଏକ ବୃନ୍ତର ଗୋଟିଏ ଫାଳ । ତୁମେ ଅଚିନ୍ତାରେ କାବ୍ୟ ପୂରଣ କରି ମୋତେ ଅର୍ପଣ କର ।'

ଏହା ପରେ ଭକ୍ତକବି ଜୟଦେବ ପଦ୍ମାଙ୍କ ସହିତ ପୁରୀକୁ ଯାଇ ମହାପ୍ରଭୁ ଜଗନ୍ନାଥଙ୍କୁ ଦର୍ଶନ କରି ସେଠାରେ ଗୁଣ୍ଡିଚା ମନ୍ଦିର ନିକଟରେ ଏକ ଆଶ୍ରମ କରି ବାସ କଲେ । କବି ଦୈନିକ ଶ୍ରୀମନ୍ଦିର ପରିସରରେ ଗୀତଗୋବିନ୍ଦର ଅମୃତମୟ ପଦଗୁଡ଼ିକ ଗାୟନ କରି ଉକ୍ତ ପଣ୍ଡା ପ୍ରତିହାରୀମାନଙ୍କ ମଧ୍ୟରେ ଜଣାଶୁଣା ହେଲେ । କବିଙ୍କର କାବ୍ୟ ସଂପର୍କରେ ଓଡ଼ିଶାର ମଉଡ଼ମଣି ଗଜପତି ଏହା ଜାଣିପାରି କବିଙ୍କୁ ମନ୍ଦିର ମଧ୍ୟରେ ଗୀତଗୋବିନ୍ଦ ଗାଇବା ପାଇଁ ଆଦେଶ ଦେଲେ । ଗୀତଗୋବିନ୍ଦ ମନ୍ଦିରରେ ଥିବା ଭିତର ଗାଉଣୀରେ ଜଗନ୍ନାଥଙ୍କ ପହଡ଼ ସମୟରେ ବୋଲା ହେବ । ଗୀତଗୋବିନ୍ଦ ବୋଲା ହେଲାବେଳେ ମହାପ୍ରଭୁ କେନ୍ଦୁଲି ଖଣ୍ଡୁଆ ପାଟ ବା କେନ୍ଦୁଲି ଫେଟାରେ ଘୋଡ଼ାଇ ହେବା ରାଜାଙ୍କର ଆଦେଶ ଥିଲା । ଏହାର ନାମ ଚଞ୍ଚୁ ସେବା ବା ଗୀତଗୋବିନ୍ଦ କୁହାଯାଏ । ଧୀରେ ଧୀରେ ଗୀତଗୋବିନ୍ଦର ଖ୍ୟାତି ସାରା ଭାରତବର୍ଷର ଭକ୍ତଗଣଙ୍କ ମାଧ୍ୟମରେ ବ୍ୟାପିଗଲା । ବହୁ କବି, ଲେଖକ, ସାଧୁ ସନ୍ଥ ଗୀତଗୋବିନ୍ଦର କାନ୍ତ କୋମଳ ଲାଳିତ୍ୟ ପଦ ସଂଯୋଜନା ଓ ସରଳ ସଂସ୍କୃତ କବିତାର ଭାଷ୍ୟରେ ମୋହିତ ହୋଇ କବିଙ୍କୁ ଶତମୁଖରେ ବିଭିନ୍ନ ପ୍ରାନ୍ତରେ ପ୍ରଶଂସା କଲେ । ଜୟଦେବଙ୍କ ପାଇଁ ଉତ୍କଳବାସୀ ଗର୍ବିତ ।

ଅଭ୍ୟୁଦୟ ନଗର
ଡୁମୁଡୁମା, ଭୁବନେଶ୍ୱର



# ଶ୍ରୀଜଗନ୍ନାଥଙ୍କ ଭକ୍ତ ଜୟଦେବ

ଶ୍ରୀନିବାସ ଆଚାର୍ଯ୍ୟ

**ଜ**ୟଦେବ ଯେ କେବଳ ଗୀତଗୋବିନ୍ଦ କାବ୍ୟର ରଚୟିତା ଭାବରେ ସୁପରିଚିତ ତାହା ନୁହେଁ, ସେ ଥିଲେ ନୀଳାଚଳବାସୀ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ । ପୁରାଣରେ ବର୍ଣ୍ଣିତ ଅଛି ସ୍ୱୟଂ ବିଷ୍ଣୁଙ୍କର ସହସ୍ର ନାମ ମଧ୍ୟରେ ଶ୍ରୀକୃଷ୍ଣ, ମାଧବ ଓ ଜଗନ୍ନାଥଙ୍କ ନାମ ଅନ୍ୟତମ । ବହୁ କିମ୍ବଦନ୍ତୀ କହେ ଶ୍ରୀମାଧବ ପରୋକ୍ଷ ଭାବରେ ଜୟଦେବଙ୍କ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସମସ୍ତ ବିପଦଆପଦ ଓ ମାଙ୍ଗଳିକ କାର୍ଯ୍ୟରେ ଛାଇପରି ରହିଥିଲେ । ଜୟଦେବଙ୍କର ପ୍ରଗାଢ଼ ଉଦ୍ୟମ, ଅଟଳ ଆତ୍ମବିଶ୍ୱାସ ଓ ଦୃଢ଼ ଇଚ୍ଛାଶକ୍ତି ବଳରେ ସେ ହୋଇପାରିଛନ୍ତି ଏତେବଡ଼ ଆସନର ଅଧିକାରୀ । ତ୍ରେତୟା ଯୁଗରେ ଭକ୍ତ ହନୁମାନ ଓ ପ୍ରଭୁ ଶ୍ରୀରାମ, ଦ୍ୱାପର ଯୁଗରେ ସଖା ଅର୍ଜୁନ ଓ ଭଗବାନ ଶ୍ରୀକୃଷ୍ଣ ଯେପରି ପରମ ଭକ୍ତ ଓ ଭଗବାନ ହୋଇପାରିଥିଲେ, ଠିକ୍ ସେପରି ଜୟଦେବ ଓ ଶ୍ରୀଜଗନ୍ନାଥ ହୋଇପାରିଛନ୍ତି ଭକ୍ତ ଓ ଭଗବାନ ।

ଯେଉଁ ପବିତ୍ର ମାଟିରେ ଶତ ଶତ ଦେବାଦେବୀଙ୍କ ପ୍ରତିମାମାନ ମନ୍ଦିର, ଗାଦୀ ଆଶ୍ରମ, ମଠ ଇତ୍ୟାଦିରେ ରହି ପୂଜା ପାଉଛନ୍ତି, ସେହି ପୀଠଭୂମିରେ ଜୟଦେବଙ୍କ ଜନ୍ମସ୍ଥାନ । ତ୍ରିକ୍ଷେତ୍ର ତଥା ତ୍ରିବେଣୀ ଭୂମି ରୂପେ ପ୍ରତିଷ୍ଠିତ ଶ୍ରୀକ୍ଷେତ୍ର, ଅର୍କକ୍ଷେତ୍ର ଓ ଏକାମ୍ରନଗରୀ ମଧ୍ୟରେ ଅବସ୍ଥିତ ପବିତ୍ର ପ୍ରାଚୀନଦୀ କୂଳରେ ତ୍ରିବେଣୀ ବୁଢ଼ ଧର୍ମପୀଠଠାରୁ ଅନତି ଦୂରରେ କେନ୍ଦୁଲି ବା କେନ୍ଦୁବିଲ୍ୱ ଗ୍ରାମରେ ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗରେ ବୈଶାଖମାସ ଶୁକ୍ଳପକ୍ଷ ଅକ୍ଷୟ ତୃତୀୟା ତିଥିରେ କବି ଜୟଦେବ ଜନ୍ମଗ୍ରହଣ କରିଥିଲେ । ପିତା ଭୋଜଦେବ ମାତା ରାଧାଦେବୀଙ୍କ ଔରସରୁ ଏକ କୁଳିନ ବ୍ରାହ୍ମଣ ପରିବାରରେ ମାଧବଙ୍କ ଆଶୀର୍ବାଦରୁ ସେ ଭୂମିଷ୍ଠ ହୋଇଥିଲେ । ତାଙ୍କର ପତ୍ନୀ ଥିଲେ ପଦ୍ମାବତୀ । ସେ ଥିଲେ କର୍ଣ୍ଣାଟୀ ବ୍ରାହ୍ମଣ କନ୍ୟା । କଥିତ ଅଛି ପଦ୍ମାବତୀଙ୍କ ପିତା ଶ୍ରୀଜଗନ୍ନାଥଙ୍କ ଆଶୀର୍ବାଦରୁ ପଦ୍ମାବତୀଙ୍କୁ ପାଇଥିଲେ । ଜୟଦେବଙ୍କୁ ବିବାହ ପୂର୍ବରୁ ପଦ୍ମାବତୀ ଥିଲେ ଜଣେ ନୃତ୍ୟଶିଳ୍ପୀ । ପିତା ପଦ୍ମାବତୀଙ୍କୁ ଶ୍ରୀକ୍ଷେତ୍ରସ୍ଥିତ ଶ୍ରୀଜଗନ୍ନାଥଙ୍କ ପାଖରେ ଅର୍ପଣ କରି ସ୍ୱରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ତତ୍କାଳୀନ ସମୟରେ ଜୟଦେବ ସନ୍ନ୍ୟାସୀ ଧର୍ମରେ ଦୀକ୍ଷିତ ହୋଇଥିଲେ । ପଦ୍ମାବତୀଙ୍କୁ ପତ୍ନୀ ରୂପେ ଗ୍ରହଣ କରିବାକୁ ଅନିଚ୍ଛା ପ୍ରକାଶ କରିଥିଲେ । କିନ୍ତୁ ଜଗନ୍ନାଥଙ୍କର ସ୍ୱପ୍ନାଦେଶ ମାଧ୍ୟମରେ ପଦ୍ମାବତୀଙ୍କୁ ବିବାହ କରି ସାଂସାରିକ ଜୀବନରେ ଦୀକ୍ଷିତ ହୋଇଥିଲେ । ଶ୍ରୀଜଗନ୍ନାଥଙ୍କର ଆଶୀର୍ବାଦ ଓ ପଦ୍ମାବତୀଙ୍କର ଅନାବିଳ ପ୍ରେମ ଓ ସାହାଯ୍ୟ ବଳରେ ଜୟଦେବ ଏହି ଭାବପୂର୍ଣ୍ଣ କାବ୍ୟ ରଚନା କରିବାରେ ସମର୍ଥ ହୋଇଥିଲେ ।

ଏଗାରବର୍ଷ ବୟସରେ ଜୟଦେବ ପିତାମାତାଙ୍କୁ ହରାଇ ହୋଇଯାଇଥିଲେ ଏକ ଅସହାୟ ଓ ଅନାଥ ବାଳକ । ଏହି ଦାରୁଣ ଦୁଃଖ ଓ ବିଷାଦରେ ମ୍ରିୟମାଣ ହୋଇଥିଲେ ମଧ୍ୟ ସେ ଭାଙ୍ଗି ନପଡ଼ି ଭଗବତ୍ କୃପାକୁ ପାଥେୟ କରି, କର୍ତ୍ତବ୍ୟ ପଥରେ ଅଗ୍ରସର ହୋଇଥିଲେ । ତାଙ୍କ ଜୀବନର କେତେଗୁଡ଼ିଏ ଘଟଣାରୁ ସୂଚନା ମିଳେ ଯେ, ଭଗବତ୍ କୃପା ଯୋଗୁଁ ତାଙ୍କର ସମସ୍ତ ବିପଦ ପାଣି ଫୋଟକା ପରି ଅପସରି ଯାଇଥିଲା । କ୍ରମଶଃ ତାଙ୍କର ମାଧବଙ୍କ ପ୍ରତି ଅଟଳ ବିଶ୍ୱାସ ଭାବ ଜାଗ୍ରତ ହୋଇଥିଲା । ପିତାଙ୍କ ମୃତ୍ୟୁର ପରେ ପରେ ଘର ଦ୍ୱାର ଓ ସାହି ପଡ଼ିଶାଙ୍କ ମାୟାମମତାକୁ ଡୋରି ବାନ୍ଧି ତାଙ୍କ ଗ୍ରାମର ଏକ ବ୍ରାହ୍ମଣ ବାଳକକୁ ସଙ୍ଗରେ ଧରି ସେ ଶ୍ରୀକ୍ଷେତ୍ର ଅଭିମୁଖେ ଯାତ୍ରା କରିଥିଲେ । ବାଟରେ ପାଦରେ ଚାଲିଯିବା ଅବସରରେ ଭୋକ ଶୋଷର ତାଡ଼ନା ସହ୍ୟ କରି ନପାରି ମୂର୍ଚ୍ଛା ହୋଇଯାଇଥିଲେ । ପରମଭକ୍ତର ଦୁଃଖକୁ ସହ୍ୟ କରିନପାରି ଅନାଥବନ୍ଧୁ ଶ୍ରୀଜଗନ୍ନାଥ ପରୋକ୍ଷ ଭାବରେ ଜଣେ ବ୍ରାହ୍ମଣ ରୂପେ ଆବିର୍ଭୂତ ହୋଇଥିଲେ । ତାଙ୍କର ସମସ୍ତ ଦୁଃଖ ଓ ଯନ୍ତ୍ରଣା ଦୂର କରାଇ ଶ୍ରୀକ୍ଷେତ୍ର ପୀଠରେ ପହଞ୍ଚାଇ ଥିଲେ । ଶ୍ରୀକ୍ଷେତ୍ରରେ ଜଗନ୍ନାଥଙ୍କୁ ଦର୍ଶନ କରି ସେ ନିଜକୁ ଧନ୍ୟ ମଣିଥିଲେ ।

ପ୍ରଥମେ ସେ ଶ୍ରୀକ୍ଷେତ୍ରରେ ଏକ ବଟବୃକ୍ଷ ତଳେ ଏକ କୁଡ଼ିଆ ଘର କରି ରହିଥିଲେ । ଭିକ୍ଷା ମାଗି ଜୀବିକା ନିର୍ବାହ କରୁଥିଲେ ମଧ ତାଙ୍କର ମନ ରହିଥିଲା ଶ୍ରୀଜଗନ୍ନାଥଙ୍କ ପାଖରେ । ପ୍ରତ୍ୟହ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ଥିଲା ତାଙ୍କର ଆଦ୍ୟ କାର୍ଯ୍ୟ । ସନ୍ନ୍ୟାସୀ ବେଶରେ ଭିକ୍ଷା କରି ଯାହା ଆଣୁଥିଲେ ରୋଷାଇ କରି ଶ୍ରୀଜଗନ୍ନାଥଙ୍କୁ ଅର୍ପଣ କରିବା ପରେ ସେ ଭକ୍ଷଣ କରୁଥିଲେ । ପ୍ରତ୍ୟହ ସନ୍ଧ୍ୟା ସମୟରେ ଜଗନ୍ନାଥଙ୍କୁ ଦର୍ଶନ କରି ନାମ ସଂକୀର୍ତ୍ତନରେ ମଜ୍ଜି ରହୁଥିଲେ ପହଡ଼ ପଡ଼ିବା ପର୍ଯ୍ୟନ୍ତ । ସେହି କୁଡ଼ିଆ ଘର ଆଜି ଶ୍ରୀକ୍ଷେତ୍ର ପୀଠରେ 'ଦଶଅବତାର' ମଠ ନାମରେ ପରିଚିତ । ଏକଦା ସେହି ବଟବୃକ୍ଷ ତଳେ ଥିବା କୁଡ଼ିଆ ଘରେ ଗଭୀର ଭାବରେ ଧ୍ୟାନମଗ୍ନ ଥିବାବେଳେ ଶ୍ରୀକୃଷ୍ଣଙ୍କ ବଂଶୀବାଦର ସ୍ୱର ନିସୃତ ହେବା ସଂଗେସଂଗେ ସ୍ୱୟଂ ଶ୍ରୀକୃଷ୍ଣ ଆବିର୍ଭାବ ହୋଇଥିଲେ । ପ୍ରଭୁଙ୍କୁ ଦର୍ଶନ କରି ସ୍ୱତଃ ଜୟଦେବଙ୍କ ମୁଖରୁ ଏକ ଶ୍ଳୋକ ନିସୃତ ହୋଇଥିଲା । ତାହା ଥିଲା-

ମେଘୈର୍ମେଦୁର ମୟୂରଂ ବନଭୂବଃ -- ଯମୁନା କୂଳେ ରହ କେଳୟଃ । ସେହିଦିନଠାରୁ ଜୟଦେବଙ୍କର କାବ୍ୟ ଲେଖିବାର ପ୍ରତିଭା ବିକଶିତ ହୋଇଥିଲା । ଶ୍ରୀଜଗନ୍ନାଥଙ୍କର ନାମ କୀର୍ତ୍ତନ ବ୍ୟତୀତ ଜୟଦେବଙ୍କର ଅନ୍ୟ କୌଣସି କାର୍ଯ୍ୟ ପ୍ରତି ମନ ନଥିଲା । ସେ ଧ୍ୟାନ ମଗ୍ନ ଥିବାବେଳେ ଦଶାବତାର ଦର୍ଶନର ସୌଭାଗ୍ୟ ଅର୍ଜନ କରିଥିଲେ । ତତ୍ପରେ 'ଗୀତଗୋବିନ୍ଦ' କବିତା ଲେଖିବାରେ ସମର୍ଥ ହୋଇଥିଲେ । ଏହି କବିତାର ରସ ଓ ଶୈଳୀ 'ଜୟଜଗଦୀଶ ହରେ' ଶବ୍ଦଟି ଲଗାଇ ପ୍ରତ୍ୟେକ ପଦ ଗଠନ ହୋଇଥିବାରୁ, ତାହା ସମାଜରେ ତଥା ସାହିତ୍ୟ ଜଗତରେ ସ୍ୱୀକୃତି ଲାଭ କରିଥିଲା ।

କଥିତ ଅଛି ଶ୍ରୀକୃଷ୍ଣ ଜୟଦେବଙ୍କୁ ଗୀତଗୋବିନ୍ଦ କାବ୍ୟ ରଚନାରେ ପ୍ରତ୍ୟକ୍ଷ ଭାବରେ ସାହାଯ୍ୟ କରିଥିଲେ । ପ୍ରତ୍ୟହ ଜୟଦେବ ଗୀତଗୋବିନ୍ଦ କାବ୍ୟ ରଚନା କରନ୍ତି । ଗୋଟିଏ ଦିନ ସକାଳେ ସେ ତାଳପତ୍ର ପୋଥିରେ ତାଙ୍କ ଆଶ୍ରମରେ କାବ୍ୟ ରଚନା ସମୟରେ ତଳ ପଦର ଶେଷ ଚରଣଟି ଆଦୌ ସ୍ମରଣ ହେଉନଥିଲା । ତେଣୁ ସେ ଗଭୀର ଚିନ୍ତାମଗ୍ନ ଅବସ୍ଥାରେ ମୁଣ୍ଡରେ ହାତ ଥୋଇ ତଳ ପଦ ଚରଣଟି ଭାବୁଥିଲେ । ଚାହୁଁ ଚାହୁଁ ସମୟ ଅତିବାହିତ ହୋଇଥିଲା ସିନା ପଦ୍ୟଟି ପୂରଣ ହେଲା ନାହିଁ ।

ସ୍ମର ସରଳ ଖଣ୍ଡନଂ ମମ ଶିରସି ମଣ୍ଡନଂ ... । ଏହି ପଦରେ ଲେଖାଟି ବନ୍ଦ ହୋଇ ରହିଥାଏ । ବିଳମ୍ବ ଦେଖି ଓ ସ୍ୱାମୀଙ୍କ ଏପରି ଅବସ୍ଥା ବୁଝିପାରି ପତ୍ନୀ ପଦ୍ମାବତୀ କହିଲେ ଆପଣ ସ୍ନାନ ଓ ତର୍ପଣ ସାରି ଠାକୁରଙ୍କ ପ୍ରସାଦ ସେବନ ପରେ ଅନ୍ୟ ପଦଟି ମନେପଡ଼ିବ । ସ୍ନାନ ସମୟ ଗଡ଼ି ଗଲାଣି ଯାଆନ୍ତୁ ସ୍ନାନ କରିବା ପାଇଁ । ପଦ୍ମାବତୀଙ୍କ କଥା ମାନି ଜୟଦେବ ସ୍ନାନ କରିବା ପାଇଁ ଯିବା ଅବସରରେ ସ୍ୱୟଂ ଭଗବାନ ଜୟଦେବଙ୍କ ଅବିକଳ ରୂପ ଧାରଣ କରି ଆଶ୍ରମରେ ଉପସ୍ଥିତ ହୋଇଥିଲେ । ଏହା ଦେଖି ପତ୍ନୀ ଜୟଦେବ ବୋଲି ଭାବି ପୂର୍ବପରି ତାଙ୍କର ଭୋଜନ ପ୍ରସ୍ତୁତ କରିଥିଲେ । ବ୍ରାହ୍ମଣ ଜଣକ ଭୋଜନସାରି ଅସମ୍ପୂର୍ଣ୍ଣ ପଦକୁ ପୂରଣ କରି ଶୋଇବା କକ୍ଷରେ ବିଶ୍ରାମ ନେଲେ । ପଦ୍ମାବତୀ ସ୍ୱାମୀଙ୍କ ଥାଳିରେ ଖାଇ ବସିଲେ । କିଛି ସମୟ ପରେ ଜୟଦେବ ସ୍ନାନ ସାରି ଘରକୁ ଫେରିବା ଦେଖି ପଦ୍ମାବତୀ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ପତ୍ନୀଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ଅସମ୍ପୂର୍ଣ୍ଣ ପଦଟି ତାଳପତ୍ର ପୋଥିରେ ଲେଖା ହୋଇଥିବା ଦେଖି ବିସ୍ମିତ ହୋଇଯାଇଥିଲେ । ଶୟନ କକ୍ଷକୁ ଯାଇ ଦେଖିଲେ କକ୍ଷରେ କେହି ନାହାନ୍ତି ଓ ସେହି କକ୍ଷଟି କସ୍ତୁରୀ ଚନ୍ଦନ ବାସନାରେ ମହକି ଉଠୁଛି । ଶେଷ ପଦ୍ୟଟି ହେଲା - 'ଦେହି ପଦ ପଲ୍ଲବ ମୁଦାରଂ ।' ସ୍ୱୟଂ କୃଷ୍ଣ ମୋ' ଅନୁପସ୍ଥିତିରେ ଏହି ପଦଟି ଲେଖିଛନ୍ତି ବୋଲି ଜୟଦେବଙ୍କ ମନରେ ବଦ୍ଧ ଧାରଣା ସୃଷ୍ଟି ହେଲା । ସ୍ୱୟଂ ଶ୍ରୀକୃଷ୍ଣଙ୍କର ତାଙ୍କ ଆଶ୍ରମରେ ଉପସ୍ଥିତ ଯେତିକି ଆନନ୍ଦ ଦେଲା କିନ୍ତୁ ସେ ଦର୍ଶନ କରିପାରିଲେ ନାହିଁ ବୋଲି ନିଜକୁ ତୁଚ୍ଛ ମନେକଲେ । କିନ୍ତୁ ପତ୍ନୀ ପଦ୍ମାବତୀ ଦର୍ଶନ କରିଥିବାରୁ ଅତ୍ୟନ୍ତ ପ୍ରୀତ ହୋଇ ଭାଗ୍ୟବତୀ ବୋଲି କହିଥିଲେ ।

ଏହି ଘଟଣାର ପ୍ରଭାବ ଜୟଦେବଙ୍କୁ ଗଭୀର ଭାବରେ ଆଘାତ ଦେବା ସଂଗେସଂଗେ ଦିନକୁ ଦିନ ଏହା ଭାବି ଭାବି ଦୁଃଖରେ ମ୍ରିୟମାଣ ହୋଇଗଲେ । ଭକ୍ତବତ୍ସଳ ଜୟଦେବଙ୍କ ଦୁଃଖକୁ ସହ୍ୟ କରି ନପାରି ରାତ୍ରିରେ ସ୍ୱପ୍ନାଦେଶ ମାଧ୍ୟମରେ ଶ୍ରୀକୃଷ୍ଣ ସମସ୍ତ ବିବରଣୀ ଜଣାଇଥିଲେ । ଏହି ଘଟଣାର ଅଳ୍ପଦିନ ପରେ ଜୟଦେବ ଗୀତଗୋବିନ୍ଦ କାବ୍ୟଟି ସମ୍ପୂର୍ଣ୍ଣ କରିବାରେ ସମର୍ଥ ହୋଇଥିଲେ । ପ୍ରତିଦିନ ଜୟଦେବ ଶ୍ରୀଜଗନ୍ନାଥଙ୍କ ପାଖରେ ଗୀତଗୋବିନ୍ଦ ଗାନ କରନ୍ତି ଓ ପଦ୍ମାବତୀ ଜୟଦେବଙ୍କ ଗୀତ ଗାନର ସ୍ୱରରେ ତାଳ ଦେଇ ନୃତ୍ୟ କରିଥାନ୍ତି । ଏହି ପୂର୍ଣ୍ଣାଙ୍ଗ କାବ୍ୟକୁ ଶ୍ରୀଜଗନ୍ନାଥଙ୍କ ନିକଟରେ ଅର୍ପଣ କରି ନିଜକୁ ପରମ ସୌଭାଗ୍ୟ ଲାଭ କରିଥିଲେ ।

ଜୟଦେବଙ୍କର ମହତଗୁଣର ପ୍ରଶଂସାରେ ଅତିଷ୍ଠ ହୋଇ ତତ୍କାଳୀନ ଉତ୍କଳାଧୀଶ ଅନ୍ୟ ଗୋଟିଏ ଗୀତଗୋବିନ୍ଦ କାବ୍ୟ ରଚନା କରି ଜଗନ୍ନାଥଙ୍କ ସମ୍ମୁଖରେ ଗାନ କରିଥିଲେ । ଜୟଦେବଙ୍କଦ୍ୱାରା ରଚିତ ଗୀତଗୋବିନ୍ଦକୁ ଶ୍ରୀଜଗନ୍ନାଥ ସମ୍ମୁଖରେ ଗାନ କରିବାକୁ

ସୁଯୋଗ ଦିଆଯାଇନଥିଲା । ଦିନେ ରାଜା ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ସମୟରେ ଜୟଦେବ ତାଙ୍କଦ୍ୱାରା ଲିଖିତ ଗୀତଗୋବିନ୍ଦ ଗାନ କରିବାର ଦେଖି କ୍ଷୁବ୍ଧ ହୋଇ ଭର୍ତ୍ସନା କରିଥିଲେ । ଜୟଦେବ ରାଜାଙ୍କ ପ୍ରଶ୍ନ ଉତ୍ତରରେ କହିଥିଲେ, ତାଙ୍କଦ୍ୱାରା ରଚିତ ଗୀତଗୋବିନ୍ଦଟି ଅଧିକ ସନ୍ତୋଷପ୍ରଦ ଓ ଉପାଦେୟ ଅଟେ । ଏହି ବିବାଦର ସମାଧାନ ପାଇଁ ୨ଟି ଗୀତଗୋବିନ୍ଦ ଶ୍ରୀଜଗନ୍ନାଥଙ୍କ ଗର୍ଭଗୃହ ଭିତରେ ଥୁଆ ହୋଇଥିଲା । କପାଟୋନ୍ମୋଚନ କରିବା ପରେ ଦେଖାଗଲା, ଜୟଦେବଙ୍କଦ୍ୱାରା ଲିଖିତ ଗୀତଗୋବିନ୍ଦଟି ରାଜାଙ୍କ ଗୀତଗୋବିନ୍ଦ ଉପରେ ରହିଥିଲା । ଏଥିରେ ରାଜା ଏକମତ ନ ହୋଇ ପୂର୍ବପରି ଜୟଦେବଙ୍କ ଉପରେ ଅତ୍ୟନ୍ତ କ୍ଷୁବ୍ଧ ହୋଇଥିଲେ । ଏହା ଦେଖି ଶ୍ରୀଜଗନ୍ନାଥ ସ୍ୱପ୍ନାଦେଶ ମାଧ୍ୟମରେ ରାଜାଙ୍କୁ କହିଥିଲେ ଜୟଦେବଙ୍କ ଗୀତଗୋବିନ୍ଦଟି ମୋ' ସେବାକାର୍ଯ୍ୟରେ ବ୍ୟବହାରରେ ଲାଗିବା ସଂଗେସଂଗେ ଲୋକଲୋଚନରେ ଏହାର ପ୍ରସାର ଓ ପ୍ରଚାର କରାଇବା ପାଇଁ ସୂଚନା ଦେଇଥିଲେ । ପବନର ପ୍ରଖର ବେଗ ପରି ଏହି ଖବରଟି ସମଗ୍ର ଭାରତର ବୈଷ୍ଣବଧର୍ମାବଲମ୍ବୀ ଓ ଆଧ୍ୟାତ୍ମିକ ଜଗତରେ ପ୍ରସାର ଓ ପ୍ରଚାର ହୋଇଗଲା । ଆଉମଧ୍ୟ ଜୟଦେବ ହୋଇଗଲେ ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ସମଗ୍ର ଜନତାଙ୍କ ଲୋକଲୋଚନରେ । ଏହି ଘଟଣାଟି ଯେଉଁ ଗଜପତି ରାଜାଙ୍କ ସମୟରେ ଘଟିଥିଲା, ସେ ଥିଲେ ମହାନ୍ ପରାକ୍ରମଶାଳୀ ପୁରୁଷୋତ୍ତମ ଦେବ ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କର 'ଗୀତଗୋବିନ୍ଦ' ଅତି ପ୍ରିୟ ଥିଲା ବୋଲି ବିଭିନ୍ନ କିମ୍ବଦନ୍ତୀ କହେ । ଏକଦା ଶ୍ରୀକ୍ଷେତ୍ରର ଅନତିଦୂରରେ ଥିବା ଏକ ଗ୍ରାମରେ ଶାକ ବିକ୍ରୟକାରିଣୀ ସ୍ୱକ୍ଷେତରୁ ବାଇଗଣ ତୋଳିବା ସମୟରେ ଅତି ଭାବବିହ୍ୱଳ ହୋଇ ଗୀତଗୋବିନ୍ଦ ପଦ୍ୟାବଳୀ ସୁମଧୁର ସ୍ୱରରେ ଆବୃତ୍ତି କରୁଥିଲେ । ଏହି ଗୀତଗୋବିନ୍ଦ ଗାନରେ ମୁଗ୍ଧ ହୋଇ ଶ୍ରୀଜଗନ୍ନାଥ ଅଦୃଶ୍ୟ ଭାବରେ ତାହାର ପଛପଟେ ବୁଲିବାକୁ ଲାଗିଲେ । ବାଇଗଣ ଗଛର କଣ୍ଟା ଶ୍ରୀଜଗନ୍ନାଥ ପିନ୍ଧିଥିବା ବସ୍ତ୍ରରେ ଲାଗିଗଲା । ବାଇଗଣ ତୋଳା ସରିବାପରେ ସ୍ତ୍ରୀ ଲୋକଟି ତାଙ୍କ ଘରକୁ ଓ ଶ୍ରୀଜଗନ୍ନାଥ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ଏହି ଘଟଣାର ପରଦିନ ପ୍ରଭାତରେ ବଡ଼ପଣ୍ଡା ଶ୍ରୀଜଗନ୍ନାଥଙ୍କ ପରିଧାନ ବସ୍ତ୍ରରେ ବାଇଗଣ କଣ୍ଟା ଲାଗିଥିବାର ଦେଖି ବିସ୍ମିତ ହୋଇଯାଇଥିଲେ । ଗଜପତି ରାଜା ଏହା ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ । ଏହା ଦେଖି ରାଜା ଓ ବଡ଼ପଣ୍ଡାମାନେ ଅଶୁଭ ଆଶଙ୍କା କରି ଦୈନନ୍ଦିନ ପୂଜାପଦ୍ଧତି ବନ୍ଦ କରି ଏହାର ପ୍ରତିକାର ସ୍ୱରୂପ ହୋମ ଓ ପୂଜାପାଠ କରିଥିଲେ । ସେହିଦିନ ରାତ୍ରିରେ ଶ୍ରୀଜଗନ୍ନାଥ ଗଜପତିଙ୍କୁ ସ୍ୱପ୍ନାଦେଶ ମାଧ୍ୟମରେ ଜଣାଇଥିଲେ ଯେ, ସେ ଗୀତଗୋବିନ୍ଦ କାବ୍ୟକୁ ଭଲ ପାଇ ବାଇଗଣ କ୍ଷେତରେ ସ୍ତ୍ରୀଲୋକ ବୋଲୁଥିବାର ଦେଖି ସେ ତା'ପଛରେ ଛଦ୍ମ ବେଶରେ ଥାଇ ଶୁଣୁଥିଲେ । ତତ୍ପରେ ସେହି ଶାକ ବିକ୍ରୟକାରିଣୀକୁ ଡକାଇ ସମସ୍ତ ସତ୍ୟାସତ୍ୟ ବୁଝିବା ସଂଗେସଂଗେ ତାକୁ ପ୍ରତ୍ୟହ ମହାପ୍ରଭୁଙ୍କ ନିକଟରେ ଗୀତଗୋବିନ୍ଦ ଗାନ ପାଇଁ ଆଦେଶ ଦେଇଥିଲେ । ସେହିପରି ଗୀତଗୋବିନ୍ଦ ରଚୟିତା ଜୟଦେବଙ୍କୁ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ରୂପେ ସ୍ୱୀକୃତିପ୍ରଦାନ କରିଥିଲେ । ଶ୍ରୀଜଗନ୍ନାଥଙ୍କର ଆଦ୍ୟ ଓ ମୁଖ୍ୟ ସେବକ ଗଜପତି ରାଜା ଜୟଦେବଙ୍କୁ ଜଗନ୍ନାଥଙ୍କର ପରମ ଭକ୍ତ ରୂପେ ସମ୍ମାନିତ କରିଥିଲେ ଓ ତାଙ୍କ ଆଶ୍ରମକୁ ଯାଇଥିଲେ ।

ଅକ୍ଷୟ ତୃତୀୟା ଦିବସଟି ପବିତ୍ର ଓ ଧାର୍ମିକ ଦିବସ ରୂପେ ପୁରାଣରେ ବର୍ଣ୍ଣିତ ଅଛି । ସେହି ମହାନ୍ ଦିବସଟି ସହିତ ଘନିଷ୍ଠ ସମ୍ପର୍କ ନିହିତ ଅଛି ଆରାଧ୍ୟ ଠାକୁର ଶ୍ରୀଜଗନ୍ନାଥ ଓ ପରମ ଭକ୍ତ ଜୟଦେବଙ୍କର । ପ୍ରକାଶଥାଉକି ସେହି ଦିବସଟିରେ ଶ୍ରୀଜୀଉଙ୍କର ରଥ ନିର୍ମାଣର ପ୍ରଥମ ଦିବସ, ଚନ୍ଦନଯାତ୍ରାର ଉଦ୍‌ଘାଟନ ସମେତ କୃଷକ ସମାଜର ମୁଠି ଅନୁକୂଳ ଦିବସ ଅଟେ । ସେହିଦିନ କୃଷକଭାଇ ଶସ୍ୟକ୍ଷେତ ପୂଜା କରି ଧାନବୁଣା ଆରମ୍ଭ କରିଥାଏ । ସେହି ପବିତ୍ର ଦିବସରେ ଶ୍ରୀଜଗନ୍ନାଥଙ୍କର ପରମଭକ୍ତ କବି ଜୟଦେବଙ୍କର ଜନ୍ମଲାଭ କରି ଶ୍ରୀଜଗନ୍ନାଥଙ୍କର ପ୍ରେମ ଓ ଭକ୍ତି ରସବାଣୀ ସମଗ୍ର ମାନବ ସମାଜକୁ ପରିବେଷଣ କରିବାରେ ସମର୍ଥ ହୋଇଥିଲେ ।

ଶ୍ରୀକ୍ଷେତ୍ରସ୍ଥିତ ଶ୍ରୀଜଗନ୍ନାଥଙ୍କଠାରେ ବିଭିନ୍ନ ଧର୍ମ ଓ ସଂସ୍କୃତିର ସମନ୍ୱୟ ଘଟିଥିବାର କିମ୍ବଦନ୍ତୀମାନ ବିଭିନ୍ନ ପୁରାଣ ଓ ଶାସ୍ତ୍ରମାନଙ୍କରେ ଲିପିବଦ୍ଧ ହୋଇଛି । କବି ଜୟଦେବ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇ ନିମ୍ବାର୍କ ପ୍ରଥା ଅନୁସରଣ କରିଥିଲେ । ସେ ଶ୍ରୀଜଗନ୍ନାଥଙ୍କୁ ବିଷ୍ଣୁ ରୂପରେ ଆରାଧନା କରିବା ସଂଗେସଂଗେ ରାଧାକୃଷ୍ଣଙ୍କ ପରକୀୟା ପ୍ରୀତି ଓ ବସନ୍ତକାଳୀନ ରାସଲୀଳାକୁ ଆଧାର କରି ସେ ଲେଖିବାକୁ ସମର୍ଥ ହୋଇଥିଲେ ଲଳିତ ମଧୁର ଗୀତଗୋବିନ୍ଦ କାବ୍ୟ ।

ଘ.ନଂ.- ଟୁ.ଆର୍‌.ଏ.
୩୫/୭, ୮ ନମ୍ବର, ଭୁବନେଶ୍ୱର

# ମାଧବ ଉପାସନା ଓ ଶ୍ରୀଜୟଦେବ

ଡକ୍ଟର ସିଦ୍ଧାର୍ଥ କାନୁନ୍ ଗୋ

ଓଡିଶାରେ ମାଧବ ଉପାସନା ଅତି ପ୍ରାଚୀନ । ମାଧବ ରୂପେ ବିଷ୍ଣୁଙ୍କ ଉପାସନା ଅଷ୍ଟମ ଶତାବ୍ଦୀଠାରୁ ଆରମ୍ଭ ହୋଇଥିବାର ଜଣଯାଏ । ମହାନଦୀ କୂଳରେ ବୌଦ୍ଧର ଗନ୍ଧରାଡିଠାରେ ଦୁଇଟି ମନ୍ଦିର ମଧ୍ୟରୁ ଗୋଟିଏ ମନ୍ଦିରରେ ସିଦ୍ଧେଶ୍ୱର ମହାଦେବ ପୂଜା ପାଉଥିବା ବେଳେ ଅନ୍ୟ ମନ୍ଦିରରେ ନୀଳମାଧବ ରୂପେ ଚତୁର୍ଭୁଜ ବିଷ୍ଣୁ ପୂଜା ପାଉଛନ୍ତି । ଗନ୍ଧରାଡିର ନୀଳମାଧବ ମନ୍ଦିର ଶ୍ରୀଜଗନ୍ନାଥ ମନ୍ଦିରଠାରୁ ଆହୁରି ପ୍ରାଚୀନ ଅଟେ । ଏତଦ୍‌ବ୍ୟତୀତ ନୟାଗଡ ଜିଲ୍ଲା ଦଶପଲ୍ଲା ସନ୍ନିକଟ ମହାନଦୀ କୂଳରେ କଣ୍ଟିଲୋଠାରେ ନୀଳମାଧବ ବହୁଦିନରୁ ପୂଜା ପାଉଛନ୍ତି ।

ଏବେ ମଧ୍ୟ ଓଡିଶାରେ ଶୁଭକାର୍ଯ୍ୟରେ ମାଧବଙ୍କୁ ଉପାସନା କରାଯାଏ। ସେଥିପାଇଁ କୁହାଯାଇଛି-''ସ୍ମରନ୍ତି ସାଧବେ ସକଳ କାର୍ଯେଷୁ ମାଧବ ।'' କେଉଁଠାରେ ମାଧବଙ୍କୁ ଦୁର୍ଗାଙ୍କ ସହ ଦୁର୍ଗାମାଧବ ରୂପେ ଉପାସନା କରାଯାଏ ତ ଅନ୍ୟ କେଉଁଠାରେ ଲକ୍ଷ୍ମୀଙ୍କ ସହ ସେ ଉପାସିତ ହେଉଥିବାରୁ ଲକ୍ଷ୍ମୀମାଧବ ଭାବେ ପରିଚିତ ।

ପ୍ରାଚୀନଦୀ ଓଡିଶାର ଏକ ପ୍ରାଚୀନ ନଦୀ । ବର୍ତ୍ତମାନ ଏହି ନଦୀର ଧାର ଅତି କ୍ଷୁଦ୍ରା ଅତୀତରେ ପ୍ରାଚୀ ନଦୀ ଥିଲା ଚିରସ୍ରୋତା ଓ ସୁନାବ୍ୟା। ପ୍ରାଚୀ ନଦୀ କୂଳରେ ଗଢି ଉଠିଥିବା ମନ୍ଦିର, ମଠ ଇତ୍ୟାଦି ଏକ ମହାନ ସଂସ୍କୃତି ତଥା ସଭ୍ୟତାର ସ୍ୱାକ୍ଷର ବହନ କରିଥାଏ। ପ୍ରାଚୀ ଉପତ୍ୟକାରେ ହିନ୍ଦୁ ଦର୍ଶନର ସବୁଠାରୁ ଗୌରବମୟ ବିଭବ ହେଉଛି ଦ୍ୱାଦଶ ଶମ୍ଭୁ ଓ ଦ୍ୱାଦଶ ମାଧବପୀଠ । ଭକ୍ତକବି ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଲୀ ଗ୍ରାମକୁ ଘେରି ପ୍ରାଚୀ ଉପତ୍ୟକାରେ ଏ ସବୁ ମାଧବପୀଠ ବିଦ୍ୟମାନ । ଏମାନଙ୍କରେ ମଧ୍ୟରେ ତ୍ରିବେଣୀ ମାଧବ, ଲଳିତା ମାଧବ, ରାଧା ମାଧବ, ମୁଦ୍‌ଗଲ ମାଧବ ଇତ୍ୟାଦିଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହି ମାଧବ ପରିବେଶ ମଧ୍ୟରେ ଥାଇ ଭକ୍ତକବି ଜୟଦେବ ସ୍ୱରଚିତ ଗୀତଗୋବିନ୍ଦ କାବ୍ୟରେ ମାଧବଙ୍କ ସ୍ତୁତି କରିଛନ୍ତି । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ, କାରଣ ପରିବେଶ ହିଁ ପ୍ରତ୍ୟେକ କବି ବା ଲେଖକର ଚିନ୍ତାଧାରାକୁ ପରିପୁଷ୍ଟ କରିଥାଏ । ପ୍ରାଚୀ ଉପକୂଳରେ ମାଧବ ଗ୍ରାମରେ ମାଧବାନନ୍ଦ ମନ୍ଦିର ଏବଂ ନିଆଳୀଠାରେ ଶୋଭନେଶ୍ୱର ମନ୍ଦିର ବିଦ୍ୟମାନ । ଏ ମନ୍ଦିର ଦ୍ୱୟର କାରୁକାର୍ଯ୍ୟ ମନମୁଗ୍‌ଧକର ଅଟେ । ମାଧବାନନ୍ଦ ମନ୍ଦିରରେ ଦୁର୍ଗାମାଧବ ପୂଜା ପାଆନ୍ତି। ଏପରି ପୂଜା ଓଡିଶାରେ ଅନ୍ୟତ୍ର ପ୍ରାୟ ଦେଖିବାକୁ ମିଳେ ନାହିଁ। ଏହି ମନ୍ଦିରରେ ମାଧବ ବିଗ୍ରହ ଓ ଗରୁଡ ମୂର୍ତ୍ତି ମୁଗୁନି ପଥରରେ ନିର୍ମିତ ଓ ଏହାର ଗଠନ ଶୈଳୀ ଅତି ସୁନ୍ଦର ଅଟେ ।

ଖଣ୍ଡପଡା ନିବାସୀ ମାଧବ ପଟ୍ଟନାୟକ ଶ୍ରୀ ଚୈତନ୍ୟଙ୍କ ସମସାମୟିକ ଥିଲେ । ସେ ଗଜପତି ପ୍ରତାପରୁଦ୍ର ଦେବଙ୍କ ୪୮ ଅଙ୍କ ଅର୍ଥାତ୍ ୧୫୩୫ ଖ୍ରୀଷ୍ଟାବ୍ଦରେ 'ବୈଷ୍ଣବ ଲୀଳାମୃତ' ଗ୍ରନ୍ଥ ରଚନା କରିଥିଲେ। ଉକ୍ତ ଗ୍ରନ୍ଥ ଜୟଦେବଙ୍କ ଆବିର୍ଭାବ ସମୟ, ଜନ୍ମସ୍ଥାନ ଓ ତାଙ୍କ ମାଧବ ଉପାସନା ଉପରେ ବହୁ ଚମକପ୍ରଦ ତଥ୍ୟ ପ୍ରଦାନ କରିଥାଏ । ଜୟଦେବଙ୍କ ବିଷୟରେ ସୂଚନା ଦେବାକୁ ଯାଇ କବି (ମାଧବ ପଟ୍ଟନାୟକ) କହିଛନ୍ତି-

'ବିପ୍ର ସେ ଜୟଦେବ ନାମ । କ୍ଷେତ୍ର ବରକୁ ଆଗମନ ॥
କେନ୍ଦୁଲି ଶାସନ ତା ଗ୍ରାମ । ପ୍ରାଚୀନ ନଦୀର ତଟପୁଣ ॥
ନିଆଳି ମାଧବ ସମୀପେ । ଭଗତି କଲା ନାନା ରୂପେ ॥
ଶାସ୍ତ୍ର ପୁରାଣେ ବିଚକ୍ଷଣ । କବିତ୍ୱ ମାର୍ଗେ ତାର ମନ ॥
ଗୀତ ସେ ରଚିବି ବୋଇଲେ । କ୍ଷେତ୍ରବାସକୁ ମନଦେଲା ॥
ଶ୍ରୀଜଗନ୍ନାଥର ସମୀପେ । ଶୁଦ୍ଧ ସାତ୍ତ୍ୱିକ ମତିଭାବେ ॥
ରଚିଲା ଶ୍ରୀ ଗୀତ ଗୋବିନ୍ଦ । ଲଭିଲା ପରମ ଆନନ୍ଦ ॥
ଶ୍ରୀ ରାଧା ମାଧବର ଲୀଳା । ମଧୁର ସ୍ୱରରେ ଗାଇଲା ॥'

ମାଧବ ପଟ୍ଟନାୟକଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ଜୟଦେବଙ୍କ ପତ୍ନୀ ପଦ୍ମାବତୀ ରାହାସ ନୃତ୍ୟରେ ପାରଦର୍ଶିତା

ହାସଲ କରିଥିଲେ ଏବଂ ଗୀତ ଗୋବିନ୍ଦ ଗାନର ତାଳେ ତାଳେ ସେ ନୃତ୍ୟ ପ୍ରଦର୍ଶନ କରୁଥିଲେ। କବି ଜୟଦେବଙ୍କ ଗୀତ ଗୋବିନ୍ଦ ଗାନ ଓ ପଦ୍ମାବତୀଙ୍କ ନୃତ୍ୟ ଦ୍ୱାରା ଦର୍ଶକ ଯେ କେବଳ ମୋହିତ ହୋଇଯାଉଥିଲେ ତାହା ନୁହେଁ, ସେମାନେ ଭକ୍ତିରେ ଅଭିଭୂତ ହୋଇପଡୁଥିବା କଥା ମଧ୍ୟ 'ବୈଷ୍ଣବ ଲୀଳାମୃତ' ଗ୍ରନ୍ଥରେ ଉଲ୍ଲେଖ ଅଛି । ଜୟଦେବଙ୍କ ଗୀତ ଗୋବିନ୍ଦ ତଥା ତାଙ୍କ ଜନ୍ମସ୍ଥାନ କେନ୍ଦୁଲୀ ଗ୍ରାମର ମୋହ ଶ୍ରୀ ଚୈତନ୍ୟଙ୍କୁ ବାନ୍ଧି ରଖିଥିଲା ।

ପ୍ରତିବର୍ଷ ପୌଷ ପୂର୍ଣ୍ଣମୀ ତିଥିରେ ଶ୍ରୀ ଚୈତନ୍ୟ ଦେବ, ଶ୍ରୀ ଜଗନ୍ନାଥ ଦାସଙ୍କ ସମେତ ପଞ୍ଚସଖାଙ୍କ ସହ କୀର୍ତ୍ତନ କରି ଏକାମ୍ର କ୍ଷେତ୍ର ଭୁବନେଶ୍ୱରକୁ ଯାଉଥିଲେ । ସେଠାରେ କୃତିବାସ ଲିଙ୍ଗରାଜଙ୍କୁ ଉଭୟ ତୁଳସୀ ଓ ବେଲପତ୍ରରେ ପୂଜା କରି ଓ ଅନନ୍ତ ବାସୁଦେବଙ୍କ ମନ୍ଦିରରେ କୀର୍ତ୍ତନ କରି ପ୍ରସାଦ ସେବନ କରୁଥିଲେ। ଏଠାରୁ ସେମାନେ ମକର ମେଳାରେ ଯୋଗଦେବା ପାଇଁ ନିଆଳି ମାଧବ ଯାଉଥିଲେ । ସେଠାରୁ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଲୀ ଯାଇ କୀର୍ତ୍ତନ କରୁଥିଲେ । ଶ୍ରୀ ଚୈତନ୍ୟ ଓ ପଞ୍ଚସଖାଙ୍କ ପାଇଁ ଏହାଥିଲା ଏକ ତୀର୍ଥସ୍ଥାନ । ଏଠାରୁ ଫେରି ସେମାନେ ଚନ୍ଦ୍ରଭାଗା ଯାଉଥିଲେ । 'ବୈଷ୍ଣବ ଲୀଳାମୃତ' ଗ୍ରନ୍ଥରେ କବି କହିଛନ୍ତି -

'ନିଆଳି ମାଧବେ ଗମନ । ପ୍ରାଚୀରେ ଅଙ୍ଗ ପ୍ରକ୍ଷ୍ୟାଳନ ।।<br>
ମାଧବେ ଭଗତି ଅର୍ପଣ । କୀର୍ତ୍ତନ ରାସ ପ୍ରସାରଣ ।।<br>
ବହୁତ ଲୋକ ମେଳ ହୋନ୍ତି । ମକର ମେଳା ସେ କରନ୍ତ ।।<br>
ଗୀତଗୋବିନ୍ଦ ନୃତ୍ୟ ରସେ । ଜୟଦେବର ପରଶଂସେ ।।<br>
କେନ୍ଦୁଲୀ ଗ୍ରାମର ମଧ୍ୟେଣ । କୀର୍ତ୍ତନ ରସ ପ୍ରସାରଣ ।।<br>
ତହୁଁ ଗମନ୍ତି ଚନ୍ଦ୍ରଭାଗା । ପଡ଼ଇ ମୁହଁ ତହିଁ ରଙ୍ଗା ।।'

କେହି କେହି ଆଲୋଚକ ମତବ୍ୟକ୍ତ କରନ୍ତି ଯେ, କେନ୍ଦୁଲୀ ଗ୍ରାମ ସନ୍ନିକଟ ରାଧାମାଧବ ମଠରେ ପୂଜା ପାଉଥିବା ରାଧାମାଧବ ବିଗ୍ରହ ହିଁ ଜୟଦେବଙ୍କ ଦ୍ୱାରା ପୂଜା ପାଉଥିଲେ। 'ପ୍ରାଚୀ ମାହାତ୍ମ୍ୟ' ଗ୍ରନ୍ଥ ସଂସ୍କୃତରେ ରଚିତ। ଏହି 'ପ୍ରାଚୀ ମାହାତ୍ମ୍ୟ' ରେ ଉଲ୍ଲେଖ ଅଛି ଯେ, ଗଙ୍ଗା ଥିଲେ ପୂର୍ବସାଗର ଗାମିନୀ ପ୍ରାଚୀ ସରସ୍ୱତୀ। ତେଣୁ ଅନ୍ୟ କେତେକ ଗବେଷକଙ୍କ ମତରେ ବୈଷ୍ଣବ କବି ଜୟଦେବ ପ୍ରତିଦିନ ପ୍ରାଚୀନଦୀର ତ୍ରିବେଣୀ ସଙ୍ଗମରେ ସ୍ନାନକରି ତ୍ରିବେଣୀ ମାଧବଙ୍କୁ ପୂଜା କରୁଥିଲେ । ଏବେ ମଧ୍ୟ ଭକ୍ତ ମାଧବ ସେହି ଘାଟରେ ପୂଜା ପାଉଛନ୍ତି ।

ଅନୁଶାସନ ସଚିବ<br>
ଅର୍ଥବିଭାଗ, ଭୁବନେଶ୍ୱର



# କେନ୍ଦୁଲୀର ସୌନ୍ଦର୍ଯ୍ୟ ଓ ଗୀତଗୋବିନ୍ଦ

ତ୍ରିନାଥ ପ୍ରଧାନ

**ଗୀ**ତ ଗୋବିନ୍ଦର ସୁଲଳିତ ପଦ ମୁଗଧ କରିଛି ସାରା ବିଶ୍ୱକୁ। ଓଡ଼ିଶା ଗୌରବାନ୍ୱିତ ଏହାର ସ୍ରଷ୍ଟା କବି ଜୟଦେବଙ୍କୁ ନେଇ। କେନ୍ଦୁଲି ହୋଇଛି ଧନ୍ୟ, ଏଇଥି ପାଇଁ ଯେ କବି ଜୟଦେବଙ୍କ ଜନ୍ମସ୍ଥାନ ଏହି ଗ୍ରାମ। ଆଜି ବି କେନ୍ଦୁଲୀର ଅପରୂପ ସୌନ୍ଦର୍ଯ୍ୟ ଭିତରେ ଅନୁରଣିତ ହୁଏ ଗୀତଗୋବିନ୍ଦର କାଳଜୟୀ ପଂକ୍ତି ଜୟ ଜଗଦୀଶ ହରେ... ଯେଉଁ ଗୀତ ଗୋବିନ୍ଦର ପଦଲାଳିତ୍ୟ ମାଳିକନ୍ୟାର ମଧୁର କଣ୍ଠରୁ ଶୁଣିବା ପାଇଁ ମହାପ୍ରଭୁ ଶ୍ରୀଜଗନ୍ନାଥ ଶ୍ରୀମନ୍ଦିରର ରତ୍ନସିଂହାସନରୁ ଓହ୍ଲାଇ ଆସିଥିଲେ ଓ ପହଞ୍ଚି ଯାଇଥିଲେ କଣ୍ଟକିତ ବାଇଗଣ ବଗିଚାରେ, ଲୁଚି ଲୁଚି ଶୁଣିଥିଲେ ଶ୍ରୀଗୀତଗୋବିନ୍ଦ କାବ୍ୟ । କଣ୍ଟାଲାଗି ଚିରିଯାଇଥିଲା ମହାପ୍ରଭୁଙ୍କ ଉତ୍ତରୀୟ ପରବର୍ତ୍ତୀ ସମୟରେ ଦୈନିକ ବୋଲାଯାଉଛି ଶ୍ରୀଗୀତଗୋବିନ୍ଦ କାବ୍ୟ ଯୁଗ ଯୁଗ ଧରି। କିମ୍ବଦନ୍ତୀ ରହି ଯାଇଛି ମାଦଳା ପାଞ୍ଜିରେ......

ରାଜଧାନୀ ଭୁବନେଶ୍ୱରରୁ ୨୦୩ ରାଜପଥରେ ୧୦ କିଲୋମିଟର ଆସିଲେ ପଡ଼େ ଉତ୍ତରାଛକ। ସେଠାରୁ ପୁଣି ବାଲକାଟି- ଅଠାନ୍ତର ରାସ୍ତାରେ ୧୦ କିଲୋମିଟର ଯିବାପରେ ବାଲିପାଟଣା ଛକ। ସେହି ଛକରୁ କିଛି ବାଟ ଗଲାପରେ କୁଶଭଦ୍ରା ନଦୀ ଉପରେ କାକରୁଦ୍ରପୁରଠାରେ ନିର୍ମିତ ଜୟଦେବ ସେତୁ ଉପର ଦେଇ ୧୦ କିଲୋମିଟର ଦୂର ଜୟଦେବ ପଞ୍ଚାୟତର କେନ୍ଦୁଲୀ ଶାସନ। ଅବିଭକ୍ତ ପୁରୀ ଜିଲ୍ଲାର କେନ୍ଦୁବିଲ୍ୱ ଶାସନ। ବିଶ୍ୱବିଖ୍ୟାତ କାବ୍ୟ ଗୀତଗୋବିନ୍ଦର ସ୍ରଷ୍ଟା କବି ଜୟଦେବଙ୍କ ଜନ୍ମସ୍ଥାନ।

ଏହି ରାସ୍ତାରେ ନଯାଇ ଅନ୍ୟ ଏକ ରାସ୍ତା ଦେଇ ମଧ ଏହି ପୀଠରେ ପହଞ୍ଚି ହେବ। ଭୁବନେଶ୍ୱରରୁ ପାଞ୍ଚ ନମ୍ବର ଜାତୀୟ ରାଜପଥରେ କଟକ ଆଡ଼କୁ ଗଲେ କୁଆଖାଇ ନଦୀ ଉପରେ ନିର୍ମିତ ହଂସପାଳ ପୋଲ । ହଂସପାଳ ଛକରୁ ଦଶ କିଲୋମିଟର ପ୍ରଧାନମନ୍ତ୍ରୀ ଗ୍ରାମ୍ୟ ସଡ଼କରେ ଗଲେ ପ୍ରତାପରୁଦ୍ରପୁର ପଞ୍ଚାୟତର ପତୁରିଆ ଛକରୁ ଆସିଲେ ପଡ଼େ କେନ୍ଦୁଲିର ଜୟଦେବ ପର୍ଯ୍ୟଟନ କେନ୍ଦ୍ର। କଟକରୁ ନିଆଳୀ-ମାଧବ ରାସ୍ତାର କଣ୍ଟାପଡ଼ା ଛକରୁ କେନ୍ଦୁଲି ଜୟଦେବ ପୀଠକୁ ଯିବାର ମଧ ରାସ୍ତା ରହିଛି। କଣ୍ଟାପଡ଼ା ଛକ ଆଗକୁ ଅଡ଼ଶପୁର ବଜାରରୁ ମଧ ଜୟଦେବ ପୀଠକୁ ଯିବାର ରାସ୍ତା ରହିଛି। ଏଇ ଦୁଇ ରାସ୍ତାର ପ୍ରଶସ୍ତୀକରଣ ଓ ଦୃଢ଼ୀକରଣ କରାଯିବାର ଆବଶ୍ୟକତା ରହିଛି। ଭୁବନେଶ୍ୱରରୁ ବାଲିପାଟଣା ଛକ, ହଂସପାଳ ଛକ, ଫୁଲନଖରା ରାସ୍ତାର କଣ୍ଟାପଡ଼ାଛକ ଓ ଅଡ଼ଶପୁର ବଜାରର କେନ୍ଦୁଲି ଜୟଦେବ ପୀଠ ନିୟମିତ ରାସ୍ତାକୁ ଉନ୍ନତ କରାଯାଇ ଟୁରିଷ୍ଟ ବସ୍ ଚଳାଚଳ ବ୍ୟବସ୍ଥା କରାଗଲେ ଜୟଦେବ ପୀଠ ଏକ ମହତ୍ୱ ପୂର୍ଣ୍ଣ ପର୍ଯ୍ୟଟନ ସ୍ଥଳୀ ଭାବରେ ପରିଣତ ହୋଇପାରିବ ।

କବି ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଲୀର ଶୋଭା ଅତ୍ୟନ୍ତ ମନୋମୁଗ୍ଧକର। ସବୁଜ ବନାନୀ ପରିବେଷ୍ଟିତ ଏହି ମନୋରମ ସ୍ଥାନଟି ଐତିହ୍ୟର ସ୍ମାରକୀ। ନିକଟରେ ବହିଯାଇଛି ପୁଣ୍ୟତୋୟା ପ୍ରାଚୀନଦୀ। ପଚିଶ ଏକର ପରିମିତ ଏହି ସ୍ଥାନରେ ରହିଛି ଜୟଦେବ ମଣ୍ଡପ, ଯଜ୍ଞ ମଣ୍ଡପ, ଯମୁନା ନଦୀ, ପଦ୍ମାବତୀ ପୁଷ୍କରିଣୀ, କୁମୁଦ ପୁଷ୍କରିଣୀ, ମନୋରମ ପ୍ରମୋଦ ଉଦ୍ୟାନ, ଜୟଦେବ ପାନ୍ଥଶାଳା। ଜୟଦେବ ସଂଗ୍ରହାଳୟରେ ସଂଗୃହୀତ ପୁରାତନ ମୂର୍ତ୍ତି ସମୁହ, ପଟ୍ଟଚିତ୍ର ଓ ଶିଳାଲେଖା ମନୋରମ ପ୍ରାକୃତିକ ପରିବେଶ ଦୃଷ୍ଟିରୁ ଏହା ବଣଭୋଜି ପାଇଁ ଏକ ପ୍ରକୃଷ୍ଟ ସ୍ଥାନ। ପୁନରୁଦ୍ଧାର ହୋଇଥିବା ପଦ୍ମାବତୀ ମନ୍ଦିର-ଜୈନ୍ୟ ପାର୍ଶ୍ୱନାଥ ମହାଶକ୍ତି । ମନ୍ଦିରର ଅଧିଷ୍ଠାତ୍ରୀ ଦେବୀ ପଦ୍ମାବତୀ କଳାମୁଗୁନୀ ପଥରରେ ନିର୍ମିତ ୩.୫ ଫୁଟ ଉଚ୍ଚତା ମୂର୍ତ୍ତି ମନ୍ଦିରରେ ପୂଜା ପାଉଛନ୍ତି।

ଓଡ଼ିଶା ସରକାରଙ୍କର ଏହା ହିଁ ହେଉଛି ଜୟଦେବ ହେରିଟେଜ୍ ପ୍ରକଳ୍ପ। ଭାରତ ସରକାର ଓ ଓଡ଼ିଶା ସରକାର

ମିଳିତ ଭାବରେ ଏହି ପ୍ରକଳ୍ପକୁ ସହାୟତା ଯୋଗାଇ ଦେଉଛନ୍ତି। ପ୍ରକଳ୍ପର ପ୍ରଥମ ପ୍ରର୍ଯ୍ୟାୟ ଔଷଧୀୟ ବୃକ୍ଷର ଚାରା ରୋପଣ କାର୍ଯ୍ୟ ଶେଷ ପର୍ଯ୍ୟାୟରେ ପହଞ୍ଚିଛି। ପରବର୍ତ୍ତୀ ପର୍ଯ୍ୟାୟ କାର୍ଯ୍ୟ କ୍ରମାନ୍ୱୟରେ କରାଯିବ।

ପ୍ରକଳ୍ପର ଅନ୍ୟ ଏକ ବିଭାଗ ହେଲା କୁଟୀର ଶିଳ୍ପ ବିଭାଗ। କୁଟୀର ଶିଳ୍ପର ପ୍ରଶିକ୍ଷଣ କାର୍ଯ୍ୟ ସହିତ ଉତ୍ପାଦନ କାର୍ଯ୍ୟ ମଧ୍ୟ କରାଯିବ। ଉତ୍ପାଦିତ ସାମଗ୍ରୀର ବିକ୍ରୟ କେନ୍ଦ୍ର ଭୁବନେଶ୍ୱରର ଜୟଦେବ ବାଟୀକାରେ ଖୋଲାଯିବାକୁ ସରକାର ସ୍ଥିର କରିଛନ୍ତି। ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ସମେତ ୫ଟି ବିଭାଗ ଉପରେ ଦାୟିତ୍ୱ ନ୍ୟସ୍ତ କରାଯାଇଛି।

ପର୍ଯ୍ୟଟକମାନଙ୍କ ସୁରକ୍ଷା ତଥା ଶାନ୍ତି ଶୃଙ୍ଖଳା ରକ୍ଷା ପାଇଁ ଏଠାରେ ଏକ ଫାଣ୍ଡି ମଧ୍ୟ ରହିଛି। ନିର୍ମାଣାଧିନ ଜୟଦେବ ମାର୍ଗର କାର୍ଯ୍ୟ ସଂପୂର୍ଣ୍ଣ ହେଲେ ପର୍ଯ୍ୟଟକମାନେ ଏଠାକୁ ସୁବିଧାରେ ଆସିପାରିବେ। ତା'ଛଡ଼ା ଏହି ପୀଠ ସମ୍ପର୍କରେ ଉପଯୁକ୍ତ ପ୍ରଚାର ଓ ପ୍ରସାର ମଧ୍ୟ ହେଉନାହିଁ। ଫଳରେ ଏହି ପୀଠକୁ ଆସିବାକୁ ଚାହୁଁଥିବା ପର୍ଯ୍ୟଟକମାନେ ସବିଶେଷ ବିବରଣୀ ପାଇପାରୁ ନାହାନ୍ତି। ପର୍ଯ୍ୟଟନ ବିଭାଗ ଏଥିପ୍ରତି ଦୃଷ୍ଟି ଦେଲେ ଗବେଷକ, ଐତିହାସିକ ପରିବେଶ ପ୍ରେମୀ ପର୍ଯ୍ୟଟକଙ୍କ ପାଇଁ ଏହି ସ୍ଥାନ ଅଧିକ ଉପଯୋଗୀ ହୋଇପାରିବ। ତା' ସହିତ ଏଠାରେ ବାର୍ଷିକ ସାଂସ୍କୃତିକ କାର୍ଯ୍ୟ କରାଯାଇ ଜଗନ୍ନାଥ ସଂସ୍କୃତିର ପ୍ରଚାର ଓ ପ୍ରସାର କରାଯାଇପାରିବ। (ସଂଗୃହୀତ)



# ଶ୍ରୀଜୟଦେବ ବନାମ ସଂସ୍କୃତି ସମ୍ପନ୍ନ ଓଡ଼ିଶା

ପଣ୍ଡିତ ପ୍ରବୋଧ ଦାସ

ପୁରୁଷୋତ୍ତମ କ୍ଷେତ୍ର ନୀଳାଞ୍ଚଳ ଉପ ବନରେ ଏକ ବିଶାଳ କଦମ୍ବ ଗଛ, ପାଖରେ ତୁଳସୀ ମଞ୍ଜରୀ । ଜୁଇ, ଜାଇ, ମଲ୍ଲୀ, କୁନ୍ଦ, ନିଆଳି, ମରୁଆ, ଦୟଣା ଏବଂ ଅଗସ୍ତି ଫୁଲର ସୁଗନ୍ଧ ଭରା ବସନ୍ତର ମଳୟ ପବନ କଦମ୍ବଗଛ ମୂଳରେ ଉଭା ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ମେଘ ବର୍ଣ୍ଣପରି ଚନ୍ଦନ, କର୍ପୁର, କସ୍ତୁରୀବୋଳା ଶ୍ରୀ ଅଙ୍ଗରେ ଶୀହରଣ ସୃଷ୍ଟି କରୁଛି । ନାନାଦି ପୁଷ୍ପର ବନମାଳ ମହାପ୍ରଭୁଙ୍କ ଗଣ୍ଡ ଦେଶରୁ ପାଦ ପର୍ଯ୍ୟନ୍ତ ଲମ୍ବିଯାଇଛି, ଫଗୁଦଶମୀରେ ବୋଳା ହୋଇଥିବା ଫଗୁ ଶ୍ରୀପୟ ଦ୍ୱୟର ଶୋଭାଙ୍କୁ ଦ୍ୱିଗୁଣିତ କରୁଛି । କର୍ଣ୍ଣର ମକର କୁଣ୍ଡଳ, ସ୍ୱର୍ଣ୍ଣ ଓଡିଆଣୀ, ନବରତ୍ନ ଖଚିତ କୌସ୍ତୁବ ମାଳ, ହାତରେ ମୋହନ ମୂରଲୀ, ମସ୍ତକରେ ମୟୂର ଚନ୍ଦ୍ରିକା, କପାଳରେ ବିଚ୍ଛୁରିତ କୁଞ୍ଚିତ କେଶ ମଳୟ ପବନର ଚପଳାମିରେ ଆନ୍ଦୋଳିତ କରୁଛି ମସ୍ତକ ମଣ୍ଡଳକୁ । ଏପରି ଏକ ମନୋରମ ପରିବେଶରେ ମହାପ୍ରଭୁଙ୍କ ପଙ୍କଜ ଲୋଚନ ମୁଦି ହୋଇଯାଇଛି । ସତେ ମନେ ହେଉଛି ମହାପ୍ରଭୁ ଯେପରି ହଜିଯାଇଛନ୍ତି କେଉଁ ଦୁନିଆରେ । ଗୋପ ସ୍ତ୍ରୀ ପରିବେଷ୍ଟିତ, ଶ୍ରୀ ରାଧାଙ୍କ ବାହୁରେ ଅନୁବନ୍ଧିତ ହୋଇ ମହାପ୍ରଭୁ ଡୁବି ଯାଇଛନ୍ତି ଶ୍ରୀ ରାଧାଙ୍କ ଦୁଇ ନେତ୍ର ଦରିଆରେ । ସେଠାରେ କାହାର ଗତି ନାହିଁ । ସବୁକିଛି ସ୍ଥିର ହୋଇ ଯାଇଛି । ସମୟ ବି ଅଟକି ଯାଇଛି ଏକ ସୁନ୍ଦର ଦୃଶ୍ୟ ଉପଭୋଗ କରିବାରେ । ଯମୁନା ଜଳର ଗତି ସ୍ଥିର ହୋଇଯାଇଛନ୍ତି, ବୃକ୍ଷଲତା, ପ୍ରାଣୀ ପତଙ୍ଗ ଆଦି ନୀରବ ହୋଇ ସମସ୍ତେ ସେହି ଗୋପୀକା ପରିବେଷ୍ଟିତ ରାଧା ମାଧବଙ୍କ ପ୍ରେମରେ ଆହ୍ଲାଦିତ ହୋଇଯାଇଛନ୍ତି । ମହାପ୍ରଭୁ ହଜିଯାଇଛନ୍ତି ତାଙ୍କର ସେହି ପୁରାତନ ମାଧୁର୍ଯ୍ୟମୟ ବାଲ୍ୟ ଲୀଳାରେ ।

ସନ୍ଧ୍ୟା ନଇଁ ଆସିଲାଣି । ମୁଦିରଥ, ଭଣ୍ଡାର ମେକାପ ଏବଂ ଗରାବଡୁ ମାନେ ତର ତରିଆ ହୋଇ ଧୋ ପଖାଳ କଲେ ସନ୍ଧ୍ୟା ଅଳତୀ ବଢା ହେବ ବୋଲି ଖୁଣ୍ଟିଆ ଡାକରା ଦେଲେ 'ମହାପ୍ରଭୁଙ୍କ ସେବାରେ ଉଚ୍ଛୁର ହେଉଛି' । ଉପବନରେ ଡାକଶୁଣି ମହାପ୍ରଭୁଙ୍କ ସମାଧି ଭାଙ୍ଗିଗଲା । ମହାପ୍ରଭୁ ଅତୀତରୁ ବର୍ତ୍ତମାନକୁ ପ୍ରତ୍ୟାବର୍ତ୍ତନ କଲେ । ଅନନ୍ତ କୋଟି ବ୍ରହ୍ମାଣ୍ଡର ନାୟକ ବୈକୁଣ୍ଠ ବିହାରୀ ପୁରୁଷୋତ୍ତମ ଶ୍ରୀ ଜଗନ୍ନାଥ ମହାପ୍ରଭୁ ବୃନ୍ଦାବନରେ ଶ୍ରୀରାଧା ଓ ଗୋପୀକାଙ୍କ ସହିତ କରିଥିବା ଶୃଙ୍ଗାର ରାସ ଲୀଳାର ସ୍ମୃତିରେ ହଜି ଯାଇଥିଲେ । ଆଳତୀ ସମୟ ଉପନୀତ ମହାପ୍ରଭୁ ରତ୍ନ ସିଂହାସନକୁ ବିଜେ କରୁ କରୁ ଚିନ୍ତାକଲେ 'ଶୃଙ୍ଗାର ବୃନ୍ଦାବନ ଲୀଳାର କିଞ୍ଚିତ୍ ସ୍ମୃତି ମାତ୍ରକେ ଯଦି ମୁଁ ଏତେ ଭାବ ବିହ୍ୱଳ ହୋଇଗଲି ତେବେ ମୋର ଭକ୍ତମାନେ, ଯେଉଁମାନେ କି ମୋର ଦାରୁ ବ୍ରହ୍ମ ରୂପ ଦେଖି ନିଜକୁ ଭୂଲି ମୋ ପ୍ରେମରେ ହରି ହରି, ଗୋବିନ୍ଦ, ଗୋପାଳ, ଗୋପୀନାଥ, ରାଧାରମଣ କହି ପାଗଳ ହେଉଛନ୍ତି ସେମାନେ ଯଦି ମୋର ଏହି ପ୍ରେମ ଲୀଳା ରଚିତ ଶ୍ରବଣ କରିବେ, ସେମାନେ ଧନ୍ୟ ହେବେ ଏବଂ ଭକ୍ତି ପରାକାଷ୍ଠାର ଶୀର୍ଷକୁ ଯାଇ ମୋର ପରମ ପଦ ଲାଭ କରିବେ, ଜନ୍ମ ମୃତ୍ୟୁ ଏବଂ ମାୟାର ବନ୍ଧନରୁ ମୁକ୍ତି ପାଇବେ ।'

ଏହା ଚିନ୍ତାକରି ମହାପ୍ରଭୁ ତୋଷାଳୀ (ଆଧୁନିକ ଭୂବନେଶ୍ୱର) ଉପକଣ୍ଠ ପ୍ରାଚୀନଦୀ ତୀରେ ଏକ ବ୍ରାହ୍ମଣ ସଂକୁଳ ଗ୍ରାମ ନାମ କେନ୍ଦୁବିଲ୍ୱରେ ପିତା ଶ୍ରୀ ଭୋଜଦେବ ଏବଂ ମାତା ଶ୍ରୀ ବାମା ଦେବୀଙ୍କ କୋଳ ମଣ୍ଡନ ପୂର୍ବକ ପବିତ୍ର ଅକ୍ଷୟ ତୃତୀୟାରେ ଜନ୍ମ ଗ୍ରହଣ କଲେ । ଏହାଥିଲା ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କର ମହା କବି ଅବତାର ଶ୍ରୀ ଜୟଦେବ । ଶ୍ରୀ ଜୟଦେବ ବାଲ୍ୟ ଅବସ୍ଥାରୁ ଶାନ୍ତ ଏବଂ କୋମଳ ସ୍ୱଭାବର ଥିଲେ । ସେ ନିଜ ପିତା ଶ୍ରୀ ଭୋଜଦେବଙ୍କଠାରୁ ସଂସ୍କୃତ ଭାଷାରେ ଶିକ୍ଷା ଗ୍ରହଣକରିଥିଲେ। ବାଲ୍ୟଅବସ୍ଥାରୁ ବୈରାଗୀ ଶ୍ରୀ ଜୟଦେବ ନିତ୍ୟ ନୈମିତ୍ୟ ପ୍ରାଚୀ ନଦୀରେ ସ୍ନାନ କରି ଶ୍ରୀ ଜଗନ୍ନାଥଙ୍କ ପାଦ ପଦ୍ମରେ ଲୟ ରଖି ମାଧବଙ୍କ ଉପାସନାରେ ବ୍ରତୀ ହୋଇଥିଲେ । ବାଲ୍ୟ ଅବସ୍ଥାରୁ ହିଁ ଶ୍ରୀ ଜୟଦେବ ନିଜ ମାତା ପିତାଙ୍କୁ ହରାଇବାର ଦୁଃଖ ପାଇଥିଲେ । ସାଧୁ ପ୍ରଧାନ ଶ୍ରୀ ଜୟଦେବ ତାଙ୍କର ବୈରାଗୀ ସ୍ୱଭାବ ଏବଂ ଶ୍ରୀ ଜଗନ୍ନାଥଙ୍କ ପ୍ରତି ଗଭୀର ଶ୍ରଦ୍ଧା ଏବଂ ବିଶ୍ୱାସ ତାଙ୍କୁ କେନ୍ଦୁବିଲ୍ୱ

ଛାଡି ପୁରୁଷୋତ୍ତମ (ପୁରୀ) ଯାତ୍ରା କରିବା ପାଇଁ ପ୍ରେରଣା ଦେଇଥିଲା । ଅବିଳମ୍ବେ କବି ବନ୍ଧୁ ପରାଶରଙ୍କୁ ନିଜ ପୈତୃକ ସମ୍ପତ୍ତିର ଦାୟିତ୍ୱ ଦେଇ ପୁରୀ ଯାତ୍ରା କରିଥିଲେ । ମହାକବି ଶ୍ରୀ ଚତୁର୍ଦ୍ଧାମୂର୍ତ୍ତିଙ୍କ ଦର୍ଶନ କରି ଭାବ ବିହ୍ୱଳ ହୋଇଯାଇଥିଲେ । ପଞ୍ଚତୀର୍ଥ ଜଳ ଏବଂ ମହୋଦଧିରେ ସ୍ନାନ ସାରି ଏକ ବୃକ୍ଷ ମୂଳରେ ମହାକବି ଧ୍ୟାନସ୍ଥ ହେଲେ ।

ପୂର୍ବ ନିର୍ଦ୍ଧାରିତ ସର୍ତ୍ତ ମୁତାବକ ଦାକ୍ଷିଣାତ୍ୟର ଜନୈକ ବ୍ରାହ୍ମଣ ନିଜ ଏକମାତ୍ର ସୁନ୍ଦରୀ , ସର୍ବଗୁଣ ସମ୍ପନ୍ନା, ନୃତ୍ୟ ବିଶାରଦା ଭକ୍ତ ଶିରୋମଣି କନ୍ୟାକୁ ଆଣି ଶ୍ରୀ ଜଗନ୍ନାଥ ମନ୍ଦିରରେ ମହା ପ୍ରଭୁଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ମଣିମାଙ୍କ ମାହାରୀ ସେବା ପାଇଁ କନ୍ୟା ପଦ୍ମାବତୀଙ୍କୁ ପ୍ରଦାନ କରିଥିଲେ ଏବଂ ମହାପ୍ରଭୁଙ୍କ ଇଙ୍ଗିତ ଅନୁସାରେ ବ୍ରାହ୍ମଣ ମହାକବି ଜୟଦେବଙ୍କୁ ଖୋଜି ତାଙ୍କ ସହିତ ପଦ୍ମାବତୀଙ୍କ ବିବାହ ସମ୍ପନ୍ନ କରିଥିଲେ । ଏହିଠାରୁ ଆରମ୍ଭ ହେଲା ମହାକବିଙ୍କ ବୈବାହିକ ଜୀବନ । ପୁରୀରେ ହିଁ ମହାକବି ଲେଖିବା ଆରମ୍ଭ କଲେ ଶ୍ରୀଗୀତଗୋବିନ୍ଦ । ଶ୍ରୀରାଧା ଏବଂ ମାଧବଙ୍କ ପ୍ରେମ ଉପରେ ପର୍ଯ୍ୟବେଶିତ ଏହି ଗୀତଗୋବିନ୍ଦର ଲେଖା କାର୍ଯ୍ୟ ଅବ୍ୟାହତ ସମୟରେ ମହାକବି ଏକ ଦ୍ୱନ୍ଦରେ ପଡି ଲେଖାରୁ ନିବୃତ୍ତ ହେଲେ ।

ଜ୍ୟୋତ୍ସ୍ନାଧୌତ ବୃନ୍ଦାବନରେ କୃଷ୍ଣଙ୍କ ଅପେକ୍ଷାରେ ରାତ୍ରିସାରା ଉଜାଗର ରହି ବ୍ୟଥିତା ଶ୍ରୀରାଧା ବସି ରହିଛନ୍ତି । ତାଙ୍କ ଚକ୍ଷୁରୁ ବହି ଚାଲିଛି ଲୋତକର ଧାର । ଗୋପୀକା ଚନ୍ଦ୍ରାବଳୀର ପୁରରେ ରାତ୍ରୀ କଟାଇ ଫେରି ଆସିଛନ୍ତି ନାଗର ଶ୍ରୀକୃଷ୍ଣ । ଶ୍ୟାମ ସୁନ୍ଦରଙ୍କୁ ସମ୍ମୁଖରେ ଦେଖି ଉପେକ୍ଷା କଲେ ଶ୍ରୀମତୀ । ଲଜ୍ଜାରେ ଫେରିଗଲେ କଳା ମାଧବ । ଶ୍ରୀ ରାଧାଙ୍କ ମାନ ଭଞ୍ଜନ ନିମନ୍ତେ ନାନାଦି ପୁରୁଷାର୍ଥ କରି ଅସମର୍ଥ ନାଗର ବୀର ଶ୍ରୀ ଜଗନ୍ନାଥ ନିଜକୁ ଶ୍ରୀ ରାଧାଙ୍କ ନିକଟରେ ସମର୍ପଣ କରି କହିଲେ -

'ସ୍ମର ଗରଳ ଖଣ୍ଡନଂ ମମଶୀରଶି ମଣ୍ଡନଂ'

ଶ୍ରୀଗୀତଗୋବିନ୍ଦର ଏହିଠାରୁ ହିଁ ଶ୍ରୀ ଜୟଦେବଙ୍କ ଲେଖନୀ ରହିଗଲା । କବି ଉଚ୍ଚ ସ୍ୱରରେ କହି ଉଠିଲେ 'ନା, ମୁଁ ଆଉ ଲେଖି ପାରିବି ନାହିଁ । ଜଗତର ସମସ୍ତ ପ୍ରାଣୀ ଯାହାର ଚରଣ ବନ୍ଦନା କରନ୍ତି ସେ ଆଜି ଚରଣ ଧରିବେ ଶ୍ରୀ ରାଧାଙ୍କର । ମୋ ପ୍ରଭୁଙ୍କୁ ତାହା କେବେହେଲେ କରାଇ ଦେବି ନାହିଁ' କହି କବି ଲେଖନୀ ରଖିଦେଇ ସ୍ନାନ ନିମନ୍ତେ ପ୍ରସ୍ଥାନ କଲେ । ତାଙ୍କରି ଅନୁପସ୍ଥିତିରେ ମହାପ୍ରଭୁ ଶ୍ରୀ ଜଗନ୍ନାଥ ମହାକବି ଶ୍ରୀ ଜୟଦେବଙ୍କ ରୂପ ଧରି ତାଙ୍କ ଗୃହରେ ପ୍ରବେଶ କରି ପୋଥିରେ ପଦ ପୂରଣ ପୂର୍ବକ

'ଦେହି ପଦପଲ୍ଲବ ମୁଦାରଂ'

ଲେଖି ପଦ ପୂରଣ କଲେ । ଏହା ହେଉଛି ସେହି ମହାକାବ୍ୟ ଶ୍ରୀଗୀତଗୋବିନ୍ଦ ଯାହାକୁ ଲେଖିବା ପାଇଁ ଶ୍ରୀଜଗନ୍ନାଥଙ୍କୁ ମହାକବି ଅବତାର ନେବାକୁ ପଡିଥିଲା ଏବଂ ସେତିକିରେ ବି ସେ ସନ୍ତୁଷ୍ଟ ହେଲେ ନାହିଁ ଯେ ସ୍ୱୟଂ ରତ୍ନ ସିଂହାସନରୁ ଓହ୍ଲାଇ ଆସି ଜୟଦେବ ଲେଖିନପାରୁଥିବା ପଦ୍ୟକୁ ଲେଖି ଏହାକୁ ପୂରଣ କଲେ ଏବଂ ଏହାର ଗାରିମାକୁ କୋଟି ଗୁଣରେ ବର୍ଦ୍ଧନ କଲେ । ଶ୍ରୀଗୀତଗୋବିନ୍ଦ ଯାହାଙ୍କ ମହିମା ଶ୍ରୀମଦ୍ ଭଗବତ ଗୀତା ଏବଂ ରାମାୟଣଙ୍କ ପରି ମହାନ୍ ଏବଂ ଯାହାକୁ ଲେଖିବା ପାଇଁ ମହାପ୍ରଭୁ ଏହି ଉତ୍କଳ ଭୂମିରେ କବିଙ୍କ ଅବତାର ନେବାକୁ ପଡିଥିଲା ଏବଂ ଯେଉଁ ଗୀତଗୋବିନ୍ଦର ମହାତ୍ମ୍ୟ ଓଡିଶା ଏବଂ ଓଡିଶା ବାହାରେ ଅନେକ ଧର୍ମ ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି ଏବଂ ଏପରି ବି ପ୍ରମାଣ ଅଛି ଯେଉଁ ଗୀତ ଗୋବିନ୍ଦ ବୋଲାଗଲେ ସ୍ୱୟଂ ମହାପ୍ରଭୁ ରତ୍ନ ସିଂହାସନ ଛାଡି ଚାଲି ଆସନ୍ତି, ଯେଉଁ ଗୀତଗୋବିନ୍ଦ ଖଣ୍ଡୁଆ ନ ପିନ୍ଧିଲେ ମହାପ୍ରଭୁଙ୍କ ବେଶ ସରେନି ଏବଂ ଯାହାର ପଦ୍ୟାବଳୀ ନ ଶୁଣିଲେ ମହାପ୍ରଭୁଙ୍କ ଆଖିକୁ ନିଦ ଆସେନି ।

ସେ ମହାନ୍ ଭକ୍ତ କବି ଶ୍ରୀ ଜୟଦେବ ଏବଂ ତାଙ୍କ ରଚିତ ଶ୍ରୀଗୀତଗୋବିନ୍ଦର ସମ୍ମାନ ଏବଂ ଏହାର ଗାରିମା ଆମ ସଂସ୍କୃତି ସମ୍ପନ୍ନ ରାଜ୍ୟ ଓଡିଶାରେ କେତେ ?

ଓଡିଶାର କଳା, ସଂସ୍କୃତି, ନୃତ୍ୟ, ଗୀତ, ଏହା ବିଶାଳ ପୁରାତନ ମନ୍ଦିର ମାନ, ଜଗନ୍ନାଥ ଧର୍ମ ଏବଂ ବିଶ୍ୱାସ, ଅଗଣିତ ମହା ମନିଷୀ, ଖଣିଜ ସମ୍ପଦର ପ୍ରାଚୁର୍ଯ୍ୟତା, ନିଜସ୍ୱ ସ୍ୱତନ୍ତ୍ର ହସ୍ତ ତନ୍ତ ପଦ୍ଧତି ଏବଂ ଭାସ୍କର୍ଯ୍ୟ ଆଣି ଦେଇଛି ଏହାକୁ ଏକ ସ୍ୱତନ୍ତ୍ର ପରିଚୟ । ବହୁ ଘାତ ପ୍ରତିଘାତ ମଧରେ ଗତି କରି ଓଡିଶା ଏକ ସଂସ୍କୃତି ସମ୍ପନ୍ନ ରାଜ୍ୟ ଭାବେ ମୁଣ୍ଡ ଟେକି ଠିଆ ହୋଇ ପାରିଛି । ଏହାର ଭାଷା ଏବଂ ସୀମା ଉପରେ ଅନେକ ଥର ପ୍ରହାର କରାଯାଇଛି ହେଲେ ଏ ମାଟିର ବରପୁତ୍ର ମାନେ ନିଜ ଛାତି ଦମ୍ଭକରି ସେହି କଠିନ ସମୟର ମୁକାବିଲା କରିଛନ୍ତି ଏବଂ ଓଡିଶାକୁ ଭାଷା ଭିତ୍ତିକ ଏକ ସ୍ୱତନ୍ତ୍ର ରାଜ୍ୟରେ ପରିଣତ କରିଛନ୍ତି । ବିଂଶ ଶତାବ୍ଦୀର ପ୍ରଥମ ଭାଗରେ କିଛି ବ୍ୟକ୍ତି, କଲିକତାରେ ଲେଖିବା ଆରମ୍ଭ କଲେ ଯେ ଶ୍ରୀ ଗୀତ ଗୋବିନ୍ଦର ରଚୟିତା କବି ଶ୍ରୀ ଜୟଦେବ ବେଙ୍ଗଲରେ ଜନ୍ମ ଗ୍ରହଣ କରିଥିଲେ ଏବଂ ବେଙ୍ଗଲର ରାଜା ଲକ୍ଷ୍ମଣ ସେନଙ୍କ ରାଜଦରବାରରେ ଜନୈକ କବି ଥିଲେ । ଏହା ସେତେବେଳର ବିଦ୍ୱାନ ଓଡିଆ ମାନଙ୍କୁ ଅନେକ ଗୁଣରେ ବ୍ୟଥିତ କରିଥିଲା ଏବଂ ସେମାନେ ଏହାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ। ସେବେଠାରୁ ଆଜି ଯାଏ ଓଡିଶାର ବିଦ୍ୱାନ ମାନଙ୍କୁ ବିଭିନ୍ନ ପୁସ୍ତକ ଏବଂ ଆଲୋଚନା ମାଧମରେ ବାରମ୍ବାର ପ୍ରମାଣ କରିଆସିଛନ୍ତି

ଯେ, ଶ୍ରୀ ଜୟଦେବ ଓଡିଶାର କେନ୍ଦୁବିଲ୍ୱରେ ଜନ୍ମଗ୍ରହଣ କରିଥିଲେ ଏବଂ ସେ ଲକ୍ଷ୍ମଣ ସେନଙ୍କର ରାଜ ଦରବାରରେ କବି ନଥିଲେ । ଏବେ ଏହି ମତକୁ ବେଙ୍ଗଲର ତଥା ଆମ ଦେଶର ଅନେକ ବିଦ୍ୱାନ ମାନେ ଗ୍ରହଣ କରିଛନ୍ତି । ଶ୍ରୀ ଜୟଦେବ ଫାଉଣ୍ଡେସନ ଭୁବନେଶ୍ୱର, ରାଜ୍ୟ ସଂଗ୍ରହାଳୟ ଭୁବନେଶ୍ୱର, ସଂସ୍କୃତି ବିଭାଗ ଓଡିଶା ସରକାର, ଓଡିଶା ଏବଂ ଭାରତ ପ୍ରଶାସନ ଦାୟିତ୍ୱରେ ଥିବା ଅନେକ ପଦାଧିକାରୀ ଏବଂ ଶିକ୍ଷାବିତ୍, ଲେଖକ, କବିମାନେ ଏ ଦିଗରେ ଅନେକ ପ୍ରସଂଶନୀୟ ଅବଦାନ କରିଛନ୍ତି ।

ଏତେସବୁ କାର୍ଯ୍ୟ ହେଲାପରେ ମଧ୍ୟ ବିଗତ ବର୍ଷ ୨୦୦୭ ଏପ୍ରିଲ୍ ମାସ ୧୭ ତାରିଖରେ ଦେଶରେ ଏକ ଅଗ୍ରଣୀ Satelite T.V. Channel Star Plus ର ଏକ ଲୋକପ୍ରିୟ କାର୍ଯ୍ୟକ୍ରମ "KOUN BANEGA KAROR PATI ତୃତୀୟ" ଯାହାର ଉପସ୍ଥାପକ ସାହାରୁଖ୍ ଖାନ୍ । ବାଙ୍ଗାଲୋରରୁ ଆସିଥିବା ଓଡିଆ ଝିଅ କୁମାରୀ ମହାନ୍ତିଙ୍କୁ ପ୍ରଶ୍ନ ପଚାରିଲେ -

'ବେଙ୍ଗଲର ରାଜା ଲକ୍ଷ୍ମଣ ସେନ ଙ୍କ ପୃଷ୍ଠପୋଷକତାରେ କବି ଜୟଦେବ ଗୀତ ଗୋବିନ୍ଦକୁ କେଉଁ ଭାଷାରେ ରଚନା କରିଥିଲେ ।'

ସମ୍ଭାବ୍ୟ ଉତ୍ତର ମାନ - (କ) ତାମିଲ୍ (ଖ) ବେଙ୍ଗଲି (ଗ) ସଂସ୍କୃତ (ଘ) ଓଡିଆ ଏବଂ ଆଶ୍ଚର୍ଯ୍ୟର କଥାଯେ ସେ ଓଡିଆ ଝିଅ କୁମାରୀ ମହାନ୍ତି ଏହି ପ୍ରଶ୍ନ ଭୁଲ୍ ଅଛି ବୋଲି ପ୍ରତିବାଦ ନ କରି ଉତ୍ତର ବେଙ୍ଗଲି କିମ୍ବା ଓଡିଆ ମଧ୍ୟରେ ଦ୍ୱନ୍ଦ୍ୱରେ ପଡି ପ୍ରଶ୍ନକୁ ବଦଳାଇବା ପାଇଁ ଅନୁରୋଧ କରିଥିଲେ । ଅବଶ୍ୟ ଏହା ସତ୍ୟ ଯେ ଯେଉଁ ମହିଳା ଗୀତଗୋବିନ୍ଦ କେଉଁ ଭାଷାରେ ଲେଖଯାଇଛି ଜାଣି ନାହାନ୍ତି ତାଙ୍କଠୁ ପ୍ରଶ୍ନରେ ଥିବା ଭୁଲ୍ ତଥ୍ୟ 'ବେଙ୍ଗଲର ରାଜା ଲକ୍ଷ୍ମଣ ସେନ୍‌ଙ୍କ ପୃଷ୍ଠପୋଷକତାରେ କବି ଜୟଦେବ' ପାଇଁ ପ୍ରତିବାଦ କରିବା ଆଶା ରଖିବା ନିରର୍ଥକ ଅଟେ ।

Star Plusର ଏହି KBC Programme ର ପ୍ରସାରଣ ସାରା ଦେଶ ସହ ଆମ ସଂସ୍କୃତି ସମ୍ପନ୍ନ ରାଜ୍ୟର ଶାନ୍ତି ପ୍ରିୟ ଜନସାଧାରଣ ମାନେ ମଧ୍ୟ ଉପଭୋଗ କଲେ ଏବଂ ଅବିଳମ୍ବେ ନିଦ୍ରା ଯାଇ ସେଦିନ ତା୧୭.୦୪.୨୦୦୭ରିଖର ରାତ୍ରି କଟାଇଥିଲେ । ହେଲେ ଓଡିଶାରେ କିଛି ବ୍ୟକ୍ତି ଏହି ପ୍ରଶ୍ନ ଦ୍ୱାରା ଗଭୀର ମର୍ମାହତ ହେଲେ ଏବଂ ସେମାନଙ୍କ ମଧ୍ୟରୁ ଏ ଲେଖକ ଜଣେ । ସେହି ରାତ୍ରିରେ ଓଡିଶାର ଏକ ଅଗ୍ରଣୀ ସମ୍ବାଦ ପତ୍ର 'ସମ୍ବାଦ'ସହ ଏ ବିଷୟରେ କଥାବାର୍ତ୍ତା ହୋଇ ସକାଳୁ ଏହି ଘଟଣାର ପୂର୍ଣ୍ଣ ତଥ୍ୟ FAX Messagରେ ପଠାଇବାକୁ କହି ଲେଖକ ଆଖିରେ ଆଖିରେ ରାତ୍ରି କାଟିଦେଲେ ।

ମର୍ମନ୍ତୁଦ ଅବସ୍ଥାରେ ସକାଳେ ଲେଖକ ଆଗେ ସମ୍ବାଦ ଅଫିସ୍ ଭୁବନେଶ୍ୱରକୁ FAX Massage ପଠାଇବା ପରେ AAJTAK News Channelର ନିଉଦିଲ୍ଲୀ ସ୍ଥିତ ଅଫିସ୍‌କୁ ଫୋନ୍‌ରେ କଥାବାର୍ତ୍ତା ହୋଇ ସେଠାରୁ ନିର୍ଦ୍ଦେଶ ପାଇ ଶ୍ରୀ ସମ୍‌ଶେର ସିଂହ AAJTAK News Reporter, Bhubaneswarଙ୍କୁ ଫୋନ୍ କରି ଘଟଣାର ବିବରଣୀ ଦେବାକୁ କହିଲେ ଏବଂ ତାଙ୍କର ମୋବାଇଲ୍ ନମ୍ବର ମଧ୍ୟ ଦେଲେ । ଲେଖକ ସମ୍‌ଶେର ସିଂହଙ୍କୁ ଫୋନ୍ କରି ବ୍ୟତିବ୍ୟସ୍ତ ହୋଇ କହିଲେ ଏହାକୁ ନିଉଜ୍ କରି AAJTAK News Channelରେ ଦେଖାଇବା ପାଇଁ ଯେ ଏତେ ବଡ ଗେମ୍ ସୋ KBC ରେ ଜୟଦେବଙ୍କୁ ନେଇ ପଚାରିଛନ୍ତି ଭୂଲ୍ ପ୍ରଶ୍ନ ।

ସମ୍‌ଶେର ସିଂହଙ୍କ ପ୍ରତିଉତ୍ତର ଶୁଣି ଲେଖକ ହକ୍କାବକ୍କା ହୋଇ ରହିଗଲେ । ତାଙ୍କର ହିନ୍ଦି ଭାଷା ଉତ୍ତରକୁ ଏଠାରେ ଓଡିଆରେ ଉପସ୍ଥାପନା କରାଗଲା ।

'ମତେ ତ ଏ ବିଷୟରେ କେହି କିଛି କହିନାହନ୍ତି କି ମୁଁ ଏ ବିଷୟରେ ଏଯାଏଁ କିଛି ଜାଣିନି । ଯଦି ଆପଣ କହୁଛନ୍ତି ତ ମୁଁ କ'ଣ ନିଉଜ୍ ଦେବି? ନା ଏଠି ବିଧାନ ସଭାରେ ହଟ୍ଟଗୋଳ ହେଉଛି ନା ଲୋକେ ରାସ୍ତା ଉପରକୁ ଆସି ଭଙ୍ଗାରୁଜା ନା ଜଳାପୋଡା ନା ରାସ୍ତାରୋକ କରୁଛନ୍ତି ନା ଏଯାଏଁ ସରକାର ଏ ବିଷୟରେ କୌଣସି ପ୍ରତିକ୍ରିୟା ଜଣାଇଛନ୍ତି, ତ ମୁଁ କେଉଁ ନିଉଜ୍ ଦେଖାଇବି ?" ଏହା କହି ସେ ଫୋନ୍ ରଖିଦେଲେ । ତାଙ୍କର କଥା ଲେଖକଙ୍କୁ ଏକ ଶିକ୍ଷାପରି ଲାଗିଲା ଯେ ଶାନ୍ତି ପୂର୍ଣ୍ଣଭାବେ ଦିଆଯାଇଥିବା ପ୍ରତିକ୍ରିୟା ଅପେକ୍ଷା ସଂଘବଦ୍ଧ ଏବଂ ଅପ୍ରିତିକର ଉପାୟରେ ଦିଆଯାଇଥିବା ହିଂସ୍ର ପ୍ରତିକ୍ରିୟାର ମହତ୍ୱ ଅଧିକ । ଦୁଇ ତିନିଦିନ ମଧ୍ୟରେ ଓଡିଶା ସରକାରଙ୍କ ପ୍ରତିକ୍ରିୟା ମଧ୍ୟ ଆସିଲା ଏବଂ ରାଜ୍ୟ ସଂସ୍କୃତି ବିଭାଗ KBCର Organisorମାନଙ୍କୁ ଚିଠି ଲେଖି ନିଜର ଅସନ୍ତୋଷ ପ୍ରକାଶ କଲେ ।

ହେଲେ ଆମର ସଂସ୍କୃତି ସମ୍ପନ୍ନ ଓଡିଶା ଏବଂ ଏହାର ସାଂସ୍କୃତିକ ଜନ ସାଧାରଣଙ୍କ ଠାରୁ କ'ଣ ଆଶା କରାଯାଉଥିଲା ?

କେନ୍ଦ୍ର ସାହିତ୍ୟ ଏକାଡେମୀ ଯେଉଁ ବହି ଜୟଦେବ ଏବଂ ଗୀତଗୋବିନ୍ଦ ଉପରେ ଛପାଇଛି ତାହା ଅନୁସାରେ ଗୀତଗୋବିନ୍ଦର ରଚୟିତା ଶ୍ରୀ ଜୟଦେବ ବେଙ୍ଗଲରେ ଜନ୍ମ ଗ୍ରହଣ କରିଥିଲେ ଏବଂ ସେ ରାଜା ଲକ୍ଷ୍ମଣ ସେନଙ୍କ ରାଜ ଦରବାରରେ ଜଣେ କବି ଥିଲେ । ସତ୍ୟା ସତ୍ୟ ବାହାରକୁ ଆସିବା ପରେ ମଧ୍ୟ ଏ ପର୍ଯ୍ୟନ୍ତ ଏହା ସଂଶୋଧିତ ହୋଇ ପାରିନାହିଁ ।

ଏହି ପରିପ୍ରେକ୍ଷୀରେ ଲେଖକ ଅନେକ ଥର ଓଡିଶା ସାହିତ୍ୟ ଏକାଡେମୀର ଅଫିସ୍ ଏବଂ ଭୁବନେଶ୍ୱର ପୁସ୍ତକ ମେଳାରେ

ଲାଗୁଥିବା ଏକାଡେମୀର ଷ୍ଟଲରେ ଜୟଦେବ କିମ୍ବା ଗୀତଗୋବିନ୍ଦ ଉପରେ କିଛି ବହି ଖୋଜି ନାହିଁ ଉତ୍ତର ଶୁଣି କାହିଁକି ଛପାଉ ନାହଁ ବୋଲି ପ୍ରଶ୍ନ କଲେ ଉତ୍ତର ପାଆନ୍ତି ''ଆମର ଜୟଦେବ କିମ୍ବା ଗୀତଗୋବିନ୍ଦ ଉପରେ କୌଣସି ବହି ଛପାଯାଇ ନାହିଁ ରାଜ୍ୟ ସଂସ୍କୃତି ବିଭାଗ ଅନେକ ବର୍ଷତଳେ ବହି ଛପାଇଥିଲେ ଯାହାକି ଏବେ ପ୍ରାୟ ଆଉ ମିଳୁନି ।'' ସତେ ମହାକବିଙ୍କ ଉପରେ କିମ୍ବା ଗୀତ ଗୋବିନ୍ଦ ଉପରେ ବହି ଛପାଇବା ତାଙ୍କ ଦାୟିତ୍ୱ ନୁହେଁ ବରଂ ରାଜ୍ୟ ସଂସ୍କୃତି ବିଭାଗର ଦାୟିତ୍ୱ ।

ସଂସ୍କୃତି ସମ୍ପନ୍ନ ଓଡିଶା ଏବଂ ଏହାର ସାଂସ୍କୃତିକ ଜନସାଧାରଣମାନେ କ'ଣ ଆଶା ରଖନ୍ତି ନାହିଁ ଅତ୍ୟନ୍ତ ଏକ ଖଣ୍ଡ ବହି ଓଡିଶାର ଜୟଦେବଙ୍କ ଉପରେ ଓଡିଶା ସାହିତ୍ୟ ଏକାଡେମୀ ଠାରୁ ଏକଦା ଲେଖକ ପୁରୀ ଗୁଣ୍ଡିଚା ମନ୍ଦିର ପାଖ ଦଶାବତାର ମଠକୁ ଯାଇଥିଲେ । ଏହା ଶ୍ରୀ ଜୟଦେବଙ୍କ ମଠ ହିସାବରେ ଓଡିଶା ପ୍ରସିଦ୍ଧ । ଲେଖକ ମଠ ଦର୍ଶନ ପୂର୍ବକ ମଠରେ ଏକ ଅନ୍ତେବାସୀଙ୍କୁ ଶ୍ରୀ ଜୟଦେବଙ୍କ ବିଷୟରେ ପଚାରିବାରୁ ଉତ୍ତର ଯାହା ମିଳିଥିଲା ''କେଉଁ ଜୟଦେବ ? କେଉଁ ଜୟଦେବଙ୍କ ମଠ ଏହା ନୁହେଁ । ତମେ ଏଠାରୁ ଯାଅ । ଜୟଦେବ କହି ଏ ମଠକୁ ଆସିବା ଦରକାର ନାହିଁ । ଆପଣ ଏଥର ଆସିପାରିବେ ।'' ଏହା ଶୁଣି ଲେଖକ ଅନେକ ମାତ୍ରାରେ ବ୍ୟଥିତ ହେଲେ, ହେଲେ ଏପରି କାର୍ଯ୍ୟକଳାପରୁ ଏହା ଜଣାପଡେ ଯେପରି ମଠବାସୀଙ୍କୁ ଏହା ଭୟଯେ ଜୟଦେବଙ୍କ ନାଁରେ କୌଣସି ସଂସ୍ଥା ମଠ ଉପରେ ନିଜର ଅଧିକାର ସାବ୍ୟସ୍ତ କରିବାକୁ ଚାହୁଁଛି ।

ଏହା କ'ଣ ସଂସ୍କୃତି ସମ୍ପନ୍ନ ଓଡିଶା ଏବଂ ଏହାର ସାଂସ୍କୃତିକ ଜନସାଧାଣଙ୍କ ସୁସ୍ଥ ମାନସିକତା ?

ଆମ ରାଜ୍ୟରେ ଏକ ସାଥୀ ବହି ଛପାଇବା ସଂସ୍ଥା ମହାନ୍ ସ୍ୱାଧିନତା ସଂଗ୍ରାମୀ ଏବଂ ଆମ ରାଜ୍ୟର ଏକ ଅଗ୍ରଣୀ ବରପୁତ୍ର ନେତାଜୀ ସୁବାଷ ଚନ୍ଦ୍ର ବୋଷଙ୍କ ବିଷୟରେ ଲେଖିଥିଲା ଭଣ୍ଡ ନେତା ବୋଲି । ଯାହାକି ଏକ ନିନ୍ଦନୀୟ କାର୍ଯ୍ୟକଳାପ । ଏଥିପାଇଁ ଆମ ଜନସାଧାଣମାନେ ଅନେକ ଜାଗାରେ ସାଥୀ ବହିକୁ ପୋଡା ଜଳା କଲେ ଏବଂ ଅନେକ ଗଣ୍ଡଗୋଳ କଲେ । ଯାହାଫଳରେକି ସାଥୀ ବହିର ପ୍ରକାଶକ କ୍ଷମା ପ୍ରାର୍ଥନା ପୂର୍ବକ ଭବିଷ୍ୟତରେ ଏପରି ଭୁଲ୍ ନ ହେବ ବୋଲି ପ୍ରତିଶୃତି ଦେଲେ । ଏଥିରେ ଲେଖକ ସନ୍ତୋଷ ପ୍ରକାଶ କରି ଏହି ପଦକ୍ଷେପକୁ ସ୍ୱାଗତ କରିଛନ୍ତି ।

ଅନେକ ବହି ଜୟଦେବଙ୍କ ବିଷୟରେ ଛପା ଯାଇଛି ଏବଂ ଅନେକ ଦଶାବତାର, ଗୀତଗୋବିନ୍ଦ କ୍ୟାସେଟ୍ ଏବଂ ସିଡି ଓଡିଶା ବାହାରୁ ବାହାରୁଛି ଯେଉଁଥିରେକି ଶ୍ରୀ ଜୟଦେବଙ୍କ ବିଷୟରେ ଭୂଲ୍ ତଥ୍ୟ ଦିଆଯାଇଛି STAR Plus KBC Programme ପରି ।

ସଂସ୍କୃତି ସମ୍ପନ୍ନ ଓଡିଶା ଏବଂ ଏହାର ସାଂସ୍କୃତିତ ଜନସାଧାରଣମାନେ ନେତାଜୀଙ୍କ ବିଷୟରେ ଭୂଲ୍ ତଥ୍ୟ ବାହାର କରିଥିବା ସାଥୀ ବହି ସହିତ ଯେଉଁ ବ୍ୟବହାର କଲେ ତଦାନୁରୂପ ବ୍ୟବହାର ଏହି ସବୁ ବହି ସିଡି ଏବଂ କ୍ୟାସେଟ୍ ସହିତ ହେବା ଉଚିତ୍ ଅଥବା ନୁହେଁ ?

ଭୁବନେଶ୍ୱରରେ ଆମର କିଛି ଭାଇ ଯୋଧା ଆକବର ଚଳଚିତ୍ର ବିଜ୍ଞାପନ ପୋଡିଲେ ଏବଂ ପ୍ରଚାର କଲେ ଜଣେ ରାଜପୁତ୍ ନାରୀ ଯୋଧା କେବେ ହେଲେ ନିଜ ଇଚ୍ଛାରେ ପ୍ରେମ କରି ଜଣେ ମୁସଲମାନ ରାଜାଙ୍କୁ ବାହା ହୋଇନଥିବେ ଏବଂ ସର୍ବୋପରି ଯୋଦ୍ଧା ଆକବରଙ୍କ ବୋହୂ ଥିଲେ ସ୍ତ୍ରୀ ନୁହେଁ ଏବଂ ଧମକ ଦେଲେ ଏପରି ଚଳଚ୍ଚିତ୍ର ଓଡିଶାରେ ଆମେ ଚଳାଇଦେବୁ ନାହିଁ ।

ସଂସ୍କୃତି ସମ୍ପନ୍ନ ଓଡିଶାର ସାଂସ୍କୃତିକ ଜନସାଧାରଣମାନେ ସୁଦୂର ରାଜସ୍ଥାନର ରାଜପୁତ୍ ନାରୀର ଇତିହାସ ବିଷୟରେ ଜ୍ଞାନ ରଖିଥିବା ବେଳେ ନିଜ ରାଜ୍ୟର ସଂସ୍କୃତିକୁ ବିକୃତ କରି ସାରା ଦେଶରେ ପ୍ରସାରଣ କରିବା ଏବଂ ଆମ୍ଭଦ୍ୱାରା ପ୍ରତିବାଦ ନ ହେବା କ'ଣ ନ୍ୟାୟୋଚିତ ?

ଓଡିଶା ସଂସ୍କୃତି ସମ୍ପନ୍ନ ଥିଲା, ଅଛି ଏବଂ ରହିବ । ଓଡିଶାର ବରପୁତ୍ରମାନେ ଏ ମାଟିର କୋଳ ମଣ୍ଡନ ପୂର୍ବକ ଏହାର ଶ୍ରୀକୁ ଅନେକ ଗୁଣରେ ବର୍ଦ୍ଧନ କରିଛନ୍ତି । ଶ୍ରୀଜଗନ୍ନାଥଙ୍କ ମଧରେ ମାନବ ଧର୍ମର ଚେତନା ଏହାର ମନ୍ଦିର ମାନଙ୍କରେ ମହାନ ଶିଳ୍ପୀ ମାନଙ୍କର ନିହଣ ମୁନରେ ଅଙ୍କାଯାଇଥିବା ସଂଗୀତ ଏହାର ମହାନ୍ କବିମାନେ, ଏହାର ଜଳବାୟୁ, ସୁନ୍ଦର ବାତାବରଣ କାଳେ କାଳେ ବିଦ୍ୱାନ ଏବଂ ମହାପୁରୁଷ ମାନଙ୍କୁ ଆକୃଷ୍ଟ କରିଛି । ଶ୍ରୀ ଜୟଦେବ ଏବଂ ତାଙ୍କ ରଚନା ଗୀତଗୋବିନ୍ଦ ସାଂସ୍କୃତିକ ଓଡିଶା ରୂପକ ଅଟ୍ଟାଳିକାର ମୂଳଦୁଆ ସଦୃଶ । ଏଥିରେ କେହି ଯଦି କୁଠାର ଘାତ କରେ ତେବେ ଅଟ୍ଟାଳିକା ଧରାଶାୟୀ ହେବାକୁ ବେଶୀ ସମୟ ଲାଗିବ ନାହିଁ ବରଂ ଏଥିପାଇଁ ଦାୟୀ ରହିବେ ସଂସ୍କୃତି ସମ୍ପନ୍ନ ଓଡିଶାର ସାଂସ୍କୃତିକ ଜନସାଧାରଣମାନେ। ବାରାମ୍ବାର ଆମ୍ଭେ କହି ପାରିବୁ ଯେ, ଓଡିଶା ରାଜ୍ୟ ସଂସ୍କୃତି ସମ୍ପନ୍ନ ଥିଲା, ଅଛି ଏବଂ ରହିବ । କିନ୍ତୁ ଲେଖକ ଏହା ଗ୍ରହଣ କରିଛନ୍ତି ଓଡିଶାର ଜନସାଧାରଣ ସାଂସ୍କୃତିକ ଥିଲେ ହେଲେ ସନ୍ଦେହ କରୁଛନ୍ତି ଲେଖିବାକୁ ଅଛନ୍ତି ଏବଂ ରହିବେ ବୋଲି।

ଲେଖକଙ୍କର ଏହି ସନ୍ଦେହକୁ ଯଦି ଶ୍ରୀ ଜଗନ୍ନାଥ ମହାପ୍ରଭୁ ଏବଂ ଶ୍ରୀ ଜୟଦେବ ଅବିଳମ୍ବେ ନିରାକରଣ କରନ୍ତି ତେବେ ଏହା ତାଙ୍କ ପାଇଁ ସୌଭାଗ୍ୟର କାରଣ ହେବ ।

ସବୁ ସେହି ଜଗନ୍ନାଥଙ୍କ ଇଚ୍ଛା .............

ଶ୍ରୀ ଜଗନ୍ନାଥ ପ୍ରେମୀ ସମାଜ
ହୋଟେଲ୍ ଅନ୍ନମୟୀ, ବଡପଡିଆ, ପାରାଦ୍ୱୀପ

# ମହାକବି ଜୟଦେବ ଓ ଶ୍ରୀଗୀତଗୋବିନ୍ଦ

ଡଃ ଚିତ୍ତରଞ୍ଜନ ଦାଶ

**ଆ**ଜିକୁ ଆଠ ଶହ ବର୍ଷ ତଳେ ଦ୍ୱାଦଶ ଶତାବ୍ଦୀରେ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରଠାରୁ ୨୨ କି.ମି. ଦୂରରେ କବି ଜୟଦେବଙ୍କ ଜନ୍ମ ସ୍ଥାନ । ଦେବଭୂମି ଉତ୍କଳର କେନ୍ଦୁବିଲ୍ୱ ବ୍ରାହ୍ମଣ ଶାସନରେ ପବିତ୍ର ଅକ୍ଷୟ ତୃତୀୟା ତିଥିରେ ଜନ୍ମ ଗ୍ରହଣ କରିଥିଲେ । ଯାହା ଏବେ ଜନମାନସରେ କେନ୍ଦୁଲୀ ନାମରେ ପରିଚିତ । ଅତୀତର ଇତିହାସକୁ ଅନୁଧ୍ୟାନ କଲେ ଜାଣିହୁଏ କବିଙ୍କର ଏହି ଜନ୍ମସ୍ଥାନ ବିଭିନ୍ନ ଧର୍ମ ଓ ସଂସ୍କୃତିର ଅନ୍ୟତମ ପୀଠ ଭାବରେ ଯଥେଷ୍ଟ ଖ୍ୟାତି ଅର୍ଜନ କରିଥିଲା । ଜୈନ, ବୌଦ୍ଧ ଓ ବ୍ରାହ୍ମଣ୍ୟ ଧର୍ମର ଅନେକ ସଙ୍କେତ ଏଠାରେ ଏବେ ମଧ୍ୟ ଭରପୂର ହୋଇ ରହିଛି । ଏଠାରେ ଥିବା ବିଷ୍ଣୁ, ଲକ୍ଷ୍ମୀ-ନୃସିଂହ, ଲକ୍ଷ୍ମୀ-ନାରାୟଣ, ଗୋପୀନାଥ, ଚଣ୍ଡୀ ଓ ଭୈରବ ମୂର୍ତ୍ତିଗୁଡ଼ିକ ବୈଷ୍ଣବ ଓ ଶାକ୍ତ ସଂସ୍କୃତିର ସୂଚନା ଦିଅନ୍ତି । ମହାକବି ଜୟଦେବଙ୍କ ପିତା ଭୋଜରାଜ ଓ ମାତା ରାଧାଦେବୀଙ୍କର ସନ୍ତାନ ଭାବରେ ଭୂମିଷ୍ଠ ହୋଇଥିଲେ । ଶ୍ରୀକ୍ଷେତ୍ରବାସୀ ଭକ୍ତକବି ଜୟଦେବ ଉତ୍କଳର ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଜଣେ ପରମ ଭକ୍ତ ଥିବା ବିଷୟ ମୈଥିଳି ପଣ୍ଡିତ ଶ୍ରୀଚନ୍ଦ୍ରଦତ୍ତଙ୍କ କୃତ ପ୍ରସିଦ୍ଧ 'ଭକ୍ତମାଳା' ଗ୍ରନ୍ଥରେ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି । ଏଥିରେ କବି ଚନ୍ଦ୍ରଦତ୍ତ ଜୟଦେବଙ୍କର ଜନ୍ମସ୍ଥାନ ଉତ୍କଳର କେନ୍ଦୁବିଲ୍ୱ ନାମକ ବ୍ରାହ୍ମଣ ଶାସନରେ ବୋଲି ଉଲ୍ଲେଖ କରିଛନ୍ତି ।

'ଜଗନ୍ନାଥ ପୁରୀପ୍ରାନ୍ତେ ଦେଶେ ଚୈବୋତ୍କଳାଭିଧେ
କେନ୍ଦୁବିଲ୍ୱ ଇତିଖ୍ୟାତୋ ଗ୍ରାମୋ ବ୍ରାହ୍ମଣ ସଂକୁଳଃ
ତତ୍ରୋତ୍କଳେ ଦ୍ୱିଜୋ ଜାତୋ ଜୟଦେବ ଇତିଶ୍ରୁତଃ
ବିଦ୍ୟାଭ୍ୟାସରତଃ ଶାନ୍ତଃ ପୁରୁଷୋତ୍ତମ ପୂଜକଃ ।'

କବି ଜୟଦେବ ଦେବଶର୍ମାଙ୍କ କନ୍ୟା ପଦ୍ମାବତୀଙ୍କୁ ବିବାହ କରିଥିଲେ । ପଦ୍ମାବତୀ ନୃତ୍ୟଶିକ୍ଷାରେ ନିପୁଣା ଥିଲେ । ଗଭୀର ପ୍ରେମାବଦ୍ଧ ଭକ୍ତ ଦମ୍ପତ୍ତି ଏକ ପ୍ରାଣରେ ନୃତ୍ୟଗୀତାଦି ଦ୍ୱାରା ଶ୍ରୀକୃଷ୍ଣାର୍ଚ୍ଚନାରେ କାଳାତିପାତ କରୁଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଜଣେ ନୃତ୍ୟ ପଟ୍ଟୟସୀ ମହିଳା ଭାବରେ ଦାକ୍ଷିଣାତ୍ୟର ତିନୋଟି ମନ୍ଦିରରେ ପଦ୍ମାବତୀଙ୍କ ନାମ ନୃତ୍ୟାଙ୍ଗନା ଭାବେ ଶିଳାଲେଖରେ ଉଲ୍ଲେଖ ଅଛି । ଜୟଦେବ ମଧ୍ୟ କଳିଙ୍ଗର କୂର୍ମପାଟକରେ ଥିବା ସଂଗୀତ ନୃତ୍ୟ ଓ ଶାସ୍ତ୍ରୀୟ କଳା ବିଦ୍ୟାଳୟରେ ଅଧ୍ୟକ୍ଷ ଥିବାର ପ୍ରମାଣ ମନ୍ଦିର ଶିଳାଲେଖରେ ମିଳିଥାଏ । କେବଳ ସେତିକି ନୁହେଁ, ଯେଉଁ ପବିତ୍ର ଭୂମିରେ ରସିକରାଜ ଶ୍ୟାମସୁନ୍ଦର ଭକ୍ତ ପ୍ରେମରେ କାୟା ସହ ଛାୟା ପରି ବିଚରଣ କରୁଥିଲେ ଓ ଯେଉଁ ପବିତ୍ର ପୀଠରୁ କାନ୍ତ କୋମଳ ପଦାବଳୀର ମଧୁଝଙ୍କାର ସମଗ୍ର ଜଗତକୁ ବିମୋହିତ କରି ଦେଇଥିଲା ସେହି ଦେବଭୂମି କେନ୍ଦୁବିଲ୍ୱର ନାମ 'ଗୀତଗୋବିନ୍ଦ'ରେ ମଧ୍ୟ ରହିଛି ।

ତଦନନ୍ତର ଶ୍ରୀ ଜୟଦେବ ସ୍ୱୀୟ ପରମାରାଧ୍ୟ ଶ୍ରୀଜଗନ୍ନାଥଙ୍କ ସନ୍ତୋଷ ବିଧାନ ନିମିତ୍ତ 'ଶ୍ରୀଗୀତଗୋବିନ୍ଦ' ରଚନାରେ ପ୍ରବୃତ୍ତ ହେଲେ । ଏହା ମହାକବି ଜୟଦେବଙ୍କର ଏକ କ୍ରାନ୍ତିକାରୀ, ରସସିକ୍ତ ଓ ଶୃଙ୍ଗାରଧର୍ମୀ ସଙ୍ଗୀତାକୃତି । ପ୍ରାଚୀନ ଭାରତରେ ବହୁ ସନ୍ଥକବିଙ୍କ କାବ୍ୟ ସମ୍ଭାରରେ ସଂସ୍କୃତ ସାହିତ୍ୟ ଭଣ୍ଡାର ସମୃଦ୍ଧ ଥିଲା । ମାତ୍ର ଖଣ୍ଡିଏ ମାତ୍ର ଗୀତିକାବ୍ୟ ରଚନା କରି ଜଣେ ଓଡ଼ିଆ କବି ଯେଉଁ ଖ୍ୟାତି ଓ ଲୋକପ୍ରିୟତା ଅର୍ଜନ କରିଛନ୍ତି, ବିଶ୍ୱ ସାହିତ୍ୟରେ ତାହାର ପଟ୍ଟାନ୍ତର ନାହିଁ ।

ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଶ୍ରୀକ୍ଷେତ୍ର ଯୁଗ ଯୁଗ ଧରି ବିଭିନ୍ନ ଧର୍ମ ଓ ସଂସ୍କୃତିର ସମନ୍ୱୟ ପୀଠ ରୂପେ ବିଦ୍ୟମାନ । ଦ୍ୱାଦଶ ଶତାବ୍ଦୀରେ ଗଙ୍ଗସମ୍ରାଟ ଚୋଡ଼ଗଙ୍ଗ ଦେବ ଜଗନ୍ନାଥ ମନ୍ଦିର ନିର୍ମାଣ କରିବା ଫଳରେ ଏହା ଭାରତର ବହୁ ସାଧୁସନ୍ଥଙ୍କର ତୀର୍ଥ ଭୂମି ଏବଂ ବିଭିନ୍ନ ଧର୍ମ ଓ ମତବାଦର ପ୍ରଚାର କ୍ଷେତ୍ରରେ ପରିଣତ ହୋଇଥିଲା । ଚୋଡ଼ଗଙ୍ଗଙ୍କ ଶାସନକାଳରେ ବୈଷ୍ଣବ ଧର୍ମର ଆଚାର୍ଯ୍ୟ ରାମାନୁଜ ପୁରୀ ଆସିଥିଲେ । ଚୋଡ଼ଗଙ୍ଗ ତାଙ୍କଠାରୁ ବୈଷ୍ଣବ ଧର୍ମ ଗ୍ରହଣ କରିଥିଲେ । ପରବର୍ତ୍ତୀ ସମୟରେ

ରାଜାଙ୍କ ପୃଷ୍ଠପୋଷକତାରେ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରସାର ଘଟିଥିଲା । ରାମାନୁଜଙ୍କ ସମସାମୟିକ ଥିଲେ ରାଧାକୃଷ୍ଣ ଉପାସକ ନିମ୍ବାର୍କ । କବି ଜୟଦେବ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇ ନିମ୍ବାର୍କ ପନ୍ଥା ଗ୍ରହଣ କରିଥିଲେ । ଜଗନ୍ନାଥଙ୍କୁ ସେ ବିଷ୍ଣୁ ରୂପରେ ଆରାଧନା କରିବା ସହିତ ରାଧାକୃଷ୍ଣଙ୍କ ପରକୀୟା ପ୍ରୀତି ଓ ବସନ୍ତକାଳୀନ ରାସଲୀଳାକୁ ଆଧାର କରି ସେ ଲେଖିଥିଲେ ଲଳିତ ମଧୁର ଗୀତିକାବ୍ୟ 'ଗୀତଗୋବିନ୍ଦ' ।

ଓଡ଼ିଆ ସଂସ୍କୃତି ତଥା ନୃତ୍ୟ, ଗୀତ, ଭାସ୍କର୍ଯ୍ୟ ଓ ଚିତ୍ରକଳା ଉପରେ ଗୀତଗୋବିନ୍ଦର ପ୍ରଭାବ ଅତ୍ୟନ୍ତ ନିବିଡ଼ । ଭଗବାନ ବୁଦ୍ଧ ଓ ଶ୍ରୀକୃଷ୍ଣଙ୍କ ପ୍ରତୀକ ସ୍ୱରୂପ ଆରାଧିତ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କୁ ଉପଜିବ୍ୟ କରି ଜୟଦେବ ଏହି ବିବାଦର ସହଜ ସମାଧାନ ଓ ଏକ ଧର୍ମୀୟ ସମନ୍ୱୟ ପ୍ରତିପାଦନ ପାଇଁ ଯେଉଁ ଉଦ୍ୟମ କରିଥିଲେ, ତାହାରି ଫଳରେ ଗୀତଗୋବିନ୍ଦ ପରି ଏକ ଅପୂର୍ବ ଓ ଅନୁପମ କାବ୍ୟ ସୃଷ୍ଟି ହେଲା । ଗୀତଗୋବିନ୍ଦର ବିଷୟବସ୍ତୁକୁ ଆଧାର କରି ଓଡ଼ିଶାରେ ଏ ପର୍ଯ୍ୟନ୍ତ ପ୍ରାୟ ୩୦ଟି ଚିତ୍ରପୋଥିର ସନ୍ଧାନ ମିଳିଛି । ଏପର୍ଯ୍ୟନ୍ତ ଗୀତଗୋବିନ୍ଦର ୫୮ଟି ଟୀକା ଓ ୧୩୨ଟି ଅନୁକୃତି ସମଗ୍ର ଭାରତରେ ଦେଖିବାକୁ ମିଳେ । ଏଗୁଡ଼ିକ ମଧ୍ୟରୁ ଅଧିକାଂଶ ଓଡ଼ିଶାର କୃତବିଦ୍ୟ ଲେଖକମାନେ ରଚନା କରିଅଛନ୍ତି ।

ଦ୍ୱାଦଶ ସର୍ଗ, ୭୨ଟି ଶ୍ଳୋକ ଓ ୨୪ଟି ଗୀତକୁ ନେଇ ଗୀତଗୋବିନ୍ଦ ରଚିତ । ଗୀତଗୁଡ଼ିକ ଆଠପଦ ବିଶିଷ୍ଟ । ତେଣୁ ଏହା ଅଷ୍ଟପଦୀ ନାମରେ ଖ୍ୟାତ । ସରଳ ଭାଷା ଓ ସାବଲୀଳ ଶୈଳୀରେ ରାଧାକୃଷ୍ଣଙ୍କ ଅପାର୍ଥିବ ପ୍ରେମଲୀଳା, ମାନ-ଅଭିମାନ, ବିରହ-ମିଳନ ଆଦି ଭାବାବେଶକୁ ନେଇ ଏହି ଗୀତିକାବ୍ୟଟି ରସୋତୀର୍ଣ୍ଣ । କବି ଶ୍ରୀଜଗନ୍ନାଥଙ୍କୁ ରାଧାମାଧବଙ୍କ ସମ୍ମିଳିତ ବିଗ୍ରହ ରୂପେ ଚିତ୍ରଣ କରିଛନ୍ତି । ଏହି ଗ୍ରନ୍ଥଟି ବସନ୍ତ ବର୍ଣ୍ଣନାରୁ ଆରମ୍ଭ ହୋଇ ରାଧାକୃଷ୍ଣଙ୍କ ମଧୁର ମିଳନର ବର୍ଣ୍ଣନାରେ ସମ୍ପୂର୍ଣ୍ଣ ହୋଇଛି ।

କବି ଜୟଦେବ ଜଣେ ପରମ ବୈଷ୍ଣବ ଥିଲେ । ଭଗବତ୍ ଗୁଣଗାନ କରିବା ଥିଲା ତାଙ୍କ ଜୀବନର ପରମ ଓ ଚରମ ଲକ୍ଷ୍ୟ । ଏଣୁ ଏହି ଗ୍ରନ୍ଥର ବିଭିନ୍ନ ସ୍ଥଳରେ ସେ ନିଜକୁ ହରିପ୍ରବଣ, କୃତହରି ସେବକ, ହରି ଚରଣ ଶରଣ, କୃତହରି ଗୁଣନ, ମଧୁରିପୁପଦ ସେବକ ରୂପେ ପ୍ରଖ୍ୟାପନ କରିଛନ୍ତି । ଗୀତଗୋବିନ୍ଦର ପ୍ରଥମ ଗୀତରେ କବି ଜଗଦୀଶ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ରଚିତ 'ଦଶାବତାର ସ୍ତୁତି' ଶେଷରେ ଶ୍ରୀଜଗନ୍ନାଥଙ୍କୁ ଦଶାକୃତିକୃତ୍ ପରଂବ୍ରହ୍ମ ଶ୍ରୀକୃଷ୍ଣ ରୂପେ ପ୍ରତିପାଦନ କରିଛନ୍ତି । କବି ସ୍ୱୟଂ ପ୍ରାର୍ଥନା କରିବାକୁ ଯାଇ କହିଛନ୍ତି - ପ୍ରଭୋ, ମୋ ରଚିତ ଏହି ଦୋଷ ରହିତ ଗୀତ ଶ୍ରୋତାମାନଙ୍କର ଆନନ୍ଦ ବର୍ଦ୍ଧନ କରୁ -

'ଶ୍ରୀଜୟଦେବ କବେରିଦଂ କୁରୁତେ ମୁଦଂ
ମଙ୍ଗଳ ମୁଜ୍ଜ୍ୱଳଗୀତଂ ଜୟ ଜୟ ଦେବ ହରେ ।'

ଶ୍ରୀହରି ପାଦ ସେବକ କବି ଜୟଦେବ ପରମ ରମଣୀୟ ଓ ଅତି ଦୟାଳୁ ହରିଙ୍କୁ ପ୍ରଣାମ ଓ ତାଙ୍କଠାରେ ଆତ୍ମସମର୍ପଣ କରିବାପାଇଁ ସମସ୍ତଙ୍କୁ ନିବେଦନ କରିବାକୁ ଯାଇ କହିଛନ୍ତି -

'ଶ୍ରୀଜୟଦେବ କୃତ ହରିସେବେ ଭଣତି
ପରମ ରମଣୀୟମ୍ ।
ପ୍ରମୁଦିତ ହୃଦୟଂ ହରିମତି ସଦୟଂ
ନ ମତି ସୁକୃତ କମନୀୟମ୍ ।।'

ଏହି ଗ୍ରନ୍ଥ କେବଳ ହରିଭକ୍ତମାନଙ୍କୁ ନୁହେଁ, ରସିକ ଜନସାଧାରଣଙ୍କୁ ମଧ୍ୟ ଆନନ୍ଦ ପ୍ରଦାନ କରେ । ଶ୍ରୀହରିଚରଣ ସେବକ କବିଙ୍କର ଏହି କାବ୍ୟ କଳାବତୀ ଯୁବତୀ ନାରୀ ସଦୃଶ ସମସ୍ତଙ୍କ ଚିତ୍ତକୁ ଆହ୍ଲାଦିତ କରୁ ବୋଲି କବି ଆଶା କରିଛନ୍ତି ।

ସର୍ବଶେଷ ପ୍ରବନ୍ଧରେ କବି ପୁଣ୍ୟ ଜନଙ୍କ ଓ ପୁଣ୍ୟ ପ୍ରଦାୟକ ହରିଙ୍କୁ ପ୍ରଣାମପୂର୍ବକ ଚିରକାଳ ହୃଦୟରେ ସ୍ଥାପନ କରିବା ପାଇଁ ସମସ୍ତଙ୍କୁ ନିବେଦନ କରିଛନ୍ତି -

'ଶ୍ରୀ ଜୟଦେବ କଳସି ରୁଚିରେ ହୃଦୟଂ
ସଦୟଂ କୁରୁମଣ୍ଡନେ
ହରିଚରଣ ସ୍ମରଣାମୃତ କୃତ କଳି କଳୁଷ
ଭବଜ୍ୱର ଖଣ୍ଡନେ ।'

ହେ ସୁଜନବର୍ଗ ! ଶ୍ରୁତି ସୁଖକର ହରିଚରଣ ସ୍ମରଣ ରୂପକ ଅମୃତ ଦ୍ୱାରା କଳିକଳୁଷ ରୂପ ଜ୍ୱରତାପ ଦୂରୀକରଣରେ ସମର୍ଥ ଜୟଦେବଙ୍କ ରଚିତ ଗୀତରେ ସଦୟ ହୋଇ ମନୋନିବେଶ କରନ୍ତୁ । ଆଦର ସହକାରେ ପଢ଼ିବାକୁ ଓ ଶୁଣିବାକୁ କବି ସମସ୍ତଙ୍କୁ ନିବେଦନ କରିଛନ୍ତି ।

ଜୟଦେବ ଥିଲେ ଜଣେ ଶ୍ରେଷ୍ଠ ସଂଗୀତଜ୍ଞ । ତାଙ୍କ ସମୟରୁ ଓଡ଼ିଶାରେ ନୃତ୍ୟ-ବାଦ୍ୟ-ସଂଗୀତ ସଂସ୍କୃତିର ଏକ ଅଙ୍ଗ ହୋଇଯାଇଥିଲା । ଏପରିକି 'ଗୀତଗୋବିନ୍ଦ' ଶ୍ରୀଜଗନ୍ନାଥଙ୍କ ପ୍ରିୟ ଭକ୍ତି ସଙ୍ଗୀତ ରୂପେ ଶ୍ରୀମନ୍ଦିରରେ ସ୍ୱୀକୃତ । ସେଥିପାଇଁ

ଗୀତଗୋବିନ୍ଦ ସେବା ଠାକୁରଙ୍କ ଦୈନନ୍ଦିନ ପୂଜାପଦ୍ଧତିର ଏକ ବିଶେଷ ଅଙ୍ଗ । କେବଳ ସେତିକି ନୁହେଁ, 'ଗୀତଗୋବିନ୍ଦ'ର ଅନୁପମ ଭାଷା, ଶୈଳୀ, ଭାବ, ଛନ୍ଦ ଭାରତୀୟ କଳା, ସାହିତ୍ୟ, ସଂସ୍କୃତି, ସ୍ଥାପତ୍ୟ, ସଂଗୀତ ଓ ଚିତ୍ରକଳାକୁ ଯୁଗ ଯୁଗ ଧରି ପ୍ରଭାବିତ ଓ ଋଦ୍ଧିମନ୍ତ କରିଆସିଛି ।

ଉପରୋକ୍ତ ଆଲୋଚନାରୁ ସେହି ଯଶସ୍ୱୀ ବୈଷ୍ଣବ କବି ଜୟଦେବଙ୍କ ଅଲୌକିକ କାବ୍ୟ ପ୍ରତିଭା, ସଙ୍ଗୀତ ନୈପୁଣ୍ୟ ଓ ହରିଭକ୍ତିର ସୂଚନା ମିଳେ । ଏହା ଏକାଦିକ୍ରମେ ଗାନ, ନୃତ୍ୟ ଓ ଅଭିନୟ ପାଇଁ ଉଦ୍ଦିଷ୍ଟ । କବିଙ୍କର ଏହି ମହାନ ଗ୍ରନ୍ଥ ଭକ୍ତି, ପ୍ରୀତି ଓ ଗୀତିରସ ରୂପକ ତ୍ରିଧାରାର ଅପୂର୍ବ ସମନ୍ୱୟାତ୍ମକ ଅଦ୍ୱିତୀୟ କାବ୍ୟ ସଙ୍ଗମ, ତାହା ପ୍ରମାଣିତ ହୁଏ । ଏହି ବିଶ୍ୱବନ୍ଦିତ କବିଙ୍କୁ ଉତ୍କଳ ଜନନୀ ଜନ୍ମ ଦେଇ ଯେଉଁ ଗୌରବ ଅର୍ଜନ କରିଛି, ଯୁଗ ଯୁଗ ଧରି ସେହି ପ୍ରତିଭାର ସ୍ୱୀକୃତି ସ୍ୱରୂପ 'ଗୀତଗୋବିନ୍ଦ' ଜନଗଣଙ୍କୁ ମୁଗ୍ଧ ଏବଂ ଆମ ସାହିତ୍ୟ, ସଂସ୍କୃତିକୁ ମହିମାମଣ୍ଡିତ କରି ଆସୁଥିବ ଏଥିରେ ସନ୍ଦେହ ନାହିଁ ।

ଅଧ୍ୟାପକ, ଓଡ଼ିଆ ବିଭାଗ
ରଘୁନାଥ ସମବାୟ ମହାବିଦ୍ୟାଳୟ
ଓଡ଼ଗାଁ, ନୟାଗଡ଼



# ଶ୍ରୀଗୀତଗୋବିନ୍ଦ ଓ ଉତ୍କଳୀୟ ସଂସ୍କୃତି

ଡକ୍ଟର ଯଶୋବନ୍ତ ନାରାୟଣ ଧର

**ଶ୍ରୀ**ଗୀତଗୋବିନ୍ଦର ରଚନାକାଳ ୧୧୫୦ ଖ୍ରୀ: ଆଖପାଖର । କାରଣ ଗଙ୍ଗରାଜା କାମାର୍ଣ୍ଣବ ଦେବ, ଯେ କି ଓଡ଼ିଶାରେ ୧୧୪୭ ଖ୍ରୀ:ରୁ ୧୧୫୬ଖ୍ରୀ: ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ, ତାଙ୍କରି ସମୟରେ ଏହି ଶ୍ରୀଗୀତଗୋବିନ୍ଦ ରାଜ ଆଦର ଲାଭ କରିଥିଲା ଏବଂ କୁହାଯାଏ ଯେ ସ୍ୱୟଂ ରାଜା କାମାର୍ଣ୍ଣବ ଦେବ ପ୍ରତ୍ୟହ ଗୀତଗୋବିନ୍ଦ ଶ୍ରବଣ ପରେ ହିଁ ଅନ୍ନଜଳ ଗ୍ରହଣ କରୁଥିଲେ । ଏହାର କିଛିବର୍ଷ ପରେ ଗଙ୍ଗବଂଶୀୟ ରାଜା ନରସିଂହ ଦେବ (୧୨୭୮ ଖ୍ରୀ:ରୁ ୧୩୦୯ ଖ୍ରୀ: ପର୍ଯ୍ୟନ୍ତ ଶାସନ କାଳ) ନିଜର ୩୦/୩୧ ବର୍ଷର ଶାସନ ମଧରେ ଶ୍ରୀମନ୍ଦିରରେ ଗୀତଗୋବିନ୍ଦ ସେବାକୁ ଏକ ନିତ୍ୟ ସେବା ରୂପେ ପ୍ରଚଳିତ କରାଇଥିଲେ । ଏହା ମାଦଳାପାଞ୍ଜି ଦ୍ୱାରା ସମର୍ଥିତ । ଶ୍ରୀମନ୍ଦିରର Record of Right ବା ସ୍ୱତ୍ତ୍ୱଲିପି ଅନୁଯାୟୀ ଶ୍ରୀଗୀତଗୋବିନ୍ଦ ଗାନ ପାଇଁ ନିଯୁକ୍ତ ବ୍ରାହ୍ମଣ ସେବକ ଓ ଦେବଦାସୀମାନେ ଥିଲେ ଶାଢ଼ୀବନ୍ଧା ସେବାୟତ ।[୨] ଏହି ନୀତି ସଂପର୍କରେ ବୋଧହୁଏ କିଛିଟା ବ୍ୟତିକ୍ରମ ଦେଖାଯିବାରୁ ସୂର୍ଯ୍ୟବଂଶୀ ରାଜା ପ୍ରତାପରୁଦ୍ର ଦେବ ଏକ ଅଭିଲେଖ ଜରିଆରେ ଏକ ରାଜାଦେଶ ଜାରି କରି ଏହାର ଦୃଢ଼ୀକରଣ କରିଥିଲେ । ଏହି ଅଭିଲେଖଟି ଜୟବିଜୟ ଦ୍ୱାରଲେଖ ନାମରେ ପରିଚିତ ଏବଂ ଏହା ୧୫୦୦/୧୫୦୧ ଖ୍ରୀ:ରେ ଖୋଦିତ ହୋଇଥିଲା ।

ସାରା ଭାରତରେ ଶ୍ରୀଗୀତଗୋବିନ୍ଦର ପ୍ରାୟ ଚଉଷଠିଟି ଅନୁକୃତି ରହିଛି । ଏଥିମଧ୍ୟରୁ ଓଡ଼ିଶାରେ ରଚିତ ଅନୁକୃତିଙ୍କ ସଂଖ୍ୟା ସବୁଠାରୁ ବେଶୀ ଓ ତୁଳନାତ୍ମକ ଦୃଷ୍ଟିରୁ ମଧ୍ୟ ଅଧିକ ଗୁରୁତ୍ୱପୂର୍ଣ୍ଣ । ସଂସ୍କୃତରେ ରଚିତ ଶ୍ରୀଗୀତଗୋବିନ୍ଦର ସର୍ବପ୍ରଥମ ଟୀକା ଓ ଅନୁକୃତି 'ଭାବବିଭାବିନୀ', ଏହା କବି ଉଦୟନ ଆଚାର୍ଯ୍ୟ ପ୍ରଣୟନ କରିଥିଲେ । ସେ ଥିଲେ ଓଡ଼ିଶାର କବି ଏବଂ ତାହା ରଚିତ ହୋଇଥିଲା ଗଙ୍ଗରାଜା ଶ୍ରୀ ରାଘବ ଦେବଙ୍କ ସମୟରେ । ସେହି ଗଙ୍ଗ ରାଜାଙ୍କ ଶାସନ କାଳ ଥିଲା ୧୧୫୬ ଖ୍ରୀଷ୍ଟାବ୍ଦରୁ ୧୧୭୦ ଖ୍ରୀଷ୍ଟାବ୍ଦ । ତେଣୁ ୧୧୭୦ ଖ୍ରୀ: ଥିଲା ବେଳକୁ ଶ୍ରୀଗୀତଗୋବିନ୍ଦର ପ୍ରସିଦ୍ଧି ଓଡ଼ିଶାର ସମ୍ଭ୍ରାନ୍ତ ଜଗତରେ ବେଶ୍ ପ୍ରସାରିତ ହୋଇସାରିଥିଲା ବୋଲି ଅନୁମେୟ ।

ଅତଏବ, ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ବର୍ତ୍ତମାନ ଶ୍ରୀମନ୍ଦିରର ପ୍ରତିଷ୍ଠା ଓ ପୂଜାନୀତି ଆଦିର ବିଧିବଦ୍ଧ ପ୍ରଚଳନ ସମୟକୁ ଶ୍ରୀଗୀତଗୋବିନ୍ଦର ଆଦର ଓ ପ୍ରତିଷ୍ଠା ଓଡ଼ିଶାରେ ବେଶ୍ ପ୍ରଭାବ ପକାଇଥିଲା । ସମ୍ଭବତଃ, ଏହାର ପୂର୍ବରୁ (ଚୋଡ଼ଗଙ୍ଗ ଦେବନିର୍ମିତ ଶ୍ରୀମନ୍ଦିର ପୂର୍ବରୁ) ଏଠାରେ ଚତୁର୍ଦ୍ଧାମୂର୍ତ୍ତି ପୂଜା ପାଇ ଆସୁଥିଲେ ଏବଂ ଏଠାରେ ଏକ ମନ୍ଦିର ମଧ ପ୍ରତିଷ୍ଠିତ ହୋଇଥିଲା । ଇନ୍ଦ୍ରଦ୍ୟୁମ୍ନ ସଂପର୍କୀୟ କିମ୍ବଦନ୍ତୀ ଓ ଗାଲମାଧବ ଉପାଖ୍ୟାନରୁ ଏହିଭଳି ପୂର୍ବରୁ ପ୍ରାଚୀନ ମନ୍ଦିର ପୋତି ହୋଇପଡ଼ିଥିଲା ଓ ମନ୍ଦିରର ପୁନରୁଦ୍ଧାର ଇତ୍ୟାଦି କଥା ଜଣାଯାଇଥାଏ । ଉତ୍କଳୀୟ ଚେତନାର ଧର୍ମ ଓ ଆଧାତ୍ମିକ ଭିତ୍ତି ରୂପେ ଯେଉଁ ଶ୍ରୀଜଗନ୍ନାଥ ଚେତନା ଜଡ଼ିତ ସେଥିସହିତ ମୂଳରୁ ବୈଷ୍ଣବ ତଥା ଭାଗବତ ଧର୍ମର ସଂପର୍କ ବିଷୟରେ ସମସ୍ତେ ଜାଣନ୍ତି । ଏଠାରେ ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ଉପସ୍ଥିତି ବିଷ୍ଣୁ-କୃଷ୍ଣ ଭାବନା ସହିତ ଶ୍ରୀଜଗନ୍ନାଥଙ୍କୁ ଏକୀଭୂତ କରିବାର ପ୍ରଚେଷ୍ଟାରେ ସଫଳ ହୋଇଥିଲା । ଅନେକ ଜାଣନ୍ତି ଯେ, ଯେଉଁ ବୈଷ୍ଣବୀୟ ଭାବଧାରାର ପ୍ଲାବନରେ ଭାରତବର୍ଷ କ୍ରମାଗତ ଭାବରେ ପ୍ଲାବିତ ହେଉଥିଲା, ସେଥିମଧ୍ୟରୁ ସର୍ବବ୍ୟାପକ ବୈଷ୍ଣବ ପ୍ଲାବନ ଶ୍ରୀଚୈତନ୍ୟଙ୍କ ସମୟରେ ପୂର୍ବ ଭୂଖଣ୍ଡରେ ଅନୁଭୂତ ହୋଇଥିଲା । ମାତ୍ର ଏହାର ବହୁପୂର୍ବରୁ ମାଧବାଚାର୍ଯ୍ୟ, ବଲ୍ଲଭାଚାର୍ଯ୍ୟ ପ୍ରଭୃତିଙ୍କ ନେତୃତ୍ୱରେ ବୈଷ୍ଣବ ଧର୍ମଧାରାର ଯେଉଁ ପ୍ରଚାର ଓ ପ୍ରସାର ଦକ୍ଷିଣ ଭାରତରେ ଦେଖାଦେଇଥିଲା ସେଥିରେ ମଧ ଓଡ଼ିଶାର ଶ୍ରୀକ୍ଷେତ୍ର-ପୁରୀ ଥିଲା ଅନ୍ୟତମ ମୁଖ୍ୟକେନ୍ଦ୍ର । 'ଶ୍ରୀମନ୍ଦିର', 'ଶ୍ରୀକ୍ଷେତ୍ର' ଆଦି ନାମକରଣ ପଶ୍ଚାତ 'ଶ୍ରୀ' ସଂପ୍ରଦାୟର ପ୍ରଭାବ ସ୍ପଷ୍ଟ ଅନୁମେୟ । ତେବେ, ଗୋଟିଏ ପର୍ଯ୍ୟାୟରେ ଆଦି ଶଙ୍କର (ନବମ ଶତକ) ଏହି ଭୂମିର ମାନ୍ୟତା ଦେଇ ଭୋଗୋବର୍ଦ୍ଧନ ପୀଠ ପ୍ରତିଷ୍ଠା କରିବା ଓ ନିଜର ପ୍ରମୁଖ ଶିଷ୍ୟ ପଦ୍ମପାଦାଚାର୍ଯ୍ୟଙ୍କୁ ତାହାର ଆଚାର୍ଯ୍ୟ ରୂପେ ଅବସ୍ଥାପିତ କରିବା ଦ୍ୱାରା ଏ ଅଞ୍ଚଳରେ ଏହାର ପ୍ରାଧାନ୍ୟ ଓ ତାହାର ପ୍ରଭାବକୁ ସ୍ୱୀକାର କରିଥିଲେ । ଏକ ସାର୍ବଜନୀନ ଧର୍ମ ଭାବରେ ଉଦାର ବୈଷ୍ଣବ ଧର୍ମମତବାଦ ସେତେବେଳକୁ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି

ମଣିଷ ଜୀବନର ଆନନ୍ଦ ଓ ମହନୀୟତାକୁ ଅନେକ ପ୍ରେରଣା ଯୋଗାଇଲାଣି । ଏହାର ପ୍ରମୂର୍ତ୍ତରୂପ ଆମେ ଓଡ଼ିଶାର ଗାଁ ଗାଁରେ ପ୍ରତିଷ୍ଠିତ ହୋଇଥିବା ଭାଗବତ ଟୁଙ୍ଗୀରୁ ପାଇପାରିବା । ବୈଦିକ ବ୍ରାହ୍ମଣ ଅଧ୍ୟୁଷିତ ନୈଷ୍ଠିକ ଶାସନ କରିବାରେ ନୁହେଁ, ଅବୈଦିକ ବ୍ରାହ୍ମଣ ଓ ସମାଜର ସାଧାରଣ ଲୋକମାନଙ୍କର ଗାଁରେ ପ୍ରତିଷ୍ଠିତ ହୋଇଥିଲା ଏହିସବୁ ଭାଗବତଟୁଙ୍ଗୀ । ଏପରି ଏକ ଗାଁ ନାହିଁ ଯେଉଁଠି ନାହିଁ ଭାଗବତର ପ୍ରତିଷ୍ଠା, ଏପରିକି ଏକ ଟୁଙ୍ଗୀ ନାହିଁ ଯେଉଁଠି ନାହିଁ ଭାଗବତ ସହିତ ଶ୍ରୀଗୀତଗୋବିନ୍ଦ । ଉତ୍କଳୀୟ ଚୈତନ୍ୟ ସହିତ ଏକାକାର ହୋଇଯାଇଥିବା ଏହିଗ୍ରନ୍ଥ ତାହାର ଉପୋଦ୍‌ଘାତରେ ସ୍ପଷ୍ଟ କରିଥିବା ଲକ୍ଷ୍ୟ ଏକ ସହଜ ସରଳ ଢଙ୍ଗରେ ପୂରଣ କରିନେଇଛି ।

'ଯଦି ହରିସ୍ମରଣେ ସରସ ମନଂ, ଯଦି ବିଳାସ କଳାସୁ କୁତୁହଳମ୍
ମଧୁର କୋମଳ କାନ୍ତ ପଦାବଳୀ, ଶୃଣୁତଦା ଜୟଦେବ ସରସ୍ୱତୀମ୍ ।'

ଯଦି ଏପରି ଏକ ସର୍ବେକ୍ଷଣ କରାଯାଆନ୍ତା, ତେବେ ଆମର ଗାଁ ଗାଁରେ ସହସ୍ର ସହସ୍ର ଶ୍ରୀଗୀତଗୋବିନ୍ଦ ଓ ଏହାର ଚିତ୍ରପୋଥି ଯେ ମିଳନ୍ତା ଏଥିରେ ସନ୍ଦେହ ନାହିଁ । ବିଦଗ୍ଧ ସଂସ୍କୃତ ଭାଷା ଅଭିଜ୍ଞ ବ୍ୟକ୍ତିଗଣଙ୍କର ନିକଟରେ ଏହି ପୋଥି ଯେତିକି ଆଦର ଲାଭ କରିଛି, ସାଧାରଣ ସଂସ୍କୃତ ଭାଷା ଅନଭିଜ୍ଞ ଜନତାଙ୍କ ଦ୍ୱାରା ମଧ ଏହା ତତୋଧିକ ସମ୍ମାନ ପାଇପାରିଛି । ସେମାନେ ପଢ଼ି ବୁଝି ପାଇଛନ୍ତି ଏ ଆନନ୍ଦ, ଏମାନେ ଶୁଣି ଗାଇ ପାଇଛନ୍ତି ପରମାନନ୍ଦ । ଏହାର ସାଙ୍ଗୀତିକତା ଏହାକୁ ସାଧାରଣ ନିରକ୍ଷର ଜନତା ସ୍ତରରେ ଏତେ ଅଧିକ ପ୍ରସାରିତ କରିପାରିଛି । ଯାହା ଗୋପବନ୍ଧୁ ଉପେନ୍ଦ୍ର ଭଞ୍ଜଙ୍କ ଉଦ୍ଦେଶ୍ୟରେ କହିଥିଲେ, 'ବିଲେ ବୋଲେ ଚଷା, ଅନ୍ତଃପୁରେ ଯୋଷା, ନୃତ୍ୟ ରଂଗେ ବାରଙ୍ଗନା' ତାହା ଏ କ୍ଷେତ୍ରରେ ମଧ ଊଣା ଅଧିକେ ପ୍ରଯୁଜ୍ୟ ।

ଶ୍ରୀଗୀତଗୋବିନ୍ଦର ଗୁଣାବଳୀକୁ ଆମେ ନିମ୍ନମତେ ବିଭକ୍ତ କରିପାରିବା ।

କ) ବୈଷ୍ଣବ ପ୍ରେମ ଭକ୍ତିବାଦର ସହଜ ପ୍ରଖ୍ୟାପନ

ଖ) ଆଧ୍ୟାତ୍ମିକ ଜିଜ୍ଞାସାର ବ୍ୟାଖ୍ୟା

ଗ) ସୌନ୍ଦର୍ଯ୍ୟତତ୍ତ୍ୱ ଦୃଷ୍ଟିରୁ ଭୌତିକ ଓ ଆଧିଭୌତିକତାର ସମ୍ମିଶ୍ରଣ

ଘ) ନାଟକୀୟତା ରକ୍ଷା

ଙ) ସଂଗୀତ ଦୃଷ୍ଟିରୁ ଉଚ୍ଚକୋଟୀର ପ୍ରୟୋଗ

ଯମୁନା କୂଳର ଗୋଟିଏ ଗ୍ରାମର କାହାଣୀ ବୈଷ୍ଣବୀୟ ଧର୍ମର ଅଲୌକିକ କୃଷ୍ଣଗାଥାରେ ପରିଣତ ଓ ପ୍ରଚାରିତ ହୋଇ ଭାରତବର୍ଷର ଧର୍ମଧାରଣାକୁ ଏକ ଭିନ୍ନ ବ୍ୟାପକ ଆୟାମ ଦେଇଛି । ଶ୍ରୀକୃଷ୍ଣ ଜନ୍ମ, ମାମୁଁ କଂସର ରାଜତ୍ୱକୁ ବିରୋଧ, ମଥୁରାରୁ ଯାଇ ଗୋପରେ ଯାଦବମାନଙ୍କୁ ସଂଗଠିତ କରିବା, ସେଠାରେ ବିଭିନ୍ନ ଲୀଳା ବା ଅଲୌକିକତା ପ୍ରଦର୍ଶନ କରି ଲୋକଙ୍କ ମଧରେ ନେତୃତ୍ୱ ଜାହିର କରିବା, ଶ୍ରୀରାଧା, ବୃନ୍ଦାବତୀ ଆଦିଙ୍କ ସହିତ ପ୍ରେମଲୀଳା, ପୁଣି ଗୋପରୁ ମଥୁରା ଓ କଂସର ନିଧନ ପରେ ରାଜତ୍ୱର ଅଧିଗ୍ରହଣ, ମଥୁରାରୁ ପୁଣି ଦ୍ୱାରକାକୁ ଜରାସନ୍ଧ ଭୟରେ ପଳାୟନ, ବଳରାମଙ୍କୁ ରାଜତ୍ୱ ଅର୍ପଣ ଓ ହସ୍ତିନା-ଇନ୍ଦ୍ରପ୍ରସ୍ଥରେ ପାଣ୍ଡବଙ୍କୁ ସହାୟତା ପ୍ରଦାନ ତଥା ପରିଶେଷରେ ଜାରାଶବର ଶର ନିକ୍ଷେପରେ ଚିର ବିଶ୍ରାମ । ଏହିଭଳି ଏକ ଘଟଣାବହୁଳ ଜୀବନୀ ମଧରୁ କେବଳ ଗୋପୀକୃଷ୍ଣ ଲୀଳାକୁ ବୈଷ୍ଣବମାନେ ପ୍ରାଧାନ୍ୟ ଦେଇଛନ୍ତି ଏବଂ ତାହା ହିଁ ଗୀତଗୋବିନ୍ଦର ଉପଜୀବ୍ୟ ।

କ) ବୈଷ୍ଣବୀୟ ଭାବଧାରାର ଗ୍ରନ୍ଥ : ଶ୍ରୀଗୀତଗୋବିନ୍ଦ

ଭକ୍ତ କିପରି ଭଗବାନଙ୍କୁ ଲୋଡ଼ିବ ! ତାହାର ସବୁଠାରୁ ସାନ୍ଦ୍ର ସବୁଠାରୁ ଶୀର୍ଷରୂପକୁ ବୈଷ୍ଣବ ତତ୍ତ୍ୱବିତ୍‌ମାନେ ସେତେବେଳେ ଆବିଷ୍କାର କରିଥିଲେ 'ପରକୀୟା ପ୍ରୀତି'ରେ । କୁଳବଧୂଟିଏ ସ୍ୱାମୀଭିନ୍ନ ଅନ୍ୟ ଏକ ପୁରୁଷର ପ୍ରେମରେ ପଡ଼ିଯାଇଛି । ସ୍ୱାମୀ ଅଛି, ସଂସାର ଅଛି, ଶାଶୁ ନଣନ୍ଦବି ଅଛନ୍ତି - ରହିଛି ନିତିଦିନିଆ ଜଞ୍ଜାଳ, ପୁଣି ସମାଜର ଆକଟ । ସେ ବି ଜାଣିଛି ମୁଁ ଏକା ନୁହେଁ, ଅନ୍ୟ ଅନେକ କୁଳବଧୂ ତାଙ୍କର ପ୍ରେମରେ ପଡ଼ିଛନ୍ତି - କିନ୍ତୁ ସେ ମନପ୍ରାଣ ଦେଇ ତାଙ୍କୁ ପାଇବାକୁ ଚାହେଁ । ଏମନ୍ତ ଯେ ପ୍ରୀତି ତାହା ହିଁ ଭକ୍ତି - ପ୍ରେମଭକ୍ତି । ଶ୍ରୀରାଧା-ଶ୍ରୀକୃଷ୍ଣ ଲୀଳାରେ ଏହି ଚରମ ରୂପଟିକୁ ଆବିଷ୍କାର କଲାପରେ ଶ୍ରୀକୃଷ୍ଣ/ଶ୍ରୀବିଷ୍ଣୁ/ଶ୍ରୀରାମ ଆଦି ସମସ୍ତ ସ୍ରଷ୍ଟାମାନଙ୍କର ଜୀବନ ଚରିତ ମଧରେ ଏହାକୁ ହିଁ ପ୍ରେମଭକ୍ତି ପ୍ରଚାରର ସର୍ବୋତ୍କୃଷ୍ଟ ଲୀଳା ବୋଲି ସ୍ୱୀକାର କରାଯାଇଛି । ଶ୍ରୀମଦ୍ ଭାଗବତର ବୃନ୍ଦାବତୀ ମଧ ଏହି ଲୀଳା ଆଗରେ ଫିକା ପଡ଼ି ଯାଇଛନ୍ତି - ଅଷ୍ଟସଖୀ ଏବେ କେବଳ ସଖୀମାତ୍ର - ସମସ୍ତେ ପଡ଼ିଛନ୍ତି ପଛରେ - ଶ୍ରୀରାଧା-କୃଷ୍ଣଙ୍କ ନାମରେ ଏବେ ଜୟ ଜୟକାର ! ଲେଖା ହୋଇଛି ଅନେକ ଗ୍ରନ୍ଥ, ଧୀରେ ଧୀରେ ଶ୍ରୀକୃଷ୍ଣଙ୍କ ଜୀବନ ଚରିତ ସବୁ ବାଦ୍ ଯାଇ କେବଳ ରହିଛି ରାଧା-କୃଷ୍ଣ ପ୍ରେମ-ପରକୀୟା ପ୍ରୀତିର ଅନନ୍ୟ ରୂପ ।

ଶ୍ରୀଗୀତଗୋବିନ୍ଦରେ ଏହା ଆହୁରି ପ୍ରେମ କୈନ୍ଦ୍ରିକ । ବାଜେକଥା ସବୁ ବାଦ ଦେବାକୁ ଚାହିଁଛନ୍ତି କବିରାଜ ଜୟଦେବ ସିଧାସଳଖ ସେ ଆରମ୍ଭ କରିଛନ୍ତି ପ୍ରେମ ପ୍ରସଙ୍ଗରୁ- ଦୈହିକ ମିଳନରୁ ସେ ପଟେ ପୁଣି ଭୁଲିନାହାନ୍ତି ବିଷ୍ଣୁଙ୍କର କଥା,

ଶ୍ରିତ କମଳା କୁଚମଣ୍ଡଳ

ସେ ପୁଣି ଭୁଲି ନାହାନ୍ତି ଦଶାବତାର ପ୍ରସଙ୍ଗ, କିନ୍ତୁ ଗୋପଲୀଳା ପ୍ରେମ ବ୍ୟାପାରରୁ ହୁଡ଼ି ନାହିଁ ତାଙ୍କର ଚିତ୍ତ ! ବୈଷ୍ଣବୀୟ ଧର୍ମଧାରାରେ ତେଣୁ ଶ୍ରୀଗୀତଗୋବିନ୍ଦର ମର୍ଯ୍ୟାଦା ସର୍ବସ୍ୱୀକୃତ - ଗୌଡ଼ୀୟ ଭକ୍ତମାନେ ତ ସହଜିଆ ଭାବରେ ମତ୍ତ, ଉତ୍କଳୀୟ ଧର୍ମଧାରାରେ ମଧ ଏହି ଗ୍ରନ୍ଥର ପ୍ରତିଷ୍ଠା କିଛି କମ୍ ନୁହେଁ - ନିତ୍ୟ ଶ୍ରୀଜଗନ୍ନାଥ ଏହାକୁ ଶ୍ରବଣ କଲେ ହିଁ ଶାନ୍ତି ପାଆନ୍ତି, ନିଦ୍ରାଯାଆନ୍ତି । ତତ୍କାଳୀନ ସାମାଜିକ/ଧାର୍ମିକ ବ୍ୟବସ୍ଥାରେ ଶ୍ରୀଗୀତଗୋବିନ୍ଦର ଏହି ପ୍ରତିଷ୍ଠା ଓ ପ୍ରାପ୍ତି ଏହାର ଉଚ୍ଚକୋଟୀର ରଚନାଶୈଳୀ/ଗାୟନ କୌଶଳ ସହିତ ତାତ୍ତ୍ୱିକ ପରିଭାଷାର ସାମର୍ଥ୍ୟକୁ ସୂଚିତ କରିଥାଏ ।

ଖ) ଆଧାତ୍ମିକ ଜିଜ୍ଞାସାର ବ୍ୟାଖ୍ୟା

ଦ୍ୱାଦଶ ଶତକ ବେଳକୁ ସଂସ୍କୃତ ସାହିତ୍ୟର ରଥୀ ମହାରଥୀଗଣ ଅପୂର୍ବ ସୁନ୍ଦର କାବ୍ୟକବିତାଦି ବିବିଧ ସାହିତ୍ୟିକ ସାମଗ୍ରୀର ବ୍ୟଞ୍ଜନ ପରିବେଷଣ କରି ସେତେବେଳର ସମ୍ଭ୍ରାନ୍ତ ପଣ୍ଡିତ ସମାଜକୁ ଆପ୍ୟାୟିତ କରି ରଖିଥିଲେ । ଧର୍ମ ଓ ଆଧାତ୍ମିକ ଦିଗରୁ ମଧ ସଂସ୍କୃତର କିଛି କମ୍ ଆଧିପତ୍ୟ ନଥିଲା । ହିନ୍ଦୁଧର୍ମର ଧର୍ମଗ୍ରନ୍ଥମାନେ ହିଁ ସଂସ୍କୃତରେ ରଚିତ ହେବାକୁ ସେତେବେଳେ ବାଧ । ଅପଭ୍ରଂଶ ଓ ପ୍ରାକୃତ ସାହିତ୍ୟ ନା ମନ୍ଦିରରେ ନା ଦରବାରରେ ସ୍ୱୀକୃତି ପାଇବାର ଯୋଗ୍ୟ ଥିଲା ସେତେବେଳେ । ଏଣୁ ଶ୍ରୁତିମୁଖକର ରୋଚକ ଶୃଙ୍ଗାର ସାହିତ୍ୟ ଓ ରାଧାକୃଷ୍ଣ ପ୍ରେମଲୀଳା ଏହି ଦୁଇ ଆକର୍ଷଣୀୟ ବିଷୟବସ୍ତୁକୁ ନେଇ ରଚିତ ଶ୍ରୀଗୀତଗୋବିନ୍ଦ କାହିଁକି ବା ଏକ ଉଚ୍ଚସ୍ଥାନ ପାଇବ ନାହିଁ ?

ତେବେ ଭାରତୀୟ ଧର୍ମ ପରମ୍ପରାକୁ / ଅବତାର ବାଦକୁ ପୁଣି ଲୀଳା ଆଦିକୁ ଦୃଷ୍ଟି ରଖିଛନ୍ତି କବିରାଜ ଜୟଦେବ । 'କୃଷ୍ଣସ୍ତୁ ଭଗବାନ ସ୍ୱୟଂ' ସ୍ୱୀକାର କରି ଦଶାବତାରର ସାଂଗିତିକ ପରିବେଷଣ ବଡ଼ ଚମତ୍କାର ଢଙ୍ଗରେ କରିଛନ୍ତି ସେ । ପୁଣି ବିଷ୍ଣୁଙ୍କ ଆରାଧନା ଆହୁରି ଚମତ୍କାର ।

ଆଧାତ୍ମିକତାର ଯେତେ ଯାହା ସହଜ ଅବତାରଣା କରାଯାଇପାରେ ତାହାର ଅଭାବ ନାହିଁ । ବାସ୍ତବରେ କହିବାକୁ ଗଲେ ରାଧା-କୃଷ୍ଣ ପ୍ରେମଭକ୍ତି ମାର୍ଗ ସଂପର୍କରେ ସର୍ବକାଳିକ ପ୍ରେରଣାର ଉତ୍ସ ରୂପେ ଶ୍ରୀଜୟଦେବ ନିଜକୁ ଏହି କାବ୍ୟ ରଚନା କରି ଯେ ନିଃସନ୍ଦେହରେ ପ୍ରତିଷ୍ଠିତ କରିପାରିଛନ୍ତି, ସେଥିରେ କୌଣସି ପ୍ରଶ୍ନ ନଥାଇପାରେ । ଜଣେ ବିଶିଷ୍ଟ ସମାଲୋଚକ ଡଃ ଦାଶରଥି ଦାସ ଶ୍ରୀ ଜୟଦେବଙ୍କୁ ଏ ସଂପର୍କରେ ପଥପ୍ରଦର୍ଶକ ବୋଲି ସ୍ୱୀକାର କରିବା ସତ୍ତ୍ୱେ ମନ୍ତବ୍ୟ ଦେଇଛନ୍ତି, 'କବି ଶ୍ରୀ ଜୟଦେବ ରାଧାକୃଷ୍ଣ ପ୍ରେମକୁ ଧର୍ମଶାସ୍ତ୍ରର ଆବେଷ୍ଟନୀରୁ ମୁକ୍ତ କରି ଲୌକିକ, ପ୍ରାକୃତ ଓ ସଂସ୍କୃତ ରସ ସାହିତ୍ୟର ଶୃଙ୍ଗାର ରସାତ୍ମକ କାବ୍ୟଧାରା ସହିତ ସଂଯୁକ୍ତ କରି ଦେଇଛନ୍ତି । ଫଳରେ ତାହାର ଭବିଷ୍ୟତ ପ୍ରସାର ଓ ପରିଣତିର ପଥ ପ୍ରଶସ୍ତ ହୋଇଉଠିଛି । 'ଗୀତଗୋବିନ୍ଦ'ରେ ମାଧୁର୍ଯ୍ୟ ସୃଷ୍ଟି ମୁଖ୍ୟ ଉଦ୍ଦେଶ୍ୟ, ଆଧାତ୍ମିକତାର ବ୍ୟଞ୍ଜନା ଅପେକ୍ଷାକୃତ ଗୌଣ ।'[୨] ସାହିତ୍ୟ ଓ ଶିଳ୍ପକଳା ସମୀକ୍ଷକଙ୍କ ଦୃଷ୍ଟିରେ ରସ ଓ ରୂପ ଲୀଳା ବ୍ୟାଖ୍ୟାନରେ ମୁଖ୍ୟ ବୋଲି ମନେ ହେଉଥିଲେ ହେଁ, ସାଧାରଣ ପାଠକର ଆଖିରେ ଦୈବୀଗୁଣ ସବୁ ଚରିତ୍ରଗୁଡ଼ିକ ଅଲୌକିକ ମହିମାରେ ତାହା ଉପସ୍ଥାପିତ କରିଥାଏ । ଏଣୁ ଯେଉଁମାନେ 'ତୁଳସୀ ପତ୍ରିଆ' କବି କହି ଶ୍ରୀ ଜୟଦେବ ସମେତ ଅନ୍ୟାନ୍ୟ ବୈଷ୍ଣବ ଧର୍ମ ବା ରାଧାକୃଷ୍ଣ ପ୍ରେମ ବିଷୟକ କାବ୍ୟ ରଚୟିତାମାନଙ୍କୁ ସମାଲୋଚନା କରିଥାନ୍ତି ତାହା ହୁଏତ ଗବେଷଣାର ଦୃଷ୍ଟିକୋଣରୁ ସତ୍ୟ, ମାତ୍ର ସାଧାରଣ ଅନୁରାଗୀ ପାଠକ ବା ଦର୍ଶକ ପାଇଁ ତାହା ହିଁ ଚିରକାଳରେ ଆକର୍ଷଣର କାରଣ । ଭାରତୀୟ ଶିଳ୍ପ ଓ ସାହିତ୍ୟ ଉଭୟ କ୍ଷେତ୍ରରେ ଏହା ହିଁ ସତ୍ୟ ।

ଗ) ସୌନ୍ଦର୍ଯ୍ୟ ତତ୍ତ୍ୱ

ଅପେକ୍ଷାକୃତ କ୍ଷୁଦ୍ର ରଚନା ଶ୍ରୀଗୀତଗୋବିନ୍ଦର ଶିଳ୍ପ ସୌନ୍ଦର୍ଯ୍ୟ ବାସ୍ତବରେ ଚମତ୍କାର । କାହାଣୀ ବା ଲୀଳା ଦୃଷ୍ଟିରୁ ପୁଣି କାବ୍ୟ ରଚନା ଦୃଷ୍ଟିରୁ ଏହାର ପରିପାଟୀ ଚମତ୍କାର । ମହାକାବ୍ୟର ଲକ୍ଷଣ ବହନ କରୁଥିବା ଏହି ଗ୍ରନ୍ଥଟି ଶିଳ୍ପ ସୌନ୍ଦର୍ଯ୍ୟର ସମସ୍ତ କାରୁକାର୍ଯ୍ୟ ସହିତ ଆମ ଆଗରେ ଉଭା ହୋଇଛି । ସତେ ଯେମିତି ଅତୁଟ କୋଣାର୍କ ସୂର୍ଯ୍ୟ ମନ୍ଦିରଟି ଥିଲେ ହୋଇଥା'ନ୍ତା ।

ବିଷୟବସ୍ତୁଠାରୁ କାବ୍ୟଶୈଳୀ - ଭାବର ସମ୍ମୋହନ ଶକ୍ତିଠାରୁ କାବ୍ୟର ଗଠନ ରୀତି ଏହି ଦ୍ୱାଦଶ ସର୍ଗ ବିଶିଷ୍ଟ କ୍ଷୁଦ୍ରାବୟବ କାବ୍ୟରେ ମନେହୁଏ ଅତ୍ୟନ୍ତ ପ୍ରଭାବଶାଳୀ । ଆମୂଳଚୂଳ ସୌନ୍ଦର୍ଯ୍ୟ ଓ ସାଂଗତିକ ଚାତୁରୀରେ ଭରା ଏକ ସାରସ୍ୱତ ଶିଳ୍ପ । ଭଗବାନଙ୍କ ମର୍ତ୍ତ୍ୟ ଲୀଳା ମାନବିକ ଦୈହିକ

ଲୀଳାରେ ପରିବର୍ତ୍ତିତ ହୋଇଛି - ସେଥିରେ ପୁଣି ମିଶିଛି ସାହିତ୍ୟିକ ବାକ୍‌ଚାତୁରୀ, ତାହା ପୁଣି ସଂଗୀତମୟ ସ୍ୱରରେ ଲିଖିତ ।

ଆଳଙ୍କାରିକ ଚାତୁର୍ଯ୍ୟପୂର୍ଣ୍ଣ ଶୈଳୀରେ ବାରମ୍ବାର କଥିତ, ଚର୍ଚ୍ଚିତ, ଗୀତ ରାଧାକୃଷ୍ଣ ପ୍ରେମଲୀଳା ସତରେ ଶ୍ରୀ ଜୟଦେବଙ୍କ ଲେଖନୀ ମୁନରେ ଅପୂର୍ବ ଭାବରେ ପ୍ରକାଶିତ ହୋଇରହିଛି । ଶ୍ରୀଗୀତଗୋବିନ୍ଦ, ପୁନଶ୍ଚ ଏକ ବ୍ୟକ୍ତିକୈନ୍ଦ୍ରିକ ଶିଳ୍ପ କଳା - ଜଣେ ପ୍ରତ୍ୟକ୍ଷ ଭାବରେ ଅନ୍ୟ କେତେକଙ୍କର ଆନନ୍ଦବର୍ଦ୍ଧନ ଉଦ୍ଦେଶ୍ୟରେ ଅପୂର୍ବ ଭାକ୍ତିକ ତନ୍ମୟତାର ସହ ଏହି ପ୍ରେମଭକ୍ତି ଲୀଳାକୁ ବ୍ୟାଖ୍ୟାନ କରିଛି । ଯେଉଁମାନେ ଶ୍ରୀଗୀତଗୋବିନ୍ଦକୁ ଆମୂଳଚୂଳ ପାଠ କରିବେ, ସେମାନେ ଅନୁଭବ କରିବେ ଏହା ଅନ୍ତରଙ୍ଗ ବାର୍ତ୍ତାଳାପର ଅପୂର୍ବ ଶକ୍ତି । ରାଧା କୃଷ୍ଣଙ୍କୁ, ଲଳିତା ରାଧାଙ୍କୁ ତ କହୁଛନ୍ତି - ପୁଣି ବିଶ୍ୱମଙ୍ଗଳ ଉଦ୍ଦେଶ୍ୟରେ କବି ସାଧାରଣ ଭକ୍ତମାନଙ୍କୁ କହୁଛନ୍ତି ମାତ୍ର, ଏହାରି ଭିତରେ ସର୍ବତ୍ର ଉଦ୍‌ଘୋଷିତ ରହିଛି ନିଜର ପ୍ରିୟ ପଦଜନଙ୍କ ନାମ - ସେ 'ପଦ୍ମାବତୀ ଚରଣ ଚାରଣ ଚକ୍ରବର୍ତ୍ତୀ' ପତ୍ନୀଙ୍କ ଉଦ୍ଦେଶ୍ୟରେ ଅର୍ପିତ ବା କଥିତ ଅନେକ ପଦ, ଅନେକ ଶ୍ଳୋକ । ସେହିପରି ଅନ୍ୟତ୍ର ତାହା 'ପରଖରାଦି ବନ୍ଧୁ ବର୍ଗ'ଙ୍କ କଣ୍ଠରେ ଏହା ଗାୟନ ହେବାର ଅନୁଭୂତିରେ ସ୍ନିଗ୍ଧ କୋମଳ ଭାବରେ ପରିକଳ୍ପିତ । ଏହି ଅନ୍ତରଙ୍ଗତା ଶ୍ରୀଗୀତଗୋବିନ୍ଦକୁ ଏକ ମର୍ମସ୍ପର୍ଶୀ ଆବେଦନାତ୍ମକ ଶିଳ୍ପ ସୌନ୍ଦର୍ଯ୍ୟ ପ୍ରଦାନ କରିଛି ।

ଘ) **ନାଟକୀୟତା :** ସମୟସନ୍ଧ୍ୟା, ଆକାଶରେ ମେଘ, ପଥରେ କୁଞ୍ଜଳ, ପାତ୍ର ଓ ପାତ୍ରୀ ଏକାଠି । ସିଧାସଳଖ ସେମାନଙ୍କର ମିଳନ ଆଉ ପରିବେଶର ଚମତ୍କାର ଉପସ୍ଥାପନାରୁ ଆରମ୍ଭ ହୋଇଛି ଶ୍ରୀଗୀତଗୋବିନ୍ଦ । ପୂର୍ବରାଗରେ ଅନେକ କିଛି ଘଟିଥିବ । ମାତ୍ର ଗୌରଚନ୍ଦ୍ରିକାରେ ସମୟ ନଷ୍ଟ କରିନାହାନ୍ତି କବିରାଜ ଜୟଦେବ, ଏକ ଅଦ୍‌ଭୁତ ନାଟକ ରୂପେ ସେ ଗୀତଗୋବିନ୍ଦର ୧୨ଟିଯାକ ସର୍ଗକୁ ରଚନା କରିଛନ୍ତି । ସାଧାରଣତଃ, ପୂର୍ବରାଗ, ମିଳନ, ବିରହ ଓ ମିଳନ ଏହି କ୍ରମରେ ଶ୍ରୀରାଧାକୃଷ୍ଣଙ୍କ ପ୍ରେମଲୀଳା ବର୍ଣ୍ଣିତ ହୋଇଥାଏ । ମାତ୍ର ଏଠାରେ ଏହା ଆହୁରି ସଂକ୍ଷିପ୍ତୀକୃତ । ସଂକ୍ଷିପ୍ତ ହେବା ସତ୍ତ୍ୱେ ଅଷ୍ଟନାୟିକା ଲକ୍ଷଣର ସମସ୍ତ ବର୍ଣ୍ଣନା ଏଥିରେ ସୁନ୍ଦର ଭାବେ ବର୍ଣ୍ଣିତ - ପୂର୍ବରାଗ ନଥିଲେ ହେଁ ଦୁର୍ଜୟମାନ ଓ ଅପୂର୍ବ ଅଭିମାନ ଭଙ୍ଗୀରେ ରାଧାଙ୍କର ବିପ୍ରଲବ୍ଧା ଓ କଳହାନ୍ତରିତ ରୂପାୟନ ଯୁଗେ ଯୁଗେ ଅନ୍ୟ ସାରସ୍ୱତ ସାଧକମାନଙ୍କୁ ପ୍ରେରଣା ଦେଇଆସିଛି ।

ଚରିତ୍ର ସଂଖ୍ୟା ଶ୍ରୀଗୀତଗୋବିନ୍ଦରେ କମ୍ । ବୈଷ୍ଣବ ଶାସ୍ତ୍ର 'ଉଜ୍ଜ୍ୱଳ ନୀଳମଣି' ଅନୁଯାୟୀ 'ଲଳିତା' ହେଉଛନ୍ତି ଶ୍ରୀରାଧାଙ୍କ ପ୍ରମୁଖା ସଖୀ । ଅଷ୍ଟସଖୀ ଯଥା- ଲଳିତା, ବିଶାଖା, ଚିତ୍ରା, ଚଂପକଲତା, ତୁଙ୍ଗବିଦ୍ୟା, ଇନ୍ଦୁରେଖା, ରଙ୍ଗଦେବୀ ଓ ସୁଦେବୀଙ୍କ ମଧ୍ୟରୁ ଲଳିତା ଓ ବିଶାଖାଙ୍କର ନାମ ପ୍ରାଚୀନ ଗ୍ରନ୍ଥରେ ମିଳିଥାଏ । ପ୍ରଥମ ପର୍ଯ୍ୟାୟରେ ଗୁରୁଜନ (ନନ୍ଦରାଜା) ଉପସ୍ଥିତ ଥାଇ କୃଷ୍ଣଙ୍କ ଆଦେଶ ଦେଇଥିଲେ ହେଁ ପରବର୍ତ୍ତୀ ସର୍ଗରେ ସେ ଅନୁପସ୍ଥିତ । ସ୍ୱୟଂ ନାୟକ ଏଠାରେ ସର୍ବଶକ୍ତିମାନ । ସ୍ଥାନ, କାଳ, ପାତ୍ର ସବୁଦୃଷ୍ଟିରୁ ଏହାର ନାଟକୀୟତା ପ୍ରଶଂସାର୍ହ, ପୁଣି ରହିଛି ବିଳମ୍ବନ । ଏଣୁ ଏକ କାବ୍ୟ ନାଟିକା ଭାବରେ ଗୀତଗୋବିନ୍ଦର ଗୁରୁତ୍ୱ ସର୍ବସ୍ୱୀକାର୍ଯ୍ୟ ।

ନୃତ୍ୟ ନାଟିକା ଭାବରେ ଏହାର ସଫଳତା - ସଂଗୀତ ଦୃଷ୍ଟିରୁ ଏହାର ଅସାଧାରଣତା ଓଡ଼ିଶୀ ନୃତ୍ୟରେ ଏହାକୁ ବିଶେଷ ଗୁରୁତ୍ୱ ପ୍ରଦାନ କରିଛି । ଶ୍ରୀଜଗନ୍ନାଥ ମନ୍ଦିରଠାରୁ ଆରମ୍ଭ କରି ସର୍ବତ୍ର ଓଡ଼ିଶୀ ନୃତ୍ୟର ଅଭିନୟର ଅଂଶରେ ଏହି ଗୀତଗୋବିନ୍ଦର ପ୍ରତିପାଦନ ଓ ଲୋକପ୍ରିୟତା ଏହି ମତକୁ ସମର୍ଥନ ଦିଏ । ଓଡ଼ିଶୀ ନୃତ୍ୟରେ 'ବସନ୍ତ ରାସ' ରୂପରେ ଏହା ଅଭିନୀତ । ମଙ୍ଗଳାଚରଣ ତଥା ଦଶାବତାରରେ ଓଡ଼ିଶୀ ନୃତ୍ୟ ସହିତ ଏହାମଧ୍ୟ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ନୃତ୍ୟର ପରିପୂରକ ଭାବରେ ଗୀତଗୋବିନ୍ଦର ବ୍ୟବହାର ଆମ ସମାଜରେ ଅବିସମ୍ବାଦିତ ଭାବେ ସ୍ୱୀକୃତ ।

ଙ) **ସାଂଗୀତିକତା :** ଗୀତଗୋବିନ୍ଦର ସାଙ୍ଗୀତିକତା ଭୁବନ ବିଦିତ । ଏହାର ନାମକରଣରୁ ହିଁ ସଂଗୀତର ସହଜ ସ୍ୱର ବାରି ହୋଇପଡ଼େ । ନୃତ୍ୟ ପରି ସଂଗୀତର ପରିପୂରକ ଗ୍ରନ୍ଥ ଭାବରେ ଆମେ ଗୀତଗୋବିନ୍ଦକୁ ନେଇପାରିବା - ଗୀତଗୋବିନ୍ଦର ଦ୍ୱାଦଶଟି ସର୍ଗ ସାଙ୍ଗୀତିକ ଉପଶୀର୍ଷକରେ ମଣ୍ଡିତ । ଏହି ନାମଗୁଡ଼ିକ ମୂଳ ନାମ ପରି ସଂଗୀତମୟ ସ୍ୱର ଝଙ୍କାର ତୋଳେ ।

ପ୍ରଥମ ସର୍ଗ : ସାମୋଦ ଦାମୋଦରଃ

ଦ୍ୱିତୀୟ ସର୍ଗ : ଅକ୍ଲେଶ କେଶବ

ତୃତୀୟ ସର୍ଗ : ମୁଗ୍ଧ ମଧୁସୂଦନ

ଚତୁର୍ଥ ସର୍ଗ : ସ୍ନିଗ୍ଧ ମାଧବ

ପଞ୍ଚମ ସର୍ଗ : ସାକାଙ୍‌କ୍ଷ ପୁଣ୍ଡରୀକାକ୍ଷ

ଷଷ୍ଠ ସର୍ଗ : ସୌତ୍‌କଣ୍ଠ ବୈକୁଣ୍ଠଃ

ସପ୍ତମ ସର୍ଗ : ନାଗର ନାରାୟଣଃ

ଅଷ୍ଟମ ସର୍ଗ : ବିଲକ୍ଷ ଲକ୍ଷ୍ମୀପତିଃ

ନବମ ସର୍ଗ : ମୁଗ୍ଧ ମୁକୁନ୍ଦ

ଦଶମ ସର୍ଗ : ଚତୁର ଚତୁର୍ଭୁଜ

ଏକାଦଶ ସର୍ଗ : ସାନନ୍ଦ ଦାମୋଦରଃ

ଦ୍ୱାଦଶ ସର୍ଗ : ସୁପ୍ରୀତ ପୀତାମ୍ବର

ଶବ୍ଦ ସଂଯୋଜନାର ସାଙ୍ଗୀତିକ ମାଧୁର୍ଯ୍ୟ ପୁନଶ୍ଚ ରାଗତାଳ ସ୍ୱର ସଂଯୋଜନାରେ ବହୁଗୁଣିତ ହୋଇଛି ଏଥିରେ । ପ୍ରତିଟି ସର୍ଗରେ ପୁଣି ନିର୍ଦ୍ଦିଷ୍ଟ ରହିଛି ରାଗ ।

ମୁଖ୍ୟତଃ ଗାନ ଉଦ୍ଦେଶ୍ୟରେ ରଚିତ ହୋଇଥିବାରୁ ଗୀତଗୋବିନ୍ଦ ସାହିତ୍ୟ ହିସାବରେ ଏତେ ସାର୍ଥକ । ସାଧାରଣତଃ, ଯେଉଁ କଥନ ପରମ୍ପରା ବା ଗାୟନ ପରମ୍ପରା (ମୌଖିକ- ଇଂରାଜୀରେ ଯାହାକୁ କୁହାଯାଏ- ORAL-AURAL TRADITION)ରେ କେବଳ ବ୍ୟବହୃତ ହେବାପାଇଁ ଲିଖିତ ହୋଇଥିଲା, ଓଡ଼ିଶାର ନିରକ୍ଷର ଜନତାଙ୍କ ମଧ୍ୟରେ ଏହାର ମଧ୍ୟ ଥିଲା ଅସଂପନ୍ନ ପ୍ରଭାବ । ଉତ୍କଳୀୟ ଚେତନା ଏହି ଗୀତଗୋବିନ୍ଦୀୟ ପ୍ରଭାବ ଉଭୟ ଧର୍ମ-ଆଧାତ୍ମ କ୍ଷେତ୍ର, ସୌନ୍ଦର୍ଯ୍ୟ କ୍ଷେତ୍ର ତଥା ସଂଗୀତ-ନୃତ୍ୟ କ୍ଷେତ୍ରରେ ଏ ପର୍ଯ୍ୟନ୍ତ ରହିଛି ଅନତିକ୍ରମଣୀୟ । ତାହା ଶ୍ରୀଚୈତନ୍ୟ ପୁରୀଧାମ ପର୍ଯ୍ୟଟନ ବ୍ୟତୀତ ମଧ୍ୟ ସର୍ବମାନ୍ୟ, ତାହା ଓଡ଼ିଶୀ ଚେତନାର ଏପରି ଅଂଶବିଶେଷ ଯେ ଶ୍ରୀଜଗନ୍ନାଥଙ୍କ କଳାହାଟ ଦ୍ୱାରଠାରୁ ଆରମ୍ଭ କରି ପୁରପଲ୍ଲୀର ବାଇଗଣବାଡ଼ି ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇଥିବାର କିମ୍ବଦନ୍ତୀ ଏଠି ପ୍ରଚଳିତ । ଏହା ବିଦଗ୍ଧ ସମାଜରେ ଯେତିକି ସମ୍ମାନିତ ସାଧାରଣ ଲୋକାଚାରରେ ମଧ୍ୟ ସେତିକି ସ୍ୱୀକୃତ ।

**ପାଦଟୀକା**

୧. ପଣ୍ଡା ଡଃ ଭଗବାନ, କବିରାଜ ଶ୍ରୀ ଜୟଦେବ ଚରିତ, ପୃ.୧୩/୧୪ ।

୨. ଦାସ ଡଃ ଦାଶରଥୀ, କବିସୂର୍ଯ୍ୟ କାବ୍ୟବିଭା, ପୃ. ୩୦୫ ।

୩. Macdonald A.A. - History of Sanskrit Literature, p.288.

୨୭୬, ଶହୀଦ ନଗର
ସହକାରୀ କେନ୍ଦ୍ର ନିର୍ଦ୍ଦେଶକ
ଆକାଶବାଣୀ, ଭୁବନେଶ୍ୱର



# ଗୀତଗୋବିନ୍ଦରେ ରାଧାକୃଷ୍ଣ ପ୍ରେମ ପ୍ରସଙ୍ଗ

ରଘୁନାଥ ପଣ୍ଡା

**ଗୀତଗୋବିନ୍ଦ କ'ଣ ?**

ଗୀତଗୋବିନ୍ଦ ଦ୍ୱାଦଶ ଶତାବ୍ଦୀରେ ଓଡ଼ିଶାରେ ଭକ୍ତକବି ଜୟଦେବଙ୍କ ରଚିତ ବାରସର୍ଗ ବିଶିଷ୍ଟ ଏକ ରାଗ ସଂଗୀତ ସମ୍ବଳିତ ଗୀତକାବ୍ୟ । ଏହାର ଭାଷା ସଂସ୍କୃତ ହେଲେ ମଧ ଶବ୍ଦ ସଂଯୋଜନା ଏପରି ମନୋମୁଗ୍ଧକର ଯେ ଓଡ଼ିଆ, ବଙ୍ଗଳା, ଆସମୀୟା ଓ ମୈଥିଳୀ ପ୍ରଭୃତି ଆଧୁନିକ ଭାରତୀୟ ଭାଷାଭାଷୀ ପାଠକ ଯଦି ଏହା ଶୁଣନ୍ତି ତେବେ ତାଙ୍କୁ ଏହା ନିଜ ନିଜ ପ୍ରାନ୍ତୀୟ ଭାଷାର ସାଧୁ ସଂସ୍କରଣ ପରି ମନେହୁଏ । ଯେପରିକି -

'ଧୀର ସମୀରେ ଯମୁନାତୀରେ ବସତି ବନେ ବନମାଳୀ ।'

ଅଥବା

'ମଧୁମୁରନରକ ବିନାଶନ, ଗରୁଡ଼ାସନ ସୁରକୁଳ କେଳି ନିଦାନ
ଜୟ ଜୟ ଦେବ ହରେ ।'

ଅଥବା

'ଲଳିତ ଲବଙ୍ଗଲତା ପରିଶୀଳନ' ଇତ୍ୟାଦି

**ବିଷୟବସ୍ତୁ-** 'ଗୀତଗୋବିନ୍ଦ'ର ବିଷୟବସ୍ତୁ ସଂପର୍କରେ ସୂଚନା ଦେବାକୁ ଯାଇ କବି ଜୟଦେବ ସ୍ୱୟଂ ଲେଖନ୍ତି -

ଯଦି ହରିସ୍ମରଣେ ସରସଂ ମନୋ
ଯଦି ବିଳାସକଳାସୁ କୁତୁହଳମ୍ ।
ମଧୁରକୋମଳକାନ୍ତ ପଦାବଳୀଂ
ଶୃଣୁତଦା ଜୟଦେବ-ସରସ୍ୱତୀମ୍ ।।

ଗୀତଗୋବିନ୍ଦ ଶ୍ରବଣ ଭକ୍ତିର ପ୍ରତୀକ ।

ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ
ସ୍ମରଣଂ ପାଦ ସେବନମ୍ ।
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ
ସଖ୍ୟମାତ୍ମନିବେଦନମ୍ ।।
(ନବଧାଭକ୍ତିଃ)

ଏହି ଶ୍ଲୋକରେ ଜୟଦେବ ଦୁଇଟି ବିଷୟ ସ୍ପଷ୍ଟ କରି ଦେଇଛନ୍ତି । ଯଥା- ପ୍ରଥମେ- ହରିସ୍ମରଣମ୍ ଅର୍ଥାତ୍ ଭଗବାନ୍ ଶ୍ରୀକୃଷ୍ଣଙ୍କ ଗୁଣ ଓ କାର୍ଯ୍ୟାବଳୀର ଅନୁସ୍ମରଣ ଏବଂ ତଦ୍‌ଜନିତ ଦିବ୍ୟ ଆଧାତ୍ମିକ ଆନନ୍ଦ ଲାଭ । ଦ୍ୱିତୀୟରେ- ବିଳାସ କଳାରେ କୌତୁହଳର ଉପଶମ ଅର୍ଥାତ୍ ଶୃଙ୍ଗାର ରସାନୁଭବ ଜନିତ ପାଠକୀୟ ତୃପ୍ତି । ଏଣୁ ଏକାଧାରରେ ଜୟଦେବ ଗୋଟିଏ କାବ୍ୟ ମାଧମରେ ଭକ୍ତି ଓ ଶୃଙ୍ଗାର ରସର ଦ୍ୱୈତ ଧାରା ପ୍ରବାହିତ କରିବାରେ ସମର୍ଥ ହୋଇଛନ୍ତି ।

ଆଧାତ୍ମିକ ଦୃଷ୍ଟିରୁ ଦେଖିଲେ, 'ଈଶ୍ୱର ହିଁ ସୃଷ୍ଟିର ଏକମାତ୍ର ପୁରୁଷ' ଯେପରିକି ବେଦ କହନ୍ତି -

'ସହସ୍ରଶୀର୍ଷାଃ ପୁରୁଷଃ ସହସ୍ରାକ୍ଷଃ ସହସ୍ରପାଦ୍ ।
ସ ଭୂମିଂ ବିଶ୍ୱତୋବୃତ୍ତ୍ୱା ତ୍ୟତିଷ୍ଠତ୍ ଦଶାଙ୍ଗୁଳମ୍ ।।'

ଏ ବିରାଟ ସୃଷ୍ଟିରେ ସେ ହିଁ ଏକମେବାଦ୍ୱିତୀୟମ୍ । ଏଣୁ ସେ ହିଁ ଏକମାତ୍ର ପୁରୁଷଃ । ଏକ ହିଁ ପରମାତ୍ମା । ଏକ ହିଁ ପ୍ରେମିକ, ଯାହାର ପ୍ରେମିକା ହେଲେ ପ୍ରତ୍ୟେକ ଜୀବାତ୍ମା । ଗୀତାରେ ଯେପରି ଶିଷ୍ୟ ରୂପରେ, ସଖା ରୂପରେ ଅର୍ଜୁନ ସକଳ ଜୀବଜଗତର ପ୍ରତିନିଧି, ଗୀତଗୋବିନ୍ଦରେ ସେହିପରି ରାଧା ଜୀବାତ୍ମାମାନଙ୍କର ପ୍ରତିନିଧି । ସକଳ ଗୋପ କାମିନୀମାନେ ଇନ୍ଦ୍ରିୟ ବିକାର ଗ୍ରସ୍ତ ଜୀବାତ୍ମା । କାମ ଭାବରେ ଦେଖୁଥିବା ପର୍ଯ୍ୟନ୍ତ ରାଧା କୃଷ୍ଣଙ୍କୁ ପାଇପାରୁନାହାନ୍ତି । ବିରହ ବିପ୍ରଲମ୍ଭର ଅନଳରେ ଦଗ୍ଧ ହୋଇ ଦେହାଭିମାନ ତ୍ୟାଗ କଲେ ହିଁ ରାଧାଙ୍କର ମିଳନ କୃଷ୍ଣଙ୍କ ସହିତ ସମ୍ଭବ ହୋଇପାରୁଛି । ପକ୍ଷାନ୍ତରେ ଆତ୍ମା ପରମାତ୍ମାଙ୍କ ନିକଟରେ ପହଞ୍ଚିବାକୁ ଯେତିକି ଲାଳାୟିତ ଯେତିକି ବ୍ୟାକୁଳ ପରମାତ୍ମା ମଧ ଆତ୍ମାର ସାନ୍ନିଧ ଓ ଉଦ୍ଧାର ପାଇଁ ସେତିକି ବ୍ୟାକୁଳ ଓ ଅନୁକୂଳ । ଭଗବାନ୍ ସତ୍ୟସାଇଙ୍କ ଭାଷାରେ ତୁମେ ମୋ ଆଡ଼କୁ ପାଦେ ଅଗ୍ରସର ହେଲେ, ମୁଁ ତୁମ ଆଡ଼କୁ ଦଶପାଦ ଆଗେଇ ଆସିବି । ଏହା ହିଁ ରାଧା ମାଧବୟୋର୍ଯମୁନା କୂଳ କୁଞ୍ଜରେ ପ୍ରସରି ଯାଉଥିବା

ରହଃ କେଳି ବା ଗୋପନ କେଳିର ରହସ୍ୟ । କବି ଅଭିମନ୍ୟୁ ମଧ ବିଦଗ୍ଧ ଚିନ୍ତାମଣିରେ 'ଅପ୍ରାକୃତ ପ୍ରେମ ମୂର୍ତ୍ତି ଜୟ ରାଧା ହରି ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତରି' ବୋଲି ସେହି ଭାବକୁ ସୂଚାଇଛନ୍ତି । ଏହି 'ରହଃ କେଳି' ବା ଗୋପନ କେଳି ସମାଜକୁ ଡରି ଲୁଚିଲୁଚି ପ୍ରେମ କରିବାକୁ ବୁଝାଏ ନାହିଁ । 'ରହଃ କେଳି' ଏଠାରେ ରହସ୍ୟମୟ ଅର୍ଥାତ୍, ଜ୍ଞାନୀ ଲୋକ ପକ୍ଷରେ ଏହି ଲୀଳା ତତ୍ତ୍ୱ ପ୍ରତିଭାତ ହେବା ସ୍ଥଳେ ସାଧାରଣ ଲୋକ ଏହି ଭେଦ ବୁଝିବାରେ ଅସମର୍ଥ ।

ପ୍ରେମୈବ ଗୋପରାମାଣାଂ କାମ ଇତ୍ୟଗମଦ୍ ପ୍ରଥାମ୍ ।
ଇତ୍ୟୁଦ୍ଧବାଦୟୋऽପ୍ୟେତେ ବାଞ୍ଛନ୍ତି ଭଗବଦ୍ ପ୍ରିୟାଃ ॥
(ଚୈତନ୍ୟ ଚରିତାମୃତମ୍)

ଏଣୁ କବି ଯଥାର୍ଥରେ ମୂଳରୁ ସୂଚାଇ ଦେଇ କହିଛନ୍ତି -

'ମେଘୈର୍ମେଦୁରଂମମ୍ବରଂ ବନଭୁବଃ ଶ୍ୟାମାସ୍ତମାଳଦ୍ରୁମୈ-
ର୍ନକ୍ତଂ ଭୀରୁରୟଂ ତ୍ୱମେବ ତଦିମଂ ରାଧେ ଗୃହଂ ପ୍ରାପୟ ।
ଇତ୍‌ଥଂ ନନ୍ଦନିଦେଶତଶ୍ଚଳିତୟୋଃ ପ୍ରତ୍ୟଧ୍ୱକୁଞ୍ଜଦ୍ରୁମଂ
ରାଧାମାଧବୟୋର୍ଜୟନ୍ତି ଯମୁନାକୂଳେ ରହଃ କେଳୟଃ ॥

**ଗୀତଗୋବିନ୍ଦର ବିଷୟସାର**

ପ୍ରଥମ ସର୍ଗରେ ଉପରଲିଖିତ ପ୍ରଥମ ଶ୍ଳୋକରେ ସଂକ୍ଷିପ୍ତ ବସ୍ତୁ ନିର୍ଦ୍ଦେଶାତ୍ମକ ପ୍ରସ୍ତାବନା ପରେ, ଦ୍ୱିତୀୟରେ କବି ନିଜର ସ୍ଥିତି ଓ ପରିଚୟ, ତୃତୀୟରେ ଆଲୋଚିତ ଦୁଇଟି ଲକ୍ଷ୍ୟ ଓ ଚତୁର୍ଥ ଶ୍ଳୋକରେ ନିଜର ସମସାମୟିକ ଚାରି ଜଣ ଅନ୍ୟ କବିଙ୍କ ପ୍ରେକ୍ଷାପଟରେ ସ୍ୱକୀୟ କାବ୍ୟଶୈଳୀର ମୂଲ୍ୟାଙ୍କନ କରିଛନ୍ତି ।

ପରେ ପରେ ଦୁଇଟି ଗୀତ, ଯଥା- ପ୍ରଳୟ ପୟୋଧି ଜଳେ .. (ମାଳବରାଗରେ ଗାନଯୋଗ୍ୟ) ଏବଂ ଦ୍ୱିତୀୟ ଗୀତ ଶ୍ରିତକମଳାକୁଚମଣ୍ଡଳ .. ଇତ୍ୟାଦି ଦ୍ୱାରା ଭଗବାନ୍ ଜଗନ୍ନାଥ ବା ବିଷ୍ଣୁଙ୍କର ଯଥାକ୍ରମେ ଦଶାବତାର ଓ ଲୀଳାରାଜିର ବର୍ଣ୍ଣନା କରିଛନ୍ତି । ଗୀତଗୋବିନ୍ଦରେ ପୂର୍ବାନୁରାଗ ବର୍ଣ୍ଣନା ନାହିଁ । ପରେ ପରେ ଆରମ୍ଭ ହୋଇଛି ବସନ୍ତ ବର୍ଣ୍ଣନା । ରାଧା ବାସନ୍ତୀ କୁସୁମରେ ତନୁ ଲତିକାକୁ ସଜ୍ଜିତ କରି କୃଷ୍ଣଙ୍କୁ ବନକାନ୍ତାରରେ ଖୋଜି ଖୋଜି ନ ପାଇ ମନ ମାରି ବସିଥିବା ବେଳେ ସଖୀ ଗାଇ ଉଠିଛି - ବସନ୍ତ ରାଗରେ -

ଲଳିତ ଲବଙ୍ଗ ଲତା ପରିଶୀଳନ କୋମଳ ମଳୟସମୀରେ
ମଧୁକର ନିକରକରମ୍ବିତ କୋକିଳ-କୂଜିତ କୁଞ୍ଜକୁଟୀରେ ।
ବିହରତି ହରିରିହ ସରସ ବସନ୍ତେ,
ନୃତ୍ୟନ୍ତ ଯୁବତି ଜନେନ ସମଂ ସଖୀ ବିରହିଜନସ୍ୟ ଦୁରନ୍ତେ ।

(ଏଠାରେ ସଂପୂର୍ଣ୍ଣ ଗୀତରେ ସପ୍ତମୀ ଏକବଚନରେ କ୍ଳୀବଲିଙ୍ଗରେ ପ୍ରଯୁକ୍ତ ପ୍ରତ୍ୟେକ ପଦ ବସନ୍ତର ବିଶେଷ) ଏହି ସମୟରେ ଅନେକ ନାରୀ ଗହଣରେ କ୍ରୀଡ଼ା ମଗ୍ନଥିବା ମୁରାରି ଅର୍ଥାତ୍ କୃଷ୍ଣଙ୍କୁ ରାଧାଙ୍କୁ ଦେଖାଇ ଦେଇ ସଖୀ କହୁଛି - (ଚତୁର୍ଥ-ଗୀତ-ରାମକିରୀ ରାଗ ମାଧ୍ୟମରେ) -

ଚନ୍ଦନଚର୍ଚ୍ଚିତ ନୀଳକଳେବର ପୀତବସନ ବନମାଳୀ
କେଳିଚଳନ୍ମଣିକୁଣ୍ଡଳମଣ୍ଡିତ ଗଣ୍ଡଯୁଗସ୍ମିତଶାଳୀ
ହରିରିହ ମୁଗ୍ଧବଧୂନିକରେ,
ବିଳାସିନି ବିଳସତି କେଳିପରେ ।

ଏଠାରେ ସଖୀର ଭୂମିକା ଆଧ୍ୟାତ୍ମିକ ଦୃଷ୍ଟିରେ ଦେଖିଲେ ଗୁରୁତୁଲ୍ୟ । ଜୀବାତ୍ମା ପରମାତ୍ମାଙ୍କ ସହ ମିଳିତ ହେବାକୁ ଇଚ୍ଛା କରୁଛି କିନ୍ତୁ କାହାନ୍ତି ହରି ? ଗୁରୁ ଅନୁକମ୍ପା କରି ଭକ୍ତ ବା ଜୀବାତ୍ମାକୁ ତା'ର ବ୍ୟାକୁଳତା ଲକ୍ଷ୍ୟ କରି ଉପଯୁକ୍ତ ମାର୍ଗ ଦେଖାଉଛି ।

ସଂପୃକ୍ତ ଗୀତାବସାନ ଲଗ୍ନ ବିଶ୍ୱେଷାମନୁରଞ୍ଜନ' ଇତ୍ୟାଦି ଶ୍ଳୋକରେ ଶ୍ରୀକୃଷ୍ଣଙ୍କର ଅତି ମନୋମୁଗ୍ଧକର ରୂପରେ ବର୍ଣ୍ଣନା ସହିତ ପରଶ୍ଳୋକରେ ବସନ୍ତଋତୁର ମାଦକତା ଉପସ୍ଥାପିତ । ଏଥିସହିତ 'ସାମୋଦଦାମୋଦରଃ' ନାମକ ପ୍ରଥମ ସର୍ଗ ଶେଷ ହୁଏ ।

ଦ୍ୱିତୀୟ ସର୍ଗରେ ରାଧାଙ୍କର ଏକପ୍ରକାର ଭ୍ରମ ଯେ, ସେ କୃଷ୍ଣଙ୍କର ପ୍ରିୟତମା, ଏହି ଭାବନାକୁ ଆଘାତ ଲାଗିଛି । ଅନ୍ୟ ନାୟିକାମାନଙ୍କ ପ୍ରତି ସମାନ ଭାବରେ ଆଗ୍ରହୀ କୃଷ୍ଣଙ୍କ ପ୍ରତି ଅଭିମାନ କରି ରାଧା ଚାଲିଗଲେ କୌଣସି ଲତା ମଣ୍ଡପକୁ । ସେଠି ମଧ ରକ୍ଷା ନାହିଁ । ଭ୍ରମର ମୁଖରତାରେ ଉଦ୍ଦୀପିତ କନ୍ଦର୍ପଭାବା, ଅତି ଦୟନୀୟ ଅବସ୍ଥାରେ ପଡ଼ି ରହି ସଖୀଙ୍କୁ କହନ୍ତି - (ଗୁର୍ଜରୀ ରାଗରେ ପଞ୍ଚମ ଗୀତ ମାଧ୍ୟମରେ)

'ସଞ୍ଚର ଦଧର ସୁଧାମଧୁର ଧ୍ୱନି ମୁଖରିତ ମୋହନ ବଂଶମ୍ ।
ଚଳିତଦୃଗଞ୍ଚଳ ଚଞ୍ଚଳ ମୌଳିକପୋଳବିଲୋଳବତଂସମ୍ ॥
ରାସେ, ହରିମିହ ବିହିତ ବିଳାସମ୍ ।
ସ୍ମରତି ମନୋ ମମକୃତପରିହାସମ୍ ॥
(ଦ୍ୱିତୀୟ ସର୍ଗ ପଞ୍ଚମ ପ୍ରବନ୍ଧ)

ସମଗ୍ର ଗୀତରେ କିପରି ତାଙ୍କର ନିଜ ମନ ରାଧାଙ୍କୁ ପରିହାସ କରି ନାନାବିଧ ଅବସ୍ଥାରେ କୃଷ୍ଣଙ୍କୁ ସ୍ମରଣ କରୁଛି ତା'ର

ବର୍ଣ୍ଣନା ରହିଛି । ଭଗବାନଙ୍କୁ ଅଭିମାନ କରି ତାଙ୍କୁ ସ୍ମରଣ ନକରିବା - ଚୋରକୁ ମାନ କରି ଖପରାରେ ଖାଇବା ସଙ୍ଗେ ସମାନ । ତେଣୁ ପରମ ଭକ୍ତ ଶିରୋମଣି ଆରାଧିକା ରାଧିକା କ'ଣ ପ୍ରକୃତରେ ଭୁଲି ରହିପାରନ୍ତେ ? ଜୟଦେବଙ୍କ ଭାଷାରେ ପୁଣ୍ୟବାନ୍ ବ୍ୟକ୍ତି ହିଁ ବର୍ଣ୍ଣିତ ପ୍ରକାରେ ସ୍ମରଣ କରିପାରନ୍ତି, ଯଥା-

ଶ୍ରୀ ଜୟଦେବ ଭଣିତମତି ସୁନ୍ଦର-ମୋହନ-ମଧୁରିପୁରୂପମ୍ ।
ହରିଚରଣ ସ୍ମରଣଂ ପ୍ରତି ସଂପ୍ରତି ପୁଣ୍ୟବତାମନୁରୂପମ୍ ॥

ନିଜ ମନକୁ ଉଲୁଗୁଣା ଦେଇରାଧା କହୁଛନ୍ତି ସଖୀ ଆଗରେ ଯେ -

ଗଣୟତି ଗୁଣଗ୍ରାମଂ ଭ୍ରାମଂ ଭ୍ରମାଦପି ନେହତେ
ବହତି ଚ ପରିତୋଷଂ ଦୋଷଂ ବିମୁଞ୍ଚତ ଦୂରତଃ ।
ଯୁବତିଷୁ ବଳତ୍ତୃଷ୍ଣେ କୃଷ୍ଣେ ବିହାରିଣିଂ ମାଂ ବିନା
ପୁନରପି ମନୋ ବାମଂ କାମଂ କରୋତି କରୋମି କିମ୍ ?

ସବୁକିଛି ବାଧାବନ୍ଧନ ନମାନି ଜୀବାତ୍ମା ଯଦି ପରମାତ୍ମାଙ୍କ ଲାଗି ପାଗଳ ନହୁଏ ଈଶ୍ୱର କ'ଣ ମିଳିବେ ?

ପରବର୍ତ୍ତୀ ଷଷ୍ଠଗୀତରେ (ଗୁଣ୍ଡ କିରୀ ରାଗମାଧ୍ୟମରେ) ଉଦାର କେଶି ମଥନଙ୍କ ସହ ମିଳିତ ହେବାକୁ ସଖୀର ସାହାଯ୍ୟ ପ୍ରାର୍ଥନା କରି ଅଳି କରୁଛନ୍ତି ରାଧିକା -

ନିଭୃତନିକୁଞ୍ଜଗୃହଂ ଗତୟା ନିଶି ରହସି ନିଳିୟ ବସନ୍ତମ୍ ।
ଚକିତ ବିଲୋକିତ - ସକଳ ଦିଶାରତିରଭସରଶେନ ହସନ୍ତମ୍ ।
ସଖି ହେ, କେଶିମଥନ ମୁଦାରମ୍
ରମୟ ମୟା ସହ ମଦନମନୋରଥ ଭାବିତୟା ସବିକାରମ୍ ।

ବର୍ତ୍ତମାନ ରାଧା ଇତର ଜନୋଚିତ ଈର୍ଷା, ଘୃଣା, ଅଭିମାନ ଭୁଲି ଅନ୍ୟ ଗୋପାଙ୍ଗନାମାନଙ୍କ ପ୍ରତି ଆସକ୍ତ ପରମାତ୍ମାରୂପୀ ପରମାରାଧ୍ୟ କୃଷ୍ଣଙ୍କୁ ଦେଖି ମୁହୁର୍ମୁହୁ ପୁଲକିତ ହେଉଛନ୍ତି । କବିଙ୍କ ଭାଷାରେ -

ହସ୍ତସ୍ରସ୍ତ ବିଳାସ ବଂଶ ମନୃଜୁ ଭ୍ରୁବଲ୍ଲିମଦ୍ବଲ୍ଲବୀ -
ବୃନ୍ଦୋତ୍ସାହଦୃଗନ୍ତବୀକ୍ଷିତମତିସ୍ୱେଦାର୍ଦ୍ର-ଗଣ୍ଡସ୍ଥଳମ୍ ।
ମାମୁଦ୍‌ବୀକ୍ଷ୍ୟ ବିଲକ୍ଷିତଂ ସ୍ମିତସୁଧା-ମୁଗ୍ଧାନନଂ କାନନେ
ଗୋବିନ୍ଦଂ ବ୍ରଜସୁନ୍ଦରୀଗଣବୃତଂ ପଶ୍ୟମି ହୃଷ୍ୟାମି ଚ ।

ଅଧିକନ୍ତୁ - 'ଦୂରାଲୋକସ୍ତୋକସ୍ତବକ' ଇତ୍ୟାଦି ଶ୍ଳୋକରେ ରାଧା ପରିବର୍ତ୍ତିତ ହୋଇଛନ୍ତି କୃଷ୍ଣାନୁରାଗିଣୀ ରାଧା ଭାବରେ । ଜଗତରେ ପ୍ରତ୍ୟେକ ବସ୍ତୁ, ପ୍ରତ୍ୟେକ ଦୃଶ୍ୟ ଫୁଲଫଳ, ପବନ, ଉପବନ, ଜଳାଶୟ ସବୁ ଯେପରି ହୋଇଉଠିଛି କୃଷ୍ଣପ୍ରେମ ମନ୍ଦାକିନୀର ଛଳଛଳ ଧାରାରେ ରଙ୍ଗୀନ । ଏହିଠାରେ ଶେଷ ହୁଏ ଅକ୍ଲେଶ କେଶବ ନାମକ ଦ୍ୱିତୀୟ ସର୍ଗଃ ।

ତୃତୀୟ ସର୍ଗରେ କୃଷ୍ଣ ଯେତେବେଳେ ବୁଝିଲେ ଅନୁରାଗିଣୀ ରାଧା ଅଭିମାନ କରି ରାସ ପରିସର ଛାଡ଼ି ଚାଲି ଯାଇଛନ୍ତି, ଦୟାର୍ଦ୍ର ହୃଦୟରେ ସେ ଭକ୍ତିପ୍ରବୀଣା ପ୍ରେୟସୀଙ୍କୁ ଅବହେଳା କରନ୍ତେ କିପରି ? ସେ ତାଙ୍କୁ ଇତସ୍ତତଃ ଖୋଜି ଯମୁନା ତଟାନ୍ତ କୌଣସି କୁଞ୍ଜରେ ଅନୁତାପ ଦଗ୍ଧ ହୃଦୟରେ ବିଷର୍ଣ୍ଣ ହୋଇ ବସି ପଡ଼ିଲେ । ଶ୍ରୀକୃଷ୍ଣଙ୍କର ମନୋଦଶା ସପ୍ତମ ଗୀତରେ ଗୁର୍ଜରୀ ରାଗ ମାଧ୍ୟମରେ ପ୍ରକାଶ କରି କବି ଜୟଦେବ ଲେଖନ୍ତି -

ମାମିୟଂ ଚଳିତା ବିଲୋକ୍ୟ ବଧୂନିଚୟେନ ।
ସାପରାଧତୟା ମୟାପି ନ ବାରିତାତିଭୟେନ ।
(ହରି) ହରି ହତାଦରତୟା ଗତା ସା କୁପିତେବ ।
କିଂ କରିଷ୍ୟତି କିଂ ବଦିଷ୍ୟତି ସା ଚିରଂ ବିରହେଣ ।
କିଂ ଧନେନ ଜନେନ କିଂ ମମ ଜୀବିତେନ ଗୃହେଣ ।
(୩/୪)

ଏହି ସମୟରେ ଶ୍ରୀରାଧାଙ୍କ ବିରହରେ ମର୍ତ୍ତ୍ୟର ମାନବ ପରି ଅବସ୍ଥାନୁକରଣ କରୁଥିବା କୃଷ୍ଣଙ୍କର ବିରହଦଶା ଅଥବା ଜୀବାତ୍ମା ପ୍ରତି ମଧ ପରମାତ୍ମାଙ୍କର ଅନୁରାଗର ଝଲକ ଦେଖିବାକୁ ମିଳେ । ଆଲୋଚ୍ୟ ଗୀତ ଛଡ଼ା ପରବର୍ତ୍ତୀ ଶ୍ଳୋକରେ ଭ୍ରାନ୍ତିମାନ ଅଳଙ୍କାର ପ୍ରୟୋଗ ମାଧ୍ୟମରେ କବି ଲେଖିଛନ୍ତି -

'ହୃଦି ବିସଲତାହାରୋ ନାୟଂ ଭୁଜଙ୍ଗମ ନାୟକଃ
କୁବଳୟ ଦଳ ଶ୍ରେଣୀ କଣ୍ଠେ ନ ସା ଗରଳଦ୍ୟୁତିଃ ।
ମଳୟଜ-ରଜୋ ନେଦଂ ଭସ୍ମପ୍ରିୟା ରହିତେ ମୟି
ପ୍ରହର ନ ହରଭ୍ରାନ୍ତ୍ୟାନଙ୍ଗ କ୍ରୁଧା କିମୁ ଧାବସି ।' (୩)

ଅର୍ଥାତ୍ 'ହେ ଅନଙ୍ଗ (କାମଦେବ) ମୋତେ ହର (ଶିବ) ବୋଲି ଭାବି ଭ୍ରମରେ ଶର ପ୍ରହାର କରୁଛ କି । ନାହିଁ ନାହିଁ ମୋର ଛାତିରେ ତୁମେ ଦେଖୁଥିବା ଏ ହାରଟି ପଦ୍ମନାଡ଼ର ନାଗରାଜ ରୂପକମାଳା ନୁହେଁ । ଗଳାରେ ନୀଳକଇଁର ପାଖୁଡ଼ାକୁ ଶୀତଳତା ପାଇଁ ପିନ୍ଧିଛି, ଏହା ଗରଳର କାଳିମଛଟା ନୁହେଁ । ଦେହରେ ଧଳା ଧଳା ଏ ଯେଉଁ ଧୂଳି ଦେଖୁଛ ତାହା ଭସ୍ମ ବିଲେପନ ନୁହେଁ ବିରହର ଉପଚାର ପାଇଁ ଲେପିତ ଚନ୍ଦନ ରଜ । ମିଛଟାରେ ମୋତେ ତୁମ୍ଭର ଚିରାଚରିତ ଶତ୍ରୁ ହର ବୋଲି ଭାବି କାହିଁକି ପୀଡ଼ା ଦେଉଛ ?'

ଆହୁରି ମଧ୍ୟ 'ପ୍ରାଣେ ମା କୁରୁ ଚୂତଶାୟକମମୁଂ' ଶ୍ଳୋକରେ ମୂଳରୁ ସେହି ମୃଗୁଣୀନେତ୍ରା ରାଧାର କଟାକ୍ଷ ବାଣରେ ପରାଜିତ, ମୂର୍ଚ୍ଛିତ ଲୋକଠାରେ ଶର ପ୍ରହାର କରି କ'ଣ ପୌରୁଷ ପାଇବ ?

ପୁଣି ରାଧାଙ୍କୁ ସମ୍ବୋଧିତ କରି 'ଭ୍ରୂଚାପେ ନିହିତ କଟାକ୍ଷ ବିଶିକ୍ଷୋ' ଶ୍ଳୋକରେ ହେ ରାଧେ 'ସଦ୍‌ବୃତ୍ତଃ ସ୍ତନ ମଣ୍ଡଳସ୍ତବ କଥଂ ପ୍ରାଣୈର୍ମମକ୍ରୀଡ଼ତି ?' ଇତ୍ୟାଦି ଦ୍ୱାରା ଉତ୍ତମ ଶୃଙ୍ଗାରିକ ବର୍ଣ୍ଣନାର ଅଭିରୁଚି ଶ୍ଳେଷ ମାଧ୍ୟମରେ ଉପସ୍ଥାପିତ କରିଛନ୍ତି । ପରବର୍ତ୍ତୀ ଶ୍ଳୋକରେ ବିରୋଧାଭାସ ସଂପୂର୍ଣ୍ଣ ପ୍ରଭାବ ବିସ୍ତାର କରିଛି । ଯେଉଁ ଯେଉଁ କାର୍ଯ୍ୟ କଲେ ଯଥା- ତରଳ ଔଷଧପାନ, ଚିକ୍କଣ ତୈଳ ମର୍ଦ୍ଦନ, ସୁଗନ୍ଧିତ ଔଷଧର ଉପଚାର, ଅମୃତ ଭଳି ଔଷଧ, ମନ୍ତ୍ର ବା ଝଡ଼ା ଫୁଙ୍କା ଭଳି ବଙ୍କାବଙ୍କା କଥା, ମଧୁର ମଧୁର ରସାୟନ, ବିଷୟା ସଙ୍ଗ ରୂପକ ମନ୍ତ୍ରଜପ, (ତାଙ୍କ ଚିନ୍ତାରେ) ଲଗ୍ନ ସମାଧି, ଏମାନଙ୍କ ମଧ୍ୟରୁ ଗୋଟିଏ ଗୋଟିଏ ଉପଚାର ଦ୍ୱାରା ମଧ୍ୟ ବ୍ୟାଧିମାନେ ପ୍ରଶମିତ ହୋଇଥାଆନ୍ତି । ତେଣୁ ଏକି ବିଷମ କଥା ହେଲା, ଏତେ ଉପଚାରରେ ମଧ୍ୟ ମୋର ବିରହବ୍ୟାଧି କିମିତି ଅଛି ? ଏତେ ଔଷଧ, ବ୍ୟାୟାମ, ଜପ ଉପଚାର କ'ଣ ବ୍ୟର୍ଥ ? କବି ଲେଖନୀରେ ଏହି କୌତୁହଳପ୍ରଦ ପଂକ୍ତିଗୁଡ଼ିକ ହେଲେ -

'ତାନି ସ୍ପର୍ଶସୁଖାନି ତେ ଚ ତରଳାଃ ସ୍ନିଗ୍ଧା ଦୃଶୋ ବିଭ୍ରମା -
ସ୍ତଦ୍‌ବକ୍ତ୍ରାମ୍ବୁଜସୌରଭଂ ସ ଚ ସୁଧାସ୍ୟନ୍ଦୀ ଗିରାଂ ବକ୍ରିମା ।
ସା ବିମ୍ବାଧର ମାଧୁରୀତି ବିଷୟାସଙ୍ଗେଽପି ଚେନ୍ମାନସଂ
ତସ୍ୟାଂ ଲଗ୍ନ ସମାଧିହନ୍ତ ବିରହବ୍ୟାଧି କଥଂ ବର୍ତ୍ତତେ ?'
(୩/୬)

ଏହି କାମ ଭାବନା ହେଉଛି ସଂସାରର ବନ୍ଧନ ଶୃଙ୍ଖଳା ବା ଜଞ୍ଜିର । ଏହି ଦେହଜ କାମର ଉପରକୁ ଉଠିଲେ ଅସଲ କାମ ଅର୍ଥାତ୍ ବିଭୁ ସାକ୍ଷାତ୍‌କାର ହିଁ ସମ୍ଭବ । ଜୟଦେବ ନିମ୍ବାର୍କପନ୍ଥୀ ଆଚାର୍ଯ୍ୟ ଥିଲେ । ତାଙ୍କ ଦୃଷ୍ଟି ସଂସାର ଜନିତ କାମନାରୁ ଦୂରେଇ ରହି ସେଥିରୁ ମୁକ୍ତ ହୋଇ ହୁଏନା । ତେଣୁ କାମ ମାଧ୍ୟମରେ କାମକୁ ଜୟ କର । ଯେପରିକି ପରବର୍ତ୍ତୀ ଶ୍ଳୋକରେ କବି ଶ୍ରୀକୃଷ୍ଣଙ୍କ ମୁଖରେ କୁହାଇଛନ୍ତି -

ଭ୍ରୂପଲ୍ଲବଂ ଧନୁରପାଙ୍ଗ ତରଙ୍ଗିତାନି,
ବାଣାଃ ଗୁଣଃ ଶ୍ରବଣପାଳିରିତିସ୍ମରେଣ ।
ତସ୍ୟାମନଙ୍ଗଜୟ ଜଙ୍ଗମଦେବତାୟାମସ୍ତ୍ରାଣି
ନିର୍ଜିତଜଗନ୍ତି କିମର୍ପିତାନି ॥

ଏହାର ଅନୁବାଦ ଧରଣୀ ଧର ମିଶ୍ର ଚୋଖିରାଗ ମାଧ୍ୟମରେ କରିଛନ୍ତି, ଯେପରିକି -

ଭ୍ରୂଲତା କାର୍ମୁକତାର ନୟନ ଅନଙ୍ଗଶର
ସଜନୀ ଶ୍ରବଣ ଯାଏ ଅନଙ୍ଗରେଖା ।
ଜଗତ ଜିଣି ମଦନ ବିବିଧ ଆୟୁଧମାନ
ରାଧିକାର ତହିଁ ଥାଇ କରିଛି ଶିକ୍ଷା
ଆଶ୍ରେ କରିଅଛି ତାହାକୁ,
ତ୍ରିଭୁବନସମ ଆଉ ନାହିଁ ଯାହାକୁ । ପଞ୍ଚମ ଛାନ୍ଦ

ଏଠାରେ ମୁଗ୍ଧମଧୁସୂଦନ ଶୀର୍ଷକ ତୃତୀୟ ସର୍ଗ ସମାପ୍ତ ହୁଏ ।

ଚତୁର୍ଥ ସର୍ଗର ନାମକରଣ ହେଲା - ସ୍ନିଗ୍ଧ ମଧୁସୂଦନ । ପଶ୍ଚାତ୍ତାପ ଓ ରାଧାଙ୍କର ଅନାଦର ଆଶଙ୍କା କରି ବ୍ୟାକୁଳଚିତ୍ତ ଶ୍ରୀକୃଷ୍ଣଙ୍କୁ ରାଧିକାଙ୍କର ପ୍ରିୟ ସଖୀ ଦେଖାକରି ରାଧାଙ୍କର ବିରହ ଦଶା ବର୍ଣ୍ଣନା କରିବା ଏହି ସର୍ଗର ବିଷୟବସ୍ତୁ । ବିରାଗ ତ ଦୂରର କଥା, କୃଷ୍ଣ ବିରହ ଅସହମାନା ଶ୍ରୀମତୀ ସୂର୍ଯ୍ୟତାପ ଦଗ୍ଧ ବୃନ୍ତ ଚ୍ୟୁତ କୁସୁମ କଳିକା ପରି ମ୍ରିୟମାଣ ହୋଇ ପଡ଼ିଲେଣି । ଏପରି ଉଦନ୍ତ ଶୁଣି ମଧୁସୂଦନ ସ୍ନେହଶୀଳ ଅଥବା ସ୍ନିଗ୍ଧ ହୋଇ ପଡ଼ିଛନ୍ତି ।

କର୍ଣ୍ଣାଟ ରାଗରେ ସଖୀ ଅଷ୍ଟମ ଗୀତରେ ରାଧିକା ଦଶାବର୍ଣ୍ଣନ କରି କହୁଛି -

ନିନ୍ଦତି ଚନ୍ଦନ ମିନ୍ଦୁକି ରଣ ମନୁବିନ୍ଦତି ଖେଦମଧୀରମ୍ ।
ବ୍ୟାଳନିଳୟ ମିଳନେନ ଗରଳମିବ କଳୟତି ମଳୟସମୀରମ୍ ।
ସା, ବିରହେ, ତବ ଦୀନା ।
ମାଧବ, ମନସିଜବିଶିଖଭୟାଦିବ ଭାବନୟା ତ୍ୱୟି ଲୀନା ।
(ଚତୁର୍ଥ ସର୍ଗଃ)

ଉକ୍ତ ଗୀତର ସମସ୍ତ ଭାବରାଜି ପରବର୍ତ୍ତୀ ଶ୍ଳୋକରେ ସଂକ୍ଷିପ୍ତ ଭାବରେ ସନ୍ନିବେସିତ ହୋଇଛି, ଯଥା-

'ଆବାସୋ ବିପିନାୟତେ ପ୍ରିୟ ସଖିମାଳାପି ଜାଳାୟତେ
ତାପୋଽପି ଶ୍ୱସିତେନ ଦାବଦହନଜ୍ୱାଳା କରାଳାୟତେ ।
ସାପି ତ୍ୱଦ୍‌ବିରହେଣ ହନ୍ତ ହରିଣୀ ରୂପାୟତେ ହା କଥଂ
କନ୍ଦର୍ପୋଽପି ଯମାୟତେ ବିରଚୟନ୍ ଶାର୍ଦ୍ଦୁଳବିକ୍ରୀଡ଼ିତମ୍ ।
(୪/୨)

ହେ କୃଷ୍ଣ ! ତୁମ ବିରହରେ ମୋର ସଖୀ ରାଧିକାକୁ ଆବାସ ବୋଇଲେ ବାସଗୃହ ବିପିନ ବା ଜଙ୍ଗଲ ପରି ଲାଗୁଛି ।

ଅତିପ୍ରିୟ ଯେଉଁ ସଖୀମାନେ ବେଢ଼ି ରହିଲେ ଜାଳପରି ଅଥବା ଜାଳ ପରି (ଅଗ୍ନିପରି) ଲାଗୁଛନ୍ତି । ନିଜ ନିଶ୍ୱାସ ପବନର ଉତ୍ତାପ ବଢ଼ି ଯାଇଥିବାରୁ (ମାନସିକ ଉତ୍କଣ୍ଠା ହେତୁ) ତାହା ବନାଗ୍ନିର ପ୍ରଖରତା ଭଳି ଭୟଙ୍କର ହୋଇଯାଉଛି । ଅତି ଦୁଃଖର ସହିତ କହିବାକୁ ପଡୁଛି ଯେ ବନାଗ୍ନିରେ ପଡ଼ିଥିବା ହରିଣୀ ଅଥବା ବ୍ୟାଘ୍ରର ହାବୁଡ଼ରେ ପଡ଼ିଥିବା ହରିଣୀର ଯେପରି ମର୍ମାନ୍ତିକ ଦଶା ହୁଏ, ତୁମ ବରହରେ ରାଧାଙ୍କର ସେହି ଅବସ୍ଥା ହୋଇଛି । ଏଠାରେ କନ୍ଦର୍ପ ଯମପରି ଆଚରଣ କରୁଛି, ବାଘ ହରିଣୀ ଧରି ଯେପରି ତଣ୍ଟି କଣା କରି ଫିଙ୍ଗି ଦିଏ ଅଥବା ଖେଳାଏ, କଲୋଡ଼ିତ କରେ, ଶୁଙ୍ଘେ, ଦୂରକୁ ପୁଣି ଠେଲି ଦିଏ, ପୁଣି ପଞ୍ଝାରେ ମାଡ଼ି ବସେ କନ୍ଦର୍ପ ସେହି ପରି ଆମ ସଖୀ ରାଧାକୁ ହଟହଟା କରୁଛି ।

ପରବର୍ତ୍ତୀ - ନବମ ପ୍ରବନ୍ଧ ବା ଗୀତରେ ରାଧାଙ୍କ ବିରହ ପ୍ରସଙ୍ଗ ଆହୁରି ବଢ଼ି ଚାଲିଛି ଦେଶାଖ୍ୟ ରାଗରେ, ଯଥା-

ସ୍ତନବିନିହିତ ମପି ହାରମୁଦାରମ୍
ସା ମନୁତେ କୃଶତନୁରତି ଭାରମ୍
ରାଧିକା ତବ ବିରହେ କେଶବ । ଧ୍ରୁବପଦମ୍ (ନୈସର୍ଗ)

ଏହାର ସାରକଥା ଗୋଟିଏ ଶ୍ଳୋକରେ ନିମ୍ନୋକ୍ତମତେ ନ୍ୟସ୍ତ କରିଛନ୍ତି କବି -

ସା ରୋମାଞ୍ଚତି ସୀତ୍କରୋତି ବିଳପତ୍ୟୁତ୍ କମ୍ପତେ ତାମ୍ୟତି
ଧାୟତ୍ୟୁଦ୍‌ଭ୍ରମତି ପ୍ରମୀଳତି ପତତ୍ୟୁଦ୍‌ଯାତି ମୂର୍ଚ୍ଛତ୍ୟପି ।
ଏତାଦବତ୍ୟତନୁଜ୍ୱରେ ବରତନୁର୍ଜୀବେନ୍ନ କିଂ ତେ ରସାତ୍ ।
ସ୍ୱର୍ବୈଦ୍ୟପ୍ରତିମ ପ୍ରସୀଦସି ଯଦି ତ୍ୟକ୍ତୋ[illegible]ନ୍ୟଥା ହସ୍ତକଃ । ୪/୩

ହେ ହରି ! ତୁମ କଥା ଭାବି ରାଧା ରୋମାଞ୍ଚିତ ହେଉଛି, ସୀତ୍କାର କରୁଛି, ବିଳାପ କରୁଛି, ଥର ତର ହୋଇ କମ୍ପୁଛି, କ୍ଳାନ୍ତି ଅନୁଭବ କରୁଛି, ଧ୍ୟାନ କରୁଛି, ବୃଥା ଭ୍ରମଣରେ ଲାଗି ଯାଉଛି, ପୁଣି ଆଖିବୁଜି ପଡ଼ି ରହୁଛି, ପୁଣି ଉଠିପଡୁଛି । ଏଭଳି କନ୍ଦର୍ପଜ୍ୱରପୀଡ଼ିତା ରାଧା ବଞ୍ଚିବ କି ? ଯଦି ଆପଣ ତାଙ୍କୁ ତ୍ୟାଗ କରନ୍ତି ? ସେ ବଞ୍ଚିବ ନାହିଁ (ଏବଂ ତୁମକୁ ନାରୀ ହତ୍ୟା ଦୋଷ ମଧ ଲାଗିବ) । ପରବର୍ତ୍ତୀ ଶ୍ଳୋକ - କନ୍ଦର୍ପ ଜ୍ୱର ... କ୍ଷୀଣାକ୍ଷଣଂ ପ୍ରଣିତିରେ, କେବଳ ତୁମରି ମିଳନ ଆଶାରେ ସେ କ୍ଷୀଣାଙ୍ଗୀ ଆଉ କେତେ କ୍ଷଣ ମାତ୍ର ନିଃଶ୍ୱାସ ନେଇ ବଞ୍ଚି ରହିବ । କୌଣସି ପ୍ରକାରେ ପୁଷ୍ପିତା ରସାଳଶାଖାକୁ ଦେଖି ସେ ଧୈର୍ଯ୍ୟ ଧରୁଛି ଅର୍ଥାତ୍ ତୁମେ ମଧ ତାହାକୁ ଦେଖି କାଳେ ମଦନାଶୁଖ ପ୍ରଭାବରେ ତାଙ୍କ ପ୍ରତି ମୃଦୁ ଓ ଅନୁକମ୍ପାଶୀଳ ହେବ । ସ୍ନିଗ୍ଧମାଧବ ନାମକ ଚତୁର୍ଥସର୍ଗର ଏଠାରେ ସମାପ୍ତି ହୋଇଛି ।

ପଞ୍ଚମ ସର୍ଗରେ ଶ୍ରୀକୃଷ୍ଣଙ୍କର ବିରହ ବର୍ଣ୍ଣନା-ଦୂତୀ ମୁଖରେ ଶ୍ରୀରାଧାଙ୍କ ସମ୍ମୁଖରେ କରାଯାଇଛି । ଦଶମ ପ୍ରବନ୍ଧ ଦେଶବରାଡ଼ୀ ରାଗରେ -

ବହତି ମଳୟସମୀରେ ମଦନମୁପନିଧାୟ ।
ସ୍ଫୁଟତି କୁସୁମନିକରେ ବିରହୀ ହୃଦୟଦଳନାୟ ।
ତବ ବିରହେ ବନମାଳୀ, ସଖି ! ସୀଦତି ॥

ଏହି ଗୀତର ଶେଷରେ ଜୟଦେବ ରାଧାଙ୍କ ହିତରେ କହୁଛନ୍ତି ଯାହାକି ସମସ୍ତ ଜୀବ ଜଗତର ହିତ ପାଇଁ ମଧ ଉଦ୍ଦିଷ୍ଟ ଯଥା-

ଭଣତି କବି ଜୟଦେବ ବିରହୀ ବିଳସିତେନ
ମନସି ରସ ବିଭବେ ହରିରୁଦୟତୁ ସୁକୃତେନ
ତବ ବିରହେ ବନମାଳୀ ସଖି ସୀଦତି ।

ଅର୍ଥାତ୍ ସୁକୃତ ପରିପାକ ହେଲେ କୌଣସି ଭକ୍ତକୁ ହରି ହିଁ ଏପରି ଭାବରେ ସ୍ମରଣ କରିପାରନ୍ତି । ନହେଲେ କି ଭଗବାନ୍ କୃଷ୍ଣ ଜଣେ ଗୋପକାମିନୀ ସକାଶେ ଏପରି ବ୍ୟସ୍ତ ହୁଅନ୍ତେ !

ଦହତି ଶିଶିରମୟୂଖେ ମରଣମନୁକରୋତି,
ପତତି ମଦନ ବିଶିଖେ ବିଳପତି ବିକଳତରୋ[illegible] ।
ବସତି ବିପିନବିତାନେ ତ୍ୟଜତି ଲଳିତ ଧାମ ।
ଲୁଠତି ଧରଣି ଶୟନେ ବହୁବିଳପତି ତବ ନାମ ॥
(ପଞ୍ଚମ ସର୍ଗ/୫)

ସଖୀ କହିଚାଲିଛି -

ଏହିପରି ବିରହ ବିକ୍ଳବ, କ୍ଳେଶିତ ମାଧବ ପୂର୍ବରୁ (ଅତୀତରେ) ତୁମେ ଯେଉଁଠାରେ ତୁମରି ଆଳାପ ମନ୍ତ୍ର ରତିପତି ସିଦ୍ଧିଲାଭ କରିଥିଲ ସେହି ମନ୍ମଥମହାତୀର୍ଥରେ ତୁମକୁ ଅହର୍ନିଶ ତୁମରି ଆଳାପ ମନ୍ତ୍ର ଜପ କରି ଧ୍ୟାନରେ ଲଗ୍ନ ଅଛନ୍ତି ଏବଂ ଅଧିକନ୍ତୁ ତୁମ୍ଭ କୁଚକୁମ୍ଭର ନିବିଡ଼ ଆଲିଙ୍ଗନରୂପକ ଅମୃତକୁ ବାଞ୍ଛା କରୁଛନ୍ତି । (ପୂର୍ବଂ ଯତ୍ରସମଂ ତ୍ୱୟା ... ପରୀ ରମ୍ଭାମୃତଂ ବାଞ୍ଛତି V/7)

ଅନନ୍ତର ଏକାଦଶ ପ୍ରବନ୍ଧ ଗୀତରେ ସଖୀ ରାଧିକାଙ୍କୁ ଶ୍ରୀକୃଷ୍ଣଙ୍କ ନିକଟକୁ ଅଭିସାରରେ ଯିବାକୁ ପ୍ରେରିତ କରିଛନ୍ତି । (ଗୁର୍ଜରୀରାଗ - ଏକତାଳୀ ମାଧମରେ ଗୀୟତେ)

ରତି ସୁଖସାରେ ଗତମଭିସାରେ ମଦନମନୋହର ବେଶମ୍
ନ କୁରୁ ନିତମ୍ବିନି ଗମନବିଲମ୍ବନମନୁସରତଂ ହୃଦୟେଶମ୍
ଧୀର-ସମୀରେ ଯମୁନା ତୀରେ ବସତି ବନେ ବନମାଳୀ,
ପୀନପୟୋଧର ପରିସର ମର୍ଦ୍ଦନ ଚଞ୍ଚଳ କରଯୁଗଶାଳୀ । ଧ୍ରୁବ ।

ନାମ ସମେତଂ ...., ପତତି ପତତ୍ରେ ବିଚଳତିପତ୍ରେ..., ମୁଖରମଧୀରଂ....

ଭରସି ମୁରାରେ ... ରାଜସି ସୁକୃତବିପାକେ (ଭକ୍ତର ସୁକୃତ ପାକଳ ହେଲେ) ହରି ମଧ ତାକୁ ହୃଦୟରେ ଧାରଣ କରନ୍ତି ।

ବିଗଳିତବସନଂ ପରିହୃତରସନଂ ଘଟୟ ଜଘନମପିଧାନମ୍ ।
କିଶୟଶୟନେ, ପଙ୍କଜନୟନେ ନିଧିମିବ ହର୍ଷନିଧାନମ୍ ॥

ଏହି ପଂକ୍ତିଗୁଡ଼ିକ ସାଧାରଣ ଅର୍ଥରେ ସମ୍ଭୋଗ ଶୃଙ୍ଗାରାତ୍ମକ ହୋଇଥିଲେ ମଧ, ଜୀବାତ୍ମାର ମଳ ଓ ବିକ୍ଷେପ ପରି ଅପସାରିତ ହେଲେ ପରମାତ୍ମାଙ୍କର ସେ ଯେ 'ନିଧି ଭଳି ହର୍ଷ ବା ଆନନ୍ଦର କାରଣ ହୋଇପାରେ ସେଥିରେ ସନ୍ଦେହ ନାହିଁ ।

ରାତ୍ରି ଶେଷ ହୋଇଯାଉଛି ଏଣୁ ମୋ କଥାମାନ ଯଥା ଶୀଘ୍ର ପ୍ରସ୍ତୁତ ହୋଇଯାଅ । ମଧୁରିପୁଙ୍କର କାମନା ପୂରଣ କର ।

ଶେଷପଂକ୍ତି -

ଶ୍ରୀଜୟଦେବ କୃତହରିସେବେ ଭଣତି ପରମରମଣୀୟମ୍ ।
ପ୍ରମୁଦିତହୃଦୟଂ ହରିମତି ସଦୟଂ ନମତ ସୁକୃତକମନୀୟମ୍ ॥

ହରିଙ୍କର ସେବକ ଜୟଦେବ ଏପରି ଭଣତି କରୁଥିବା ସମୟରେ ଅତ୍ୟନ୍ତ ଆନନ୍ଦିତ ହୃଦୟଂ ସଂପନ୍ନ ଦୟାଳୁ ପରମ ସୁକୃତକାରୀ ପୁଣ୍ୟବାନ୍‌ମାନଙ୍କ ପ୍ରାପ୍ତି ଯୋଗ୍ୟ ହରିଙ୍କୁ ନମସ୍କାର କର ।

ପରବର୍ତ୍ତୀ ଶ୍ଳୋକ 'ବିକିରତି ମୁହୁ : ଶ୍ବାସାନ ଆଶା ମୁହୁରୀକ୍ଷତେ' ଇତ୍ୟାଦିରେ ସଖୀ ପୁଣି ରାଧାଙ୍କୁ ପ୍ରିୟ ମାଧବଙ୍କର ମଦନକଦନ କ୍ଲାନ୍ତ ଅବସ୍ଥା ସୂଚାଇ 'ତ୍ୱଦ୍‌ବାକ୍ଷେଣଂସମଂ ସମଗ୍ର ମଧୁନା ତିଗ୍ମାଂଶୁରସ୍ତଂଗତ ... ରମ୍ୟୋଭିସାରକ୍ଷଣଃ (V/17) ଉପଯୁକ୍ତ ଅଭିସାର ସମୟର ଅବସର ଆସି ପହଞ୍ଚିବାର ସୂଚନା ଦେଇଛି ।

ଅନ୍ୟ ଏକ ଦମ୍ପତିର ଅଭିସାର ପ୍ରସଙ୍ଗ 'ଆଶ୍ଳେଷାଦନୁ' ଇତ୍ୟାଦି ଶ୍ଳୋକରେ ଦିଆଯାଇଛି । ତା'ପରେ ସଖୀର ଶୁଭାଶଂସା ସହିତ ସାକାଂକ୍ଷପୁଣ୍ଡରୀକାକ୍ଷ ନାମକ ପଞ୍ଚମ ସର୍ଗ ସମାପ୍ତି ଲଭିଛି ।

କ୍ଷୁଦ୍ରାବୟବ ଷଷ୍ଠ ସର୍ଗ 'କୁଣ୍ଠବୈକୁଣ୍ଠ' ସଂଜ୍ଞକ । ରାଧାଙ୍କୁ ସିନା ସଖୀ ବହୁ ପ୍ରେରଣା ଦେଇ କହିଲା କିନ୍ତୁ ପ୍ରଣୟ ଜ୍ୱରରେ ଜର୍ଜରିତା ରାଧା ସତତ ଗତିଶକ୍ତି ହରାଇ ବସିଛନ୍ତି, ଅନୁରକ୍ତି କିନ୍ତୁ ଚିରନ୍ତନୀ । ନାୟିକାଙ୍କର ଏପରି କିଂକର୍ତ୍ତବ୍ୟ ଅବସ୍ଥା ଦେଖି ସଖୀ ପ୍ରଣୟ ବ୍ୟାପାରରେ କିଞ୍ଚିତ୍ ଶିଥିଳତା ପ୍ରଦର୍ଶନ କରୁଥିବା ଅଥବା ମନସିଜ ମନ୍ଦ ହୋଇଛି ଯାନିକଟରେ (କାରଣ ସେ ହୃଶୀକେଶ) ତାଙ୍କୁ ଅର୍ଥାତ୍ ନାୟକ କୃଷ୍ଣଙ୍କୁ କହିଲା ଦ୍ୱାଦଶ ପ୍ରବନ୍ଧରେ

ପଶ୍ୟତି ଦିଶି ଦିଶି ରହସି ଭବନ୍ତମ୍
ତଦଧର ମଧୁରମଧୁନି ପିବନ୍ତମ୍ ।
ନାଥ ହରେ, ସୀଦତି ରାଧା ବାସଗୃହେ ॥ ଧ୍ରୁବମ୍ ॥

'ଜୀବତି ପରମିହ ତବରତିକଳୟା' 'ମୋର ଜୀବନ ତାଙ୍କର ଅର୍ଥାତ୍ ଈଶ୍ୱରଙ୍କ ପାଇଁ ଉଦ୍ଦିଷ୍ଟ' - ଏଇ ଭାବନାରେ ବଞ୍ଚି ରହିଛି ।

'ମଧୁରିପୁ ଅହମିତି ଭାବନଶୀଳା' - 'ମୁ ହିଁ କୃଷ୍ଣ' ଏଇ ଭାବନା କିଛି କମ୍ କଥା ନୁହେଁ କୃଷ୍ଣଙ୍କ କଥା ଭାବି ଭାବି ଏମିତି ସମୟ ଆସେ ଭକ୍ତ ମୁଁ ନିଜେ ହିଁ ସେ ଭଗବାନ୍ ବୋଲି ଭାବେ । ସଂପ୍ରତି ରାଧାଙ୍କର ସେଇ ଅବସ୍ଥା ଆସି ପହଞ୍ଚିଛି ।

'ତ୍ୱରିତ ମୁପୈତିନ କଥମଭିସାରମ୍, ହରିରିତି ବଦତି ସଖିମନୁବାରମ୍ ।' ଭଗବାନଙ୍କ ପାଇଁ ଉତ୍‌କଣ୍ଠିତା ? ଭଗବାନ୍ ସାଇ ଯେପରି କହନ୍ତି ଲୁହ ଗଡ଼ାଇବତ ମୋ' ପାଇଁ ଗଡ଼ାଅ । ଶିରିଡ଼ି ସାଇ କହିବା ପରି If you look to me I shall look to you.

କ୍ରମେ କ୍ରମେ ଜୀବାତ୍ମା/ଭକ୍ତି ପରାୟଣା/ପ୍ରେୟସୀ ରାଧା ସାମାଜିକତା କ'ଣ ଭୁଲି ଗଲେଣି ଚାରି ଆଡ଼େ ଦିଶୁଛନ୍ତି କେବଳ ହରି ଆଉ ହରି । ଯେଉଁଠାରେ କୃଷ୍ଣଙ୍କର କିଛି ସାଦୃଶ୍ୟ ଅଛି ସେ ପଟକୁ ସେ ଟାଣି ହୋଇଯାଉଛନ୍ତି । ତା'ର ପ୍ରମାଣ ଯଥା-

ଶ୍ଲିଷ୍ୟତି ଚୁମ୍ବତି ଜଳଧର କଳ୍ପମ୍ ।
ହରିରୁପଗତମିତି ତିମିର ମନଳ୍ପମ । (VI/6)

ଏହି ପଂକ୍ତିର ପ୍ରଭାବ ଅଭିମନ୍ୟୁଙ୍କ ରଚନାରେ ମଧ ପଡ଼ିଛି -

କାଳିଆ କମଳ ଦେଖିଲେ କମଳ ନୟନରେ ହୁଏ ଜରଜର ।
ଦେଖି ନବଘନ ତା'ର ଅପଘନ ପୁଲକି ହୁଅଇ ଥରଥର ।
ଘନସୁନ୍ଦର ହେ,
ଯମୁନା ଯିବାକୁ ଡରଡର ।

ଏ ଅତି ବିଚିତ୍ର କଜ୍ଜଳରେ ଚିତ୍ର ଦେଖି ଚୁମ୍ବଦିଏ ବାରବାର (ଯୁଗଳ ଅନୁରାଗ କଥନ : ବିଦଗ୍ଧ ଚିନ୍ତାମଣି)

ପତ୍ର ଖଡ଼ ଖଡ଼ ଶବ୍ଦ ଶୁଣିଲେ ତୁମେ କାଳେ ଆସିଗଲ ବୋଲି ଭାବି ସେ ରାଧା ଅଙ୍ଗରେ ନାନା ଆଭରଣ ବା ଅଳଙ୍କାର ଖଞ୍ଜି ବସୁଛି । ଏଇ ତୁମେ ପହଞ୍ଚିଗଲ ଭାବି ଶଯ୍ୟାର ଯତ୍ନନେବା ସଙ୍ଗେ ସଙ୍ଗେ ଚାହିଁ ରହୁଛି, ଏପରି ଭାବରେ ସେ ବିଚାରୀ କୌଣସି ପ୍ରକାରେ ଆଜି ରାତିଟି ଅତିବାହିତ କରିପାରିବ କି ନାହିଁ ସନ୍ଦେହ ହେଉଛି । (ଅଙ୍ଗେଷ୍ୱାଭରଣଂ ଇତ୍ୟାଦି VI/11)

ସପ୍ତମ ସର୍ଗରେ ବୃନ୍ଦାବନରେ ରାତ୍ରି ଓହ୍ଲାଇ ଆସିଛି । ସ୍ଥାନ ଯମୁନା କୂଳର ସେହି ବୃନ୍ଦାବନ । ଦିକ୍‌ସୁନ୍ଦରୀର କପାଳରେ ଚନ୍ଦନ ବିନ୍ଦୁ ପରି ଚନ୍ଦ୍ର ଉଦିତ ହୋଇ ଚାରିଆଡ଼େ ତା'ର ରୂପେଲୀ କିରଣ ବିଞ୍ଚି ଦେଉଛି । ଏଣେ ଅସହ୍ୟ ବିରହ ବ୍ୟଥାତୁରା ଶ୍ରୀମତୀ କୁଞ୍ଜ ସଦନରେ ପ୍ରିୟତମଙ୍କର ପ୍ରତୀକ୍ଷାରେ ବସିଛନ୍ତି । ଶ୍ୟାମ କିନ୍ତୁ ଆସିଲେ ନାହିଁ । ଅଙ୍ଗଲେପିତ ମୃଗମଦ-ଚନ୍ଦନ-କୁଙ୍କୁମର ପ୍ରଲେପ ଶୁଖିଶୁଖି ଯାଉଛି । ଆହୁରି ଶୁଖି ଯାଉଛି ଗଳାର ମାଳତୀହାର । ସଖୀ ଯାଇଛି କୃଷ୍ଣଙ୍କୁ ମନାଇ ଆଣିବା ପାଇଁ । ଟିକିଏ ପତ୍ର ଖସ୍ ଖସ୍ ହେଲେ ବି ଶ୍ୟାମ ଆସିଗଲେ କି ? ଚମକି ଉଠୁଛନ୍ତି ରାଧିକା । କିନ୍ତୁ ଏ କ'ଣ, ସଖୀ ଯେ ଏକା ଏକା ଫେରିଲେ । କାହାନ୍ତି ସେ ନଟନାଗର, କେଳି ଚତୁର, ରସିକ ଶିରୋମଣି କୃଷ୍ଣ ? ରାଧାଙ୍କ ନୟନରୁ ଝରି ପଡ଼ିଲା ବାଧାବନ୍ଧନ ନ ମାନି ଅଶ୍ରୁର ବନ୍ୟା । ଭାବି ବସିଲେ ଶ୍ରୀମତୀ ତାଙ୍କର ନାରାୟଣ ବୋଧେ ଅନ୍ୟ କେଉଁ କାମିନୀର ନାଗର ରୂପରେ ନିଶି ପୁହାଇଲେ । କୃଷ୍ଣଦତ୍ତୈକଚିତ୍ତା ରାଧାଙ୍କର କାତର ବିଳାପ ମଧ୍ୟ ଦେଇ ଆଲୋଚ୍ୟ ସର୍ଗରେ ମାଧବଙ୍କର ସେହି ଅନ୍ୟ ନାରୀ ସମ୍ଭୋଗର ଛବି ତୋଳିଛନ୍ତି ଜୟଦେବ ।

ଏଥିରୁ ଜଣାପଡ଼େ ଭଗବାନ୍ ପ୍ରତ୍ୟେକଙ୍କର ପ୍ରିୟ । ସେ କ'ଣ ଜଣକର ପ୍ରୀତିରେ ଆବଦ୍ଧ ହୋଇପାରନ୍ତି । ଏକ ସମୟରେ ଭଗବାନ୍, ବିଶ୍ୱବ୍ରହ୍ମାଣ୍ଡ ମାଳ ମାଳ ହୋଇଥିଲେ ନିଜ ଲୋମକୂପ ମାତ୍ରକରେ ସ୍ଥାନ ଦେଇପାରନ୍ତି । ପୃଥିବୀର ମଣିଷ ଅବା ମାତ୍ର କେତେ ? ସେମାନଙ୍କୁ ଦୃଷ୍ଟି ଦେଇ ପାରିବେ ନାହିଁ ?

କବି ଲେଖନୀର ସର୍ଗର ଆରମ୍ଭ ହୁଏ ଚନ୍ଦ୍ରବର୍ଣ୍ଣନ / ରାତ୍ରିବର୍ଣ୍ଣନ ନିମ୍ନ ଶ୍ଳୋକରୁ

'ଅତ୍ରାନ୍ତରେ ଚ କୁଳଟାକୁଳବର୍ମ୍ମପାତ-<br>ସଂଜାତପାତକ ଇବ ସ୍ଫୁଟଲାଞ୍ଛନଶ୍ରୀଃ ।<br>ବୃନ୍ଦାବନାନ୍ତରମଦୀ ପୟଦଂଶୁଜାଳୈ-<br>ଦିକ୍‌ସୁନ୍ଦରୀ ବଦନ ଚନ୍ଦନ ବିନ୍ଦୁ-ରିନ୍ଦୁଃ ।' VII/1

ଚାନ୍ଦ ଉଇଁଲେ, ରାତିର କ୍ରମେ ବୟସ ବଢ଼ି ଚାଲିଲା, ମାଧବ ଆସିଲେ ନାହିଁ । ନାନାବିଧ ପରିତାପ ବାକ୍ୟରେ ବିଳପି ଉଠିଲେ ବିପ୍ରଲବ୍ଧ ରାଧିକା । କୃଷ୍ଣ କି ଦେଲେ ଉଚ୍ଚସ୍ୱରରେ (ମାଳବଗୌଡ଼ରାଗ ମାଧ୍ୟମରେ ତ୍ରୟୋଦଶ ପ୍ରବନ୍ଧରେ) ବିଳପି ଉଠିଲେ ରାଧିକା -

'କଥିତ ସମୟେଽପି ହରିରହହ ନ ଯଯୌ ବନମ୍ ।<br>ମମ ବିଫଳମିଦମମଳରୂପନବ ଯୌବନମ୍ ।<br>ଯାମିହେ କମିହ ଶରଣଂ ସଖୀ ଜନ-ବଚନ ବଞ୍ଚିତା ॥

ସନ୍ଦେହ ଦୋଳାରେ ଦୋଳାୟିତ ରାଧିକା ସୁନ୍ଦରୀଙ୍କର ମନ - ଯଥା-

'ତତ୍ କିଂ କାମପି କାମିନୀମଭିସୃତଃ କିଂ ବା କଳାକେଳିଭିଃ-<br>ବିଦ୍ଧୋ ବନ୍ଧୁଭିରନ୍ଧକାରିଣି ବନାଭ୍ୟର୍ଣ୍ଣେ କିମୁଦ୍‌ଭ୍ରାମ୍ୟତି ।<br>କାନ୍ତଃ କ୍ଳାନ୍ତମନା ମନାଗପି ପଥି ପ୍ରଶାତୁମେବାକ୍ଷମଃ<br>ସଂକେତୀକୃତ ମଞ୍ଜୁ ବଞ୍ଜୁଳ ଲତାକୁଞ୍ଜେଽପି ଯନ୍ନାଗତଃ ॥'

ଏହି ସମୟରେ ମାଧବଙ୍କୁ ବୁଝାଇ ମନାଇ ଆଣିବାକୁ ଯାଇଥିବା ସଖୀ କୃଷ୍ଣ ବିନା ଫେରି ଆସିବାର ଦେଖି ଏବଂ ଅତି ବିଷାଦ ଭାବ ହେତୁ କିଛି କହିପାରୁନଥିବା ସଖୀ ହାବଭାବରୁ ଜାଣି କୌଣସି ଅଧିକ ସରସ ଯୁବତୀ ଦ୍ୱାରା କୃଷ୍ଣ ରମିତ ହେଲେ ବୋଲି ଅନୁମାନ କରି ସାକ୍ଷାତ୍ ଦେଖିବାପରି ନାୟକଙ୍କ ସହିତ ଅନ୍ୟ ସ୍ତ୍ରୀ ରମଣର ଉତ୍‌ପ୍ରେକ୍ଷାକୃତ ବର୍ଣ୍ଣନା ରାଧାଙ୍କ ମୁଖରେ କରାଯାଇଛି (ବସନ୍ତ ରାଗରେ) - ଚତୁର୍ଦ୍ଦଶ ପ୍ରବନ୍ଧରେ -

ସ୍ମରସମରୋଚିତ ବିରଚିତ ବେଶା ।<br>ଗଳିତ କୁସୁମଦର ବିଲୁଳିତ କେଶା ।<br>କାପି ମଧୁରିପୁଣା<br>ବିଳସତି ଯୁବତି-ରଧିକଗୁଣା । ଧ୍ରୁବମ୍ ।

୧୪ଶ ଗୀତଶେଷରେ 'ଶ୍ରୀ ଜୟଦେବ ଭଣିତ ହରି ରମିତମ୍, କଳି କଳୁଷଂ ଜନୟତୁ ପରିଶମିତମ୍' ଇତ୍ୟାଦି ପଂକ୍ତି ଦ୍ୱାରା ଭକ୍ତିଭାବଯୁକ୍ତ ଶ୍ରୀଜୟଦେବଙ୍କ ଦ୍ୱାରା ଏହି ରାଧାଙ୍କର ଉତ୍‌ପ୍ରେକ୍ଷା ବିହିତ ଗୀତ ପଠନ, ଶ୍ରବଣ, ଗାନ ଦ୍ୱାରା କାମାଦିବାସନାତ୍ମକ ଭକ୍ତି ବିଘାତକ କଳୁଷ ସର୍ବତୋଭାବରେ ଉପଶମିତ ହେଉ । ଯେପରିକି ଶ୍ରୀମଦ୍ ଭାଗବତରେ (ରସିକରଙ୍ଗଦା - ପୃ.୧୬) ମଧ୍ୟ କୁହାଯାଇଛି -

ବିକ୍ରୀଡ଼ିତଂ ବ୍ରଜବଧୂଭିରିଦଂ ଚ ବିଷ୍ଣୋଃ
ଶ୍ରଦ୍ଧାନ୍ୱିତୋଽନୁଶୃଣୁୟାଦଥ ବର୍ଣ୍ଣୟେଦ୍ ଯଃ ।
ଭକ୍ତିଂପରାଂ ଭଗବତି ପ୍ରତିଲଭ୍ୟକାମ୍,
ହୃଦରୋଗମାଶ୍ୱପହିନୋତ୍ୟଚିରେଣ ଧୀରଃ ।।

ଅର୍ଥାତ୍, ଗୋପାଙ୍ଗନାମାନଙ୍କ ସହିତ ଶ୍ରୀକୃଷ୍ଣରୂପୀ ବିଷ୍ଣୁଙ୍କର ଯେଉଁ (ରାସ) କ୍ରୀଡ଼ା (ରସକେଳି) ଶ୍ରଦ୍ଧାଳୁଭାବରେ ଯେ ଶ୍ରବଣ କରେ ବା ବର୍ଣ୍ଣନ କରେ ସେହି ଧୀମାନ୍ ବ୍ୟକ୍ତି ଭଗବାନଙ୍କଠାରେ ପରମାଭକ୍ତି ଲାଭ କରିବା ସହିତ ହୃଦୟର ସମସ୍ତ ପୀଡ଼ାକୁ (ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ-ପୀଡ଼ା ବା ଦୁଃଖ) ଆଶୁ ଦୂର କରିବାରେ ସମର୍ଥ ହୁଏ ।

ପରବର୍ତ୍ତୀ (ପଞ୍ଚଦଶ) ପ୍ରବନ୍ଧରେ ସେହି ସୌଭାଗ୍ୟବତୀ ଅନ୍ୟରମଣୀର ପ୍ରେମରେ ବିଜୟୀ କୃଷ୍ଣଙ୍କର ଉତ୍‌କ୍ଷେପିତ ବର୍ଣ୍ଣନାରେ ରାଧାଙ୍କ ବିରହକୁ ଅଧିକ ଶାଣିତ କରି କବି ଲେଖିଛନ୍ତି - ଗୁର୍ଜରୀ ରାଗରେ -

ସମୁଦିତମଦନେରମଣୀ ବଦନେ ଚୁମ୍ବନବଳିତାଧରେ ।
ମୃଗମଦତିଲକଂ ଲିଖତି ସପୁଲକଂ ମୃଗମିବ ରଜନୀକରେ ।।'
ରମତେ ଯମୁନା ପୁଳିନବନେ, ବିଜୟୀ ମୁରାରିରଧୁନା ।
ଧ୍ରୁବପଦମିଦମ୍

ଏହି ଅଷ୍ଟପଦୀ ଶେଷ ପଂକ୍ତିରେ କବି ଜୟଦେବ କଳିଯୁଗ ସ୍ୱାଭାବିକ ଚରିତ ରୂପୀ ଦୁରିତ ତାଙ୍କୁ ସ୍ପର୍ଶ ନକରୁ ବୋଲି ହରିଗୁଣନ କରୁଥିବାରୁ ଆଶା ପ୍ରକଟ କରିଛନ୍ତି । ଏହାପରେ 'ନାୟାତଃ ସଖୀ ନିର୍ଦ୍ଦୟ ଯଦି ଶଠସ୍ତ୍ୱଂ ଦୂତୀକିଂ ହୃୟସେ' - ଇତ୍ୟାଦି ଶ୍ଳୋକରେ ପ୍ରିୟ ସଙ୍ଗମ ପାଇଁ 'ଚେତଃ ସ୍ୱୟଂ ଯାସ୍ୟତି' ବୋଲି ଆଶା ରାଧାଙ୍କ ମନରେ ପ୍ରକାଶିତ ହୋଇଛି । ସେହି ଅନୁମାନଗତ ରମଣୀ କିପରି ଭାଗ୍ୟବତୀ ତାହା କବି ଅଥବା ରାଧା କହୁଛନ୍ତି - (ଦେଶବରାଡ଼ୀ ରାଗରେ ୧୬ଶ ପ୍ରବନ୍ଧ)

ଅନିଳତରଳ କୁବଳୟନୟନେନ, ପତତିନ ସା କିଶଳୟଶୟନେନ
ସଖି, ଯା ରମିତା ବନମାଳିନା । ଧ୍ରୁବମ୍

'ଶ୍ରୀ ଜୟଦେବ ଭଣିତ ବଚନେନ । ପ୍ରବଶତୁ ହରିରପି ହୃଦୟମନେନ ।' ଶ୍ରୋତା ଗାୟକମାନଙ୍କର ମନରେ ରାଧା ସହିତ ସର୍ବ ମନୋହର ଶ୍ରୀକୃଷ୍ଣ ପ୍ରକର୍ଷେଣ (ଅତି ଭଲ ଭାବରେ) ବିକଶିତ ହୁଅନ୍ତି । ଶ୍ରୀକୃଷ୍ଣ ମଧ୍ୟ ଏହି ଗୀତରେ ସକଳ ଭୁବନ ଜନବର ତରୁଣ ଭାବରେ ବର୍ଣ୍ଣିତ ହୋଇଛନ୍ତି - ଯେପରି ବର୍ଣ୍ଣନା ମଧ୍ୟ କୃଷ୍ଣ କର୍ଣ୍ଣାମୃତରେ ଅଛି -

ତଦ୍ କୈଶୋରଂ ତଚ୍ଚ ବକ୍ତାରବିନ୍ଦଂ, ତନ୍ମାଧୁର୍ଯ୍ୟଂ ତେତଲୀନାକଟାକ୍ଷାଃ
ତତ୍‌ସୌନ୍ଦର୍ଯ୍ୟଂ ସାଚ ସାନ୍ଦ୍ରସ୍ମିତଶ୍ରୀ ସତ୍ୟଂ ସତ୍ୟଂ ଦୁର୍ଲଭଂ ଦୈବତେଷୁ ।

ରାଧାଙ୍କ ବିରହବ୍ୟ ଅତିଭୂମିଂ ଗତାବସ୍ଥାକୁ ଶିଖରିଣୀ ଛନ୍ଦରେ ଲେଖନ୍ତି ଜୟଦେବ -

ରିପୁରିବ ସଖୀ ସଂବାସୋଽୟଂ ଶିଖୀବ ହିମାନିଳୋ ।
ବିଷମିବ ସୁଧାରଶ୍ମିର୍ଯସ୍ମିନ୍ ଦୁନୋତି ମନୋଗତେ ।
ହୃଦୟମଦୟେ ତସ୍ମିନ୍ନେବଂ ପୁନର୍ବଳତେ ବଳାଦ୍
କୁବଳୟଦୃଶାଂ ବାମଃ କାମୋ ନିକାମନିରଙ୍କୁଶଃ ।। (VII/୪)

ରାଧା କହୁଛନ୍ତି, ହେ ସଖି ! ଏହି ବାସସ୍ଥଳୀ ଶତ୍ରୁଭଳି ଲାଗୁଛି । ଶୀତଳ ପବନ ଶିଖା ବିସ୍ତାର କରି ଜଳୁଥିବା ଅଗ୍ନିପରି ଉତପ୍ତ ମନେ ହେଉଛି (ଯେହେତୁ ମୁଁ ସ୍ୱେଚ୍ଛାରେ ପ୍ରିୟସଙ୍ଗମକୁ ଯାଇପାରୁ ନାହିଁ) । ସୁଧା ରଶ୍ମି ଅର୍ଥାତ୍ ଚନ୍ଦ୍ରକିରଣ ସକଳ ଶରୀର ସନ୍ତାପ ହାରକ ହୋଇଥିଲେ ମଧ୍ୟ କାଳକୂଟ ବିଷପରି ଅନୁଭବ ହେଉଥିବା ଅବସ୍ଥାରେ ସେହି ନିର୍ଦ୍ଦୟ ଶଠ ନାଗର ବଞ୍ଚନା କରିଥିଲେ ମଧ୍ୟ ମୋର ହୃଦୟ ତାଙ୍କଠାରେ ହିଁ ବଳବାନ୍ ଭାବରେ ଅନୁରାଗୀ ହୋଇଉଠୁଛି । କୁବଳୟ ବୋଲିନ୍ତେ ନୀଳପଦ୍ମ ଭଳି ଦୃଷ୍ଟି ଯେଉଁ ସୁନ୍ଦରୀମାନଙ୍କର ତାଙ୍କର ପ୍ରତିକୂଳକାରୀ କାମଦେବ ସଂପ୍ରତି ନିରଙ୍କୁଶ ହୋଇ ଯାହା କରୁଛି କରୁ । ତାକୁ ତ କୌଣସିମତେ ପ୍ରତିହତ କରି ହେଉନାହିଁ ଆଉ କ'ଣ କରିବା ?

ଏଭଳି ଦୁରାଗ୍ରହବାନ୍ ମନ, ହୃଦୟକୁ ନିନ୍ଦା କରି ହେ ମଳୟାନିଳ ! ପ୍ରାଣ ସଂକଟକାରୀ ବାଧାବିଧାନ କର, ହେ ପଞ୍ଚବାଣ ! ସ୍ତମ୍ଭନ, ମୋହନ, ତାପନ, ଶୋଷଣ, ଉଚ୍ଚାଟନ ପ୍ରଭୃତି (ମୋର) ପଞ୍ଚ ପ୍ରାଣ ନେଇଯାଅ, ଆଉ ଘରକୁ ଫେରିବି ନାହିଁ । ଏଥିରେ କାଳେ ଇଚ୍ଛା ଚରିତାର୍ଥ ନହେବ, ଭାବୁଛନ୍ତି ଯମର ଭଉଣୀ ଯମୁନା ବୋଧହୁଏ ପ୍ରାଣ ହରଣ କାର୍ଯ୍ୟରେ ଅଧିକ ସମର୍ଥ ହେବ । କ୍ଷମୟା କିମ୍ ? ତୁମଠାରୁ କ୍ଷମା ଆଶା କରାଯାଏ ନାହିଁ । 'ଯେହେତୁ ଯମସ୍ୟ କରୁଣାନାସ୍ତି ।' ତା' ନହେଲେ ତୁମର ଶୀକର ମିଶ୍ରିତ ତରଙ୍ଗ ଦ୍ୱାରା ମମ ଅଙ୍ଗାନି ସିଞ୍ଚ । ଦେହଦାହଃ ଶାମ୍ୟତୁ । ଏହା ସହିତ ଶେଷ ହୁଏ ନାଗର ନାରାୟଣ ନାମଧେୟ ସପ୍ତମ ସର୍ଗ । ରାଧାଙ୍କର ବିପ୍ରଲବ୍ଧ ହେବାର ଦୁଃଖରେ ବିପ୍ରଲମ୍ଭ ଶୃଙ୍ଗାର ଏହି ସର୍ଗର ପ୍ରଧାନ ରସ ।

ଅଷ୍ଟମ ସର୍ଗ - ବିଲକ୍ଷ୍ୟ ଲକ୍ଷ୍ମୀପତିଃ - ଖଣ୍ଡିତ୍ୟ ବର୍ଣ୍ଣନ

କୌଣସି ପ୍ରକାରେ ଅତି କଷ୍ଟରେ ରାତ୍ରି ଯାପନ କରିଥିବା ବିରହିଣୀ ରାଧାଙ୍କ ଆଗରେ ଅନୁନୟ କରି କଥା କହୁଥିବା ପ୍ରିୟ

କୃଷ୍ଣଙ୍କୁ ରାଧାଙ୍କର ତିରସ୍କାରରେ ସର୍ଗର ଆରମ୍ଭ । ତାହା ଏଠାରେ ଭୈରବୀ ରାଗରେ ଗାନଯୋଗ୍ୟ ସପ୍ତଦଶ ପ୍ରବନ୍ଧରେ ପରିବେଷଣ କରାଯାଇଛି ।

ରଜନୀଜନିତ ଗୁରୁ ଜାଗର-ରାଗ-କଷାୟିତ ମଳସ ନିମେଷମ୍ ।
ବହତି ନୟନମନୁରାଗବିମ ସ୍ଫୁଟ-ମୁଦିତ ରସାଭିନିବେଶମ୍ ।
ହରିହରି, ଯାହି ମାଧବ ଯାହି କେଶବ ମାବଦ କୈତବବାଦମ୍ ।
ତାମନୁସର ସରସୀ ରୁହଲୋଚନ ୟା ତବ ହରତି ବିଷାଦମ୍ ।
ଧ୍ରୁବ

୧୭ଶ ଗୀତର ଶେଷ ପଦରେ କବି ଲେଖିଛନ୍ତି -

ଶ୍ରୀ ଜୟଦେବ ଭଣିତ ରତି ବଞ୍ଚିତ ଖଣ୍ଡିତ ଯୁବତୀ ବିଳାପମ୍ ।
ଶୃଣୁତ ସୁଧାମଧୁରଂ ବିବୁଧାଳୟତୋଽପି ସୁଖଂ ଦୁରାପମ୍ ॥

ହେ ବିବୁଧା ଭକ୍ତିରସ-ଭାବନ ନିପୁଣା ପଣ୍ଡିତମାନେ । ଶ୍ରୀ ଜୟଦେବଙ୍କ ଭଣିତ ରତି ବଞ୍ଚିତା ଖଣ୍ଡିତା ରାଧିକାଙ୍କର କୋପ ମିଶ୍ରିତ ବିଳାପ ବଚନକୁ ଶୁଣ ଯାହା ଅତ୍ୟନ୍ତ ଦୁର୍ଲଭ ଏବଂ ସୁଧାଠାରୁ ମଧ୍ୟ ମଧୁରର ଅଟେ । ଏହା ବିବୁଧାଳୟ ସ୍ୱର୍ଗ ସୁଖଲାଭଠାରୁ ଅଧିକ ସୁଖକର । ପରବର୍ତ୍ତୀ 'ତବେଦଂ ପଶ୍ୟନ୍ତ୍ୟା... ଲଜ୍ଜାଂ ଜନୟତି' ଶ୍ଳୋକରେ ରାଧା ନିଜେ ଶୋକାକୁଳା ଥିଲେ ବି ତାଙ୍କର ଶୋକ ପ୍ରବାହ ଅପେକ୍ଷା ଶ୍ରୀକୃଷ୍ଣଙ୍କ ଦେହରେ ଥିବା ଅନ୍ୟ ନାରୀ ସମ୍ଭୋଗ ଜନିତ ଚିହ୍ନ ଅଧିକ ଲଜ୍ଜାକର ମନେ ହେଉଛି ବୋଲି କୃଷ୍ଣଙ୍କୁ ଉପାଳମ୍ଭ ହେଉଛନ୍ତି । ଏଠାରେ ଅଷ୍ଟମ ସର୍ଗର ପରିସମାପ୍ତି ।

**ନବମ ସର୍ଗ - କଳହାନ୍ତରିତାବର୍ଣ୍ଣବେ-ମୁଗ୍ଧମୁକୁନ୍ଦଃ -**

ଏହି ସର୍ଗଟି ସଂକ୍ଷିପ୍ତ । ଏଠାରେ ରାଧା କଳହାନ୍ତରିତା ନାୟିକା ଭାବରେ ଉପସ୍ଥାପିତା । ଅପରାଧୀ ପ୍ରିୟ କୃଷ୍ଣଙ୍କୁ ତ ଶ୍ରୀମତୀ ଅଭିମାନଭରେ ଫେରାଇ ଦେଲେ । ପୁଣି ମନ କ'ଣ ବାଧା ମାନୁଛି । ଯାହାଙ୍କୁ ଫେରାଇଲେ କଟୁ କଥା କହି ତାଙ୍କୁ ପୁଣି ଭାବି ଭାବି ଧ୍ୟାନ କରିବାକୁ ଲାଗିଲେ । ଏହି ସମୟରେ ସଖୀ ବେଦନାତୁରା ରାଧାଙ୍କୁ ଭର୍ତ୍ସନା କରି କହିଲା - କ'ଣ ତୁ କଲୁ ଆଜି ରାଧେ, ମାଧବଙ୍କୁ ଏଭଳି ରୁକ୍ଷ ବ୍ୟବହାର ଦ୍ୱାରା ଫେରେଇ ଦେଲୁ ? ଯଦି ରୁକ୍ଷ ବ୍ୟବହାର କଲୁ ପୁଣି ତା' କଥା ଭାଳି ଶୋକ କରୁଛୁ କାହିଁକି ? ଏହା ଦେଖି ପରଶ୍ରୀକାତରାମାନେ ଉପହାସ କରୁଛନ୍ତି, ଏକଥା କ'ଣ ଜାଣିପାରୁନାହୁଁ ?

ଏଥି ଉତ୍ତାରୁ ସଖୀମାନେ ଶ୍ରୀପତିଙ୍କୁ ଫେରେଇ ଆଣିବାର ଉଦ୍ୟମ କଲେ କିନ୍ତୁ ପୁଣି ଥରେ ଏପରି ଅପମାନିତ କରି ପ୍ରିୟଙ୍କୁ ଯେପରି ତିରସ୍କାର ନକରୁ ପ୍ରତିଶ୍ରୁତି ଚାହିଁଲେ । ଏହି ସହଚରୀଠାରୁ ରାଧାଙ୍କର ଅନୁତାପ କଥା ଶୁଣି ମୁକୁନ୍ଦ ମୁଗ୍ଧ ହୋଇଗଲେ ଏବଂ ସଖୀଙ୍କୁ ଅନୁସରଣ କରି ରାଧାଙ୍କ କୁଞ୍ଜକୁ ଲେଉଟିଲେ । ଏଣୁ ସର୍ଗର ନାମ ମୁଗ୍ଧ ମୁକୁନ୍ଦ ।

ଅଷ୍ଟାଦଶ ଗୀତ ରାମକିରୀ ରାଗ ଓ ଯତିତାଳରେ ସଖୀର ରାଧାଙ୍କ ପ୍ରତି ଉକ୍ତି ହରିରଭିସରତି ବହତି ମୃଦୁ ପବନେ

କିମପରମଧିକସୁଖଂ ସଖୀ ଭବନେ ? ମାଧବେ, ମା କୁରୁ ମାନିନୀ ମାନମୟେ ତାଳଫଳାଦପି ଗୁରୁମତି ସରସମ୍, କିମୁ ବିଫଳୀ କୁରୁଷେ କୁଚ କଳଶମ୍ ।

ଶ୍ରୀ ଜୟଦେବଭଣିତମତି ଲଳିତମ୍ । ସୁଖୟତୁ ରସିକଜନଂ ହରିଚରିତମ୍ ।

ସଖୀ ବିପରୀତ ଆଚରଣ ଛାଡ଼ । ଭଲ ବୁଦ୍ଧି ଧର । ହେଇ ଦେଖ ତୁ କ'ଣ କଲୁ -

ସ୍ନିଗ୍ଧ ଯତ୍‌ପରୁଷାସି ଯତ୍ ପ୍ରଣମତି ସ୍ତବ୍ଧାସି ଯଦ୍ ରାଗିଣି
ଦ୍ୱେଷସ୍ଥାସି ଯଦୁନ୍ମୁଖେ ବିମୁଖତାଂ ଯାତାସି ତସ୍ମିନ୍ ପ୍ରିୟେ ।
ତଦ୍‌ଯୁକ୍ତଂ ବିପରୀତ କାରିଣି ତବ ଶ୍ରୀଖଣ୍ଡଚର୍ଚ୍ଚାବିଷଂ
ଶୀତାଂଶୁସ୍ତପନୋ ହିମଂ ହୁତବହଃ କ୍ରୀଡ଼ାମୁଦୋ ଯାତନାଃ ॥
(ନବମ ସର୍ଗଃ)

ହିତକାରିଣୀ ସଖୀର ଉପଦେଶର ଉପଯୋଗିତା ଅନୁଭବ କରିଛନ୍ତି କିଶୋରୀମଣି କିନ୍ତୁ ବିଳମ୍ବରେ ।

**ଦଶମ ସର୍ଗ - ଚତୁର ଚତୁର୍ଭୁଜ**

ଏହି ସର୍ଗରେ ରାଧିକାଙ୍କୁ ସଖୀମାନଙ୍କର ଉପଦେଶ କ୍ରମେ ଭର୍ତ୍ସନାରେ ପରିଣତ ହୋଇଛି । ସଖୀ କହିଲେ, 'ହେ ରାଧେ ! କାହିଁକି ଏଡ଼େ ନିଷ୍ଠୁର ହୋଇ ଅଭିମାନ ଭରେ କୃଷ୍ଣଙ୍କୁ ଫେରାଇ ଦେଲୁ ?' ସଖୀ ଯେତେବେଳେ, ଭର୍ତ୍ସନା ମଧ୍ୟ ବେଶୀ ସମୟ ଚାଲିପାରିବ ନାହିଁ । ପୁଣି ଅନୁନୟ ବିନୟ ଭାବରେ ବୁଝାନ୍ତେ ଶ୍ରୀମତୀଙ୍କର କୋପକ୍ରମେ ଊଣା ପଡ଼ିଆସିଲା । କୁଞ୍ଜବନରେ କ୍ରମେ ବାସନ୍ତିକ ସନ୍ଧ୍ୟା ଓହ୍ଲାଇ ଆସିଲା । ଧୀରେ ଧୀରେ ଆକାଶରେ ତାରକାବଳୀ ଉଦ୍ଭାସିତ ହୋଇ ଉଠିଲେ । ସାନ୍ଧ୍ୟସମୀରଣରେ ହିଲ୍ଲୋଳରେ ବିରହିଣୀ ରାଧାଙ୍କର କୃଷ୍ଣ ବିରହବ୍ୟଥା ବିଶେଷ ଭାବରେ ଜାଗି ଉଠିଲା । ଏହି ସମୟରେ କୁଞ୍ଜକୁଟୀରର ବାହାରେ କେହି ଜଣେ ଆସିଲାଭଳି ଶୁଷ୍କପତ୍ରମାନଙ୍କର ମର୍ମର ଧ୍ୱନି ଶୁଣାଗଲା ଏବଂ ଚନ୍ଦନର ସୁଗନ୍ଧରେ ବାୟୁମଣ୍ଡଳ ସୁରଭିତ ହୋଇ ଉଠିଲା ।

କମ୍ପିତ ତନୁମନ ନେଇ ଶ୍ରୀମତୀ ଚାହିଁ ଦେଖନ୍ତି ତ ଦ୍ୱାରଦେଶରେ ମଦନମନୋହର ଚତୁର ଚତୁର୍ଭୁଜ । ପ୍ରିୟ ଫେରିଆସିଛନ୍ତି ଦେଖି ପ୍ରେମ ବନ୍ୟାରେ ପ୍ଲାବିତ ହେଲା ରାଧାଙ୍କ ଅନ୍ତର । ସେ ଲାଜ ଭରାଦୃଷ୍ଟିରେ ସଖୀମାନଙ୍କୁ ତୀର୍ଯ୍ୟକ୍ ଭାବରେ ଚାହାନ୍ତେ ସଖୀଏ ତା'ର ଅର୍ଥ ବୁଝି ଅପସରି ଗଲେ । ଏହି ଅବସର ଚାଟୁକ୍ତି ଆରମ୍ଭିଲେ ମଧୁସୂଦନ ।

ଊନବିଂଶ ପ୍ରବନ୍ଧ (ରାଗ ଦେଶବରାଡ଼ି-ଅଷ୍ଟକ ତାଳାଭ୍ୟାଂ ଗୀୟତେ)

ଶ୍ରୀକୃଷ୍ଣଙ୍କର ରାଧାଙ୍କର ପ୍ରତି ଚାଟୁକ୍ତି -

ବଦସି ଯଦି କିଞ୍ଚିଦପି ଦନ୍ତରୁଚିକୌମୁଦୀ
ହରତିଦର ତିମିରମତିଘୋରମ୍ ।
ସ୍ଫୁରଦଧରସୀଧବେ ତବ ବଦନଚନ୍ଦ୍ରମା
ରୋଚୟତୁ ଲୋଚନଚକୋରମ୍
ପ୍ରିୟେ ଚାରୁଶୀଳେ ! ମୁଞ୍ଚ ମୟିମାନମନିଦାନମ୍
ସପଦି ମଦନାନଳୋ ଦହତି ମମ ମାନସମ୍,
ଦେହି ମୁଖକମଳ ମଧୁପାନମ୍ । ଧ୍ରୁବପଦମ୍

ଏହାପରେ କୃଷ୍ଣ କହୁଛନ୍ତି, ହେ ସୁଦନ୍ତୀ, ସତରେ ଯଦି ତୁମେ ମୋ ଉପରେ କୋପ କରିଛ ତୁମର ତୀକ୍ଷ୍ଣ ନୟନରେ ମୋତେ ଆଘାତ କର । କାରଣ ଦୋଷୀଲୋକକୁ ତୀକ୍ଷ୍ଣ ଅସ୍ତ୍ରର ଆଘାତ ହିଁ ସମୁଚିତ ଦଣ୍ଡ (ସତ୍ୟମେବାସି ଯଦି ସୁଦତିମୟି କୋପିନୀ ଦେହିଖର ନୟନ ଶରଘାତମ୍) ଦୋଷୀଲୋକକୁ ବନ୍ଧନରେ ପକାଯାଏ ଦେହରେ ଧାରୁଆ ଅସ୍ତ୍ରରେ ଖଣ୍ଡିଆ କରାଯାଏ । ତେଣୁ ହେ ପ୍ରିୟେ, ମୋତେ ଭୁଜ ବନ୍ଧନ ଦିଅ । ଦାନ୍ତରେ ମୋର ଅଧର ତଥା ସର୍ବାଙ୍ଗକୁ ଖଣ୍ଡିତ କର ଯେମିତି ତୁମ ମନ ଖୁସି ସେମିତି କର ।

ତୁମେ ମୋର ଅତି ଆଦରର ଅଳଙ୍କାର । ତୁମେ ମୋର ଜୀବନ । ତୁମେ ମୋ' ପାଇଁ ଭବସଂସାର ରୂପକ ଜଳନିଧିର ରତ୍ନ । ମୋ'ଠାରେ ତୁମ ହୃଦୟରେ ଅନୁରାଗ ବଢ଼ାଅ । ମୋର ବି ତାହାହିଁ ଇଚ୍ଛା । ତୁମର ଲୋଚନ ନୀଳପଦ୍ମପରି ତେଣୁ ସେ କନ୍ଦର୍ପର ନୀଳୋତ୍ପଳବାଣ ହିଁ ଅଟେ । କୁମ୍ଭରୂପକ ତୁମ୍ଭର ଏ କୁଚ ଯୁଗଳୋପରି ମଣିମୁକ୍ତାର ହାର ଧାରଣକର, ତାହା ତୁମ ହୃଦୟମଣ୍ଡଳ ଶୋଭା ବର୍ଦ୍ଧନ କରୁ ।

ଏଇଠି ହୁଏ ଗୀତଗୋବିନ୍ଦର ସବୁଠାରୁ ଲୋକପ୍ରିୟ ପଦର ଯୋଜନା । ଭଗବାନ୍ ହୋଇଛନ୍ତି ଭକ୍ତର ଅଧୀନ । ପ୍ରିୟ ମାଗେ ପ୍ରିୟାର ଚିରକାଂକ୍ଷିତ ଚରଣ ପରଶ ।

ସ୍ମରଗରଳଖଣ୍ଡନଂ ମମ ଶିରସିମଣ୍ଡନଂ
ଦେହି ପଦ ପଲ୍ଲବମୁଦାରମ୍,
ଜ୍ୱଳତି ମୟି ଦାରୁଣୋ ମଦନକଦନାନଳୋ
ହରତୁ ତଦୁପାହିତ ବିକାରମ୍ । ୭ ।

ସେହି ଏକ ଭାବନାର ବିକଶିତ ଚିତ୍ର ପରବର୍ତ୍ତୀ ଦୁଇଟି ଶ୍ଳୋକ 'ପରିହର କୃତାତଙ୍କେ ଶଙ୍କାଂ ତ୍ୱୟା ସତତଂ ଘନ' ଏବଂ 'ମୁଗ୍ଧ ବିଧେହି ମୟି ନିର୍ଦ୍ଦୟ ଦନ୍ତଦଂଶ' ପ୍ରଭୃତିରେ ଶ୍ରୀକୃଷ୍ଣ ରାଧାଙ୍କର ନାନାବିଧ ପୀଡ଼ନ ପ୍ରାର୍ଥନା କରିଛନ୍ତି ଯାହାଦ୍ୱାରା କି ପଞ୍ଚ ପ୍ରାଣ । ସ୍ମର ନ ନେଉ, ତୁମେ ତାକୁ ରକ୍ଷା କର ।

ମୁଗ୍ଧେ ବିଧେହି ମୟି ନିର୍ଦ୍ଦୟ ଦନ୍ତଦଂଶ -
ଦୋର୍ବଲ୍ଲିବନ୍ଧ ନିବିଡ଼ ସ୍ତନ ପୀଡ଼ନାନି ।
ଚଣ୍ଡିତ୍ୱମେବ ମୁଦମଞ୍ଚ (ମୁଦମ୍ ) ନ ପଞ୍ଚବାଣ-
ଚାଣ୍ଡାଳକାଣ୍ଡ ଦଳନାଦସବଃ ପ୍ରୟାନ୍ତୁ । (ବସନ୍ତ ତିଳକ)

'ତୁମର ବୃଥାମୌନ ଭାଃ, ବଡ଼ କଷ୍ଟ ହେଉଛି, କୋକିଳର ପଞ୍ଚମ ତାନରେ ଆଳାପ କରି ମୋର ସନ୍ତାପ ଦୂର କର । ତୁମର ବିମୁଖ ଭାବ ଦୂର କର କିନ୍ତୁ ମୋତେ ତ୍ୟାଗ କର ନାହିଁ (ମୋତେ ଚାହିଁ) ହେ ମୁଗ୍ଧେ । ଅତିଶୟ ସ୍ନେହଶୀଳ ମୁଁ (ଭଗବାନ କୃଷ୍ଣ) ନିଜେ ଉପସ୍ଥିତ ହୋଇଛି (ଆଉ ହତାଦର କର ନାହିଁ) । ଏହାର ପରବର୍ତ୍ତୀ ଦୁଇଟି ଶ୍ଳୋକରେ ଶ୍ରୀକୃଷ୍ଣ ରାଧାଙ୍କର ଯେଉଁ ପ୍ରଶଂସା କରିଛନ୍ତି ସେଥିରେ ପ୍ରଥମଟି ଯଥା 'ବନ୍ଧୁକଦ୍ୟୁତି' ଇତ୍ୟାଦି ଶ୍ଳୋକରେ ନାନାବିଧ ପଞ୍ଚମ ପ୍ରକାର ପୁଷ୍ପ ମାଧ୍ୟମରେ ଏବଂ 'ଦୃଶୌ ତବ ମଦାଳସେ' ଶ୍ଳୋକରେ ଛଅ ଜଣ ଅରସରାଙ୍କର ନାମ ଦ୍ୱାରା ରାଧାଙ୍କର ରୂପର ପ୍ରଶଂସା କରିଛନ୍ତି, ଯାହାର ସେବା ଦ୍ୱାରା ପୁଷ୍ପ ସମ୍ଭବତଃ ପୃଥିବୀକୁ ଜୟ କରୁଛି ।

ବନ୍ଧୁକ ଦ୍ୟୁତିବାନ୍ଧବୋ[illegible]ଂ ମଧୁରଂ ସ୍ନିଗ୍ଧୋ ମଧୁକଚ୍ଛବି-
ର୍ଗଣ୍ଡେଚଣ୍ଡି ! ଚକାସ୍ତି ନୀଳନଳିନ ଶ୍ରୀମୋଚନଂ ଲୋଚନମ୍ ।
ନାସାଭ୍ୟେତି ତିଳ ପ୍ରସୂନପଦବୀଂ କୁନ୍ଦାଭଦନ୍ତି ପ୍ରିୟେ
ପ୍ରାୟସ୍ତ୍ୱନ୍ମୁଖସେବୟା ବିଜୟତେ ବିଶ୍ୱଂସ ପୁଷ୍ପାୟୁଧଃ ।

ସେହିପରି,

ଦୃଶୌ ତବ ମଦାଳସେ ବଦନମିନ୍ଦୁସନ୍ଦୀପନଂ
ଗତିର୍ଜନମନୋରମା ବିଧୁତ(ବିଦିତ) ରମ୍ଭମୁରୁଦ୍ୱୟମ୍ ।
ରତିସ୍ତବ କଳାବତୀ ରୁଚିରଚିତ୍ର ଲେଖେ ଭ୍ରୁବା-
ବହା ବିବୁଧଯୌବତଂ ବହସି ତନ୍ୱି ପୃଥ୍ୱୀଗତା ।

**ଏକାଦଶ ସର୍ଗଃ** (ସାନନ୍ଦ ଗୋବିନ୍ଦ)

ପ୍ରସ୍ତୁତ ସର୍ଗରେ ରାଧାଙ୍କର ଦୁର୍ଜୟମାନ ଭାଙ୍ଗିବା ପାଇଁ ଶ୍ରୀକୃଷ୍ଣଙ୍କର ଯେତେ କାକୁତି ମିନତି ଚାଟୁବାଣୀ ଏବଂ ସଖୀଙ୍କର ଚେଷ୍ଟା ତାହା ସବୁ ପ୍ରୟୋଗ ହୁଅନ୍ତେ ତାହା ଫଳଦେବାକୁ ଆରମ୍ଭ କରିଛି । ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡ ଯାହାକୁ ଖୋଜିଲେ ପାଏ ନାହିଁ, ସେହି ପରମ ପ୍ରେମମୟ (ଅଥବା କାରୁଣିକ) ଭଗବାନ୍ ଶ୍ରୀକୃଷ୍ଣ ରୂପରେ (ଭକ୍ତି ସ୍ୱରୂପିଣୀ) ଅଭିମାନିନୀ ଶ୍ରୀମତୀଙ୍କ ପାଦତଳେ ନତଜାନୁ ହୋଇ କହିଲେ 'ଦେହି ପଦପଲ୍ଲବମ୍ ଉଦାରମ୍' ଏଥିରେ କେଉଁ ମାନିନୀର ଧୈର୍ଯ୍ୟ ରହିବ ? ତେଣୁ ଶ୍ରୀମତୀଙ୍କର ମୁଖରେ ଫୁଟି ଉଠିଲା ହସର କୁସୁମ । ଅଭିମାନ ଦୂର ହୋଇଗଲା । ଅଭିସାର ପାଇଁ ପ୍ରସ୍ତୁତ (ଯୋଗେଶ୍ୱର) ପୁଣି କେଶରକୁଞ୍ଜ ଶେଯରେ ଶ୍ରୀରାଧାଙ୍କର ଅପେକ୍ଷାରେ ସମୟ ଗଣିବାରେ ଲାଗିଲେ । କବି ସଖୀଙ୍କ ଦ୍ୱାରା ରାଧିକାଙ୍କୁ କୁଞ୍ଜ ଶଯ୍ୟାର ଦ୍ୱାର ଦେଶରେ ନେଇ ଛାଡ଼ି ଦେଇ ଆସିଲେ । ଜୀବ ଓ ପରମର ମିଳନ ଉତ୍ସବ ସଂଘଟିତ ହେଲା । ଏଣୁ ଏସର୍ଗର ନାମ ସାନନ୍ଦ ଗୋବିନ୍ଦ ।

ବାଟରେ ନେବାବେଳେ ସଖୀ ରାଧାକୁ କହି କହି ନେଉଛି - ସଖୀର ଉପଦେଶ ଏଠାରେ ବିଂଶ ଓ ଏକବିଂଶ ଦୁଇଟି ପ୍ରବନ୍ଧ ଗୀତରେ ରୂପାୟିତ ଯଥା-

ବିରଚିତ ଚାଟୁ ବଚନରଚନଂ ଚରଣେ ରଚିତ ପ୍ରଣିପାତମ୍ ।
ସଂପ୍ରତି ମଞ୍ଜୁଳବଞ୍ଜୁଳସୀମନି କେଳି ଶୟନମନୁୟାତମ୍ ।
ମୁଗ୍ଧେ, ମଧୁମଥନମନୁଗତମ୍ ଅନୁସର
ରାଧିକେ ।। ଧ୍ରୁବମ୍ ।।

ଏକବିଂଶ ପ୍ରବନ୍ଧରେ ଗୁରୁପରି ଜୀବାତ୍ମଭୂତ ରାଧାଙ୍କୁ ପରମାତ୍ମା କୃଷ୍ଣଙ୍କ ସହିତ ମିଳିତ ହେବାକୁ ପ୍ରେରଣା ନେଇ କହୁଛି - ବରାଡ଼ୀ ରାଗ (ରୂପକତାଳ) ମାଧ୍ୟମରେ ଗୀତ ପ୍ରବନ୍ଧରେ -

ମଞ୍ଜୁତର-କୁଞ୍ଜତଳ-କେଳିସଦନେ
ବିଳସ ରତିରଭସ-ହସିତ ବଦନେ
ପ୍ରବିଶ ରାଧେ, ମାଧବ ସମୀପମିହ ।। ଧ୍ରୁବ ।।

୨୧ଶ ଗୀତର ସାରକଥା ପରବର୍ତ୍ତୀ ଶ୍ଳୋକରେ -

ତ୍ୱାଂ ଚିତ୍ତେନ ଚିରଂ ବହନ୍ନୟମତିଶ୍ରାନ୍ତୋ ଭୃଶଂ ତାପିତଃ-
କନ୍ଦର୍ପେଣ ଚ ପାତୁମିଚ୍ଛତି ସୁଧାସଂବାଧ ବିମ୍ବାଧରମ୍ ।
ଅସ୍ୟାଙ୍ଗ ତଦଳଂକୁରୁ କ୍ଷଣମିହ ଭ୍ରୂକ୍ଷେପଲକ୍ଷ୍ମୀଲବ-
କ୍ରୀତେ ଦାସ ଇବୋପସେବିତ ପଦାମ୍ଭୋଜେ କୁତଃ ସମ୍ଭ୍ରମଃ ।

ଏହାପରେ କିପ୍ରକାର (ଏକରସଂ) ହରିଙ୍କୁ ରାଧାକୁଞ୍ଜରେ ଦେଖିଲେ ଦ୍ୱାବିଂଶ ପ୍ରବନ୍ଧରେ ବରାଡ଼ୀ ରାଗରେ ଗାନ କରାଯାଇଛି -

ରାଧା ବଦନ ବିଲୋକନ ବିକସିତ ବିବିଧ ବିକାର ବିଭଙ୍ଗମ୍,
ଜଳନିଧିମିବ ବିଧୁମଣ୍ଡଳ ଦର୍ଶନ-ତରଳିତ-ତୁଙ୍ଗ-ତରଙ୍ଗମ୍
ହରିମେକରସଂ, ଚିରମଭିଳଷିତବିଳାସମ୍,
ସା ଦଦାର୍ଶ ଗୁରୁ-ହର୍ଷ ବଶମ୍ୱଦବଦନଙ୍ଗ ବିକାଶମ୍ । ଧ୍ରୁବପଦମ୍ ।
ଶ୍ରୀ ଜୟଦେବ ଭଣିତ ବିଭବ ଦ୍ୱିଗୁଣିକୃତ ଭୂଷଣ ଭାରମ୍ ।
ପ୍ରଣମତ ହୃଦିବିନିଧାୟ ହରିଂ ସୁଚିରଂ ସୁକୃତୋ ଦୟସାରମ୍ ।।

ଅନନ୍ତର ଅତିକ୍ରମ୍ୟା ପାଇଁ ଶ୍ରବଣ ପଥ ପର୍ଯ୍ୟନ୍ତ ଗମନ ଏବଂ 'ଭଜନ୍ତ୍ୟାସ୍ତନ୍ତାନ୍ତଂ କୃତକପାଏ କଣ୍ଡୁତିପିହିତ ଏହି ଦୁଇ ଶିଖରିଣୀ ଛନ୍ଦ ରଚିତ ଶ୍ଳୋକରେ ରାଧାଙ୍କର ସାତ୍ତ୍ୱିକ ଭାବମାନେ ପ୍ରବଳ ହୁଅନ୍ତେ - ଅବସ୍ଥା ଦେଖି ସଖୀମାନେ ଅପସରିଗଲେ । ପୁନଃ - 'ସଲଜ୍ଜା ଲଜାପି ବ୍ୟପନାଦିବାହୁର ମୃଗଦୃଶଃ' ରାଧାଙ୍କର ଚିରାକାଂକ୍ଷିତ ପୁନର୍ମିଳନରେ ଆନନ୍ଦାତିଶଯ୍ୟ ଅନୁଭବ କରିବାରୁ ଗୋବିନ୍ଦକୁ ଲକ୍ଷ୍ୟ ରଖି ସର୍ବନାମ ହେଲା ସାନନ୍ଦ ଗୋବିନ୍ଦ ।

ଦ୍ୱାଦଶ ସର୍ଗଃ - ସୁପ୍ରୀତଃପୀତାମ୍ବରଃ - ପୂର୍ବସର୍ଗମାନଙ୍କର ମାନ ଅଭିମାନ ବିଜଡ଼ିତ ବିପ୍ରଲମ୍ଭର ଏହି ଅନ୍ତିମ ସର୍ଗରେ ସମାପ୍ତି ଘଟିଛି । କେଳିକୁଞ୍ଜର ଶଯ୍ୟା ନିକଟରେ ପଦ୍ମମୁଖୀ କାମ ପ୍ରବଣା କାମିନୀ ଶିରୋମଣି ଶ୍ରୀମତୀଙ୍କୁ ପାଇ କୃଷ୍ଣ ଦେଖିଲେ ପ୍ରିୟାଙ୍କ ମନରୁ ଅଭିମାନର କାଳିମା ଦୂର ହୋଇଯାଇଛି । କ୍ରୀଡ଼ାବନତ ମୁଖୀ ଶ୍ରୀରାଧାଙ୍କର ମୁଖରେ ସଲଜ୍ଜ ହସ ଫୁଟି ଉଠୁଛି ।

କିଶଳୟଶୟନତଳେ କୁରୁ କାମିନି ଚରଣ ନଳିନ ବିନିବେଶମ୍
ତବପଦପଲ୍ଲବ ବୈରୀ ପରାଭବ ମିଦାମନୁଭବତୁ ସୁବେଶମ୍ ।
କ୍ଷଣମଧୁନା, ନାରାୟର ମନୁଗତ ମନୁସର ରାଧିକେ ।। ଧ୍ରୁବ ।।
କରକମଳେନ କରୋମି ଚରଣ ମହମାଗମିତାସି ବିଦୂରମ୍
କ୍ଷଣମୁପକୁରୁ ଶୟନୋପରି ମାମିବ ନୂପୁର ମନୁଗତିଶୂରମ ।

ଏ ଗୀତର ଭଣିତାରେ କବି କହିଲେ -

ଶ୍ରୀ ଜୟଦେବ ଭଣିତ ମିଦମନୁପଦନିଗଦିତ-ମଧୁରିପୁମୋଦମ୍ ।
ଜନୟତୁ ରସିକନେଷୁ ମନୋରମରତିରସ-ଭାବବିନୋଦମ୍ ।।

ଶ୍ରୀକୃଷ୍ଣଙ୍କର ମିଳନ ପାଇଁ ରାଧିକାଙ୍କୁ ଅନୁରୋଧ କରିବା ପରେ 'ଶ୍ରୀମତୀଙ୍କର ଅନୁକୂଳତା ହେତୁ ସମ୍ଭୋଗର ବର୍ଣ୍ଣନା ଆରମ୍ଭ ହୋଇଛି । ବିସ୍ତୃତ ବର୍ଣ୍ଣନାରେ ରସାଣିତ ସମ୍ଭୋଗ ଶୃଙ୍ଗାର ନିମ୍ନୋକ୍ତ ଶ୍ଳୋକମାନଙ୍କରେ ଚରିତାର୍ଥ ହୋଇଛି -

ପ୍ରତ୍ୟୁହଃ ପୁଲକାଙ୍କୁରେଣ ନିବିଡ଼ାଶ୍ଳେଷେ ନିମେଷେଣଚ
କ୍ରୀଡ଼ାକୂତ ବିଲୋକନେଽଧରସୁଧାପାନେ କଥା ନର୍ମଭିଃ ।
ଦୋର୍ଭ୍ୟାଂ ସଂଯମିତଃ ପୟୋଧରଭରେଣାପୀଡ଼ିତଃ ପାଣିଜୈ-
ରବିଦ୍ଧୋ ଦଶନୈଃ କ୍ଷତାଧର ପୁଟଃ ଶ୍ରୋଣୀତଟେନାହତଃ ।
ହସ୍ତେନାନମିତଃ କୁଚୋଧରସୁଧାପାନେନ ସମ୍ମୋହିତଃ
କାନ୍ତଃ କାମପି ତୃପ୍ତିମାପ ତଦହୋ କାମସ୍ୟ ବାମାଗତିଃ ।

ଅତ୍ରାନ୍ତରେ ଶ୍ରୀମତୀଙ୍କ ସାହସରେ ବିପରୀତ ରତିକଥା ବର୍ଣ୍ଣିତ ହୋଇଛି - ଶାର୍ଦ୍ଦୁଳ ବିକ୍ରୀଡ଼ିତ ଶ୍ଳୋକରେ -

ମାରଙ୍କେ ରତିକେଳିସଂକୁଳରଣାରମ୍ଭେ ତୟା ସାହସ-
ପ୍ରାୟଂ କାନ୍ତଜୟାୟ କିଞ୍ଚିଦୁପରି ପ୍ରାରମ୍ଭି ଯତ୍-ସମ୍ଭ୍ରମାଦ୍ ।
ନିଷ୍ପନ୍ଦା ଜଘନସ୍ଥଳୀ ଶିଥିଳତା ଦୋର୍ବଲ୍ଲୀରୁତ୍‌କମ୍ପିତଂ
ବକ୍ଷୋ ମୀଳିତମକ୍ଷି ପୌରୁଷରସଃ ସ୍ତ୍ରୀଣାଂ କୁତଃ ସିଦ୍ଧ୍ୟତି ।।

ଏହା ପରେ ଶରୀରରେ ଲେପିତ ଅଙ୍ଗରାଗ ସବୁ ରତିକେଳି ଦ୍ୱାରା ନଷ୍ଟ ହୋଇଯାଇଥିବାରୁ ଗୃହ ଗମନକାଳରେ ଲୋକଚକ୍ଷୁରେ ପଡ଼ିନିନ୍ଦିତ ହେବା ଭୟରେ ରାଧା ରତିକ୍ଳାନ୍ତ କାନ୍ତ ଶ୍ରୀକୃଷ୍ଣଙ୍କୁ ତାଙ୍କ ଶରୀର ଯଥା ପୂର୍ବଂ ସମସ୍ତ ଅଙ୍ଗରାଗ ଅଙ୍କନ କରିବାକୁ ଆଦେଶ ଦେଲେ ।

ଚତୁର୍ବିଂଶ ପ୍ରବନ୍ଧ - ରାମକିରୀ ରାଗରେ (ଯତିତାଳରେ) ଗାନ କରାଯିବ - (ସ୍ୱାଧୀନ ଭର୍ତ୍ତୃକା ବର୍ଣ୍ଣନେ)

କୁରୁ ଯଦୁନନ୍ଦନ ଶିଶିରତରେଣ କରେଣ ପୟୋଧରେ
ମୃଗମଦପତ୍ରକମତ୍ର ମନୋଭବ ମଙ୍ଗଳ କଳଶ ସହୋଦରେ ।
ନିଜଗାଦ ସା, ଯଦୁନନ୍ଦନେ କ୍ରୀଡ଼ତି ହୃଦୟାନନ୍ଦନେ । ଧ୍ରୁବମ୍ ।

ଏହି ଗୀତର ମର୍ମ ପରବର୍ତ୍ତୀ ଶ୍ଳୋକରେ ସ୍ପଷ୍ଟ ହୋଇଛି -

ରଚୟ କୁଚୟୋପତ୍ରଂ ଚିତ୍ରଂ କୁରୁଷ୍ୱ କପୋଳୟୋ-
ର୍ଘଟୟ ଜଘନେ କାଞ୍ଚିମଞ୍ଚ ସ୍ରଜା କବରୀଭରମ୍ ।
କଳୟ ବଳୟଶ୍ରେଣୀଂ ପାଣୌ ପଦେ କୁରୁ ନୂପୁରା-
ବିତି ନିଗଦିତଃ ପ୍ରୀତଃ ପୀତାମ୍ବରୋଽପି ତଥାକରୋତ୍ ।
(ହରିଣୀ)

ଭକ୍ତକବି ଜୟଦେବ ଏହିଠାରେ ପାଠକଙ୍କୁ ଆଣି ପହଞ୍ଚାଇବା ପରେ ନିଜର କାର୍ଯ୍ୟ ଶେଷ କରିଛନ୍ତି । କୃଷ୍ଣ ତଦ୍‌ଗତପ୍ରାଣ କବିଙ୍କ ସର୍ବାନ୍ତ କରଣରେ ଇଚ୍ଛା ପ୍ରତ୍ୟେକ ମନୁଷ୍ୟର ଚିନ୍ତା ଭାବନା ଏହି ନିତ୍ୟ ରାଧାକୃଷ୍ଣ ରାସଲୀଳାରେ ପୂର୍ଣ୍ଣ ହେଉ ।

ମାଟିର ଧରଣୀକୁ ସୁଖଶାନ୍ତି ଓହ୍ଲାଇ ଆସୁ । ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ମହାମିଳନର ଗୀତ ଗାଇ ଜୀବାତ୍ମା ପରମାତ୍ମାରେ ବିଲୀନ ହୋଇଯାଉ । ପରିଶେଷରେ ଜୟଦେବ ଗୋଟିଏ ଧାଡ଼ି ଉଲ୍ଲେଖ କରନ୍ତି ।

ଶ୍ରୀଭୋଜଦେବ ପ୍ରଭବସ୍ୟ ବାମାଦେବୀ ସୁତ ଶ୍ରୀଜୟଦେବକସ୍ୟ
ପରାଶରାଦି ପ୍ରିୟବର୍ଗ କଣ୍ଠେ ଶ୍ରୀଗୀତଗୋବିନ୍ଦ କବିତ୍ୱମସ୍ତୁ ।

ଅଧ୍ୟାପକ
ଉତ୍କଳ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର - ୪



# ଲେଖକମାନଙ୍କ ଉପରେ ଗୀତଗୋବିନ୍ଦର ପ୍ରଭାବ

ଜଟାଧାରୀ ମିଶ୍ର

**ଭ**କ୍ତକବି ଜୟଦେବ ଓଡ଼ିଶାର ଏକ ପ୍ରତିଷ୍ଠିତ ପ୍ରତିଭା । ସେ ଶୋତ୍ରୀୟ ବ୍ରାହ୍ମଣ ପରିବାରରେ ପୁରୀ ବାଲିପାଟଣା ବ୍ଲକ୍‌ର କେନ୍ଦୁବିଲ୍ୱ (ଯାହା ବର୍ତ୍ତମାନ 'କେନ୍ଦୁଲୀ' ନାମରେ ପରିଚିତ) ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସେ ଜଗନ୍ନାଥଙ୍କ ପରମ ଭକ୍ତ ଥିଲେ । ତାଙ୍କ ଦ୍ୱାରା ଲିଖିତ 'ଗୀତଗୋବିନ୍ଦ' ଭାରତର କୋଣ ଅନୁକୋଣରେ 'ଜୟଦେବ'ଙ୍କୁ ଏକ ମହାନ୍ କବି ରୂପେ ପରିଚିତ କରିଥିଲା । ଗୀତଗୋବିନ୍ଦର ଲୋକପ୍ରିୟତା ଏପରି ଭାବରେ ବଢ଼ି ଯାଇଥିଲା ଯେ ତତ୍କାଳୀନ ସାହିତ୍ୟ, ସଂସ୍କୃତି ଉପରେ ଏହା ଯଥେଷ୍ଟ ପ୍ରଭାବ ପକାଇଥିଲା । ବିଭିନ୍ନ ଭାଷାଭାଷୀ ଅଞ୍ଚଳରେ ଥିବା କବି, ଲେଖକ, ଭାବୁକ, ଚିନ୍ତକ ତଥା କୃଷ୍ଣପ୍ରେମୀ ଭକ୍ତମାନଙ୍କୁ ଆକୃଷ୍ଟ କରିଥିଲା । 'ଗୀତଗୋବିନ୍ଦ' କାବ୍ୟଟି ଜୟଦେବଙ୍କର କୃତ ବୋଲି ଗ୍ରହଣ କରିବା ପରିବର୍ତ୍ତେ ଏହା ପରମାତ୍ମାଙ୍କର ନିଜସ୍ୱ ବୋଲି ସମାଜ ଗ୍ରହଣ କରି ନେଇଥିଲା । ଏହି ମହାକାବ୍ୟରେ ରାଧାକୃଷ୍ଣଙ୍କର ପ୍ରେମଲୀଳା ବର୍ଣ୍ଣନା କରାଯାଇଥିଲେ ମଧ ଏହା ସାଧାରଣ ପ୍ରେମଲୀଳା ନଥିଲା । ଏ ପ୍ରେମଥିଲା ଶାଶ୍ୱତ ଏବଂ ଚିରନ୍ତନ । ଏହି ମହାକାବ୍ୟଟି କବିତା, ଗୀତ, ନାଟ୍ୟପ୍ରେମ, ଭକ୍ତି ଓ ଶୃଙ୍ଗାରର ଏକ ସମନ୍ୱିତ ଗ୍ରନ୍ଥ । ଏହି ମହାକାବ୍ୟଟି ସଂପୂର୍ଣ୍ଣ ହେବା ପରେ ଏହାର ନାମକରଣ ପାଇଁ ଜୟଦେବ ବିବ୍ରତ ହୋଇପଡ଼ି ଥିଲେ । ଶେଷରେ ସେ ନିଷ୍ପତ୍ତି କଲେ ଏହି କାବ୍ୟଟି ଗୋବିନ୍ଦଙ୍କ ପାଇଁ ଉଦ୍ଦିଷ୍ଟ ତଥା ଏଥିରେ ବର୍ଣ୍ଣିତ ଗୀତଗୋବିନ୍ଦଙ୍କର ଏବଂ ଶେଷରେ ଜୟଦେବ ଏହି ମହାକାବ୍ୟଟି ଗୋବିନ୍ଦଙ୍କୁ ଉତ୍ସର୍ଗ କରି ଦେଇଥିଲେ ।

'ସ୍ୱୟଂ କ୍ୟତେନ ଗୀତେନ ତୋଷୟିଷ୍ୟା ମ୍ୟହଂ ହରିଂ
ଇତି ନିଶ୍ଚିତ୍ୟ ନିର୍ମାୟ ଗୀତଗୋବିନ୍ଦ ନାମକଂ ।'

**ଭାରତୀୟ କବି ଓ ଲେଖକମାନଙ୍କ ଉପରେ ଗୀତଗୋବିନ୍ଦର ପ୍ରଭାବ -**

କବି ଜୟଦେବ ରାଧାମାଧବଙ୍କର ଲୀଳାଟି ବସନ୍ତଋତୁରେ ହୋଇଥିବାର ପ୍ରଥମେ ଗୀତଗୋବିନ୍ଦରେ ବର୍ଣ୍ଣନା କରିବା ପରେ ପରବର୍ତ୍ତୀ ଓଡ଼ିଶାର କବି ଓ ଲେଖକମାନେ ଏହାକୁ ଗ୍ରହଣ କରିନେଇ କବିଙ୍କୁ ବସନ୍ତରାସର ପ୍ରବର୍ତ୍ତକ ରୂପେ ବର୍ଣ୍ଣନା କରିଛନ୍ତି । ଜୟଦେବଙ୍କର ପରବର୍ତ୍ତୀ କବି ଶାରଳା ଦାସ ରାଧାକୃଷ୍ଣଙ୍କର ଶୃଙ୍ଗାର ବସନ୍ତ ଋତୁରେ ହୋଇଥିବା ବିଷୟ ବର୍ଣ୍ଣନା କରିଅଛନ୍ତି । ଶାରଳା ଦାସଙ୍କର ପରବର୍ତ୍ତୀ କବି ଦେବଦୁର୍ଲ୍ଲଭ ଦାସ ମଧ ତାଙ୍କର କୃତ 'ରହସ୍ୟ ମଞ୍ଜରୀ' କାବ୍ୟରେ ଜୟଦେବଙ୍କୁ ଅନୁକରଣ କରି ବସନ୍ତ ରାଗ ବିଷୟରେ ବର୍ଣ୍ଣନା କରିଅଛନ୍ତି । ଆଲୋଚକ ନଗେନ୍ଦ୍ର ପ୍ରଧାନ 'ଜୟଦେବ'ଙ୍କୁ ବସନ୍ତ ରାସର ପ୍ରବର୍ତ୍ତକ ରୂପେ ବର୍ଣ୍ଣନା କରି କହିଛନ୍ତି, ଜୟଦେବଙ୍କର ପୂର୍ବରୁ ବସନ୍ତ ରାସ ବା ରାଧାମାଧବଙ୍କର ଲୀଳା ବସନ୍ତଋତୁରେ କେହି ହେଲେ ବର୍ଣ୍ଣନା କରିନଥିବା ଜଣାଯାଏ ।

ଗୀତଗୋବିନ୍ଦ ମୂଳ ଲେଖାଟି ସଂସ୍କୃତରେ ହୋଇଥିଲେ ମଧ୍ୟ ଏହାର ସୁଦୂର ପ୍ରସାରୀ ପ୍ରଭାବ ଓଡ଼ିଆ, ହିନ୍ଦୀ, ବେଙ୍ଗଲୀ, ମରାଠୀ, ଆସାମୀ ସାହିତ୍ୟ ତଥା ଏହାର କବିମାନଙ୍କ ଉପରେ ପ୍ରଭାବ ପକାଇ ଥିଲା । ଏହା ଏକ ହୃଦୟସ୍ପର୍ଶୀ ଏବଂ ଧର୍ମଭିତ୍ତିକ ମହାକାବ୍ୟ । ଏହାର ପ୍ରଭାବରେ କବି ଦୀନକୃଷ୍ଣ, ଧରଣୀଧର, ବଳରି ଦାସ, ଉଦ୍ଧବ ଦାସ, ପିଣ୍ଡିକି ଶ୍ରୀଚନ୍ଦନ, ଶ୍ୟାମ ସୁନ୍ଦର ଭଞ୍ଜ ପ୍ରଭୃତି କବିମାନେ ରାଧା କୃଷ୍ଣଙ୍କର ଅନାବିଳ ପ୍ରେମକୁ ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଅଛନ୍ତି । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟଦେବଙ୍କୁ ଏକ ମହାନ୍ କବି ରୂପରେ ବର୍ଣ୍ଣନା କରି ଲେଖିଛନ୍ତି,

'କହେ ଉପଇନ୍ଦ୍ର ଭଞ୍ଜ ଟେକି ବେନି ବାହାକୁ
ରବିତଳେ କବି ପଣେ ନମାନେ ମୁଁ କାହାକୁ ।
ଜୟଦେବ ଦୀନକୃଷ୍ଣ ଏକା ମୋର ଶରଣ
ଆନ କବିଙ୍କର ମୁଣ୍ଡେ ମୋର ବାମ ଚରଣ ।'

କବି ଅଭିମନ୍ୟୁ ସାମନ୍ତସିଂହାର ଗୀତଗୋବିନ୍ଦର ବର୍ଣ୍ଣ, ସୌରଭ ଏବଂ ସ୍ୱାଦରେ ମଜ୍ଜିଯାଇ ନିଜର କାବ୍ୟରେ ଏହାର ପ୍ରତିଫଳନ କରିଛନ୍ତି । କବି ମାୟାଧର ମାନସିଂଙ୍କ ମତରେ 'ଗୀତଗୋବିନ୍ଦ'ର ପ୍ରଭାବ ଯେପରି ଭାବରେ ବିଭିନ୍ନ ଭାଷାଭାଷୀ ଅଞ୍ଚଳରେ ଓଡ଼ିଶାର କଳା, ସ୍ଥାପତ୍ୟ, ସଂସ୍କୃତି, ସାହିତ୍ୟ ଓ ବୈଭବକୁ ପହଞ୍ଚାଇ ଦେଇଛି ତାହା ପ୍ରତ୍ୟେକ ଓଡ଼ିଆମାନଙ୍କର ପାଇଁ ଗର୍ବ ଓ ଗୌରବ । ଓଡ଼ିଶାର ସୁନାମଧନ୍ୟ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ଗୀତଗୋବିନ୍ଦକୁ ଓଡ଼ିଶାର ଇତିହାସ, ପରମ୍ପରା, ସାହିତ୍ୟ, ନୃତ୍ୟ ସଂଗୀତ ଓ ଆଧ୍ୟାତ୍ମିକ ଧର୍ମଧାରାର ଏକ ବହୁମୂଲ୍ୟ ଗ୍ରନ୍ଥ ରୂପେ ବର୍ଣ୍ଣନା କରିଅଛନ୍ତି ।

ମୈଥିଳୀ କବି ଚନ୍ଦ୍ରଦତ୍ତ ସଂସ୍କୃତରେ ଯେଉଁ ଭକ୍ତିମାଳା ନାମକ ଗ୍ରନ୍ଥ ରଚନା କରିଛନ୍ତି, ସେଥିରେ ସେ ଗୀତଗୋବିନ୍ଦରେ ବର୍ଣ୍ଣିତ ରାଧାକୃଷ୍ଣ ଲୀଳାକୁ ମଧ୍ୟ ସ୍ଥାନ ଦେଇଛନ୍ତି ଏବଂ ଜୟଦେବଙ୍କୁ ଓଡ଼ିଶାର ଏକ ମହାନ୍ କବି ରୂପେ ବର୍ଣ୍ଣନା କରିଅଛନ୍ତି । ଜୟଦେବ ଓଡ଼ିଶାର ଏବଂ ତାଙ୍କର ଜନ୍ମ କେନ୍ଦୁବିଲ୍ୱ ଗ୍ରାମରେ ହୋଇଥିବା ବିଷୟ ମଧ୍ୟ ବର୍ଣ୍ଣନା କରିଅଛନ୍ତି ।

'ଜଗନ୍ନାଥ ପୁରୀପ୍ରାନ୍ତେ ଦେଶେ ଚୈବୋତ୍ କଳଭିଧେ
କେନ୍ଦୁବିଲ୍ୱ ଇତି ଖ୍ୟାତୋ ଗ୍ରାମୋ ବ୍ରାହ୍ମଣ ସଂକୂଳଃ
ତତ୍ରୋଦବଳେ ଦ୍ୱିରଜା ଜାତେ ଜୟଦେବ ଇତି ଶ୍ରୁତ ।'

ବଙ୍ଗଳାର ବିଶିଷ୍ଟ କବି ଡଃ ସୁକୁମାର ସେନ 'ଗୀତଗୋବିନ୍ଦ'କୁ ଓଡ଼ିଶାର ସ୍ଥାପତ୍ୟ ଶିଳ୍ପର ଏକ ପ୍ରତିଫଳନ ରୂପେ ବର୍ଣ୍ଣନା କରିଛନ୍ତି । ଜୟଦେବଙ୍କର ଜନ୍ମସ୍ଥାନ ଉପରେ ମନ୍ତବ୍ୟ ଦେବାକୁ ଯାଇ କହିଛନ୍ତି, 'ଉଡ଼ିଶ୍ୟାୟ ପୁରୀର ଅନତି ଦୂରରେ ପ୍ରାଚ୍ୟ ନଦୀର ଧାରେ କେନ୍ଦୁବିଲ୍ୱ ଗ୍ରାମ ଆଛେ । ମନ ହଇତେ ପାରେ ଯେ, ଗୀତଗୋବିନ୍ଦର ଗୀତ ଆଦିରସ ଉଡ଼ିଶାର ମନ୍ଦିରରେ ଏକ ସ୍ଥାପତ୍ୟ ଶିଳ୍ପୋର ପ୍ରତିଫଳନ, ସୁତାରଂ ଜୟଦେବ ଉଡ଼ିଶା ନିବାସୀ ହଇବେନ ।'

କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଡକ୍ଟର ଆଶୁତୋଷ ଭଟ୍ଟାଚାର୍ଯ୍ୟ ୧୯୬୮ ମସିହା ପ୍ରଜାତନ୍ତ୍ର ବିଷୁବ ମିଳନ ସମ୍ମିଳନୀରେ 'ଗୀତଗୋବିନ୍ଦ' ଏବଂ 'ଜୟଦେବ'ଙ୍କର ଭୂୟସୀ ପ୍ରଶଂସା କରିବା ସହିତ ଦୃଢ଼ କଣ୍ଠରେ ଘୋଷଣା କରିଥିଲେ ଯେ, ସେ ବଙ୍ଗଳାର ନୁହନ୍ତି ସେ ଓଡ଼ିଶାର ଏକ ବରପୁତ୍ର ।

'ଜୟଦେବ ଛିଲେନ ଉଡ଼ିଆ । ବୀରଭୂମିତେ ଅନୁଷ୍ଠିତ ବାତ୍ସରିକମେଲା ଆସଲେ ବାଉଲମେଲା ଏବଂ ଜୟଦେବ ଜନ୍ମେର ସଙ୍ଗେ ଏହାର କୋନ ସମ୍ପର୍କ ନେଇ ।'

୧୧୯୨ ଖ୍ରୀଷ୍ଟାବ୍ଦରେ ପୃଥ୍ୱୀରାଜଙ୍କ ଦରବାରରେ କବି ଚାନ୍ଦ ବରଦାଇ 'ପୃଥ୍ୱୀରାଜ ରାସୋ' ନାମକ ଏକ ହିନ୍ଦୀ ଗ୍ରନ୍ଥ ରଚନା କରିଥିବାର ଜଣାଯାଏ । ସେ ତାଙ୍କର ଏହି ଗ୍ରନ୍ଥରେ 'ଗୀତଗୋବିନ୍ଦ' ଏବଂ ଜୟଦେବଙ୍କ ଉପରେ ଅନେକ ଟିପ୍ପଣୀ ଦେଇଛନ୍ତି । ଏଥିରେ ସେ ଉଲ୍ଲେଖ କରିଛନ୍ତି ଯେ, ଗୀତଗୋବିନ୍ଦ ତତ୍କାଳୀନ କବି ଏବଂ ଲେଖକମାନଙ୍କ ଉପରେ ଅନେକ ପ୍ରଭାବ ପକାଇଥିଲା ଯାହାଫଳରେ କି ତାଙ୍କର ପୂର୍ବବର୍ତ୍ତୀ ଆଠ ଜଣ ପ୍ରଖ୍ୟାତ କବି ଜୟଦେବଙ୍କର ଗୀତଗୋବିନ୍ଦର ରଚନା ଶୈଳୀକୁ ଅନୁକରଣ କରିବା ସହିତ ରାଧାକୃଷ୍ଣଙ୍କର ପ୍ରେମ ଉପରେ ଆଧାରିତ ଅନେକ କାବ୍ୟ କବିତା ରଚନା କରିଛନ୍ତି ।

୧୫୮୮୦ାରୁ ୧୫୯୩ ମଧ୍ୟରେ ହିନ୍ଦୀ ସାହିତ୍ୟ ଜଗତରେ ଗୀତଗୋବିନ୍ଦ ଏକ ଆଲୋଡ଼ନ ସୃଷ୍ଟି କରିଥିବା ବିଷୟ ସନ୍ଥ କବିର ବର୍ଣ୍ଣନା କରିଅଛନ୍ତି । ନାରୀକବି ମୀରାବାଇ ରାଜସ୍ଥାନୀ ଭାଷାରେ ଗୀତଗୋବିନ୍ଦର ଟୀକା ଅନୁବାଦ କରି ପ୍ରଶଂସାର ପାତ୍ରୀ ହୋଇପାରିଥିଲେ । ସେହିପରି ଭକ୍ତକବି ନାଭା ଦାସ ତାଙ୍କର ରଚିତ 'ଭକ୍ତମାଳ' ନାମକ କାବ୍ୟରେ ଜୟଦେବଙ୍କୁ ଜଣେ ଶ୍ରେଷ୍ଠ ଭକ୍ତରୂପେ ବର୍ଣ୍ଣନା କରି 'ଗୀତଗୋବିନ୍ଦ'ର ଭୂୟସୀ ପ୍ରଶଂସା କରିଛନ୍ତି ।

ଶିଖ୍ ଧର୍ମର ପଞ୍ଚମ ଗୁରୁ ଶ୍ରୀ ଅର୍ଜୁନ ସିଂହଙ୍କ ଦ୍ୱାରା ୧୬୦୪ ଖ୍ରୀଷ୍ଟାବ୍ଦରେ ରଚିତ 'ଗ୍ରନ୍ଥ ସାହେବ'ରେ ଜୟଦେବଙ୍କ ରଚିତ 'ଗୀତଗୋବିନ୍ଦ'କୁ ପ୍ରାଧାନ୍ୟତା ଦିଆଯିବା ସହିତ ଜୟଦେବଙ୍କ ଜଣେ ପରମ ଭକ୍ତ ରୂପେ ବର୍ଣ୍ଣନା କରାଯାଇଛି ।

ଶ୍ରୀ ବଲ୍ଲଭାଚାର୍ଯ୍ୟ (ଆନ୍ଧ୍ରପ୍ରଦେଶ) 'ଗୀତଗୋବିନ୍ଦ' ଦ୍ୱାରା ପ୍ରଭାବିତ ହୋଇ କେବଳ ପ୍ରେମ ଏବଂ ଭକ୍ତି ଦ୍ୱାରା ଭଗବାନଙ୍କର ଅନୁଗ୍ରହ ପ୍ରାପ୍ତି ହୋଇପାରିବ ବୋଲି ବର୍ଣ୍ଣନା କରିଛନ୍ତି । ସେ ମଧ୍ୟ ତାଙ୍କର ଶିଷ୍ୟମାନଙ୍କୁ 'ଗୀତଗୋବିନ୍ଦ' ନିତ୍ୟ ପାଠ କରିବା ପାଇଁ ନିର୍ଦ୍ଦେଶ ଦେଇଥିବା ଜଣାଯାଏ ।

ଶ୍ରୀ ଚୈତନ୍ୟ 'ଗୀତଗୋବିନ୍ଦ'ରେ ଆକୃଷ୍ଟ ହୋଇ କବି ଜୟଦେବଙ୍କର ଜନ୍ମସ୍ଥଳୀ 'କେନ୍ଦୁବିଲ୍ୱ' ଗ୍ରାମ ପରିଦର୍ଶନରେ ବହୁବାର ଯାଇଥିବାର ଜଣାଯାଏ । ସେ ନିଜେ ଗୀତଗୋବିନ୍ଦ ଗାନ କରି ମୂର୍ଚ୍ଛା ହୋଇଯାଉଥିବାର ଶୁଣାଯାଏ । ଶ୍ରୀ ଚୈତନ୍ୟଙ୍କର ଜଣେ ଭକ୍ତ ବଡ଼ଚଣ୍ଡୀ ଦାସ 'ଶ୍ରୀକୃଷ୍ଣ ଚୈତନ୍ୟ' ନାମକ ଏକ ଗ୍ରନ୍ଥ ରଚନା କରିଥିଲେ ଏବଂ ସେଥିରେ ଗୀତଗୋବିନ୍ଦର ଭୂୟସୀ ପ୍ରଶଂସା କରିଥିବାର ଜଣାଯାଏ । ଶ୍ରୀ ଗିରିଧାରୀ ଦାସ

'ଗୀତଗୋବିନ୍ଦ' କାବ୍ୟକୁ ବିଶେଷ ଲୋକାଭିମୁଖୀ କରିବା ପାଇଁ ଏହାର ପଦ୍ୟାନୁବାଦ କରିଥିଲେ । ଗୀତଗୋବିନ୍ଦ କାବ୍ୟରେ ଉଦ୍‌ବୁଦ୍ଧ ହୋଇ ଦ୍ୱିଜ ପ୍ରାଣକୃଷ୍ଣ 'ଗୀତଗୋବିନ୍ଦ'କୁ ଜୟଦେବଙ୍କର ପ୍ରସାଦାବଳୀ ବୋଲି ବର୍ଣ୍ଣନା କରିଅଛନ୍ତି ।

ଗୀତଗୋବିନ୍ଦକୁ ଆସାମୀ ଭାଷାରେ ଅତ୍ୟନ୍ତ ସରଳ ଭାବରେ ପୁନର୍ଲିଖନ କରି କବି ରାମ ନାରାୟଣ କବିରାଜ ଗୀତଗୋବିନ୍ଦ ତଥା କବି ଜୟଦେବଙ୍କର ପ୍ରଚାର କରିଥିଲେ । ସେହିପରି ଆସାମୀ କବି ଧର୍ମଦେବ ଭଟ୍ଟ 'ଗୀତଗୋବିନ୍ଦ'କୁ ଆସାମୀ ଭାଷାରେ ପଦ୍ୟାନୁବାଦ କରିଥିଲେ । ମଣିପୁରର କବି ଶ୍ରୀ ଭାଗ୍ୟଦେବ 'ଗୀତଗୋବିନ୍ଦ ସଂଗୀତ ଲୀଳା' ନାମକ ଏକ ଗ୍ରନ୍ଥ ରଚନା କରି ଶ୍ରୀଜଗନ୍ନାଥଙ୍କର ପ୍ରଚାର କରିଥିଲେ । ତେଲୁଗୁ କବି 'ସିଦ୍ଧେନ୍ଦ୍ର ଯୋଗୀ' ଗୀତଗୋବିନ୍ଦ ଉପରେ ଆଧାରିତ 'ଭାମା କାଳାପମ୍' ନାମକ ଏକ କାବ୍ୟ ରଚନା କରିଥିଲେ । ସେ ଏଥିରେ ଗୀତଗୋବିନ୍ଦରେ ବର୍ଣ୍ଣିତ ଦଶାବତାର ନୃତ୍ୟର ବର୍ଣ୍ଣନା କରିବା ସହିତ ରାଧାକୃଷ୍ଣ ଲୀଳା ବିଷୟରେ ବର୍ଣ୍ଣନା କରିଅଛନ୍ତି ।

ତାମିଲନାଡୁର ମାରିପୁଟ ପିଲାଇ, କବି କୁଞ୍ଜର ଭାରତୀ, କବି ଗୋପାଳକୃଷ୍ଣ ଭାରତୀଙ୍କର ପ୍ରବର୍ତ୍ତିତ କୀର୍ତ୍ତନ, ଦଶାବତାର ନୃତ୍ୟ, ସଙ୍ଗୀତ, ତାଳ, ମୂର୍ଚ୍ଛନା ଓ ରାଗ 'ଗୀତଗୋବିନ୍ଦ' ଦ୍ୱାରା ସମ୍ପୂର୍ଣ୍ଣ ରୂପେ ପ୍ରଭାବିତ । କେରଳର କୋଟିକୋଡ଼ର ରାଜାମାନେ ଓ ଦେବାନ୍‌ମାନେ 'ଗୀତଗୋବିନ୍ଦ'ରେ ମୁଗ୍ଧ ହୋଇ ୧୬୫୨ ଖ୍ରୀଷ୍ଟାବ୍ଦରେ 'କୃଷ୍ଣଗୀତ', 'କୃଷ୍ଣପ୍ରୀତି' ପ୍ରଭୃତି କୃଷ୍ଣଲୀଳା ଉପରେ ଆଧାରିତ ଅନେକ କାବ୍ୟ କବିତା ଲେଖିଥିବାର ଜଣାଯାଏ । ରାୟରାମାନନ୍ଦ ଗୀତଗୋବିନ୍ଦରେ ପ୍ରଭାବିତ ହୋଇ ଆନନ୍ଦରେ ନାଚି ଉଠୁଥିବାର ବର୍ଣ୍ଣନା ଅଛି । ସେ ଏହାକୁ ଆଧାର କରି 'ଜଗନ୍ନାଥ ବଲ୍ଲଭ' ରଚନା କରିଥିଲେ ।

ଅଷ୍ଟାଦଶ ଶତାବ୍ଦୀର କବି ଦୀନକୃଷ୍ଣ ଦାସଙ୍କର ଲିଖିତ 'ଅମୃତ ସାଗର'ରେ ଗୀତଗୋବିନ୍ଦର ରାସଲୀଳା ବର୍ଣ୍ଣନା କରାଯାଇଅଛି । ଷୋଡ଼ଶ ଶତାବ୍ଦୀର କବି ଧରଣୀଧର ୧୬ ଗୋଟି ଛାନ୍ଦରେ ସଂପୂର୍ଣ୍ଣ କରିଥିବାର ଜଣାଯାଏ ।

ଗୀତଗୋବିନ୍ଦର ବହୁଳ ପ୍ରଚାର ଫଳରେ ଏହା ମଧ୍ୟ କେତେକ ବିଦେଶୀଙ୍କୁ ଆକୃଷ୍ଟ କରିଥିବାର ଜଣାଯାଏ । କଲିକତାରେ ଏସିଆଟିକ୍ ସୋସାଇଟି ପ୍ରତିଷ୍ଠା କରାଯାଇ ଗୀତଗୋବିନ୍ଦର ପ୍ରତ୍ନତାତ୍ତ୍ୱିକ ଗବେଷଣା କରାଯାଇଥିବାର ଜଣାଯାଏ । ଏହାର ପ୍ରତିଷ୍ଠାତା ଥିଲେ ଉଇଲିୟମ୍ ଜୋନସ୍ । ଜୟଦେବଙ୍କର ରଚିତ ଗୀତଗୋବିନ୍ଦ ପ୍ରତି ତାଙ୍କର ବିଶେଷ ଆଗ୍ରହ ଥିଲା । ସେ ୧୭୯୯ ଖ୍ରୀଷ୍ଟାବ୍ଦରେ ନିଜ ଭାଷାରେ 'ଗୀତଗୋବିନ୍ଦ'ର କେତେକ ଅଂଶକୁ ଅନୁବାଦ କରିଥିଲେ । ଏହି ଗ୍ରନ୍ଥର ମୁଖବନ୍ଧରେ ସେ ଉଲ୍ଲେଖ କରିଛନ୍ତି - 'ବହୁତ ଲୋକେ ଜୟଦେବଙ୍କର ଜନ୍ମ ସ୍ଥାନ ଶ୍ରୀକ୍ଷେତ୍ର ନିକଟବର୍ତ୍ତୀ 'କେନ୍ଦୁଲି' ଗ୍ରାମରେ ଥିବାର କହିଥାନ୍ତି । ବର୍ତ୍ତମାନ ଦେଶ ବିଦେଶରେ ଚହଳ ପକାଇ ଥିବା ଆନ୍ଧ୍ରପ୍ରଦେଶର 'କୁଚିପୁଡ଼ି ନୃତ୍ୟ' ଜୟଦେବଙ୍କର ଦଶାବତାର ଉପରେ ଆଧାରିତ ।

ଗୀତଗୋବିନ୍ଦ ତତ୍କାଳୀନ ଏବଂ ତତ୍‌ପରବର୍ତ୍ତୀ ସମାଜରେ ଏକ ମହାନ୍ କାବ୍ୟ ରୂପେ ବିବେଚିତ ହୋଇଥିଲା, ତାହା ନିଃସନ୍ଦେହ । ଓଡ଼ିଆ, ହିନ୍ଦୀ, ବଙ୍ଗଳା, ମରାଠୀ, ତେଲୁଗୁ, ତାମିଲ, ଆସାମୀ ପ୍ରଭୃତି ଭାଷାର କବିମାନେ 'ଗୀତଗୋବିନ୍ଦ' ପ୍ରତି ଆକୃଷ୍ଟ ହୋଇଥିବାରୁ ଗୀତଗୋବିନ୍ଦର ବହୁଳ ପ୍ରଚାର ସମ୍ଭବ ହୋଇଥିଲା । ଏବେ ମଧ୍ୟ 'ଗୀତଗୋବିନ୍ଦ'କୁ ପାଠକଲେ ଏଥିରେ ଅନେକ ନୂତନତ୍ୱ ଥିବାର ଉପଲବ୍ଧି କରାଯାଏ ।

ବୀରହରେକୃଷ୍ଣପୁର
ପୁରୀ-୭୫୨୦୦୨



# ଗୀତଗୋବିନ୍ଦ ଐତିହ୍ୟର ସଂରକ୍ଷଣ

ମୂଳ ଇଂରାଜୀ ରଚନା : ଗଦାଧର ମହାପାତ୍ର
ଓଡ଼ିଆ ଅନୁବାଦ : ବିକ୍ରମ ମହାରଣା

ନିକଟରେ ହାତୀଦାନ୍ତ ଉପରେ ଲିପିବଦ୍ଧ ଗୀତଗୋବିନ୍ଦର ଏକ ପାଣ୍ଡୁଲିପି ଭାରତର ଜାତୀୟ ଐତିହ୍ୟ ଭାବେ ଘୋଷିତ ହୋଇଛି । ଏହା ଦ୍ୱାଦଶ ଶତାବ୍ଦୀର ପ୍ରସିଦ୍ଧ କବି ଜୟଦେବଙ୍କ ପାଇଁ କେବଳ ଏକ ଗୌରବର ବିଷୟ ନୁହେଁ, ତାଙ୍କର ଅମର ସାହିତ୍ୟିକ କୃତୀ 'ଗୀତଗୋବିନ୍ଦ' ପ୍ରତି ସ୍ୱୀକୃତି ମଧ୍ୟ ।

ଜୟଦେବ, ଓଡ଼ିଶାର ପ୍ରାଚୀ ଉପତ୍ୟକାର କେନ୍ଦୁବିଲ୍ୱ ଗ୍ରାମ (ସଂପ୍ରତି ଭୁବନେଶ୍ୱରଠାରୁ ୨୫ କି.ମି. ଦୂରବର୍ତ୍ତୀ କେନ୍ଦୁଲି)ଠାରେ ଜନ୍ମ ଗ୍ରହଣ କରିଥିଲେ । ଜୟଦେବଙ୍କ ସମୟରେ ଆଧ୍ୟାତ୍ମିକ ଓ ସାଂସ୍କୃତିକ ଜାଗରଣ ପାଇଁ ପ୍ରାଚୀ ଉପତ୍ୟକା ପ୍ରସିଦ୍ଧିଲାଭ କରିଥିଲା । ସେତେବେଳେ ଜୈନ, ବୌଦ୍ଧ, ବ୍ରାହ୍ମଣ, ଶୈବ, ଶାକ୍ତ ଏବଂ ବୈଷ୍ଣବ ଆଦି ବିଭିନ୍ନ ଧର୍ମାବଲମ୍ବୀମାନେ ସୌହାର୍ଦ୍ଦ୍ୟପୂର୍ଣ୍ଣ ପରିବେଶରେ ଏକତ୍ର ବାସ କରୁଥିଲେ । ମହାପ୍ରଭୁ ବିଷ୍ଣୁଙ୍କ ମାଧବ (କୃଷ୍ଣ) ତଥା ଅନ୍ୟାନ୍ୟ ଅବତାର, ଯେପରିକି ମୀନ (ମତ୍ସ୍ୟ), କୂର୍ମ (କଚ୍ଛପ), ବରାହ, ନୃସିଂହ (ନରସିଂହ) ଇତ୍ୟାଦି ରୂପରେ ପୂଜା କେନ୍ଦୁବିଲ୍ୱର ଚାରିପାଖରେ ଥିବା ଗ୍ରାମଗୁଡ଼ିକରେ ପ୍ରଚଳିତ ଥିଲା । ପ୍ରାଚୀ ଉପତ୍ୟକାରେ ଦେବାଦେବୀମାନଙ୍କ ନିମନ୍ତେ ଶହ ଶହ ମନ୍ଦିର ବର୍ତ୍ତମାନ ସୁଦ୍ଧା ସମୃଦ୍ଧ ଅତୀତର ମୂକସାକ୍ଷୀ ରୂପେ ବିଦ୍ୟମାନ ।

ବିଭିନ୍ନ ପ୍ରକାର ବୃକ୍ଷରାଜି ଓ ଜୀବଜନ୍ତୁଙ୍କୁ ନେଇ ନୈସର୍ଗିକ ଶୋଭା ସମ୍ପଦରେ ଭରପୂର ଥିଲା ପ୍ରାଚୀନ ଉପତ୍ୟକା । ସୌନ୍ଦର୍ଯ୍ୟପୂର୍ଣ୍ଣ ପ୍ରାକୃତିକ ପରିବେଶ ଏବଂ ଧାର୍ମିକ ସଂସ୍କୃତି ଜୟଦେବଙ୍କର କଳାତ୍ମକ, ଆଧ୍ୟାତ୍ମିକ ଓ ବୌଦ୍ଧିକ ଚେତନାରେ ଗଭୀର ପ୍ରଭାବ ପକାଇଥିଲା ।

ଗୀତଗୋବିନ୍ଦରେ ସେ ମାଧବଙ୍କୁ କାବ୍ୟ ନାୟକ ରୂପେ ଉପସ୍ଥାପିତ କରିଛନ୍ତି । ଦଶାବତାର ବର୍ଣ୍ଣନା ମାଧ୍ୟମରେ ବିଷ୍ଣୁଙ୍କର ଶୌର୍ଯ୍ୟ, ବୀରତ୍ୱ ଓ ଗରିମା ଉପସ୍ଥାପନା କରି ତାଙ୍କର ଆଶୀର୍ବାଦ କାମନା ଏବଂ ଭାବନା ଉଦ୍ରେକ ଓ କ୍ରିୟାଶୀଳ ଚିନ୍ତାଧାରାର ଉନ୍ମେଷ (ଉଦ୍ଦୀପନ ବିଭାବ) ରୂପେ ପ୍ରକୃତିର ନୈସର୍ଗିକ ସୌନ୍ଦର୍ଯ୍ୟକୁ ଉପଯୋଗ କରିଛନ୍ତି ।

ଗୀତିକାବ୍ୟ ଶୈଳୀରେ ରଚିତ ଗୀତଗୋବିନ୍ଦରେ ରାଧାକୃଷ୍ଣଙ୍କର ରହସ୍ୟମୟ ପ୍ରେମ, ବିରହ, ଅନୁସ୍ମରଣ ଓ ମିଳନ ମାଧ୍ୟମରେ ସାଙ୍କେତିକ ଭାବେ ଜୀବାତ୍ମା ଓ ପରମାତ୍ମାଙ୍କ ମିଳନ ରହସ୍ୟର ଆଧ୍ୟାତ୍ମିକ ତତ୍ତ୍ୱ ଉପସ୍ଥାପିତ କରିଛନ୍ତି । ଏହାର ଆଧ୍ୟାତ୍ମିକ ସାରବତ୍ତା, ରହସ୍ୟମୟ ସନ୍ଦେଶ, ରସାତ୍ମକ ଉପସ୍ଥାପନା, ସୌନ୍ଦର୍ଯ୍ୟମୟ ବର୍ଣ୍ଣନା ଓ ଭାଷାର ସାବଲୀଳତା ସମାଲୋଚକମାନଙ୍କୁ ସ୍ତମ୍ଭୀଭୂତ କରିଛି, ବିଦ୍ୱାନମାନଙ୍କୁ ଅଭିଭୂତ କରିଛି, ସାଧୁସନ୍ଥଙ୍କୁ ତତ୍ତ୍ୱଦର୍ଶୀ କରିଛି, ପ୍ରେମୀଙ୍କୁ ଆହ୍ଲାଦିତ କରିଛି, ଭକ୍ତଙ୍କୁ ସିଦ୍ଧି ପ୍ରଦାନ କରିଛି ଏବଂ ଅସଂଖ୍ୟ ଜନସାଧାରଣଙ୍କୁ ଭାବପ୍ରବଣ ଓ ଅନୁରାଗୀ ଭାବେ ସମ୍ପୃକ୍ତ କରିପାରିଛି ।

ଏହା ବିଗତ ଆଠଶହ ଶତାବ୍ଦୀ ଧରି ଧାର୍ମିକ ବିଶ୍ୱାସ ଓ ଚିନ୍ତାଧାରା, ସଂସ୍କୃତି ଓ ପରମ୍ପରା, ସାହିତ୍ୟ ଓ କବିତା, ସଂଗୀତ ଓ ନୃତ୍ୟ ପଦ୍ଧତି ଆଦିକୁ ପ୍ରଭାବିତ କରିବା ସହ ଅପରୂପ କଳା, ସ୍ଥାପତ୍ୟ, ଚିତ୍ରକଳା ଓ ଭାସ୍କର୍ଯ୍ୟ ସୃଷ୍ଟି ପାଇଁ ଅନୁପ୍ରାଣିତ କରିଛି ।

ମନ୍ଦିରର ଆରାଧ୍ୟ ଦେବତାଙ୍କ ସମ୍ମୁଖରେ ଏବଂ ଭାରତର ବିଭିନ୍ନ ଭାଗରେ ଥିବା ଦେବାଳୟଗୁଡ଼ିକରେ ଏକ ଭକ୍ତି ରସାତ୍ମିକ ସଂଗୀତ ରୂପେ ଗୀତଗୋବିନ୍ଦର ଆବୃତ୍ତି ପରମ୍ପରା ରୂପେ ଶତାବ୍ଦୀ ଶତାବ୍ଦୀ ଧରି ପ୍ରଚଳିତ ହୋଇଆସିଛି । ପୁରୀ ଜଗନ୍ନାଥ ମନ୍ଦିରରେ ଦେବଦାସୀଙ୍କ ଦ୍ୱାରା ନୃତ୍ୟ ଓ ଗାନ ପାଇଁ ଏହା ମୁଖ୍ୟ ବିଷୟ ରୂପେ ରହିଆସିଛି । ଭାରତର ପ୍ରତ୍ୟେକ ଶାସ୍ତ୍ରୀୟ ନୃତ୍ୟଶୈଳୀ ଅଭିନୟ ଓ ଭାବାବେଗ ପରିପ୍ରକାଶ ପାଇଁ ଗୀତଗୋବିନ୍ଦର ଅଷ୍ଟପଦୀକୁ ଆଧାର କରିଥାନ୍ତି ।

**ଗୀତଗୋବିନ୍ଦର ବୈଶିଷ୍ଟ୍ୟ**

♦ ଏହା ସରଳ ସଂସ୍କୃତ ଭାଷାରେ ଦେଶୀୟ ରଢ଼ି ସହ ରଚିତ ପ୍ରଥମ ଗୀତିକାବ୍ୟ, ଯାହାକି ପ୍ରତିଷ୍ଠିତ ସଂସ୍କୃତ ସାହିତ୍ୟ

ତୁଳନାରେ ଲୋକମାନଙ୍କ ଦ୍ୱାରା ସହଜରେ ବୋଧଗମ୍ୟ ଓ ଆଦୃତ ହୋଇପାରିଛି ।

♦ ମନ୍ଦିର ପରିସରରେ ଅନୁଷ୍ଠିତ ଧାର୍ମିକ ଉତ୍ସବମାନଙ୍କରେ ଆଧ୍ୟାତ୍ମିକ ଉତ୍ସାହ ପାଇଁ ଏକ ନାଟିକା ରୂପେ ଏହା ଉପସ୍ଥାପିତ ହୋଇଥାଏ ।

♦ ମଧୁର, କୋମଳକାନ୍ତ ପଦାବଳୀ, ଶ୍ରୁତିମଧୁର ରାଗ ଓ ଛାନ୍ଦ ମଧରେ ତାଳ ଓ ଲୟର ଅପୂର୍ବ ଅନୁପ୍ରାସ ହୃଦୟ ଓ ଆତ୍ମାକୁ ଛୁଏଁ । ପଦାବଳୀଗୁଡ଼ିକ ଏତେ ମର୍ମସ୍ପର୍ଶୀ ଯେ, ତାହା ସହସାଭାବ ଉଦ୍ରେକ କରିଥାଏ । ଏପରିକି ଏହାର ଭାବାର୍ଥ ନ ବୁଝି ମଧ ଲୋକେ ଏହାକୁ ଗାନ କରିଥାନ୍ତି ।

♦ ନିମ୍ବାର୍କଙ୍କ ମତ ଅନୁଯାୟୀ ଗୀତଗୋବିନ୍ଦରେ ଜୟଦେବ ପ୍ରଥମଥର ପାଇଁ ରାଧାଙ୍କୁ କୃଷ୍ଣଙ୍କର ଶାଶ୍ୱତ ସଙ୍ଗୀ ଓ ଆନନ୍ଦ ଶକ୍ତି ରୂପେ ଚିତ୍ରଣ କରିଛନ୍ତି, ଯାହାକି ବୈଷ୍ଣବ ଧର୍ମରେ ରାଧାକୃଷ୍ଣଙ୍କର ଯୁଗଳ ଆରାଧନା ପାଇଁ ପଥ ପ୍ରଶସ୍ତ କରିଛି ।

♦ ବୈଷ୍ଣବମାନଙ୍କର ଆରାଧ୍ୟ ଦେବତା, ଶଙ୍ଖ, ଚକ୍ର, ଗଦା ଓ ପଦ୍ମଧାରଣ କରିଥିବା ଚତୁର୍ଦ୍ଧାମୂରତି ବିଷ୍ଣୁଙ୍କର ଏକାକୀ ବା ଲକ୍ଷ୍ମୀଙ୍କ ସହ ପୂଜାର୍ଚ୍ଚନା କାଳକ୍ରମେ ବଂଶୀଧାରୀ ଦ୍ୱିଭୁଜ କୃଷ୍ଣ ବା ଆଲିଙ୍ଗିତ ଯୁଗଳ ମୂର୍ତ୍ତି - ରାଧାକୃଷ୍ଣ ଉପାସନାରେ ପରିବର୍ତ୍ତିତ ହୋଇଛି ।

♦ ଭଗବତ ପ୍ରାପ୍ତି ଏବଂ ଅନନ୍ତ ସୁଖଲାଭ ପାଇଁ ଗୀତଗୋବିନ୍ଦ ମାଧ୍ୟମରେ ଜୟଦେବ 'ପ୍ରେମ ତତ୍ତ୍ୱ' ପ୍ରବର୍ତ୍ତନ କରି, ବେଦାନ୍ତ ବୈଷ୍ଣବ ଧର୍ମୀ, ରାମାନୁଜ, ମାଧବାଚାର୍ଯ୍ୟ, ବଲ୍ଲଭାଚାର୍ଯ୍ୟ ଓ ନିମ୍ବାର୍କ ଆଦିଙ୍କ ଦ୍ୱାରା ପ୍ରବର୍ତ୍ତିତ 'ଭକ୍ତିତତ୍ତ୍ୱ'ର ଆଧାରକୁ ପରିବର୍ତ୍ତନ କରିଥିଲେ ।

ପରମାତ୍ମାଙ୍କ ସହିତ ମିଳନ ପାଇଁ ସର୍ବୋଚ୍ଚ ପଥ ରୂପେ ଜୟଦେବ ପ୍ରବର୍ତ୍ତିତ ପ୍ରେମଭକ୍ତି ଭାବ, ପରବର୍ତ୍ତୀ କାଳରେ ବୈଷ୍ଣବମାନଙ୍କ ଦ୍ୱାରା ଗୋପୀଭାବ ଏବଂ ରାଧାଭାବ ରୂପେ ରାଗାନୁରାଗ ମାର୍ଗରେ ଆଦୃତ ହୋଇଛି । ଗଭୀର ଭାବେ ବିହ୍ୱଳିତ ପ୍ରେମ, ପ୍ରଗାଢ଼ ଭକ୍ତି ଏବଂ ସଂପୂର୍ଣ୍ଣ ଆତ୍ମସମର୍ପଣ ଭାବ ଦ୍ୱାରା ରାଧା ତାଙ୍କର ଅଭିଳାଷ, କୃଷ୍ଣପ୍ରାପ୍ତି ସହ ଏକାତ୍ମ ଅନୁଭବର ଅନନ୍ତ ସୁଖ ଲାଭ କରିଥିଲେ, ଯାହାକି ବୈଷ୍ଣବ ଧର୍ମୀମାନଙ୍କ ପାଇଁ ଆଦର୍ଶମାର୍ଗ ରୂପେ ପରିଗଣିତ ହୋଇଆସିଛି ।

ଷୋଡ଼ଶ ଶତାବ୍ଦୀରେ ଶ୍ରୀଚୈତନ୍ୟ ଏହି ତତ୍ତ୍ୱକୁ ଆଶ୍ରୟ କରି ରାଧାଭାବ ସାଧନ କରିଥିଲେ ଏବଂ ରାଗାନୁଗା ମାର୍ଗ ପ୍ରବର୍ତ୍ତନ କରି ତାଙ୍କର ଅନୁଗାମୀ ଗୌଡ଼ୀୟ ବୈଷ୍ଣବଙ୍କ ଦ୍ୱାରା ଏହାକୁ ପ୍ରସାର କରାଇଥିଲେ । ଅଧୁନା ଏହି ପ୍ରେମଭକ୍ତି ଆଧାରକୁ ଇସ୍କନ, ଶ୍ୟାମାଶାମଧାମ ସମେତ ସମସ୍ତ ବୈଷ୍ଣବ ଧର୍ମାବଲମ୍ବୀ ଅନୁସରଣ କରୁଛନ୍ତି ।

ଜୟଦେବ ତାଙ୍କର ରହସ୍ୟାବୃତ ପ୍ରେମ ସଙ୍ଗୀତ ଜରିଆରେ ଜୀବାତ୍ମାର ପରମାତ୍ମାଙ୍କ ସହିତ ମିଳନ ପାଇଁ ଦୁର୍ବାର ଅଭିଳାଷର ବିଶଦ ଉପସ୍ଥାପନା କରିଛନ୍ତି । ଏହି ଦାର୍ଶନିକ ଏବଂ ଆଧ୍ୟାତ୍ମିକ ତତ୍ତ୍ୱର ତାତ୍ପର୍ଯ୍ୟ ସାଧାରଣ ଭକ୍ତର ଧାର୍ମିକ ଭାବନା ଓ ପରମାର୍ଥିକ ଚେତନା ଉପରେ ବିଶେଷ ପ୍ରଭାବ ପକାଇଥାଏ ।

ଜୟଦେବ ଗୀତଗୋବିନ୍ଦ ରଚନାରେ ଶୃଙ୍ଗାର ରସ ଓ ବିଳାସକଳାକୁ ପ୍ରାଧାନ୍ୟ ଦେଇ ଭଗବାନ କୃଷ୍ଣଙ୍କର ରାଧା ଏବଂ ଗୋପୀମାନଙ୍କ ସହ ପ୍ରେମଲୀଳା ବର୍ଣ୍ଣନା କରିଛନ୍ତି । ସେସମୟର କାବ୍ୟ କବିତାରେ ଶୃଙ୍ଗାର ରସର ପ୍ରାଧାନ୍ୟ ଆଦୃତ ହେଉଥିଲା । ଏ ପ୍ରକାର ଶୃଙ୍ଗାର ଭିତ୍ତିକ ବର୍ଣ୍ଣନା 'ରତି' ଭଳି ସ୍ଥାୟୀ ଭାବ ଉଦ୍ରେକ କରିବା ସହ ରସାନୁଭୂତି ଓ ସୁଖ ପାଇଁ ଆକାଂକ୍ଷିତ ସାଧାରଣ ମଣିଷ ମନରେ ଆନନ୍ଦ ଆଣିଦିଏ ।

ଜନଗଣଙ୍କ ମଧରେ ଗୀତଗୋବିନ୍ଦ ପ୍ରତି ଶ୍ରଦ୍ଧାଭାବ ଉଦ୍ରେକ ପାଇଁ ଅନେକ କାରଣ ମଧ୍ୟରୁ ଏହା ଗୋଟିଏ ।

ଗୀତଗୋବିନ୍ଦର ଅନ୍ୟ ଏକ ବୈଶିଷ୍ଟ୍ୟ ହେଲା ପ୍ରାକୃତିକ ଶୋଭା ଓ ନୈସର୍ଗିକ ସୁଷମାର କଳ୍ପନା ବିଳାସୀ ବର୍ଣ୍ଣନା ମାଧ୍ୟମରେ ପାହାଡ଼, ପର୍ବତ, ନଦୀ, ହ୍ରଦ, ତରୁ, ଲତା, ଜଳଜ ଉଦ୍ଭିଦ, ପୁଷ୍ପ, ପଶୁପକ୍ଷୀ, ସରୀସୃପ, କୀଟପତଙ୍ଗ, ଆକାଶ, ମେଘ, ବିଜୁଳି, ଇନ୍ଦ୍ରଧନୁ, ଚନ୍ଦ୍ର, ତାରା, ସୂର୍ଯ୍ୟ, ତମସା ଇତ୍ୟାଦି ଭାବ ଉଦ୍ରେକକାରୀ ଉପାଦାନଙ୍କୁ 'ଉଦ୍ଦୀପନ ବିଭାବ' ରୂପେ ବିନିଯୋଗ କରି ଚେତନା ଏବଂ ମନ ଉପରେ ପ୍ରଭାବ ବିସ୍ତାରର ଉପସ୍ଥାପନା କରିବା ।

ଭାବ ଉଦ୍ରେକ ପାଇଁ ତଥା ମାନବର ପଞ୍ଚେନ୍ଦ୍ରୀୟ, ଯଥା- ଶବ୍ଦ, ସ୍ପର୍ଶ, ରୂପ, ରସ ଏବଂ ଗନ୍ଧର ସନ୍ତୁଷ୍ଟି ପାଇଁ ଜୟଦେବ ଗୀତଗୋବିନ୍ଦରେ ପ୍ରକୃତିର ଦୃଶ୍ୟମାନ ଓ ଅଦୃଶ୍ୟ ଉପାଦାନଗୁଡ଼ିକ କୌଶଳପୂର୍ଣ୍ଣ ଭାବରେ ଉପଯୋଗ କରିଛନ୍ତି, ଯାହାକି ଏକ ଅଭିନବ ପ୍ରଚେଷ୍ଟା ।

ବିଭିନ୍ନ ରଙ୍ଗବେରଙ୍ଗ ପୁଷ୍ପ ସମୂହ ଏବଂ ସେଗୁଡ଼ିକର ସୌରଭ, ବାସ୍ନା, ମହକ ଓ ସୁଗନ୍ଧ, ପକ୍ଷୀମାନଙ୍କର କାକଳୀ, ଭ୍ରମର ଓ ମଧୁପର ଗୁଞ୍ଜନ, ଝଡ଼ାପତ୍ରର ମର୍ମର, ମୃଦୁ ମଳୟର ସ୍ପର୍ଶ ଇତ୍ୟାଦି ସୂକ୍ଷ୍ମାତିସୂକ୍ଷ୍ମ ବିଭାବର ପ୍ରଭାବ ଉପଯୋଗ କରି ଜୟଦେବ ଗୀତଗୋବିନ୍ଦର ଭାବକୁ ବିକଶିତ କରିଛନ୍ତି । ମୂଳତଃ ତ୍ରିରଙ୍ଗ ଯଥା- ବାଙ୍ମୟ ବସନ୍ତର ହରିଦ୍ର ରଙ୍ଗ, କୃଷ୍ଣଙ୍କର କୃଷ୍ଣବର୍ଣ୍ଣ ଶରୀର ଏବଂ କାମଦେବଙ୍କର ତେଜୋଦୀପ୍ତ ଲୋହିତ ବର୍ଣ୍ଣର ରସାଣିତ ଉପସ୍ଥାପନା ଗୀତଗୋବିନ୍ଦର ଗୂଢ଼ତତ୍ତ୍ୱକୁ କାଳଜୟୀ

କରିଛି । କଳାକାର ଏବଂ କବିମାନେ ସେମାନଙ୍କର ଚିତ୍ରକଳା, ଖୋଦେଇ କଳା ଏବଂ ସାହିତ୍ୟକୃତୀ ପାଇଁ ଗୀତଗୋବିନ୍ଦର ବର୍ଣ୍ଣନାରୁ ଯଥେଷ୍ଟ ଖୋରାକ ପାଇପାରିଛନ୍ତି ଓ ଅନବଦ୍ୟ ସୃଷ୍ଟି ପାଇଁ ପ୍ରଭାବିତ ହୋଇଛନ୍ତି ।

♦ ଜୈବ ବିବର୍ତ୍ତନର ମତବାଦ ଅନୁଯାୟୀ ଭଗବାନ ବିଷ୍ଣୁଙ୍କର 'ଦଶାବତାର'ର ବର୍ଣ୍ଣନା ସାରାବିଶ୍ୱରେ ଆଦୃତ ହୋଇଛି । ଭଗବାନ ସ୍ୱୟଂ ବିଷ୍ଣୁଙ୍କର ଯଶର ପ୍ରଶଂସାରେ ମୁଖରିତ ଏଇ ଦଶାବତାର ବର୍ଣ୍ଣନା, ଜନଗଣଙ୍କ ଧାର୍ମିକ ଚେତନାକୁ ଗଭୀର ଭାବେ ଉଦ୍‌ବୁଦ୍ଧ କରିଛି, ଯାହାକି ଭଜନ ଓ ଜଣାଣ ଭାବରେ ଗାନ ହୋଇଥାଏ ।

ଜୟଦେବ ଅନେକ ଅବତାରର ପୌରାଣିକ ବର୍ଣ୍ଣନାକୁ ସୀମିତ କରି ଏହାକୁ ଦଶ ଅବତାରରେ ରଖିଥିଲେ ଏବଂ ବୁଦ୍ଧଙ୍କୁ ଅବତାର ରୂପେ ବର୍ଣ୍ଣନା କରାଯାଇଥିବା ବେଳେ ଜୟଦେବ କୃଷ୍ଣଙ୍କୁ ସ୍ୱୟଂ ଅବତାରୀ ରୂପେ ସ୍ଥାନ ଦେଇ ତାଙ୍କୁ ଅବତାରଙ୍କର ସୃଷ୍ଟିକର୍ତ୍ତା ରୂପେ ଉପସ୍ଥାପନା କରିଛନ୍ତି ।

♦ କଳା, ସଂସ୍କୃତି ଏବଂ ସାହିତ୍ୟର ବିକାଶ ଉପରେ ଗୀତଗୋବିନ୍ଦ ଗଭୀର ପ୍ରଭାବ ପକାଇପାରିଛି । ପ୍ରାକୃତିକ ସୌନ୍ଦର୍ଯ୍ୟ, ବିଭିନ୍ନ ଦୃଶ୍ୟ, ବିଭିନ୍ନ ଚରିତ୍ର, ନୃତ୍ୟମୁଦ୍ରା, ଚରିତ୍ରମାନଙ୍କର ଭାବଭଙ୍ଗୀ, ବେଶପୋଷାକ, ଅଳଙ୍କାର, ପରିପାଟୀ, ସାଜସଜ୍ଜା ଇତ୍ୟାଦିର ଜୀବନ୍ତ ବର୍ଣ୍ଣନା ପାଠକ ଓ ଶ୍ରୋତାଙ୍କ ମନରେ ଗଭୀର ରେଖାପାତ କରିଥାଏ । ସେମାନଙ୍କର ହୃଦୟରେ ସୁପ୍ତ ଅବସ୍ଥାରେ ନିହିତ ଥିବା ନିଖୁଣ କଳାତ୍ମକ ପ୍ରତିଭା ଏବଂ ସୃଜନଶୀଳତା ଉଜ୍ଜୀବୀତ ହୋଇ ଚିତ୍ରକଳା, ଲିପି, ଭାସ୍କର୍ଯ୍ୟ ଏବଂ ସାହିତ୍ୟ ସୃଷ୍ଟି ପାଇଁ ନିରନ୍ତର ପ୍ରେରଣା ଓ ଉତ୍ସାହ ଯୋଗାଇଥାଏ ।

ଗୀତଗୋବିନ୍ଦ ତାଳପତ୍ର ପାଣ୍ଡୁଲିପିର କେତେକ ପତ୍ରୀ ଏପରି କଳାତ୍ମକ ସୃଷ୍ଟିରେ ସମୃଦ୍ଧ । କୃଷ୍ଣଙ୍କର ଲୀଳା ଏବଂ ନୈସର୍ଗିକ ପ୍ରେମଲୀଳାର ବର୍ଣ୍ଣନା ଓଡ଼ିଶାର ପଟ୍ଟଚିତ୍ରଗୁଡ଼ିକରେ ସ୍ଥାନ ପାଇଆସୁଛି । ଅନ୍ୟ ସ୍ଥାନରେ ମଧ୍ୟ ଚିତ୍ରଶିଳ୍ପୀମାନେ ଏଇ ଦୃଶ୍ୟାବଳୀର ଚିତ୍ର ଆଙ୍କୁଛନ୍ତି ।

♦ ଜୟଦେବ ଐଶ୍ୱରିକ ପ୍ରେମଲୀଳା ମାନବିକ ଆବେଗ ମାଧ୍ୟମରେ ଉପସ୍ଥାପନା କରିଛନ୍ତି, ଯାହାକି ଆଧ୍ୟାତ୍ମିକ ଭାବ ଉନ୍ମେଷରେ ସହାୟକ ହୁଏ । ଏହି ବର୍ଣ୍ଣନାଗୁଡ଼ିକ ଏତେ ବିବିଧପୂର୍ଣ୍ଣ ଓ ମନମୁଗ୍ଧକର ଯେ ଏହା କଳାକାର, କବି ଓ ଲେଖକମାନଙ୍କ ମନରେ ଚେତନା ଉଦ୍ରେକ କରେ । ସେମାନଙ୍କର ଚିତ୍ରକଳା, କବିତା ଏବଂ ସାହିତ୍ୟ ସୃଷ୍ଟିରେ ଏହାର ପ୍ରଭାବ ପ୍ରଦର୍ଶିତ ହୋଇଥାଏ ।

ଗୀତଗୋବିନ୍ଦ ଐତିହ୍ୟର ସଂରକ୍ଷଣ ନିମନ୍ତେ କେତେକ ସମ୍ଭାବ୍ୟ ପଦକ୍ଷେପ ସଂପର୍କରେ ଏଠାରେ ଆଲୋଚନା କରାଗଲା ।

ଯମୁନା ନଦୀ ତୀରରେ ଅବସ୍ଥିତ ବୃନ୍ଦାବନ ମଧୁକୁଞ୍ଜରେ ରାଧାଙ୍କ ସହଚରୀ ଗୋପୀମାନଙ୍କର ଯୋଗଦାନରେ ରାଧାକୃଷ୍ଣଙ୍କର ଅଲୌକିକ ଯୁଗଳ ମିଳନ ଗୀତଗୋବିନ୍ଦ ଗୀତିକାବ୍ୟରେ ବର୍ଣ୍ଣିତ । ପ୍ରେମ, ବିଚ୍ଛେଦ, ଅନୁସ୍ମରଣ ଏବଂ ମିଳନର ଦୃଶ୍ୟାବଳୀ ପ୍ରତିମୂର୍ତ୍ତି ଆକାରରେ ସେହିପରି ପରିକଳ୍ପିତ ଏକ ଉପଯୁକ୍ତ ପରିବେଶ ମଧ୍ୟରେ ପ୍ରଦର୍ଶିତ କରାଯାଇପାରେ । ଜୟଦେବଙ୍କର ଗୀତଗୋବିନ୍ଦରେ ବର୍ଣ୍ଣିତ, ବୃକ୍ଷତୋଟା, କୁଞ୍ଜ, ଗୁଳ୍ମ, ଲତା, ଜଳଜ ଉଭିଦ ଇତ୍ୟାଦି ଏକ ଐତିହ୍ୟ ଉଦ୍ୟାନରେ ସ୍ଥାନିତ କରାଯାଇପାରେ । ଯମୁନା ନଦୀର ଦୃଶ୍ୟ ସୃଷ୍ଟି କରୁଥିବା ଜଳାଧାର ସୃଷ୍ଟି କରାଯାଇପାରେ, ଯାହାକି ଜୟଦେବଙ୍କ ଗୀତଗୋବିନ୍ଦରେ ବର୍ଣ୍ଣିତ, ରଙ୍ଗ, ମହକ, ସୁବାସ, ସୌରଭ, ସୁଗନ୍ଧ ଆଦି ପ୍ରସାରଣ କରିପାରେ ।

ଜୟଦେବଙ୍କ ଗୀତଗୋବିନ୍ଦରେ ବର୍ଣ୍ଣିତ ପଶୁପକ୍ଷୀ, ସରୀସୃପ ଇତ୍ୟାଦି ବିଭିନ୍ନ ଆକୃତିରେ ଓ ସଠିକ୍ ସ୍ଥାନରେ ଉପସ୍ଥାପିତ କରି ବାଞ୍ଛିତ ଫଳାଫଳ ହାସଲ କରାଯାଇପାରେ ।

ଚବିଶ ପ୍ରବନ୍ଧ ଏବଂ ବାସ୍ତରୀ ଗୋଟି ଶ୍ଳୋକ ଥାଇ ସଂପୂର୍ଣ୍ଣ ଗୀତଗୋବିନ୍ଦ ରାଗ, ଛାନ୍ଦ, ତାଳ ସହ ଓଡ଼ିଶୀ ସଙ୍ଗୀତ ଶୈଳୀରେ ଶ୍ରୋତାମାନଙ୍କ ନିମନ୍ତେ ରେକର୍ଡ଼ିଂ କରାଯାଇପାରେ ଏବଂ ଏହାକୁ ଐତିହ୍ୟ ଉଦ୍ୟାନଗୁଡ଼ିକରେ ବଜାଇ ଶୁଣାଇ ଦିଆଯାଇପାରେ ।

ଉଦ୍ୟାନଗୁଡ଼ିକୁ ଆସୁଥିବା ପରିଦର୍ଶକମାନଙ୍କ ହୃଦୟଗ୍ରାହ୍ୟ ହେବାବାଇଁ ଏହାକୁ ଇଂରାଜୀ, ହିନ୍ଦୀ ଏବଂ ଅନ୍ୟାନ୍ୟ ଭାଷା ମାଧ୍ୟମରେ ଅନୁଦିତ କରି ଗୀତଗୁଡ଼ିକ ବଜେଇ ଶୁଣାଇ ଦିଆଯାଇପାରେ ।

ଏହି ଲେଖକର ପ୍ରାରମ୍ଭିକ ଉଦ୍ୟମରେ ଓଡ଼ିଶାରେ ଏପରି ଐତିହ୍ୟ ଉଦ୍ୟାନ ପ୍ରତିଷ୍ଠା ପାଇଁ କାର୍ଯ୍ୟକ୍ରମ ଆରମ୍ଭ ହୋଇଯାଇଛି । କବି ଜୟଦେବଙ୍କର ଜନ୍ମସ୍ଥାନ ଭୁବନେଶ୍ୱରଠାରୁ ୨୫ କି.ମି ଦୂର କେନ୍ଦୁଲିଠାରେଏହିପରି ଗୋଟିଏ ଏବଂ ଦ୍ୱିତୀୟ ଉଦ୍ୟାନଟି ପ୍ରସିଦ୍ଧ ଜୈନଗୁମ୍ଫା ନିକଟବର୍ତ୍ତୀ ଖଣ୍ଡଗିରିଠାରେ ପ୍ରତିଷ୍ଠା କରାଯାଉଛି ।

ଏକ ଐତିହ୍ୟ ରୂପେ ଗୀତଗୋବିନ୍ଦର ସଂରକ୍ଷଣ ସହ ପ୍ରାଚୀ ଉପତ୍ୟକା, ଯେଉଁଠି ଅନ୍ୟ ଦେବାଦେବୀଙ୍କ ସହିତ ମାଧବ ଓ ଦଶ ଅବତାର ପୂଜିତ ହେଉଥିଲେ, ସେଠାରେ ଥିବା ବହୁ ସଂଖ୍ୟକ ମନ୍ଦିର ଏବଂ ପ୍ରତ୍ନତାତ୍ତ୍ୱିକ ଗୁରୁତ୍ୱପୂର୍ଣ୍ଣ ସ୍ଥାନଗୁଡ଼ିକର ସଂରକ୍ଷଣ ଓ ସୁରକ୍ଷା ନିହାତି ଆବଶ୍ୟକ ।

ଦୃତିକା ନିବାସ
କଣ୍ଟିଲୋ, ନୟାଗଡ଼

# ଶ୍ରୀଗୀତଗୋବିନ୍ଦ ପ୍ରଭାବିତ ଓଡ଼ିଆ ସଂସ୍କୃତି

ଡକ୍ଟର ସୁରେନ୍ଦ୍ର କୁମାର ମହାରଣା

**ଶ୍ରୀ**ଜଗନ୍ନାଥଙ୍କ ପରମଭକ୍ତ ଶ୍ରୀଜୟଦେବ ଓଡ଼ିଶାର ଜଣେ ଶ୍ରେଷ୍ଠ କବି ଓ ତାଙ୍କର ଖ୍ୟାତି ପୃଥିବୀ ପ୍ରସିଦ୍ଧ । ସେ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ପ୍ରାଚୀନଦୀ ତଟବର୍ତ୍ତୀ କେନ୍ଦୁବିଲ୍ୱ ଗ୍ରାମରେ ଭୂମିଷ୍ଠ ହୋଇଥିଲେ ପଣ୍ଡିତ ଭୋଜଦେବ ଓ ମାତା ବାମାଦେବୀଙ୍କ ସୁଯୋଗ୍ୟ ସନ୍ତାନ ଭାବରେ । କେନ୍ଦୁବିଲ୍ୱ ଦୁଇଟି ଶବ୍ଦର ସମଷ୍ଟି - କେନ୍ଦୁ ଓ ବିଲ୍ୱ । ସେତେବେଳେ କେନ୍ଦୁ ଓ ବେଲ ଗଛର ପ୍ରାବଲ୍ୟ ଏଠାରେ ଦୃଷ୍ଟିଗୋଚର ହେଉଥିବାରୁ ଏ ଗ୍ରାମର ଏପରି ନାମକରଣ । ବର୍ତ୍ତମାନ ମଧ୍ୟ ଏଠାରେ କେନ୍ଦୁ ଓ ବେଲଗଛର ଅଭାବ ନାହିଁ । ଏ ଦୃଷ୍ଟିରୁ, ଏ ସ୍ଥାନର କେନ୍ଦୁବିଲ୍ୱ ନାମକରଣ ଏକାନ୍ତ ଯଥାର୍ଥ । କେନ୍ଦୁଲି, କେନ୍ଦୁବିଲ୍ୱର ଅପଭ୍ରଷ୍ଟ ରୂପ ।

କବି ଜୟଦେବ ନିଜର ସଂସ୍କୃତକାବ୍ୟ ଗୀତଗୋବିନ୍ଦ ପାଇଁ ବିଶ୍ୱବିଦିତ । ସଂସ୍କୃତ ସାହିତ୍ୟର ଇତିହାସରେ ଏହା ଏକ ଅନବଦ୍ୟ କୃତି । ଏହି କାବ୍ୟ ସେ ଶ୍ରୀକ୍ଷେତ୍ର ପୁରୀଠାରେ ରଚନା କରିଥିଲେ । ସରଳ-ତରଳ-ରସ ଢଳଢଳ ପଦାବଳୀଯୁକ୍ତ ଏହି ଗ୍ରନ୍ଥଟିର ରଚୟିତା ଜୟଦେବଙ୍କ ଜନ୍ମସ୍ଥାନ ଦିନେ ବିବାଦୀୟ ହୋଇପଡ଼ିଥିଲା । ପଡ଼ୋଶୀ ରାଜ୍ୟ ବଙ୍ଗଳାର କେତେଜଣ ନ୍ୟସ୍ତସ୍ୱାର୍ଥ ତଥାକଥିତ ଗବେଷକ ଜୟଦେବଙ୍କୁ ବଙ୍ଗାଳୀ ବୋଲି ପ୍ରଚାର କଲେ । ଉଦ୍ଦେଶ୍ୟ - ଏଭଳି ଜଣେ ଯୋଗଜନ୍ମା ତଥା ଅଗାଧ ପାଣ୍ଡିତ୍ୟର ଅଧିକାରୀ ସଂସ୍କୃତ କବିଙ୍କୁ ନିଜ ରାଜ୍ୟର କହି ନିଜକୁ ଗୌରବମଣ୍ଡିତ କରିବା ଓ ନିଜ ରାଜ୍ୟର ମହତ୍ୱ ବୃଦ୍ଧି କରିବା । ଓଡ଼ିଶା ପୂର୍ବରୁ ବଙ୍ଗଳା ବ୍ରିଟିଶ୍ ଶାସନାଧୀନ ହୋଇଥିବାରୁ ବଙ୍ଗାଳୀମାନେ ପାଶ୍ଚାତ୍ୟ ଐତିହାସିକ ଓ ଗବେଷକମାନଙ୍କୁ ଭ୍ରମାତ୍ମକ ତଥ୍ୟ ପ୍ରଦାନ କରି ବିଶ୍ୱସ୍ତରରେ ଜୟଦେବଙ୍କୁ ବଙ୍ଗଳାର କବି ଭାବରେ ପ୍ରତିଷ୍ଠା ଦେବାକୁ ଚେଷ୍ଟା କଲେ । ଏପରିକି ବୀରଭୂମ ଜିଲ୍ଲାର ଅଜୟ ନଦୀକୂଳରେ କେନ୍ଦୁବିଲ୍ୱ ନାମକ ଗ୍ରାମ ସୃଷ୍ଟିକରି ଏହାକୁ ଜୟଦେବଙ୍କ ଜନ୍ମସ୍ଥାନ ଭାବରେ ଦାବି କଲେ । ଯାହାହେଉ, ସେମାନଙ୍କ ଷଡ଼ଯନ୍ତ୍ରକୁ ପଣ୍ଡ କରି ଜୟଦେବଙ୍କୁ ଓଡ଼ିଆ ଭାବରେ ପ୍ରମାଣିତ କରିବାରେ ଓଡ଼ିଶାର ଐତିହାସିକ ଓ ଗବେଷକମାନଙ୍କର ଶ୍ରମ ସାର୍ଥକ ହୋଇଛି । ବର୍ତ୍ତମାନ ବଙ୍ଗାଳୀ ଗବେଷକମାନେ ମଧ୍ୟ ସେମାନଙ୍କ ଭ୍ରମଧାରଣା ସଂଶୋଧନ କରି ଜୟଦେବଙ୍କୁ ଓଡ଼ିଆ ବୋଲି ସ୍ୱୀକାର କଲେଣି । ଓଡ଼ିଶାର କେନ୍ଦୁଲି ବର୍ତ୍ତମାନ ବିଶ୍ୱବାସୀଙ୍କ ପାଇଁ ଏକ ପରମ ତୀର୍ଥକ୍ଷେତ୍ର ।

ସରଳ-ତରଳ-କାନ୍ତ-କୋମଳ ପଦାବଳୀ ସମନ୍ୱିତ ଜୟଦେବକୃତ ଗୀତଗୋବିନ୍ଦର ପ୍ରଭାବ ଓଡ଼ିଶାର ସଂସ୍କୃତିକୁ ବହୁ ଭାବରେ ପ୍ରଭାବିତ କରିଛି । 'ସଂସ୍କୃତି' ଏକ ବ୍ୟାପକ ଅର୍ଥବୋଧକ ଶବ୍ଦ । ଜନ-ଜୀବନ, କଳା, ସ୍ଥାପତ୍ୟ, ଧର୍ମ, ସାହିତ୍ୟ ଇତ୍ୟାଦି ସଂସ୍କୃତିର ଅନ୍ତର୍ଭୁକ୍ତ । ସଂସ୍କୃତିର ପ୍ରତି ବିଭାଗରେ ଜୟଦେବଙ୍କ ଅମର କୃତି 'ଗୀତଗୋବିନ୍ଦ'ର ପ୍ରଭାବ ଅନୁଭୂତ ହୁଏ ।

ପ୍ରଥମେ ଓଡ଼ିଶାର ସାମାଜିକ ଜୀବନକୁ ଉଦାହରଣ ସ୍ୱରୂପ ଗ୍ରହଣ କରାଯାଉ । ଉତ୍କଳୀୟ ସମାଜ ଏକ ଉନ୍ନତ ସମାଜ । ଏହାର ଅଧିବାସୀ ଅର୍ଥାତ୍ ଉତ୍କଳୀୟମାନେ 'ଗୀତଗୋବିନ୍ଦ'କୁ ଖୁବ୍ ଆଦର କରନ୍ତି, ଭକ୍ତି କରନ୍ତି । ପୂର୍ବେ ପ୍ରତ୍ୟେକ ଗ୍ରାମରେ ଭାଗବତ ଟୁଙ୍ଗି, ଭାଗବତ ଘର ବା ଭାଗବତ ଗାଦି ରହିଥିଲା । ଏସବୁରେ ଜଗନ୍ନାଥ ଦାସଙ୍କ ଓଡ଼ିଆ 'ଭାଗବତ' ପୋଥି ସହିତ 'ଗୀତଗୋବିନ୍ଦ'ର ପୋଥି ପୂଜା ପାଉଥିଲା ଏବଂ ପଢ଼ା ଯାଉଥିଲା । ଯେଉଁଠି 'ଗୀତଗୋବିନ୍ଦ'ର ସଂପୂର୍ଣ୍ଣ ପୋଥି ନଥିଲା, ସେଠାରେ କେବଳ 'ଦଶାବତାର' ପୋଥିଟି ରହୁଥିଲା । 'ରୁଚୁ ବା ନ ରୁଚୁ ଖାଅ ପିତା, ବୁଝ ବା ନବୁଝ ପଢ଼ ଗୀତା' ପ୍ରବଚନଟି ଓଡ଼ିଶାରେ ବହୁ ଆଗରୁ ପ୍ରଚଳିତ । ପିତା ପାଟିକୁ ଭଲ ଲାଗୁ ନଥିଲେ ବି ସ୍ୱାସ୍ଥ୍ୟ ପାଇଁ ଉପକାରୀ, ଏଣୁ ପିତା ସମସ୍ତେ ସବୁବେଳେ ଖାଇବା ଉଚିତ । ସେହିପରି ଗୂଢ଼ ଦର୍ଶନତତ୍ତ୍ୱ ସମ୍ବଳିତ 'ଶ୍ରୀମଦ୍ ଭଗବଦ୍ ଗୀତା' ବୁଝି ନ ହେଉ ପଛେ ଏହାକୁ ଧର୍ମାର୍ଜନ ନିମନ୍ତେ ପାଠ କରିବା ଓ ଶ୍ରବଣ କରିବା ଉଚିତ । ସେହିପରି 'ଗୀତଗୋବିନ୍ଦ'ର ଅର୍ଥ ବୁଝି ହେଉ ବା ନ ହେଉ, ତାହା ଉତ୍କଳୀୟ ଜନତା ଶିକ୍ଷିତ-

ଅଶିକ୍ଷିତ ନିର୍ବିଶେଷରେ ମୁଖସ୍ଥ କରୁଥିଲେ, ଗାଉଥିଲେ । ଏହାର ସୁଲଳିତ ସ୍ୱରମାଧୁରୀ ମନେ ରଖିବା ପାଇଁ ସହଜ ହେଉଥିଲା । ଓଡ଼ିଶାର ଜନଜୀବନରେ ଏହା କିପରି ଗଭୀର ପ୍ରଭାବ ପକାଇଥିଲା, ତାହା ଦର୍ଶାଇବା ପାଇଁ ଜନଶ୍ରୁତିରୁ ଏକ ଉଦାହରଣ ନିମ୍ନରେ ପ୍ରଦତ୍ତ ।

ଏକଦା ଏକ ନିରକ୍ଷରା ପଲ୍ଲୀଲଳନା ପ୍ରାତଃକାଳରେ ନିଜ ବାଡ଼ିରେ ଥିବା ବାଇଗଣ କିଆରୀରେ ବାଇଗଣ ତୋଳୁ ଥିଲା । ସେ ସ୍ୱଭାବବଶତଃ ବାଇଗଣ ତୋଳିବା ସମୟରେ ଗୀତଗୋବିନ୍ଦ ଗାଉଥିଲା । ଶ୍ରୀଜଗନ୍ନାଥ 'ଗୀତଗୋବିନ୍ଦ' ଶୁଣିବାକୁ ଖୁବ୍ ଭଲ ପାଆନ୍ତି । ସେ ଗୀତଗୋବିନ୍ଦ ବୋଲା ଯାଉଥିବା ଜାଣିପାରି ଅବିଳମ୍ବେ ରତ୍ନସିଂହାସନ ତ୍ୟାଗ କରି ବାଇଗଣ କିଆରୀରେ ପହଞ୍ଚିଛନ୍ତି । ପଲ୍ଲୀଲଳନା ବାଇଗଣ ତୋଳି ତୋଳି ଆଗକୁ ଆଗକୁ ଚାଲିଛି, ଶ୍ରୀଜଗନ୍ନାଥ ତା' ପଛେ ପଛେ ଚାଲିଛନ୍ତି । ସେ ବାଇଗଣ କିଆରୀରେ ବୁଲିବାରେ ଅଭ୍ୟସ୍ତ ନୁହନ୍ତି, ତେଣୁ ବାଇଗଣ କଣ୍ଟାରେ ତାଙ୍କ ଦେହ ରକ୍ତାକ୍ତ ହୋଇଛି ଓ ପାଟବସ୍ତ୍ର ଚିରି ଯାଇଛି । ଗୀତଗୋବିନ୍ଦ ଶୁଣିବାରେ ସେ ଏତେ ବିଭୋର ଯେ ଦେହରେ କଣ୍ଟା ଫୁଟିବାର ଯନ୍ତ୍ରଣା ଜାଣିପାରିନାହାନ୍ତି । ଗୀତଗୋବିନ୍ଦ ଶୁଣିସାରିବା ପରେ ସେ ଫେରିଛନ୍ତି ରତ୍ନସିଂହାସନ । ପଣ୍ଡା ଓ ସେବକମାନେ ଠାକୁରଙ୍କର ଏ ଅବସ୍ଥା ଦେଖି ଆଶ୍ଚର୍ଯ୍ୟ ହୋଇଛନ୍ତି । ଗଜପତି ମହାରାଜା ପ୍ରତାପରୁଦ୍ର ଦେବଙ୍କୁ ଏକଥା ଜଣାଇ ଦିଆଯାଇଛି । ଏପରି ଅଘଟଣର କାରଣ ଜାଣିବା ପାଇଁ ମହାରାଜା ଅନ୍ନଜଳ ତ୍ୟାଗ କରି ଶ୍ରୀଜଗନ୍ନାଥଙ୍କ ଶରଣାପନ୍ନ ହୋଇଛନ୍ତି । ରାଜାଙ୍କୁ ଶ୍ରୀଜଗନ୍ନାଥଙ୍କର ସ୍ୱପ୍ନାଦେଶ ହୋଇଛି ଯେ, ଗୀତଗୋବିନ୍ଦର ମଧୁର ଝଙ୍କାର ଶୁଣିବାମାତ୍ରେ ସେ ଉଲ୍ଲସିତ ହୋଇଉଠନ୍ତି । ପଲ୍ଲୀଲଳନାର ଗୀତଗୋବିନ୍ଦ ଗାନ ଏତେ ମଧୁର ଓ ଶ୍ରୁତି ସୁଖକର ଥିଲା ଯେ ସେ ବାଇଗଣ କିଆରୀରେ ତା' ପଛେ ପଛେ ବୁଲି ଗୀତଗୋବିନ୍ଦ ଶୁଣିଲେ । ବାଇଗଣ କଣ୍ଟା ବାଜି ତାଙ୍କ ପାଟବସ୍ତ୍ର ଛିନ୍ନ ହୋଇଛି । ମହାରାଜା ବହୁ କଷ୍ଟରେ ସେହି ପଲ୍ଲୀଲଳନାର ଠିକଣା ପାଇଛନ୍ତି, ତା'ଠାରୁ ସମସ୍ତ ବିଷୟ ଅବଗତ ହୋଇଛନ୍ତି । ସେହି ଦିନଠାରୁ 'ଗୀତଗୋବିନ୍ଦ'କୁ ଉତ୍କଳରେ ରାଷ୍ଟ୍ରୀୟ ସଙ୍ଗୀତର ମର୍ଯ୍ୟାଦା ଦିଆଯାଇଛି ଏବଂ ଯେକୌଣସି ଜାଗାରେ ଗୀତଗୋବିନ୍ଦ ଆବୃତ୍ତି ଉପରେ ନିଷେଧାଜ୍ଞା ଜାରି ହୋଇଛି । କେବଳ ମଠ, ମନ୍ଦିର ଓ ଅନ୍ୟାନ୍ୟ ଧାର୍ମିକ ଅନୁଷ୍ଠାନରେ ଗୀତଗୋବିନ୍ଦ ପାଠ ହେବାର ରାଜାଦେଶ ହୋଇଛି ।

ଏହି ଉଦାହରଣରୁ ଏହା ସ୍ପଷ୍ଟ ହୁଏ ଯେ, ନିରକ୍ଷରା ପଲ୍ଲୀଲଳନା ମଧ୍ୟ 'ଗୀତଗୋବିନ୍ଦ' ମୁଖସ୍ଥ କରୁଥିଲା ଓ ସୁଲଳିତ କଣ୍ଠରେ ଗାନ କରିପାରୁଥିଲା । ଏହା ହିଁ ଉତ୍କଳୀୟ ଜନଜୀବନରେ 'ଗୀତଗୋବିନ୍ଦ'ର ପ୍ରଭାବ । ଏତଦ୍‌ବ୍ୟତୀତ ପ୍ରାଚୀନ ଓଡ଼ିଆ ସମାଜରେ ଦଶାବତାର ଶାଢ଼ୀ, ଦଶାବତାର ମୁଦି, ଦଶାବତାର ମାଳ ଇତ୍ୟାଦି ନାରୀ ଆଭୂଷଣର ପ୍ରଚଳନ ଥିଲା । ଗ୍ରାମର ଝିଅଟିଏ ଶାଶୁଘର ଗଲାବେଳେ ତା' ପେଡ଼ିରେ 'ଗୀତଗୋବିନ୍ଦ' ବହିଟିଏ ଦିଆଯାଉଥିଲା । କେହି କେହି ଗୀତଗୋବିନ୍ଦ ଦୃଶ୍ୟ ବର୍ଣ୍ଣିତ, ଦଶାବତାର ଦୃଶ୍ୟ ସମ୍ବଳିତ ବା 'ଗୀତଗୋବିନ୍ଦ'ର ଶ୍ଲୋକାବଳୀ ଲିଖିତ ଖଣ୍ଡୁଆଟିଏ ଝିଅ ସହିତ ପଠାଉଥିଲେ, ଯାହା ଝିଅର ଶାଶୁଘର ଗ୍ରାମରେ ଗ୍ରାମଦେବତୀଙ୍କୁ ଲାଗି କରାଯାଉଥିଲା । ତତ୍କାଳୀନ ଉତ୍କଳୀୟ ସମାଜରେ 'ଗୀତଗୋବିନ୍ଦ'ର ଗଭୀର ଓ ବ୍ୟାପକ ପ୍ରଭାବ ଏଥିରୁ ଅନୁମିତ ହୁଏ ।

ସଂସ୍କୃତିର ଅନ୍ୟତମ ବିଭବ କଳା । ଓଡ଼ିଶାର ମନ୍ଦିର, ମଠ, ଗାଦି ଆଦି ଧାର୍ମିକ ପୀଠର କାନ୍ଥ ଓ ରାଜା ମହାରାଜାମାନଙ୍କ ଉଆସରେ କାନ୍ଥରେ ଦଶାବତାର ଓ ରାଧାକୃଷ୍ଣ ଲୀଳା ସମ୍ବଳିତ 'ଗୀତଗୋବିନ୍ଦ'ର ବିଭିନ୍ନ ଦୃଶ୍ୟ ଅଙ୍କିତ ହୋଇଥିବା ଦେଖାଯାଏ । ଏବେବି ଗ୍ରାମର ସ୍ତ୍ରୀଲୋକମାନେ ଘରକାନ୍ଥ ଲିପିପୋଛି ପରିଷ୍କାର କରି ସେଥିରେ ଦଶାବତାର ଚିତ୍ରର ଝୋଟି ଆଙ୍କନ୍ତି । କେଉଁଠି ବାମନ ଅବତାର ତ କେଉଁଠି କୂର୍ମ ଅବତାର, କେଉଁଠି ମୀନ ଅବତାର ତ କେଉଁଠି କଳ୍କୀ ଅବତାର । ଯାହାକୁ ଯେଉଁ ଚିତ୍ର ଯେମିତି ଆସେ ସେ ସେମିତି ଆଙ୍କେ । ସେହିପରି 'ଗୀତଗୋବିନ୍ଦ' ବର୍ଣ୍ଣିତ ରାଧାମାଧବ ଲୀଳାର ବିଭିନ୍ନ ଦୃଶ୍ୟ ସେମାନେ କାନ୍ଥରେ ଅଙ୍କନ କରି ସେମାନଙ୍କର କଳାପ୍ରାଣତା ଓ କଳାନିପୁଣତାର ପରିଚୟ ଦିଅନ୍ତି ।

କେନ୍ଦୁଲି ଗ୍ରାମର ବୁଣାକାରମାନେ 'ଗୀତଗୋବିନ୍ଦ' ଆଖ୍ୟାନ ଆଧାରିତ ଦୃଶ୍ୟମାନ ଦେବୋପଯୋଗୀ ବସ୍ତ୍ରମାନଙ୍କରେ ବୁଣୁଥିଲେ । ଏହା ମଧ୍ୟ ଉତ୍କଳୀୟ କଳା ସଂସ୍କୃତି ଉପରେ ଗୀତଗୋବିନ୍ଦର ପ୍ରଭାବର ଏକ ସୁନ୍ଦର ନିଦର୍ଶନ । ଓଡ଼ିଶାର ବିଭିନ୍ନ ସ୍ଥାନରେ 'ଗୀତଗୋବିନ୍ଦ' ଶ୍ଲୋକାବଳୀ ସମ୍ବଳିତ ଖଣ୍ଡୁଆମାନ ବୁଣାକାରମାନେ ପ୍ରସ୍ତୁତ କରୁଛନ୍ତି । ଜଗନ୍ନାଥଙ୍କ ବଡ଼ସିଂହାର ପରେ ଗୀତଗୋବିନ୍ଦ ଖଣ୍ଡୁଆ ତାଙ୍କ ଉପରେ ଘୋଡ଼େଇ ଦିଆଯାଏ, ନଚେତ୍ ଶ୍ରୀଜୀଉ ନିଦ୍ରା ଯାଆନ୍ତି ନାହିଁ । କାହିଁ କେଉଁ କାଳରୁ ଉତ୍କଳୀୟ ସଂସ୍କୃତିକୁ ଏହି ଖଣ୍ଡୁଆ ବୁଣା ପ୍ରଭାବିତ କରି ଆସୁଅଛି ।

ଉତ୍କଳୀୟ ସ୍ଥାପତ୍ୟ ଶିଳ୍ପରେ ମଧ୍ୟ ରହିଛି 'ଗୀତଗୋବିନ୍ଦ'ର ଅଖଣ୍ଡ ପ୍ରଭାବ । ଓଡ଼ିଶାର ପ୍ରାୟ ସମସ୍ତ ମନ୍ଦିର ଗାତ୍ରରେ ଦଶାବତାର ଖୋଦିତ । ସେହିପରି ଗୀତଗୋବିନ୍ଦ ବର୍ଣ୍ଣିତ ରାଧାକୃଷ୍ଣ ଲୀଳାର ବିଭିନ୍ନ ଦୃଶ୍ୟ ମଧ୍ୟ ଶୋଭିତ । ଏସବୁ ଉତ୍କଳୀୟ ସ୍ଥପତିର ଶିଳ୍ପନୈପୁଣ୍ୟର ଗୋଟିଏ ଗୋଟିଏ ସୁନ୍ଦର ଉଦାହରଣ ଏବଂ ଓଡ଼ିଶାର ସାଂସ୍କୃତିକ କ୍ଷେତ୍ରରେ ଗୀତଗୋବିନ୍ଦର ଗୁରୁତ୍ୱପୂର୍ଣ୍ଣ ଭୂମିକାର ବଳିଷ୍ଠ ନିଦର୍ଶନ ।

ଉତ୍କଳୀୟ ଧର୍ମଚିନ୍ତନରେ ଗୀତଗୋବିନ୍ଦର ପ୍ରଭାବ ଅପରିମେୟ । ଯେକୌଣସି ଦେବମନ୍ଦିର ଓ ଦେବୀ ମନ୍ଦିରରେ ଗୀତଗୋବିନ୍ଦ ଗାନ ବ୍ୟବସ୍ଥା ଥିଲା । ମନ୍ଦିର ପରିସରରେ ସକାଳେ ଓ ସଂଧ୍ୟାରେ ଗୀତଗୋବିନ୍ଦ ପାଠ କରାଯାଉଥିଲା । ପୁରୀ ଶ୍ରୀମନ୍ଦିରରେ ଗୀତଗୋବିନ୍ଦର ଆବୃତ୍ତି ବହୁକାଳରୁ ପ୍ରଚଳିତ । ସମୟ ଥିଲା, ଯେତେବେଳେ ଉତ୍କଳୀୟ ଧର୍ମପ୍ରାଣ ଜନତା ଗୀତଗୋବିନ୍ଦ ପାଠ କଲା ପର୍ଯ୍ୟନ୍ତ ଖାଦ୍ୟ ଗ୍ରହଣ କରୁ ନଥିଲେ ।

ଉତ୍କଳୀୟ ଧାର୍ମିକ ପରମ୍ପରାରେ ଗୀତଗୋବିନ୍ଦକୁ ନେଇ ବହୁ ଦେବତାଙ୍କ ସମ୍ବନ୍ଧରେ କିମ୍ବଦନ୍ତୀମାନ ସୃଷ୍ଟି ହୋଇଛି । ପଶ୍ଚିମକୁ ମୁହଁ କରି ଓଡ଼ିଶାରେ ଯେତେ ମନ୍ଦିର ରହିଛି, ସେସମ୍ବନ୍ଧରେ ଗୀତଗୋବିନ୍ଦକୁ ନେଇ ବହୁ କିମ୍ବଦନ୍ତୀର ସୂତ୍ରପାତ ହୋଇଛି । ଉଦାହରଣ ସ୍ୱରୂପ ଅବିଭକ୍ତ ଢେଙ୍କାନାଳ ଜିଲ୍ଲାର କୁଆଳ ଗ୍ରାମରେ ଅବସ୍ଥିତ ଶିବମନ୍ଦିର ପଶ୍ଚିମ ମୁଖା । କିମ୍ବଦନ୍ତୀ କହେ, ସେ ଅଞ୍ଚଳରେ ଜଣେ ଲୋକ କୁଷ୍ଠ ରୋଗାକ୍ରାନ୍ତ ହୋଇ ହସ୍ତପଦ ହରାଇଥିଲା । ପ୍ରତି ସନ୍ଧ୍ୟାରେ ତା'ଭାଇ ତାକୁ ଆଣି ଏହି ମନ୍ଦିର ପଛରେ ବସାଇ ଦେଇଯାଏ, ସକାଳୁ ଆସି ନେଇଯାଏ । ସେ ମାଦଳ ଲୋକଟି ରାତିରେ ଖୁବ୍ ସୁନ୍ଦର ଭାବରେ ଗୀତଗୋବିନ୍ଦ ଗାଏ । ମହାଦେବଙ୍କୁ ଗୀତଗୋବିନ୍ଦ ଶୁଣିବାକୁ ଖୁବ୍ ଭଲ ଲାଗେ । ସେ ପ୍ରତି ରାତିରେ ଗୀତଗୋବିନ୍ଦ ଶୁଣନ୍ତି, କିନ୍ତୁ ଗାଉଥିବା ଲୋକଟିକୁ ଦେଖିପାରନ୍ତି ନାହିଁ । ସେ ଥରେ ବଡ଼ପାଟିରେ କହିଲେ, 'ହେ ଭାଇ, କିଏ ଗୀତ ଗାଉଛ, ମୋ ଆଗକୁ ଆସ ।' ମାଦଳ କହିଲା, 'ମୋର ହାତଗୋଡ଼ ନାହିଁ, ମୁଁ କିପରି ଆଗକୁ ଯିବି ?' ମହାଦେବ ସେ ଲୋକଟିକୁ ଦେଖିବାର ଲୋଭ ସମ୍ବରଣ କରିପାରିଲେ ନାହିଁ । ସଂଗେସଂଗେ ମନ୍ଦିରର ମୁହଁ ପଶ୍ଚିମକୁ ବୁଲିଗଲା । ସେହି ଦିନଠାରୁ ଏହା ପଶ୍ଚିମମୁଖା ।

କେଉଁ ପରିବେଶ ଓ ପରିସ୍ଥିତିରେ ଏବଂ କେଉଁ କାରଣରୁ ଏହି ମନ୍ଦିରକୁ ପଶ୍ଚିମମୁଖା କରାଯାଇ ନିର୍ମାଣ କରାଯାଇଛି, ତାହାର ଇତିହାସ କେହି ଜାଣିବାକୁ ଚାହୁଁ ନାହାନ୍ତି । ନିଜ ଧର୍ମସତ୍ତା ମଧ୍ୟରେ 'ଗୀତଗୋବିନ୍ଦ'ର ପ୍ରଭାବ ଏତେ ବେଶୀ ପଡ଼ିଛି ଯେ ଏହା କେବଳ ଗୀତଗୋବିନ୍ଦ ଶୁଣିବା ପାଇଁ ଠାକୁରଙ୍କ ଇଚ୍ଛାରୁ ହୋଇଛି ବୋଲି ଲୋକେ ବିଶ୍ୱାସ କରନ୍ତି ।

ସାହିତ୍ୟ ସଂସ୍କୃତିର ଏକ ବଳିଷ୍ଠ ବିଭବ । ଓଡ଼ିଆ ସାହିତ୍ୟ ଉପରେ ଗୀତଗୋବିନ୍ଦର ପ୍ରଭାବ ଅତି ସ୍ପଷ୍ଟ । ସାରଳା ଦାସଙ୍କଠାରୁ ଆରମ୍ଭ କରି ରାଧାକୃଷ୍ଣ ଲୀଳାତ୍ମକ କାବ୍ୟ କବିତାମାନ ଗୀତଗୋବିନ୍ଦ ଦ୍ୱାରା ପ୍ରଭାବିତ । ସାରଳା ଦାସ ଓଡ଼ିଆ ମହାଭାରତର ବନପର୍ବରେ ରାଧାକୃଷ୍ଣ ଲୀଳା ବର୍ଣ୍ଣନା କରିଛନ୍ତି । ବିରାଟ ପର୍ବରେ କୀଚକ ଦ୍ରୌପଦୀଙ୍କ ପାଖକୁ ଦାସୀ କରୁଣା ହସ୍ତରେ କିଛି ଅଳଙ୍କାର ଉପହାର ସ୍ୱରୂପ ପଠାଇଛି । ସେହି ଅଳଙ୍କାରଗୁଡ଼ିକ ମଧ୍ୟରେ 'ଦଶାବତାର ମାଳ'ର ଉଲ୍ଲେଖ ରହିଛି ।

ନାରାୟଣାନନ୍ଦ ଅବଧୂତ ସ୍ୱାମୀ ସ୍ୱରଚିତ 'ରୁଦ୍ରସୁଧାନିଧି'ର ପଦ ସଂଯୋଜନାରେ ଗୀତଗୋବିନ୍ଦର କେତେକ ପଦକୁ ଗ୍ରହଣ କରି ଗୀତଗୋବିନ୍ଦ ପ୍ରତି ତାଙ୍କ ଗଭୀର ଶ୍ରଦ୍ଧା ପ୍ରକଟ କରିଛନ୍ତି । ନରସିଂହ ସେଣଙ୍କ 'ଗୋପକେଳି'ରେ ଗୀତଗୋବିନ୍ଦ ଅନୁକରଣରେ ରାଧାକୃଷ୍ଣଙ୍କ ବସନ୍ତ ରାସ ସୁଲଳିତ ଛନ୍ଦ ବିନ୍ୟାସରେ ରୂପ ପାଇଛି । ଏହା ଉତ୍କଟ ଶୃଙ୍ଗାର ରସରେ ପୂର୍ଣ୍ଣ । ଏହା ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଗୀତଗୋବିନ୍ଦ ଅନୁକରଣରେ ରଚିତ ପ୍ରଥମ ଶୃଙ୍ଗାର କାବ୍ୟ ।

ଦୀନକୃଷ୍ଣ ଦାସଙ୍କ 'ଅମୃତ ସାଗର ବୋଲି' ଗୀତଗୋବିନ୍ଦର ପ୍ରଭାବରେ ରଚିତ ରାଧାକୃଷ୍ଣ ଲୀଳା ସମ୍ବଳିତ ଏକ ଉତ୍କୃଷ୍ଟ କାବ୍ୟ । ତାଙ୍କ 'ରସକଲ୍ଲୋଳ'ରେ ମଧ୍ୟ ଗୀତଗୋବିନ୍ଦର ଅଖଣ୍ଡ ପ୍ରଭାବ ପରିଲକ୍ଷିତ । ଦେବଦୁର୍ଲଭ ଦାସଙ୍କ 'ରହସ୍ୟ ମଞ୍ଜରୀ', ଭୂପତି ପଣ୍ଡିତଙ୍କ 'ପ୍ରେମ ପଞ୍ଚାମୃତ', ଦାଶରଥି ଦାସଙ୍କ 'ବ୍ରଜବିହାର' ଗୋଟିଏ ଗୋଟିଏ ଉତ୍କୃଷ୍ଟ କୃଷ୍ଣ କାବ୍ୟ । ଗୀତଗୋବିନ୍ଦର ପ୍ରଭାବ ଏସବୁରେ ସୁସ୍ପଷ୍ଟ ।

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ରାଧାକୃଷ୍ଣ-ଯୁଗଳ-ଉପାସନାରେ ଆତ୍ମହରା ହୋଇ ରଚନା କରିଥିଲେ, 'ଯୁଗଳ ରସାମୃତ ଲହରୀ', 'ରସାମୃତ ଭଉଁରୀ', 'ଯୁଗଳ ରସାମୃତ ବିନ୍ଦୁ' ଇତ୍ୟାଦି କାବ୍ୟ । ସେହିପରି 'ବିଦଗ୍ଧ ଚିନ୍ତାମଣି'ରେ ଏହାର କବି ଅଭିମନ୍ୟୁ ସାମନ୍ତସିଂହାର ଅପ୍ରାକୃତ ପ୍ରେମମୂର୍ତ୍ତି ଶ୍ରୀରାଧା-ହରିଙ୍କ ଅବ୍ୟକ୍ତ ଲୀଳାକୁ ଅତି ଚମତ୍କାର ଭାବରେ ବ୍ୟକ୍ତ କରିଛନ୍ତି ।

କବିସୂର୍ଯ୍ୟ ବଳଦେବ ରଥଙ୍କ ଉପରେ ଗୀତଗୋବିନ୍ଦର ପ୍ରଭାବ ଖୁବ୍ ବେଶି ଅନୁଭୂତ ହୁଏ । ତାଙ୍କ 'କିଶୋର ଚନ୍ଦ୍ରାନନ୍ଦ

ଚମ୍ପୂ' ଗୀତଗୋବିନ୍ଦର କଥାବସ୍ତୁକୁ ଅତି ବିଶ୍ୱସ୍ତ ଭାବରେ ଅନୁକରଣ କରିଛି । ତେଣୁ 'ଗୀତଗୋବିନ୍ଦ' ଓ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ'ର କଥାବସ୍ତୁ ସଂପୂର୍ଣ୍ଣତଃ ସମାନ ।

ଗୋପୀନାଥ ଧୀର ଜଗଦ୍ଦେବ ଓ ଗୌରହରି ପରିଚ୍ଛା 'ଗୀତଗୋବିନ୍ଦ'କୁ ରାଗତାଳ ନିବଦ୍ଧ ସଂଗୀତରେ ରୂପାନ୍ତରିତ କରିଛନ୍ତି । ପିଣ୍ଡିକ ଶ୍ରୀଚନ୍ଦନ ସ୍ୱରଚିତ 'ବସନ୍ତ ରାସ'ରେ ବଙ୍ଗଳା ମିଶା ଭାଷାର କୃଷ୍ଣଲୀଳା ବର୍ଣ୍ଣନ କରିଛନ୍ତି । ଜୟଦେବଙ୍କ ପ୍ରଭାବ ଏଥିରେ ଖୁବ୍ ସହଜରେ ଧରା ପଡ଼ିଯାଏ । ଓଡ଼ିଆ ରାସ ସାହିତ୍ୟର ସମୃଦ୍ଧ ପରମ୍ପରା ରହିଛି । ପରବର୍ତ୍ତୀ କାଳରେ ଯେଉଁମାନେ ରାସଲୀଳା ରଚନା କରିଛନ୍ତି, ସେମାନେ ପ୍ରାୟ ସମସ୍ତେ ଗୀତଗୋବିନ୍ଦ ଦ୍ୱାରା ପ୍ରଭାବିତ ।

ପ୍ରାଚୀନ ଓ ମଧ୍ୟଯୁଗୀୟ କବିମାନଙ୍କ ରଚନାରେ କେବଳ ଯେ ଗୀତଗୋବିନ୍ଦର ପ୍ରଭାବ ପରିଲକ୍ଷିତ ହୁଏ, ତାହା ନୁହେଁ, ଆଧୁନିକ ଯୁଗରେ ମଧ୍ୟ ରାଧାକୃଷ୍ଣ ଲୀଳା ଉପଜୀବ୍ୟରେ ରାସମାନ ରଚିତ ହୋଇଛି । ବିଶ୍ୱମ୍ଭର ରାଜେନ୍ଦ୍ର ଦେବ, କିଶୋର ଚନ୍ଦ୍ର ରାଜେନ୍ଦ୍ର ଦେବ, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ଗୋବିନ୍ଦ ଚନ୍ଦ୍ର ଶୂରଦେଓ, ମୋହନ ସୁନ୍ଦର ଦେବଗୋସ୍ୱାମୀ, ବାବାଜୀ ବୈଷ୍ଣବ ଚରଣ ଦାସ, କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ ପ୍ରଭୃତି କବିମାନେ ଗୀତଗୋବିନ୍ଦର କଥାବସ୍ତୁ ଆଧାରରେ ରାସମାନ ରଚନା କରିଛନ୍ତି ।

ମୋହନ ସୁନ୍ଦର ଦେବ ଗୋସ୍ୱାମୀଙ୍କର କୃଷ୍ଣଲୀଳା ଆଧାରିତ କେତୋଟି ରାସଗ୍ରନ୍ଥ ଥିଲେ ହେଁ, ସେସବୁ ମଧ୍ୟରେ 'ମାନଭଞ୍ଜନ' ଅଧିକ ଲୋକପ୍ରିୟତାର ଅଧିକାରୀ । ବାବାଜୀ ବୈଷ୍ଣବଚରଣ ଦାସଙ୍କ 'ବିରହମାନ' ଏକ ଅନବଦ୍ୟ ରାସଗ୍ରନ୍ଥ । ଗୀତଗୋବିନ୍ଦ କଥାବସ୍ତୁ ଅବଲମ୍ବନରେ ସେ 'ଗୀତଗୋବିନ୍ଦ' ନାମକ ରାସ ଗ୍ରନ୍ଥ ମଧ୍ୟ ରଚନା କରିଛନ୍ତି । 'ରାସଲୀଳା' ତାଙ୍କର ଅନ୍ୟତମ କୃଷ୍ଣକାବ୍ୟ । କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ 'ବନବିହାର' ନାମକ ରାସଗ୍ରନ୍ଥ ରଚନା କରିଥିଲେ । ଏହା ତାଙ୍କର ପ୍ରାଥମିକ କୃତି । 'ବାଂଶରୀ ବିଳାସ' ଓ 'କୌତୁକ ଚିନ୍ତାମଣି' ତାଙ୍କର ଦୁଇଖଣ୍ଡ ସରସ କୃଷ୍ଣକାବ୍ୟ । ଶ୍ରୀଗୀତଗୋବିନ୍ଦକୁ ସେ ନାଟ୍ୟରୂପ ଦେଇଛନ୍ତି ଏବଂ ଶ୍ରୀଜୟଦେବଙ୍କ ଜୀବନୀକୁ ନେଇ 'ଜୟଦେବ' ନାଟକ ରଚନା କରିଛନ୍ତି, ଯାହା ବିଭିନ୍ନ ମଞ୍ଚରେ ଅଭିନୀତ ହୋଇଛି ଏବଂ ଚଳଚ୍ଚିତ୍ରରେ ରୂପାୟିତ ହୋଇଛି ।

କେବଳ କୃଷ୍ଣକାବ୍ୟ କଥାବସ୍ତୁ ଦୃଷ୍ଟିରୁ ନୁହେଁ, କୃଷ୍ଣକାବ୍ୟ ବ୍ୟତିରେକ ଅନ୍ୟାନ୍ୟ କାବ୍ୟ ମଧ୍ୟ ରଚନାରୀତି ପାଇଁ ଗୀତଗୋବିନ୍ଦ ପାଖରେ ଋଣୀ । ଉଦାହରଣ ସ୍ୱରୂପ ଶିଶୁଶଙ୍କର ଦାସଙ୍କ 'ଉଷାଭିଳାଷ' କାବ୍ୟକୁ ଗ୍ରହଣ କରାଯାଉ । ଏହା କୃଷ୍ଣକାବ୍ୟ ନୁହେଁ । ବାଣାସୁର ନନ୍ଦିନୀ ଉଷା ଓ ଶ୍ରୀକୃଷ୍ଣଙ୍କ ପୁତ୍ର ଅନିରୁଦ୍ଧ ମଧ୍ୟରେ ପ୍ରଣୟ ଓ ପରିଣୟ ଏହାର ବିଷୟବସ୍ତୁ । କିନ୍ତୁ ଗୀତଗୋବିନ୍ଦରେ ଭଗବାନ ଶ୍ରୀକୃଷ୍ଣ ସମ୍ଭୋଗ ଶୃଙ୍ଗାର ପରେ ଶ୍ରୀରାଧାଙ୍କ କେଶ ରଚନା କରିଛନ୍ତି । ଅନୁରୂପ ଭାବରେ ଶିଶୁଶଙ୍କର ଅନିରୁଦ୍ଧଦ୍ୱାରା ସମ୍ଭୋଗ ଶୃଙ୍ଗାର ପରେ ଉଷାର କେଶ ବନ୍ଧନ କରାଇଛନ୍ତି । ଏହା ଶିଶୁଶଙ୍କରଙ୍କ ଉପରେ ଶ୍ରୀଗୀତଗୋବିନ୍ଦର ପ୍ରତ୍ୟକ୍ଷ ପ୍ରଭାବ ।

ଏହି ଆଲୋଚନାରୁ ଏହା ସ୍ପଷ୍ଟ ଯେ, ଗୀତଗୋବିନ୍ଦ ଉତ୍କଳୀୟ ସଂସ୍କୃତିକୁ ଜୟଦେବଙ୍କର ଏକ ଅତୁଳନୀୟ ଦାନ । ପ୍ରାଚୀନ ମଧ୍ୟଯୁଗ ଓ ଆଧୁନିକ ଓଡ଼ିଆ ସାହିତ୍ୟକୁ ଗୀତଗୋବିନ୍ଦ ବହୁ ଭାବରେ ପ୍ରଭାବିତ କରିଛି । ଉତ୍କଳୀୟ ସମାଜ କଳା, ସ୍ଥାପତ୍ୟ, ଧର୍ମ ଓ ସାହିତ୍ୟରେ ମଧ୍ୟ ଗୀତଗୋବିନ୍ଦର ଅଖଣ୍ଡ ପ୍ରଭାବ ଅନୁଭୂତ ହୁଏ ।

ଏନ୍-୫/୩୭୪
ଆଉ.ଆର୍.ସି. ଭିଲେଜ୍, ଭୁବନେଶ୍ୱର-୧୫



# ଶ୍ରୀ ଜୟଦେବ ଓ କବି ଉପେନ୍ଦ୍ର ଭଞ୍ଜ

ହରିଶ୍ଚନ୍ଦ୍ର ବେହେରା

ଜୟଦେବଙ୍କ ରଚିତ ଗୀତଗୋବିନ୍ଦ ସଂସ୍କୃତ କାବ୍ୟ ଜଗତରେ ଏକ ଅନବଦ୍ୟ ସୃଷ୍ଟି । ଗୀତଗୋବିନ୍ଦ ଏକ ମହାନ୍ କାବ୍ୟ ଓ ଗୀତି କାବ୍ୟ । ଏହା ଆହ୍ଲାଦିନୀ ଶକ୍ତି ଶ୍ରୀରାଧା ଓ ଭଗବାନ ସଚ୍ଚିଦାନନ୍ଦ ପୁରୁଷ ଶ୍ରୀକୃଷ୍ଣଙ୍କର ପ୍ରେମ ଓ ପ୍ରଙ୍ଗାର ବାର୍ତ୍ତାକୁ ବହନ କରିଅଛି। ଏହି କାବ୍ୟର ପ୍ରତ୍ୟେକ ପଂକ୍ତିରେ ଫୁଟି ଉଠିଛି ପ୍ରେମ ଓ ଭକ୍ତିର ମଧୁର ମାଦକତା । ଏହା ଭକ୍ତର ହୃଦୟକୁ ଆଲୋଡ଼ିତ କରେ, ପାଠକକୁ ଆକୃଷ୍ଟ କରେ ଓ ଶ୍ରୋତାମାନଙ୍କୁ ବିମୋହିତ କରେ । ଏହା ସମଗ୍ର ଭାରତୀୟମାନଙ୍କର ଏକ ପବିତ୍ର ଧର୍ମଗ୍ରନ୍ଥ ।

ଭକ୍ତକବି ଜୟଦେବ ପୁରୀ ଜିଲ୍ଲାର ପ୍ରାଚୀନଦୀ ତଟବର୍ତ୍ତୀ କେନ୍ଦୁବିଲ୍ୱ ବା କେନ୍ଦୁଲୀ ନାମକ ଏକ ବ୍ରାହ୍ମଣ ଶାସନରେ ଦ୍ୱାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ଭୋଜଦେବ ଓ ମାତା ବାମାଦେବୀ । କବି ଜୟଦେବ ଗୀତଗୋବିନ୍ଦରେ ନିଜ ବାସସ୍ଥାନ ସମ୍ପର୍କରେ ତୃତୀୟ ସର୍ଗର ପଂକ୍ତି (୧୦)ରେ ବର୍ଣ୍ଣନା କରିଛନ୍ତି ।

ବର୍ଣ୍ଣିତଂ ଜୟଦେବ କେନ ଦୂରେରିଦଂ ପ୍ରଣତେନ,<br>
କେନ୍ଦୁବିଲ୍ୱ ସମୁଦ୍ର ସମ୍ଭବ ରୋହିଣୀ ରମଣେନ ।

ଅର୍ଥାତ୍ କେନ୍ଦୁବିଲ୍ୱ ଗ୍ରାମ ରୂପକ ସମୁଦ୍ର ଜାତ ହୋଇଅଛନ୍ତି ଚନ୍ଦ୍ର ସଦୃଶ ଶ୍ରୀ ଜୟଦେବ ।

ଇତିହାସର ଘଡ଼ିସନ୍ଧି ମୁହୂର୍ତ୍ତରେ କବିଙ୍କର ଜନ୍ମ ହୋଇଥିଲା ଉତ୍କଳରେ । କବି ଗଙ୍ଗବଂଶ ନରପତି ଚୁଡ଼ଙ୍ଗ ଦେବ, ଚୋଳଗଙ୍ଗ ଦେବ ବା ଅନନ୍ତ ବର୍ମନ ଚୋଳଗଙ୍ଗ ଦେବଙ୍କ ସମସାମୟିକ । ସେତେବେଳେ ବଙ୍ଗଳାରେ ଗୌଡ଼ (Gouda dynasty)ର ରାଜାମାନେ ରାଜୁତି କରୁଥିଲେ । ଦିଲ୍ଲୀ ଓ ଆଜମୀରରେ ପାଳ (Paul dynasty) ଚୌହାନ ବଂଶଜ ରାଜାମାନେ ରାଜତ୍ୱ କରୁଥିଲେ । ସେମାନେ ହେଲେ ଅନଙ୍ଗ ପାଳ, ସୋମେଶ୍ୱର ଚୌହାନ ଓ ପୃଥ୍ୱୀରାଜ ଚୌହାନ । ଉତ୍ତର ଭାରତରେ ପ୍ରତିହାର, ମଧ୍ୟ ଭାରତରେ ପାର୍‌ମାର୍, ଦକ୍ଷିଣ ଭାରତରେ ଚୋଳ ଓ କାକତୀୟ ରାଜାମାନେ ରାଜତ୍ୱ କରୁଥିଲେ । ପୃଥ୍ୱୀରାଜ ଚୌହାନ ଦିଲ୍ଲୀ ସିଂହାସନ ଆରୋହଣ କରିବା ପୂର୍ବରୁ ଗୀତଗୋବିନ୍ଦ ଲେଖା ହୋଇ ସାରିଥିଲା । ପୃଥ୍ୱୀରାଜ ଚୌହାନ ୧୧୬୯୦ାରୁ ୧୧୯୨ ମସିହା ପର୍ଯ୍ୟନ୍ତ ରାଜା ଥିଲେ । ପୃଥ୍ୱୀରାଜଙ୍କର ସଭାକବି ଥିଲେ ଚାନ୍ଦ ବରଦାଇ । ସେ ତାଙ୍କର 'ପୃଥ୍ୱିରାଜ ରାସୋ' ଗ୍ରନ୍ଥରେ ପ୍ରାଚୀନ ଶ୍ରେଷ୍ଠ କବିମାନଙ୍କର ପ୍ରଶସ୍ତି ପ୍ରସଙ୍ଗରେ ଜୟଦେବଙ୍କୁ ଅଷ୍ଟମ ଶ୍ରେଷ୍ଠ କବି ଭାବରେ ବର୍ଣ୍ଣନା କରିଛନ୍ତି, ଯଥା-

ଜୟଦେବ ଅଠ୍‌ଠ କବି କବ୍‌ବିରାୟଂ<br>
ଦିନୈ କେବଲଂ କୀର୍ତ୍ତି ଗୋବିନ୍ଦ ରାୟଂ ।

ତାଙ୍କ ଭାଷାରେ ଜୟଦେବ ଯଦି ଅଷ୍ଟମ କବି ହୁଅନ୍ତି ତାଙ୍କ ପୂର୍ବରୁ ଆଉ ସାତ ଜଣ କବି ଥିଲେ କେଉଁମାନେ ? ସେମାନେ ସମ୍ଭବତଃ- ସୁର ଦାସ, ବିଦ୍ୟାପତି ଠାକୁର, ନନ୍ଦ ଦାସ, କୃଷ୍ଣ ଦାସ, ଭକ୍ତକବି ନାଭା ଦାସ, ପ୍ରିୟା ଦାସ ଓ ବିଠଲନାଥ ଜୀ ହୋଇପାରନ୍ତି ।

ଉପମା କାଳିଦାସସ୍ୟ<br>
ଭାରବେଃ ଅର୍ଥ ଗୌରବମ୍<br>
ନୈଷଧେ ପଦ ଲାଳିତ୍ୟଂ<br>
ମାଘେ ସନ୍ତି ତ୍ରିୟୋଗୁଣାଃ ।

ଏଠାରେ ପଦଲାଳିତ୍ୟ କଥାକୁ ବିଚାର କରାଗଲେ ନୈଷଧକାବ୍ୟ ହେବା ଭଳି ମନେ ହେଉ ନାହିଁ । କେଉଁ ପରି ଓ କେଉଁ ପରିପ୍ରେକ୍ଷୀରେ ପଣ୍ଡିତମାନେ ଏପରି ସିଦ୍ଧାନ୍ତ କରିଅଛନ୍ତି ଜଣାନାହିଁ । ନୈଷଧ କାବ୍ୟ ସରଳ ନୁହେ, କ୍ଲିଷ୍ଟ, ବହୁ କଠିନ ଶବ୍ଦରେ ପରିପୂର୍ଣ୍ଣ । ଏଠାରେ କହିବା ଯଥାର୍ଥ ହେବ ଯେ ଗୀତଗୋବିନ୍ଦରେ ପ୍ରତି ପଂକ୍ତିରେ ପଦଲାଳିତ୍ୟ ଉପଲବ୍ଧ ହୁଏ । ବେଳେବେଳେ ମନକୁ ଆସେ ଜୟଦେବଙ୍କ ସହିତ ଶ୍ରୀ ହର୍ଷଙ୍କ ରଚନାର ପଦଲାଳିତ୍ୱକୁ ଏକ ତାନରେ ହୃଦୟ ଗ୍ରାହିତାର ସମ୍ମାନ

ପ୍ରଦାନ କରିବା ପାଇଁ ଏଭଳି କହିଲେ ମଧ୍ୟ ହୁଏତ ଚଳିପାରେ । ଏଠାରେ ଗୀତଗୋବିନ୍ଦର ଓ ନୈଷଧୀୟ ଚରିତର କେତେକ ପଂକ୍ତି ଉଦ୍ଧାର କରାଯାଇପାରେ ।

ଧୀର ସମୀରେ ଯମୁନା ତୀରେ ବସତି ବନେ ବନମାଳୀ
ପୀନପୟୋଧର ପରିସର ମର୍ଦ୍ଦନ ଚଞ୍ଚଳ କର ଯୁଗଶାଳୀ ।

ଏହା କେତେ ସରଳ ଓ ସାବଲୀଳ । ଏହି ପଂକ୍ତିକୁ ଭାରତବର୍ଷର ଯେକୌଣସି ଅଞ୍ଚଳର ଜଣେ ସାଧାରଣ ପାଠକ ସହଜରେ ପଢ଼ିପାରିବ ଓ ବୁଝିପାରିବ, କିନ୍ତୁ ଶ୍ରୀ ହର୍ଷଙ୍କ ନୈଷଧ କାବ୍ୟର ପଦମାନଙ୍କୁ ସହଜରେ ବୁଝି ପାରିବ ନାହିଁ । ନୈଷଧ କାବ୍ୟରେ ନଳ ଦମୟନ୍ତୀଙ୍କ ବିଷୟରେ ବିସ୍ତୃତ ବର୍ଣ୍ଣନା କରାଯାଇଛି । ରାଜା ନଳ କିପରି ଗୁଣବାନ୍ ଥିଲେ, ଶ୍ରୀହର୍ଷ ତାଙ୍କ କାବ୍ୟରେ ନିମ୍ନ ପ୍ରକାରେ ବର୍ଣ୍ଣନା କରିଛନ୍ତି ।

ଅଧାରି ପଦ୍ମେଷୁ ତଦଙ୍ଘ୍ରିଣା ଘୃଣା
କ୍ୱତଚ୍ଛୟ ଛାୟ ଲବୋପି ଚାଲ୍ଲବେ
ତଦାସ୍ୟ ଦାସ୍ୟେବ ଗତୋଧିକାରିତାଂ
ନ ଶରଦଂ ପାର୍ବିକ ଶର୍ବରୀଶ୍ୱରଃ
କୁରୁକରେ ଗୁରୁମେବମୟୋଘନଂ
ବହିରତୋ ମୁକୁରଂ ଚ କୁରୁଷ୍ୱମେ
ବଶତି ତତ୍ରୟଦୈବ ବିଧୁସ୍ମଦ
ସଖି ସୁଖା ଦହିତଂ ଜହିତ ଦ୍ରୁତମ୍ ।

ଶୃଙ୍ଗାର, ବୀର, କରୁଣ, ଅଦ୍ଭୁତ, ରୌଦ୍ର, ହାସ୍ୟ, ଭୟାନକ, ବୀଭତ୍ସ ଓ ଶାନ୍ତ ଏଗୁଡ଼ିକ ନବରସ । ସୁପରିଚିତ ପ୍ରାଚୀନ କବିମାନେ, ରୀତି ଯୁଗୀୟ କବିମାନେ ତଥା ଆଧୁନିକ କବିମାନେ ମଧ୍ୟ ଶୃଙ୍ଗାର ରସକୁ ଛାଡ଼ି ପାରି ନାହାନ୍ତି । ସେଥିପାଇଁ କୁହାଯାଇଛି 'ଶୃଙ୍ଗାରୀ ଚେତ୍ କବିଃ' । କବିମାନେ ଶୃଙ୍ଗାର ରସକୁ ଛାଡ଼ି କାବ୍ୟକୁ କଳ୍ପନା କରିନପାରନ୍ତି । ଶୃଙ୍ଗାର ରସକୁ ଛାଡ଼ି ଦେଲେ କାବ୍ୟ ଚିନି ପଡ଼ି ନଥିବା କ୍ଷୀରି ସଙ୍ଗେ ତୁଳନୀୟ ହୋଇଯାଏ ।

ଜୟଦେବକୃତ ଗୀତଗୋବିନ୍ଦରେ ଜଗନ୍ନାଥଙ୍କର ଦଶଅବତାର ବର୍ଣ୍ଣନା ଅନନ୍ୟ ସାଧାରଣ । ବିଷ୍ଣୁଙ୍କର ମୀନ ରୂପକୁ କବି ଜୟଦେବ ନିମ୍ନ ପ୍ରକାରେ ବର୍ଣ୍ଣନା କରିଛନ୍ତି -

ପ୍ରଳୟ ପୟୋଧି ଜଳେ ଧୃତ ବାନସି ବେଦଂ
ବିହିତ ବହିତ୍ର ଚରିତ୍ରମଖେଦଂ
କେଶବ, ଧୃତ ମୀନ ଶରୀର ଜୟ ଜଗଦୀଶ ହରେ ।

ମୀନ ଅବତାରଠାରୁ ଆରମ୍ଭ କରି କଳ୍କି ଅବତାର ପର୍ଯ୍ୟନ୍ତ ସମସ୍ତ ଅବତାରକୁ ସେ ଖୁବ୍ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ଏହି ବର୍ଣ୍ଣନାରେ ବିବର୍ତ୍ତନ ବାଦର ସୂଚନା ମିଳେ । ମହାପ୍ରଳୟ କାଳରେ ବିଷ୍ଣୁ ମୀନ ରୂପ ଧାରଣ କରିଥିଲେ । ତା'ପରେ କଚ୍ଛପ ରୂପ, ଯାହାକୁ ଇଂରାଜୀରେ (amphibious) ପ୍ରାଣୀ କୁହାଯାଏ । ତା'ପରେ ସ୍ଥଳଚର ଶୂକର ଅବତାର, ତା'ପରେ ନରସିଂହ ଅବତାର ଅର୍ଥାତ୍ ଅର୍ଦ୍ଧେ ଭାଗ ନର ଓ ଅର୍ଦ୍ଧେ ଭାଗ ସିଂହ । ତା'ପରେ ଖର୍ବାକୃତି ମଣିଷ (Pygmy) (ବାମନ ଅବତାର), ସଂହାରକାରୀ ଅବତାର ପର୍ଶୁରାମ, ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ର, କୃଷିଜୀବୀ ବଳରାମ ଏବଂ ମ୍ଳେଚ୍ଛ ସଂହାରକାରୀ କଳ୍କି ଅବତାର ।

ରାଧାକୃଷ୍ଣଙ୍କ ପ୍ରେମ ଅନାବିଳ ଓ ନୈସର୍ଗିକ । ପ୍ରକୃତି ଓ ପୁରୁଷ ପରସ୍ପର ପ୍ରତି ଆକୃଷ୍ଟ ହେବା ଏକ ସହଜାତ ପ୍ରବୃତ୍ତି । ଜଣେ ଜଣକୁ ଖୋଜୁଥାଏ, ଇହ ଜନ୍ମରେ ଓ ପର ଜନ୍ମରେ ମିଶି ଯାଇ ଏକାକାର ହୋଇ ଯିବାକୁ । ପୁରୁଷ ଯୁଗେ ଯୁଗେ ପ୍ରକୃତିକୁ ହିଁ ଉପାସନା କରିଆସିଅଛି । ଏହି ସ୍ୱର୍ଗୀୟ ଚେତନାରେ ଭାବ ବିହ୍ୱଳ ହୋଇ ସେ ଲେଖୁ ଲେଖୁ ଅଟକି ଯାଇଥିଲେ । ମନରେ ତାଙ୍କର ପ୍ରଶ୍ନ, ଏହା କ'ଣ କେବେ ସମ୍ଭବ ? ସମାଜ ଉପରେ ଏହାର କୁ-ପ୍ରଭାବ ପଡ଼ିବ ନାହିଁ ତ ? ସେଥିପାଇଁ ମନରେ ତାଙ୍କର ଦ୍ୱନ୍ଦ୍ୱ ଉପୁଜିଥିଲା । ମାନସ ପଟରେ ଉଙ୍କିମାରୁ ଥିବା ପଦାବଳୀକୁ ସେ ଲେଖି ନପାରି ପଦ ପଦ ଭାବି ପ୍ରାଚୀନଦୀକୁ ଗାଧୋଇବାକୁ ଚାଲିଗଲେ । ଅନ୍ତର୍ଯ୍ୟାମୀ ଭଗବାନ ଭକ୍ତ ହୃଦୟର ମନକଥା ଜାଣିପାରି ଜୟଦେବଙ୍କ ଛଦ୍ମ ବେଶରେ ଆସି ପଦ୍ମାବତୀଙ୍କଠାରୁ ତାଳପତ୍ର ପୋଥି ଓ ଲେଖନୀ ନେଇ ପଦ ପୂରଣ କରି ଦେଲେ । ଗୀତଗୋବିନ୍ଦ ମହାକାବ୍ୟର ଏହା ହିଁ ଚରମ ଅବଦାନ । ସେ ଲେଖି ଦେଇଗଲେ -

ସ୍ମର ଗରଳ ଖଣ୍ଡନଂ
ମମ ଶିରସି ମଣ୍ଡନଂ
ଦେହି ପଦ ପଲ୍ଲବ ମୁଦାରମ୍ ।

ତେଣୁ କବି ଜୟଦେବ ଯେ କେତେ ତପୋନିଷ୍ଠ, ସାଧୁ ଓ ବ୍ରତାଚାରୀ ଏବଂ ସର୍ବୋପରି ସଂସ୍କୃତ ଭାଷାରେ ସୁପଣ୍ଡିତ ଏଥିରୁ ସହଜରେ ଅନୁମେୟ । ଏହା କ୍ୱଚିତ୍ ଭକ୍ତକବିଙ୍କ ଭାଗ୍ୟରେ ଘଟିଥାଏ । ସେଥିପାଇଁ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଯିଏ ରାମତାରକ ମନ୍ତ୍ରରେ ସିଦ୍ଧ, ରାମ ଭକ୍ତ, "ରାମ ତାରକ ପରସାଦେ, ମୋହର କବିପଣ ଉଦେ" ବୋଲି ଉଦ୍‌ଘୋଷଣ କରିଥିଲେ, ସେ ମୁକ୍ତ କଣ୍ଠରେ ଗାଇଥିବାର କୁହାଯାଇଛି -

'କହେ ଉପଇନ୍ଦ୍ର ଭଞ୍ଜ ଟେକି ବେନି ବାହାକୁ
ରବିତଳେ କବି ପଣେ ନଗଣେ ସେ କାହାକୁ
ଦୀନକୃଷ୍ଣ ଜୟଦେବ ପୟରେ ତା' ଶରଣ
ଆନ କବିମାନଙ୍କର ମୁଣ୍ଡେ ବାମ ଚରଣ ।'

ଜନ ଗୌରବରେ ଗୌରବାନ୍ୱିତ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଉତ୍କଳୀୟ ଭକ୍ତ କବି ଦୀନକୃଷ୍ଣ ଓ ଜୟଦେବ ଦୁଇଜଣଙ୍କ ପାଦରେ ପ୍ରଣତି ଜଣାଇ ଶରଣ ପଶିବା ବେଳେ ଅନ୍ୟ କବିମାନଙ୍କୁ ହେୟ ଜ୍ଞାନ ମନେ କରିଛନ୍ତି । ଏଥିରୁ ଜଣାଯାଏ, କବି ସମ୍ରାଟ ଉତ୍କଳୀୟ ଚିନ୍ତାଧାରାରେ ଉଦ୍‌ବୁଦ୍ଧ ହୋଇଥିଲେ । କେତେ ବଳିଷ୍ଠ ଥିଲା ତାଙ୍କର ଜାତିପ୍ରେମ ! ସେ ହୁଏତ କାଳିଦାସ, ଭବଭୂତି, ଶ୍ରୀହର୍ଷ, ମାଘ କିମ୍ବା ଅନ୍ୟ ଅଣଉତ୍କଳୀୟ କବିମାନଙ୍କର ଯଶଗାନ କରି, ତାଙ୍କ ପାଦତଳେ ମୁଣ୍ଡ ନୁଆଁଇ ଥାଆନ୍ତେ । କିନ୍ତୁ ସେ ଏହା କରି ନାହାନ୍ତି । ଯଦି ଏହା ସ୍ୱୀକରଣୀୟ ଯେ କୌଣସି ପ୍ରସଙ୍ଗରେ ଅନ୍ୟ ଓଡ଼ିଆଙ୍କର ଗୁଣ ଗ୍ରହଣ କରିବାକୁ ଯାଇ ଲଳିତ ପଦ ବନ୍ଧରେ ସୁନାମ ଅର୍ଜନକାରୀ ଦୁଇଜଣ କବିଙ୍କର ସେ ବନ୍ଦନା କରିଥିବେ, ସେ ଦୃଷ୍ଟିରୁ ମଧ୍ୟ ଗୁଣ ଗ୍ରାହକ ସମାଜରେ ନମସ୍ୟ ।

ସେ ଜୟଦେବଙ୍କ ଦ୍ୱାରା ପ୍ରଭାବିତ ହୋଇ କାବ୍ୟ ରଚନା କରିଛନ୍ତି । ଜୟଦେବଙ୍କ ଦ୍ୱାରା ବର୍ଣ୍ଣିତ ଅନେକ ରାଗ ରାଗିଣୀ, ଅଳଙ୍କାର, ଛାନ୍ଦ ଇତ୍ୟାଦି ସେ ତାଙ୍କ କାବ୍ୟରେ ବ୍ୟବହାର କରିଛନ୍ତି ।

ଗୀତଗୋବିନ୍ଦରେ ଶୃଙ୍ଗାର ରସ ପ୍ରତିପାଦନରେ ଆଶା, ଉତ୍କଣ୍ଠା, ଅଭିମାନ, ପ୍ରେମ, ସରାଗ, ସ୍ନେହ, ଅନୁରାଗ, ସଂକୋଚ, ଲଜ୍ଜା, ମାନଭଞ୍ଜନ ଇତ୍ୟାଦି ବିଶ୍ଳେଷଣରେ ଈଶ୍ୱରଙ୍କୁ ଉପାସନା କରିବାରେ ଭକ୍ତକବି ଜୟଦେବଙ୍କର ବିସ୍ମୟକର ପ୍ରତିଭା ଓ କାବ୍ୟାତ୍ମକ କଳ୍ପନାଗୁଡ଼ିକର ଅଦ୍ଭୁତ ଦକ୍ଷତା ସେ ପ୍ରଦର୍ଶନ କରିଛନ୍ତି । ସେ ଲେଖିଛନ୍ତି -

'ଶ୍ରିତକମଳା କୁଚମଣ୍ଡଳ ! ଧୃତକୁଣ୍ଡଳ
କଳିତ ଲଳିତ ବନମାଳ ! ଜୟ ଜୟ ଦେବ ହରେ ।
ଦିନମଣିମଣ୍ଡଳମଣ୍ଡନ ! ଭବଖଣ୍ଡନ ।
ମୁନିଜନମାନସହଂସ ! ଜୟ ଜଗଦୀଶ ହରେ ।'

ସେହିପରି ଗୀତଗୋବିନ୍ଦର ପ୍ରଥମ ସର୍ଗର ୪୦ ପଂକ୍ତିରେ ନିମ୍ନମତେ ଭକ୍ତକବି ଶ୍ରୀକୃଷ୍ଣଙ୍କର ରୂପମାଧୁରୀ ବର୍ଣ୍ଣନା କରିଛନ୍ତି -

ଚନ୍ଦନଚର୍ଚ୍ଚିତ ନୀଳକଳେବରପୀତବସନବନମାଳୀ ।
କେଳିଚଳନ୍ମଣିକୁଣ୍ଡଳମଣ୍ଡିତ ଗଣ୍ଡଯୁଗସ୍ମିତଶାଳୀ ।
ହରିରିହ ମୁଗ୍ଧବଧୂନିକରେ
ବିଳାସିନୀ ବିଳସ କେଳିପରେ ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟଦେବଙ୍କ କୃତ ଗୀତଗୋବିନ୍ଦ କାବ୍ୟର ମାଧୁର୍ଯ୍ୟରେ ଗଭୀର ଭାବରେ ପ୍ରଭାବିତ ହୋଇଥିଲେ । ଗୀତଗୋବିନ୍ଦରେ ବର୍ଣ୍ଣିତ ରାଗ, ଯମକ ଓ ବର୍ଣ୍ଣର ଏକାଧିକବାର ପ୍ରୟୋଗ ତାଙ୍କୁ ଉତ୍ସାହିତ କରିଥିଲା ।

ଲଳିତ ଲବଙ୍ଗ ଲତା ପରିଶୀଳନ କୋମଳ ମଳୟ ସମୀରେ
ମଧୁକର ନିକର କରମ୍ବିତ କୋକିଳ କୂଜିତ କୁଞ୍ଜ କୁଟୀରେ ।

ଏହାର ପ୍ରଥମ ପାଦରେ 'ଲ'ର ବାରମ୍ବାର ପ୍ରୟୋଗ ଏବଂ ଦ୍ୱିତୀୟ ପାଦରେ 'କର' ବର୍ଣ୍ଣ ସମୂହ ଏକାଧିକବାର ବ୍ୟବହାର କରାଯାଇଥିବାରୁ ପଦଲାଳିତ୍ୟ, କାବ୍ୟ ରୁଚିବୋଧ ତଥା ଶ୍ରୁତି ମାଧୁର୍ଯ୍ୟ ଫୁଟି ଉଠିଛି । କବିସମ୍ରାଟ ଉପେନ୍ଦ୍ର ଭଞ୍ଜ କବି ଜୟଦେବଙ୍କୁ ଅନୁସରଣ କରି ତାଙ୍କର ଲାବଣ୍ୟବତୀ କାବ୍ୟରେ ବର୍ଣ୍ଣର ଏକାଧିକବାର ପ୍ରୟୋଗ କରାଯାଇଥିବାର ଶୈଳୀ ନିମ୍ନପ୍ରକାରେ ପ୍ରଦାନ କରାଗଲା -

ଦେଖି ନବ କାଳିକା ବକାଳିକା ମାଳିକା ଆଳିକାଳିକା କାନ୍ତ ସ୍ମରି
ରକ୍ଷା କେମନ୍ତେ କରି କରିବା ମତ୍ତକରୀ ଗତିକୁ ଏମନ୍ତ ବିଚାରି ଯେ ସହଚରୀ
ଭାବେ ବଞ୍ଚିଲେ ଏ କାଳକୁ କଥାଥିବ କାଳକାଳକୁ ।
ଏକେତ କ୍ଷୀଣ ଦିନ ହେଲା ଦୁର୍ଦ୍ଦିନ ଦିନ
ନଲଭୁ ବଲ୍ଲଭ ମେଳକୁ ଯେ, ସହଚରୀ ।

ଗୀତଗୋବିନ୍ଦ ମହାକାବ୍ୟ ହୋଇଥିବାରୁ ଏଥିରେ ଅଳ୍ପାଧିକେ ସନ୍ଧ୍ୟା, ପ୍ରଦୋଷ, ଚନ୍ଦ୍ର, ସୂର୍ଯ୍ୟ, ଦିବସ, ମଧ୍ୟାହ୍ନ, ଋତୁ, ନଦୀ, ଗିରି, ବନାନୀ, ନାୟକ ଓ ନାୟିକାଙ୍କ ରୂପ, ଗୁଣ ଓ କୀର୍ତ୍ତି ପ୍ରଭୃତି ବର୍ଣ୍ଣନା କରାଯାଇଛି । ବସନ୍ତ ଋତୁର ବର୍ଣ୍ଣନା ଅତି ଚମତ୍କାର । ଋତୁରାଜ ବସନ୍ତର ଆଗମନରେ ଶ୍ରୀରାଧାଙ୍କର ମାନସିକ ଚଞ୍ଚଳତା ବୃଦ୍ଧି ପାଇଛି । ଶ୍ରୀକୃଷ୍ଣଙ୍କର ସାନ୍ନିଧ୍ୟ ଲାଭ କରିବା ପାଇଁ ସେ ଚଞ୍ଚଳ ହୋଇଉଠିଛନ୍ତି ଏବଂ ତାଙ୍କୁ ଖୋଜିବା ପାଇଁ ଘୋର ବନରେ ଇତଃସ୍ତତଃ ଭ୍ରମଣ କରିଛନ୍ତି । ଉକ୍ତ ଦୃଶ୍ୟକୁ କବି ଗୀତଗୋବିନ୍ଦରେ ପ୍ରଥମ ସର୍ଗରେ ବର୍ଣ୍ଣନା କରିଛନ୍ତି ।

ବସନ୍ତେ ବାସନ୍ତୀ କୁସୁମ ସୁକୁମାରୈ ରବୟବୈ
ଭ୍ରମନ୍ତିଂ କାନ୍ତାରେ ବହୁ ବିହିତ କୃଷ୍ଣାନୁସରଣାଂ
ଅମନ୍ଦଂ କନ୍ଦର୍ପଜ୍ୱରଜନିତ ଚିନ୍ତାକୁଳତୟା
ଚଳଦ୍ ବାଧାଂ ରାଧାଂ ସରସମିଦମୂଚେ ସହଚରୀ ।

ଶ୍ରୀରାଧାଙ୍କର ଏପରି ଅବସ୍ଥା ଦେଖି ଦୂତୀ ଜଣକ ତାଙ୍କ ମନ ଭୁଲାଇବା ପାଇଁ ହାତଠାରି ଦେଖାଇ କହୁଛନ୍ତି, 'ଏଇ ଦେଖ,

ସଖୀ ! ଏ ବଣର ଲବଙ୍ଗଲତା କିପରି ଶୋଭା ପାଉଛି । ନବୀନ ପଲ୍ଲବଦଳ ବସନ୍ତର ମୃଦୁ ମଳୟରେ କିପରି ଚଞ୍ଚଳ ହୋଇ ଉଠୁଛି ।'

ଶୀତଳେ ବହଇ ମନ୍ଦ ମଳୟାନିଳ,
ମଧୁକର ମୁଖରାବ ଶୁଭେ ଚହଳ ।
କୋକିଳ ମୃଦୁ ମଧୁର ଲଳିତ ବାଣୀ,
ପୁରିତ କୁଞ୍ଜ ସଦନେ ମୋହନ ଜାଣି ॥

ଦେଖ ସଖୀ, ମଳୟ ସମୀର ଦକ୍ଷିଣ ଦିଗରୁ ଧୀରେ ଧୀରେ ପ୍ରବାହିତ ହୋଇ ନାନା ପୁଷ୍ପଲତାର କୋମଳ ତନୁକୁ ଆଲିଙ୍ଗନ କରୁଛି । ମଧୁପର ଗୁଞ୍ଜନ ଓ କୋକିଳର କୁହୁତାନରେ ମଧୁବନ ମୁଖରିତ ହୋଇ ଉଠୁଛି । ଏହି ବସନ୍ତ କାଳରେ ନନ୍ଦସୁତ ଯୁବତୀମାନଙ୍କ ସହିତ ରାସ କ୍ରୀଡ଼ାରେ ବିଭୋର ହୋଇ ଉଠିଛନ୍ତି । ସଖୀ ଗୋ ! କେବଳ ବିରହୀ ଜନମାନେ ହିଁ ଏହି ବସନ୍ତ କାଳରେ ସନ୍ତାପିତ ହୁଅନ୍ତି ।

ଦରବିଗଳିତ ମଲ୍ଲୀ ବଲ୍ଲି ଚଞ୍ଚପ୍ରାଗ
ପ୍ରକଟିତ ପଟବାସର୍ବୋସୟନ କାନନାଦି
ଇହହି ଦହତି ଚେତଃ କେତକୀ ଗନ୍ଧ ବନ୍ଧୁଃ
ପ୍ରସର ଦଶମବାଣ ପ୍ରାଣବଦ୍ ଗନ୍ଧବାହଃ ।

ସଖୀ! ଏହି ମଳୟାନିଳ ମଲ୍ଲୀଲତା ବନରେ ଧୀରେ ଧୀରେ ପ୍ରବାହିତ ହୋଇ ମଲ୍ଲୀ ପୁଷ୍ପକୁ ସରାଗରେ ଚୁମ୍ବନ କରୁଅଛି । ମଲ୍ଲୀ ଫୁଲର ସୌରଭରେ ଆଜି ସମ୍ପୂର୍ଣ୍ଣ ରୂପେ ଭିଜି ଯାଇଛି ମରୁତ । ନିଜେ ମତୁଆଲା ହୋଇ ଅନ୍ୟମାନଙ୍କୁ ମତୁଆଲା କରୁଅଛି । ନବ ପଲ୍ଲବିତ ତମାଳ ତରୁ ରକ୍ତବର୍ଣ୍ଣ ଓ ଶ୍ୟାମଳ ବର୍ଣ୍ଣର ସମ୍ମିଶ୍ରଣରେ ସୁନ୍ଦର ଦେଖାଯାଉଅଛି । ମାଧବୀ ଲତାର ଆଲିଙ୍ଗନରେ ବୃକ୍ଷରାଜି ସୁନ୍ଦର ଦେଖାଯାଉଛନ୍ତି । ମାକନ୍ଦ ମଞ୍ଜରୀ ମଧୁର ସୌରଭରେ ଚଉଦିଗ ମହକି ଉଠୁଛି । ମଧୁପମାନେ ମଧୁ ଆହରଣ ପାଇଁ ପାଗଳ ପ୍ରାୟ ହୋଇ ଉଠିଛନ୍ତି । ସେମାନେ ପୁଷ୍ପରାଜିକୁ ଘନ ଘନ ଚୁମ୍ବନ କରୁଛନ୍ତି । ଏହା ସାଙ୍ଗକୁ କୋକିଳର କୁହୁତାନ ଅଭିସାରୀ ହୃଦୟର ପୀଡ଼ାକୁ ଦ୍ୱିଗୁଣିତ କରୁଅଛି ।

ଓଡ଼ିଆ ଜାତିର ମଉଡ଼ମଣି, ଓଡ଼ିଆ ସାହିତ୍ୟାକାଶର ଭାସ୍କର କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ବସନ୍ତ ଋତୁ ବର୍ଣ୍ଣନା କରିବାକୁ ଯାଇ ଜୟଦେବଙ୍କ ପଦାନୁସରଣ କରିଛନ୍ତି । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଲେଖିଛନ୍ତି -

ଛାନ୍ଦ କୋଟି ତାରା ଚନ୍ଦ୍ରମା ପରି
ଯା'ନାମ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ।

ତାଙ୍କ ଦ୍ୱାରା ରଚିତ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟ ସମଗ୍ର କାବ୍ୟ ସାହିତ୍ୟରେ ବିରଳ । ପୃଥିବୀର କୌଣସି କବି ତାଙ୍କ କାବ୍ୟର ଏଭଳି ନାମକରଣ କରିନାହାନ୍ତି କି ଏଭଳି ବର୍ଣ୍ଣନା ଶୈଳୀ ଅନ୍ୟ କାବ୍ୟମାନଙ୍କରେ ଦେଖିବାକୁ ମିଳେ ନାହିଁ । ଏହି କାବ୍ୟର ମହିମା ଅତୁଳନୀୟ । ଷଷ୍ଠଛାନ୍ଦ - ରାଗ ବସନ୍ତ - ବସନ୍ତ କାଳର ଆଗମନ ଓ ତା'ର ବର୍ଣ୍ଣନାରେ କବି ମୁଖରିତ ହୋଇ ଉଠିଛନ୍ତି । ନାୟିକା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ସଖୀମାନଙ୍କ ସହିତ ବନରେ ପ୍ରବେଶ କରିଛନ୍ତି । ବନର ଶୋଭା ଅତୀବ ମନମୁଗ୍ଧକର, ରମଣୀୟ ଓ ହୃଦୟସ୍ପର୍ଶୀ ହୋଇଛି । କବି ବସନ୍ତ ଋତୁର ବର୍ଣ୍ଣନା କରିଛନ୍ତି -

ଅତି ରସମୟ ସମୟ ବସନ୍ତ ବିଚିତ୍ର ପ୍ରମେୟ ତାହାର
ମିତ୍ର ଅଙ୍ଗନକୁ ପ୍ରବଳ କରାଇ ଆଚରି ଚର୍ଚ୍ଚରୀ-ବିହାର
ଆଗତେ, ଆରୋହିଲା ନାଗେଶ୍ୱରକୁ
ଋତୁରାଜ ପଦୁଁ ସେ ରଜ ଘେନିଲା ଚାହିଁ ପ୍ରଫୁଲ୍ଲ କେଶରକୁ ।

ଶୋଭା କରବୀର ରସାଳ ପୁନ୍ନାଗ ପୂଗ ମଗ୍ନ ସେ ଅଭିଳାଷେ
ସୁନାରୀ ମାଧବୀ ମଲ୍ଲିକା ସେବତୀ ଚମ୍ପାନାମ ସହ ଉଲ୍ଲାସେ ।
ଏ ଭାବେ, ବଉଳ ସଙ୍ଗାତ ହୋଇଲେ
ସହଚରୀ ଦାସୀ ଆସି ତହିଁ ମିଶି ଉନ୍ନତ ପ୍ରଭା ଦେଖାଇଲେ ।

ସଖୀ ! ଏହି ଋତୁରାଜ ବସନ୍ତ ରସରାଜ ଅଟେ । ଏହି ଋତୁରେ ନାନାଦି ବିଚିତ୍ର ଘଟଣାମାନ ଘଟେ । ବସନ୍ତ କାଳରେ ସମସ୍ତ ବୃକ୍ଷ ଲତାଦି ନବ ପଲ୍ଲବିତ ହୋଇ ନାନା ପୁଷ୍ପ ସମ୍ଭାରରେ ଅପୂର୍ବ ଦୃଶ୍ୟ ଧାରଣ କରନ୍ତି । ବସନ୍ତ ଋତୁରାଜ ହୋଇଥିବାରୁ ନିଜ ମିତ୍ର କନ୍ଦର୍ପକୁ ସାଥିରେ ଘେନି ପ୍ରଥମେ ନାଗେଶ୍ୱର ଫୁଲକୁ ପ୍ରସ୍ଫୁଟିତ କରାଇ ତା' ସହିତ ଫଗୁ ଖେଳିଲା । କନିଅର, ଆମ୍ବ, ନାଗେଶ୍ୱର, ଗୁଆ, ସୁନାରୀଗଛ, ମାଧବୀ, ମଲ୍ଲୀ, ଚମ୍ପା ଗଛଗୁଡ଼ିକ ପୁଷ୍ପବତୀ ହୋଇ ବହୁ ବଲ୍ଲଭା ପୁରୁଷ ଭ୍ରମର ସହିତ ସମ୍ଭୋଗ କାମନା କଲେ । ଏହିପରି ଭାବ ଦେଖି ବଉଳ ଆସି ସେମାନଙ୍କ ସହିତ ଯୋଗ ଦେଲା ଓ ତାଙ୍କର ସଖୀ ହୋଇଗଲା । ଏମାନେ ସମସ୍ତେ ଏକତ୍ରିତ ହୋଇ ଯିବାରୁ ସେମାନଙ୍କର ଉନ୍ମତ୍ତ କାମ ଭାବର ପ୍ରକାଶ ବୃଦ୍ଧି ପାଇଲା ।

ମଧୁବନ୍ଧୁ ପଣେ ମଳୟ ଶଇଳ ନିଳୟ ଅନିଳ ବହିଲା
ସଲ୍ଲିଳେ ମଜ୍ଜି ପଦ୍ମିନୀ ଚାରିଜାତି ଦକ୍ଷିଣ ସ୍ୱଭାବେ ମୋହିଲା
ତା' ଜାଣି, ବନ ଭବନେ ଯେ ଆବେଶ
ତରୁ ଲତା ଶ୍ରେଣୀ ତରୁଣ ତରୁଣୀ ସମସ୍ତେ ସୁମନ ସୁବେଶ ।

ସଖୀ ଗୋ ! ବସନ୍ତ ଋତୁର ବନ୍ଧୁ ବୋଲି ମଳୟ ପର୍ବତାବାସୀ ପବନ ବହିଲା । ପଦ୍ମିନୀ ପ୍ରଭୃତି ଚାରି ଜାତିର

ନାରୀମାନେ ଜଳ କ୍ରୀଡ଼ାରେ ମଗ୍ନ ହେଲେ । ମଳୟାନିଳ ସବୁ ବିରହିଣୀମାନଙ୍କୁ କାମ ପୀଡ଼ାରେ ବ୍ୟଥିତ କଲା ।

ଏହି ଦିବସେ ମଧୁର ମଧୁମାନେ ମଧୁର ମଧୁକଣ୍ଠ ଭାଷି
ସୁଧାଂଶୁ ପ୍ରଭା ସୁଧାପରେ ବସୁଧା - ମଣ୍ଡନା ସୁଖେ ଥିଲା ବସି
ଚାହିଁ ସ୍ତନକୁ, କି ଘେନି ମର୍ଦ୍ଦଳ ବଜାଇ
ଖେଳିବା ଗୋ ପଶା ତପସ୍ୟା ଭଙ୍ଗିନୀ ସଂଗିନୀକୁ ଚାହିଁ ବୋଲଇ ।

ମଧୁ ମାସରେ କୋଇଲି ପଞ୍ଚମ ତାନରେ ରାବୁଥିଲା । ସେହି ଚନ୍ଦ୍ରକାନ୍ତି ପୃଥିବୀର ଶୋଭାବର୍ଦ୍ଧନକାରିଣୀ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ନିଜ ପ୍ରାସାଦରେ ବସି ନିଜ ସ୍ତନକୁ ଚାହିଁ ତପସ୍ୟା ଭଙ୍ଗକାରିଣୀ ମର୍ଦ୍ଦଳ ବଜାଇବାକୁ ବିଚାର କରି ଆପଣା ସଖୀକୁ କହିଲା, ସଖୀ ଆସ ଗୋ, ପଶା ଖେଳିବା ।

କବିଙ୍କର ମହାକାବ୍ୟ 'ବୈଦେହୀଶ ବିଳାସ'ରେ ଅନୁରୂପ ଭାବରେ ବସନ୍ତ ଋତୁର ବର୍ଣ୍ଣନା କରାଯାଇଛି । ଚିତ୍ରକୂଟ ପର୍ବତରେ ଶ୍ରୀରାମଚନ୍ଦ୍ରଙ୍କର ଅବସ୍ଥାନ ହେତୁ ସେହି ବନ ନବପଲ୍ଲବିତ ହୋଇ ଉଠିଲା । ଫୁଲ ଫଳରେ ବନର ଶୋଭା ଦ୍ୱିଗୁଣିତ ହେଲା । ଭ୍ରମର ଗୁଞ୍ଜନ, ସୁଶୀତଳ ସୁଗନ୍ଧ ମନ୍ଦ ପବନ ସମସ୍ତଙ୍କ ମନ ପ୍ରାଣକୁ ମୋହିତ କଲା ।

ବହଇ ନିର୍ଝର ଝର ଝର ଅବିରତ
ବିଶେଷ ତରଙ୍ଗ ରଙ୍ଗ ରଙ୍ଗଣୀ ଶୋଭିତ ଯେ
ବହି ଚନ୍ଦ୍ର ଚନ୍ଦ୍ର ଚନ୍ଦ୍ର ଶୀତଳକୁ ବାତ
ବହେ ମନ୍ଦ ମନ୍ଦ ମନ୍ଦ ସୁତ କରେ ରତ ଯେ ।

ବିଞ୍ଚେ ଘନ ଘନ ଘନ କୁଶକଣ ଯଥା
ବୃଷ୍ଟି ମଧୁର ମଧୁର ମଧୁରଜ ତଥା ଯେ
ବିଭ୍ରାଜିତ ଭୃଙ୍ଗ ଭୃଙ୍ଗ ଭୃଙ୍ଗ କରେ କେଳି

ବନୀ ବନୀ ବନିତାକି ପୁଷ୍ପ ହାସେ ଝଳି ଯେ ।
ବୋଧେ ଶୃଙ୍ଗଳାରେ ରଘୁନାଥ ସୀତା ମତି
ବିଚିତ୍ର ଚିତ୍ରକୂଟ ଯେ କୁଟଜେ ବ୍ରତତୀ ଯେ,
ବ୍ରତତୀ ତତୀ ଜୟନ୍ତୀ ଅତିଭା ବାସନ୍ତୀ
ବାସନ୍ତୀ ସତୀରେ ଫୁଲ ଫୁଲରେ ପ୍ରବର୍ତ୍ତି ଯେ ।

ଗୋ ପ୍ରାଣପ୍ରିୟେ, ଦେଖ, ଏ ବନର ଝରଣା କିପରି ଝର ଝର ହୋଇ ବହୁଅଛି । ସେଇ ଝରଣା ସ୍ରୋତର ଦୁଇ ପାର୍ଶ୍ୱରେ ବିଭିନ୍ନ ରଙ୍ଗର ରଙ୍ଗଣୀ ପୁଷ୍ପମାନ ଫୁଟି ଶୋଭା ପାଉଅଛି । ପବନ, ଜଳ, କର୍ପୂର ଓ ଚନ୍ଦନର ଶୀତଳତାକୁ ଧାରଣ କରି ଧୀରେ ଧୀରେ ବହୁଅଛି । କୋକିଳ ଅନବରତ ଧ୍ୱନି କରୁଅଛି ।

ମେଘ ସେହି ଝରଣାର ଜଳକଣାକୁ ଧାରଣ କରି ମଝିରେ ମଝିରେ ବୃଷ୍ଟି କରୁଅଛି । ମହୁଲ ଗଛର ମିଠା ମିଠା ବାସ୍ନା ଓ ମହୁଲ ଫୁଲର ରେଣୁ ଚାରିଆଡ଼େ ବିଞ୍ଚି ହୋଇପଡୁଅଛି । ଭୃଙ୍ଗରାଜ ଓ ଗୁଡ଼ତ୍ୱକ୍ ବୃକ୍ଷରେ ଭ୍ରମରମାନେ କେଳି କରୁଅଛନ୍ତି । ସମଗ୍ର ବନାନୀ ସୁନ୍ଦରୀ ସ୍ତ୍ରୀ ପ୍ରାୟ ପୁଷ୍ପ ସମୂହକୁ ବିକାଶ କରିବା ଛଳରେ ହାସ ପ୍ରକାଶ କରୁଅଛି ।

ଗୋ ପ୍ରାଣପ୍ରିୟେ ! ଦେଖ ଏଇ ଚିତ୍ରକୂଟ ପର୍ବତର କି ବିଚିତ୍ର ରୀତି । ଏଠାରେ ପ୍ରତ୍ୟେକ ବୃକ୍ଷ ଗୋଟିଏ ଗୋଟିଏ ଲତା ଦ୍ୱାରା ପରିବେଷ୍ଟିତ ହୋଇ ଫଳପୁଷ୍ପରେ ଶୋଭା ପାଉଛି । ଲତା ବେଷ୍ଟିତ ହୋଇନଥିବା ବୃକ୍ଷ ଏଠାରେ ଗୋଟିଏ ହେଲେ ନାହିଁ । ଉପରୋକ୍ତ ପଂକ୍ତିରେ କବି ଜୟଦେବଙ୍କ ପଦାନୁସରଣ କରି ଏକାଧିକବାର 'ତ' ବର୍ଣ୍ଣର ବ୍ୟବହାର କରିଛନ୍ତି । ପରବର୍ତ୍ତୀ ପର୍ଯ୍ୟାୟରେ ରାମଚନ୍ଦ୍ର ସୀତାଙ୍କୁ ସମ୍ବୋଧନ କରି କହୁଛନ୍ତି ।

ବାଳାକୁ ହସ୍ତ ଦେଖାଇ ପୁଣି ରଘୁବର
ବାକ୍ୟ ସମ୍ବୋଧନ ଭାଷି ସର୍ବ ଯମକର ଯେ ।
ବଇଦେହୀ ସୁମନା ସୁମନା ଏ ସୁରଭି
ବଇଦେହୀ ସୁମନା ସୁମନା ଏ ସୁରଭି ଯେ ।

ଅର୍ଥାତ୍ - ସୀତାଙ୍କୁ ହାତ ଦେଖାଇ ରଘୁନାଥ ବନର ଶୋଭାକୁ ସର୍ବଯମକରେ ବର୍ଣ୍ଣନା କରୁଛନ୍ତି । ଗୋ ସୀତେ ! ଦେଖ, ଏଇ ବନରେ କେତେ ଜାତିର ଫୁଲ ଯଥା ମାଳତୀ ଫୁଲ, ଚମ୍ପାଫୁଲ, ପିପ୍ଳୀ ବୃକ୍ଷ, ଲବଙ୍ଗ ବୃକ୍ଷ, ଜାଇଫଳ ବୃକ୍ଷମାନଙ୍କର ସୁଗନ୍ଧକୁ ପବନ ଧାରଣ କରି କିପରି ଚଳଚଞ୍ଚଳ ହୋଇ ସମସ୍ତଙ୍କୁ ମତୁଆଲା କରୁଛି ।

ଗୀତଗୋବିନ୍ଦରେ ଶ୍ରୀରାଧାଙ୍କ ରୂପ ବର୍ଣ୍ଣନା କରି କବି ଜୟଦେବ ଲେଖିଛନ୍ତି -

ବନ୍ଧୁବଦ୍ୟୁତିବାଂଧବୋ[illegible] ମଧୁର ସ୍ନିଗ୍ଧ ମଧୁକଛବି
ଗଣ୍ଡଶ୍ଚଣ୍ଡି ଚକାସି ନୀଳନଳିନ ଶ୍ରୀମୋଚନଂ ଲୋଚନମ୍
ନାସାଭ୍ୟେତି ତିଳ ପ୍ରସୁନ ପଦବୀଂ କୁନ୍ଦାଭବନ୍ତି ପ୍ରିୟେ
ପ୍ରାୟସ୍ତ୍ୱନ୍ମୁଖ ସେବୟା ବିଜୟତେ ବିଶ୍ୱଂସ ପୁଷ୍ପାୟୁଧ ।

ଗୋ ପ୍ରିୟେ ! ତୁମ ଚାରୁ ଅଧର ସୁନ୍ଦର, ବଧୁଲି ପୁଷ୍ପ ସମ ରକ୍ତବର୍ଣ୍ଣ । ବିରହରେ ଗଣ୍ଡସ୍ଥଳ ପାଣ୍ଡୁର ବର୍ଣ୍ଣ ଦିଶୁଛି । ନୀଳକଇଁ ପରି ସୁନ୍ଦର ନେତ୍ର ଯୁଗଳ ଶୋଭା ପାଉଛି । ନାସା ସାକ୍ଷାତ ତିଳ ପୁଷ୍ପ ସଦୃଶ । ଦଶନ ପନ୍ତୀ କୁନ୍ଦ କଢ଼ୀ ସମ । ମନେ ହେଉଛି, କନ୍ଦର୍ପ ତୁମ ମୁଖକୁ ହିଁ ଆଶ୍ରୟ କରି ତିନି ଭୁବନ ଜୟ କରିବାକୁ

ବସିଛି । ତଦନୁ ରୂପେ ଭଞ୍ଜ କବି ଲାବଣ୍ୟବତୀ କାବ୍ୟରେ ସୁନ୍ଦରୀ ବର୍ଣ୍ଣନା କରୁଛନ୍ତି -

ମଲ୍ଲୀ କଢ଼ିତ ପରମ୍ପରା କହି
ମଣିଲି ବେନି ଖଞ୍ଜାପରା ସେହି
ଖଣ୍ଡିଲେ ସଜନୀ ଏହି ବିବେକେ
ଭୁଲନ୍ତୁ ପୁଂସ ମନ ଚଞ୍ଚରୀକେ ଯେ
ତହିଁକେ ପଡ଼ିବ ପୁଣି ଯେ
ବାଳୀ ବୋଲି ବାଳି ଗୁପତ ଶାଙ୍କୋଳି
ପାଶରେ ରଖିଲା ଆଣି ଯେ । (୧)
ଦଶନ ଲକ୍ଷ୍ୟକୁ ପାଇ ନପାଇ
ମୁକ୍ତ ହୋଇ ସିନା ମୁକ୍ତା ବୋଲାଇ
ମଧୁର ନୋହେ ମଧୁ ଓଷ୍ଠ ପରି
ଶରଘା ଉଚ୍ଛିଷ୍ଟେ ସେ ଶଦ୍ଦ ଧରି ଯେ
ଦେବତା ପ୍ରତିଷ୍ଠା ବିହି ଯେ
ଅରୁଣ ଅଧରେ ଅରୁଣ ଅଧର ଜବା ସର୍ବତଳେ ରହି ଯେ ।

ଉପମା ଦେବାରେ କବିଙ୍କର ତୁଳନା ନାହିଁ । ତେଣୁ ଯଥାର୍ଥରେ କୁହାଯାଇଛି -

ଉପମା ଭଞ୍ଜବୀରସ୍ୟ ତସୈବଚାର୍ଥ ଗୌରବମ୍
କଲ୍ଲୋଳେ ପଦ ଲାଳିତ୍ୟଂ ସନ୍ତି ଚିନ୍ତାମଣୌତ୍ରୟଃ ।

ଗୀତଗୋବିନ୍ଦର ୧୨ଟି ସର୍ଗରେ ୨୪ ଗୋଟି ଛାନ୍ଦ ଅଛି । ସମସ୍ତ ସର୍ଗ ରାଗ ଦ୍ୱାରା ପ୍ରତିବନ୍ଧିତ । ଗୀତଗୋବିନ୍ଦର ନିମ୍ନଲିଖିତ ରାଗମାନ ପରିଦୃଷ୍ଟ ହୁଏ, ଯଥା- ବସନ୍ତ, ରାମକେରୀ, ଗୁର୍ଜରୀ, ମାଳବଗୌଡ଼ା, କର୍ଣ୍ଣାଟ, ଦେଶାଖ୍ୟ, ମାଳବ, ଗୁଣ୍ଡକିରୀ, ଦେଶବରାଡ଼ୀ, ପଞ୍ଚମ ବରାଡ଼ୀ, ଭୈରବୀ, ବିଭାସ, ବରାଡ଼ୀ ଇତ୍ୟାଦି । ଏଠାରେ କହିବା ବାହୁଲ୍ୟ ଯେ, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ତାଙ୍କ କାବ୍ୟମାନଙ୍କରେ ଜୟଦେବ ବ୍ୟବହୃତ ସମସ୍ତ ରାଗମାନଙ୍କୁ ସ୍ଥାନ ଦେଇ କାବ୍ୟ ରଚନା କରିଛନ୍ତି । ବୈଦେହୀଶ ବିଳାସରେ ୫୨ ଗୋଟି ଛାନ୍ଦରେ ୪୨ ଗୋଟି ରାଗକୁ ସେ ବ୍ୟବହାର କରିଛନ୍ତି ଓ ଅନ୍ୟାନ୍ୟ କାବ୍ୟମାନଙ୍କରେ ତତୋଧିକ ରାଗ ବ୍ୟବହାର କରିଛନ୍ତି ।

ଭକ୍ତକବି ଜୟଦେବ ଓ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଯୁଗେ ଯୁଗେ ଏ ଜାତିର ଚିର ନମସ୍ୟ । ଯାବଦ୍ ଚନ୍ଦ୍ରାର୍କେ ଏ ଜାତି ସେମାନଙ୍କୁ ସ୍ମରଣ କରୁଥିବ ଓ ଭକ୍ତିପୂତ ଅର୍ଘ୍ୟ ଦେଇ ପ୍ରଣାମ କରୁଥିବ ।

ଘ.ନଂ.-୧୧୩ (ଏସ୍)
ମୈତ୍ରୀ ବିହାର, ଭୁବନେଶ୍ୱର



# ଜୟଦେବଙ୍କ ଗୀତଗୋବିନ୍ଦ ଓ ଗ୍ରୀକ୍ କାବ୍ୟଧାରା

ପ୍ରଫେସର ପ୍ରଫୁଲ୍ଲ କୁମାର ମିଶ୍ର

ଜୟଦେବଙ୍କ 'ଗୀତଗୋବିନ୍ଦ' ପୃଥିବୀର ସମସ୍ତ ସମ୍ଭ୍ରାନ୍ତ ଭାଷାରେ ଅନୁଦିତ ଓ ଆଲୋଚିତ । ସମ୍ପ୍ରତି ପୃଥିବୀର ଅନେକ ସମ୍ଭ୍ରାନ୍ତ ଶାସ୍ତ୍ରବିତ୍ ଓ ସଙ୍ଗୀତଜ୍ଞ ଭାରତକୁ ଆସୁଛନ୍ତି ଗୀତଗୋବିନ୍ଦ ଦ୍ୱାରା ଆକର୍ଷିତ ହୋଇ । ଭାରତୀୟ ସଂଗୀତ ଶାସ୍ତ୍ରର ଅନ୍ତଃସ୍ରୋତ ହେଲା ମଣିଷ ମନ ଗହନର କୋମଳ ଭାବନାକୁ ସ୍ପର୍ଶ କରିବା ଓ ଲୁକ୍କାୟିତ ସଂସ୍କାରକୁ ବ୍ୟକ୍ତିତ୍ୱର ଊର୍ଦ୍ଧ୍ୱସ୍ତରକୁ ଆଣି ପରିପ୍ରକାଶ କରିବା, ସେଥିପାଇଁ କୌଣସି ଏକ ରାଗରାଗିଣୀର ପରିବେଷଣରେ ବ୍ୟକ୍ତି ନିଜର ଅଭ୍ୟନ୍ତରକୁ ପ୍ରବେଶ କରିବା ସଂଗେସଂଗେ ତା'ର ଚିତ୍ତ ବିସ୍ତାରିତ ହୁଏ । ବିସ୍ତାରିତ ଚିତ୍ତବୃତ୍ତି ହିଁ ଆନନ୍ଦ ପ୍ରଦାନ କରିପାରେ । କାରଣ ଶ୍ରୁତି କୁହେ, 'ଭୂମୈବ ସୁଖମ୍ ନାଲ୍ପେ ସୁଖ ମସ୍ତି ।' ବହୁତ୍ୱରେ ଆନନ୍ଦ ସ୍ୱଳ୍ପତାରେ ସୁଖ ନାହିଁ । ଯେତେବେଳେ ଗୀତଗୋବିନ୍ଦସ୍ଥିତ ବସନ୍ତ ରାଗର 'ଲଳିତ ଲବଙ୍ଗଲତା ପରିଶୀଳନ' ଗାନଟି କୌଣସି ଶ୍ରୋତା ଶୁଣେ, ତେବେ ତା'ର ହୃଦୟ ଆନନ୍ଦ ସାଗରରେ ଦ୍ରବୀଭୂତ ହୁଏ । ଜୟଦେବଙ୍କ ଗୀତଗୋବିନ୍ଦ ଏକାଧାରରେ ଏକ ମହାକାବ୍ୟ ଓ ବିବିଧ ରାଗ ସମନ୍ୱିତ ପଦର ଏକ ମଧୁର ସମନ୍ୱୟ । ଏଥିରେ ଥିବା ୨୪ଟି ପଦ୍ୟରେ ୧୨ଟି ରାଗର ସମାବେଶ କରାଯାଇଛି ।

**ରାଗ - ପଦ୍ୟସଂଖ୍ୟା**

ମାଳବ - ୧, ୬, ୧୩, ଏହି ଗୀତକୁ ଗୁଣ୍ଡକିରୀ ବୋଲି ମଧ ଧରାଯାଇଛି ।

ଗୁର୍ଜରୀ - ୨, ୫, ୭, ୧୧, ୧୫, ୧୮

ବସନ୍ତ - ୩, ୧୪, ୨୦

ରାମକିରୀ - ୪, ୨୪

କର୍ଣ୍ଣାଟ - ୮

ଦେଶାଖ୍ୟ - ୮, ୧୬

ଦେଶବରାଡ଼ି - ୧୦, ୧୯

ନଟରାଗ - ୧୨

ଭୈରବୀ - ୧୭

ବରାଡ଼ି - ୨୧, ୨୨

ବିରସ - ୨୩

ଏହି ୧୨ଟି ରାଗ ସହିତ ୧୨ଶ ମାଧବଙ୍କର ୧୨ଟି ରୂପ ଗୀତଗୋବିନ୍ଦର ୧୨ ସର୍ଗରେ ନାମିତ ହୋଇଛି । ସେଗୁଡ଼ିକ ଯଥାକ୍ରମେ, ସାମୋଦ ଦାମୋଦର, ଅକ୍ଲେଶ କେଶବ, ମୁଗ୍ଧ ମଧୁସୂଦନ, ସ୍ନିଗ୍ଧ ମଧୁସୂଦନ, ସାକାଂକ୍ଷ ପୁଣ୍ଡରିକ, କୁଣ୍ଠବୈକୁଣ୍ଠ, ନାଗର ନାରାୟଣ, ବିଲକ୍ଷ୍ୟ ଲକ୍ଷ୍ମୀପତି, ମୁଗ୍ଧମୁକୁନ୍ଦ, ଚତୁର ଚତୁର୍ଭୁଜ, ସାନନ୍ଦ ଦାମୋଦର ଓ ସୁପ୍ରୀତ ପୀତାମ୍ବର । ଲୀଳାବତାର ଶ୍ରୀକୃଷ୍ଣଙ୍କର ବିଭିନ୍ନ ମୁଦ୍ରାମାନଙ୍କୁ ସର୍ଗମାନରେ ଏହି ଯେଉଁ ନାମକରଣ କରାଯାଇଛି ତା'ର ପ୍ରତିସର୍ଗମାନଙ୍କରେ ପରିବେଶିତ ହୋଇଥିବା ବିଭିନ୍ନ ଅଷ୍ଟପଦୀର ରାଗ ଓ ରସ ସହିତ ଏହି ନାମକରଣର ସମ୍ପର୍କ ବୋଧହୁଏ ଖୁବ୍ ସୂକ୍ଷ୍ମ । କହିବା ବାହୁଲ୍ୟ ଯେ, ଏହି କାବ୍ୟର ପ୍ରତିସର୍ଗ ଦ୍ୱିଧା ବିଭକ୍ତ । ଗୋଟିଏ ଅଂଶ ଧାରାବିବରଣୀ ରୂପକ ଶ୍ଳୋକ ଓ ଅନ୍ୟଟି ହେଲା ସେମାନଙ୍କର ଘଟଣାବଳୀର ସ୍ୱରୂପ, ସଂଳାପ ଓ ବିଳାପ । ତେଣୁ କବି ଓ ସହୃଦୟମାନଙ୍କର ଉଚ୍ଚାଙ୍ଗ କାବ୍ୟାଭ୍ୟାସ ନିମିତ୍ତ ଏହି ୭୨ ଶ୍ଳୋକ ଖୁବ୍ ଉପାଦେୟ ଓ ଗୁରୁତ୍ୱପୂର୍ଣ୍ଣ । ଆଳଙ୍କାରିକ ବିଶ୍ୱନାଥ କବିରାଜ ଆଦି ଶାସ୍ତ୍ରକାରମାନେ ତାଙ୍କର ଗ୍ରନ୍ଥରେ ଉଦାହରଣ ନିମିତ୍ତ ଗୀତଗୋବିନ୍ଦର - ଏହି ଶ୍ଳୋକମାନ ଗ୍ରହଣ କରିଛନ୍ତି । ସଂଗୀତଶାସ୍ତ୍ରକାରମାନେ ଓ ଗାନ ଶିଳ୍ପୀମାନେ ତଦ୍ରୂପ ଗୀତଗୁଡ଼ିକର ମହତ୍ତ୍ୱକୁ ସ୍ୱୀକାର କରି ବିବିଧ ଶାସ୍ତ୍ରୀୟ ନୃତ୍ୟ ନିମିତ୍ତ ତାହାକୁ ପ୍ରସ୍ତୁତ କରନ୍ତି । କୁଚିପୁଡ଼ି, ଭାରତ ନାଟ୍ୟମ୍, କଥକଳି ଏବଂ ଓଡ଼ିଶୀ ସଂଗୀତରେ ଏହି ଅଷ୍ଟପଦୀମାନଙ୍କର ବହୁଳ ବ୍ୟବହାର ରହିଛି । ସଂଗୀତଜ୍ଞ ଭାତଖଣ୍ଡେଙ୍କ ଭାଷାରେ ଅଷ୍ଟପଦୀମାନଙ୍କର ବ୍ୟବହୃତ ମୂଳରାଗମାନ ଲୁପ୍ତପ୍ରାୟ । ସାର୍ ଉଇଲିୟମ୍ ଜୋନସ୍

ଯଦି ସେତେବେଳେ ଜଗନ୍ନାଥ ମନ୍ଦିରକୁ ବା ମଠବାଡ଼ିମାନଙ୍କରେ ହେଉଥିବା ଝୁଲଣ ଓ ଗୀତଗୋବିନ୍ଦ ସେବାମାନ ଶୁଣିଥାନ୍ତେ, ତେବେ ତାହାଙ୍କର ସ୍ୱରଲିପି ନିର୍ମାଣ କରାଇବା ଓ ସେହି ରାଗକୁ ନିଜର ରକ୍ଷଣାବେକ୍ଷଣ କରିବାରେ ଯତ୍ନବାନ ହୋଇପାରିଥାନ୍ତେ । ତେବେ ଏବେବି ସମୟ ଅଛି କୌଣସି ଆଧୁନିକ ପ୍ରଭାବ ବିବର୍ଜିତ ଗୋଟିପୁଅ ନାଚ ଓ ବିଭିନ୍ନ ମନ୍ଦିରରେ ହୋଇଥିବା ଗୀତଗୋବିନ୍ଦ ସେବାକୁ ଅନୁଧ୍ୟାନ କରି ଶାସ୍ତ୍ରୀୟ ରାଗମାନଙ୍କର ଲକ୍ଷଣକୁ ଅଧ୍ୟୟନ କରି ମୂଳ ସ୍ୱରକୁ ଧରିପାରିବା ପାଇଁ ଯତ୍ନ କରିହେବ । ଗୀତଗୋବିନ୍ଦ ଗାନର ଶ୍ଳୋକର ଆବେଦନଗୁଡ଼ିକ ହୃଦୟର ଗଭୀରତମ ପ୍ରଦେଶରୁ ସମ୍ପାରିତ ହୋଇଥିବାରୁ ତାହା ଯେକୌଣସି ବ୍ୟକ୍ତିକୁ ଆକୃଷ୍ଟ କରିବା ସ୍ୱାଭାବିକ । ଲଣ୍ଡନ ସହରରେ ଦେଖି ଶୁଣିଥିବା ଗୀତଗୋବିନ୍ଦ ଗାନ ହିଁ ଭାରତୀୟ ସଂଗୀତ ଓ ବିଶେଷତଃ ଓଡ଼ିଶୀ ସଂଗୀତକୁ ବୁଝିବାପାଇଁ ତାଙ୍କୁ ଟାଣି ଆଣିଥିଲା । ଧନ୍ୟ ଜୟଦେବ, ଧନ୍ୟ ଗୀତଗୋବିନ୍ଦ ।

ଗତ ମାର୍ଚ୍ଚମାସ ୨୦ରୁ ୨୨ ତାରିଖ ପର୍ଯ୍ୟନ୍ତ ସାଇପ୍ରସ୍‌ର ଜଣେ ବିଶିଷ୍ଟ ସଂଗୀତଜ୍ଞ ଫାଦ୍ରସ କାଭାଲପରୀସ୍ ଭାରତ ସରକାରଙ୍କ ସାଂସ୍କୃତିକ ବିନିମୟ କାର୍ଯ୍ୟକ୍ରମରେ ଆସିଥିଲେ । ଆଇ.ସି.ସି.ଆର୍ ଅନୁରୋଧକ୍ରମେ ଉତ୍କଳ ବିଶ୍ୱବିଦ୍ୟାଳୟ ବାଣୀ ବିହାର ପରିସରସ୍ଥ ସଂସ୍କୃତ ବିଭାଗରେ ସଂଗୀତଜ୍ଞ ଶ୍ରୀକୀର୍ତ୍ତନ ନାରାୟଣ ପାଢ଼ୀଙ୍କ ଓ ଜୟଦେବ ଫାଉଣ୍ଡେସନର ପ୍ରଫୁଲ୍ଲ ତ୍ରିପାଠୀଙ୍କ ଆନୁକୂଲ୍ୟରେ ଉତ୍କଳ ସଂଗୀତ ମହାବିଦ୍ୟାଳୟ ଅଧ୍ୟାପକ ଜଗନ୍ନାଥ କୁଅଁର, ନୟାଗଡ଼ର ଗାୟକ କୃଷ୍ଣପ୍ରସାଦ ମିଶ୍ର ଓ ଆକାଶବାଣୀ କଳାକାର ପ୍ରତିମା ପଣ୍ଡା ପ୍ରଭୃତି ଗୀତଗୋବିନ୍ଦର ରାଗ ପ୍ରସ୍ତୁତ କରିଥିଲେ । ଠିକ୍ ସେହିପରି ଉତ୍କଳ ସଂଗୀତ ନାଟକ ଏକାଡ଼େମୀ ସଚିବ ଦେବଦତ୍ତ ସାମନ୍ତ ସିଂହାରଙ୍କ ଆନୁକୂଲ୍ୟରେ ଉଦୟନ ସଙ୍ଗୀତ ଏକାଡ଼େମୀ ପକ୍ଷରୁ ପୁରୀରେ ପଣ୍ଡିତ କାଶୀନାଥ ପୂଜାପଣ୍ଡା, ପରସମଣି ଦେବଦାସୀ, ଗୁରୁ ରବିନାରାୟଣ ଦାସଙ୍କ ପଖଉଜ ବାଦନ, ବିଶିଷ୍ଟ ପ୍ରଚ୍ଛଦପଟ୍ଟ ଗାୟିକା ଶ୍ରୀମତୀ ଭୁବନେଶ୍ୱରୀ ମିଶ୍ର, ଶ୍ରୀ ଶିବ ପ୍ରସାଦ ଦାସ ଓ ଯୁବ ସଂଗୀତଜ୍ଞ ବିଚିତ୍ର କୁମାର ଦାଶ, ନୀଳମଣି ମିଶ୍ର, ଅଧ୍ୟାପିକା ରୋଜାଲିନ୍ ମିଶ୍ର, ଗୁରୁ ଗୌରାଙ୍ଗ ଚରଣ ଖୁଣ୍ଟିଆ, ମନସ୍ୱିନୀ ସ୍ୱାଇଁମହାପାତ୍ର ପ୍ରଭୃତି ଗୀତଗୋବିନ୍ଦର ବିବିଧ ରାଗମାନ ଗାନ କରିଥିଲେ । ଓଡ଼ିଶୀ ସଂଗୀତ ପରମ୍ପରାର ବିବିଧ ଆୟାମମାନ ଏହି ସମାରୋହମାନଙ୍କରେ ଆଲୋଚିତ ହେଲା ।

ଏହିସବୁ ସଂଗୀତସହ ସମତାଳରେ ଗ୍ରୀକ୍ ସଂଗୀତଜ୍ଞ କାଭାଲେରିସ୍ ଅନୁରୂପ ଭାବମାନ ତାଙ୍କ ପରମ୍ପରାରୁ ଉଦ୍ଧାର କରି ଏକ ବିସ୍ତୃତ ଭାଷଣ ପ୍ରସ୍ତୁତ କରିଥିଲେ । ଏହି ଭାଷଣର ମହତ୍ୱ ଥିଲା ଯେ ଗ୍ରୀକ୍ ସଂଗୀତ ପରମ୍ପରା ଓ ରାଗରେ ଭାରତୀୟ ସଂଗୀତ ପରମ୍ପରାର ଯଥେଷ୍ଟ ସାମଞ୍ଜସ୍ୟ ରହିଛି । ଆଜିର ରକ୍ ମ୍ୟୁଜିକ୍ ଓ ଉଦଣ୍ଡ ନୃତ୍ୟ ଯଦ୍ୟପି ଦର୍ଶକକୁ ଉନ୍ମାଦଗ୍ରସ୍ତ କରୁଛି, ତେବେ ତାହା ଅନ୍ତଃସ୍ଥଳକୁ ବା ଆତ୍ମାକୁ ସ୍ପର୍ଶ କରୁନାହିଁ । ଆନନ୍ଦକୁମାର ସ୍ୱାମୀଙ୍କ ବକ୍ତବ୍ୟ ହେଲା - ଭାରତୀୟ କଳା ଓ ସଂଗୀତ ମନୁଷ୍ୟର ଅନ୍ତଃସ୍ଥଳକୁ ସ୍ପର୍ଶ କରୁଥିବା ସ୍ଥଳେ ପାଶ୍ଚାତ୍ୟ ସଂଗୀତ ଓ କଳା ସବୁ ବାହ୍ୟ ବ୍ୟକ୍ତିତ୍ୱ ଓ ସ୍ଥଳଜୀବୀଙ୍କ ପାଇଁ ଉଦ୍ଦିଷ୍ଟ । ସେଥିପାଇଁ ଗ୍ରୀକ୍ ସଂଗୀତଜ୍ଞମାନେ ସହଜରେ ଭାରତୀୟ ସଂଗୀତର ମୂର୍ଚ୍ଛନାକୁ ବୁଝିପାରିବେ ।

ସଂସ୍କୃତ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର



# କେନ୍ଦୁଲୀର ଜୟଦେବ ଓ ଶ୍ରୀଗୀତଗୋବିନ୍ଦ

ସାରଙ୍ଗଧର ରାୟଗୁରୁ

ଶ୍ରୀମଦ୍ ଭାଗବତରେ ବର୍ଣ୍ଣିତ ଅଛି -

ନ ପାରେଽହଂ ନିରବଦ୍ୟ ସଂଯୁଜାଂ
ସ୍ୱସାଧୁକୃତ୍ୟ ବିବୁଧାୟୁଷାପି ବଃ
ଯା ମଉଜିଳ ଦୁର୍ଜର ଗେହ ଶୃଙ୍ଖଳା
ସଂବୃଶ୍ଚ୍ୟ ତଦ୍‌ବଃ ପ୍ରତିଯାତୁ ସାଧୁନା ।

ତୁମେ ମୋ ଲାଗି ଗୃହର ଶୃଙ୍ଖଳା ବେଡ଼ିକୁ ଭାଙ୍ଗି ଦେଇଛ । ଯାହାକୁ ବଡ଼ ବଡ଼ ଯତୀ ଯୋଗୀମାନେ ମଧ ଛିଣ୍ଡାଇ ପାରି ନାହାନ୍ତି । ମୋ ସହ ତୁମର ଏ ମିଳନ ଏହି ଆତ୍ମିକ ସଂଯୋଗ ନିର୍ମଳ ଏବଂ ସର୍ବଥା ନିର୍ଦ୍ଦେଶ ଅଟେ । ଯଦି ମୁଁ ଅମର ଶରୀରରେ ଅମର ଜୀବନ ଧରି ଅନନ୍ତ କାଳ ପର୍ଯ୍ୟନ୍ତ ତୁମର ପ୍ରେମ ସେବା ଏବଂ ତ୍ୟାଗକୁ ଶୁଝିବାଲାଗି ଚାହିଁବି ତଥାପି ମଧ ଶୁଝି ପାରିବି ନାହିଁ । ମୁଁ ଜନ୍ମ ଜନ୍ମ ପାଇଁ ତୁମର ଋଣୀ ହେଲି । ତୁମେ ତୁମର ସୌମ୍ୟ ସ୍ୱଭାବରେ ପ୍ରେମ ଦ୍ୱାରା ମୋତେ ଋଣମୁକ୍ତ କରିପାର । ମାତ୍ର ମୁଁ ତ ତୁମର ଋଣୀ ହେଲି । ଏଠାରେ ମହାପ୍ରଭୁ ମୁକ୍ତ କଣ୍ଠରେ ସ୍ୱୀକାର କଲେ ଯେ, ସେ ଗୋପୀ ପ୍ରେମରେ ଚିରଦିନ ଲାଗି ବାନ୍ଧି ହୋଇ ରହିଗଲେ ।

ମୁକ୍ତ କଣ୍ଠରେ ଭକ୍ତ ପାଖରେ ଏପରି ସ୍ୱୀକାର କରିଥିଲେ ଶ୍ରୀରାମଚନ୍ଦ୍ର ।

ରଘୁପତି କିହ୍ନୀ ବହୁତ ବଡ଼ାଇ
ତୁମ ମମପ୍ରିୟ ଭରତହି ସମ ଭାଇ
ସହସ ବଦନ ତୁହ୍ମରୋ ଯଶ ଗାୱୈ
ଅସ କହି ଶ୍ରୀପତି କଣ୍ଠ ଲଗାୱୈ ।

ନାରଦ ଭକ୍ତି ସୂତ୍ରର ୪ର୍ଥ ସୂତ୍ର ଅନୁଯାୟୀ 'ଯ ଲ୍ଲବ୍ଧା ପୁମାନ ସିଦ୍ଧୋ ଭବତି, ଅମୃତୋ ଭବତି ତୃପ୍ତୋ ଭବତି ।' ପଞ୍ଚମ ସୂତ୍ର ଅନୁଯାୟୀ 'ଯତ୍ ପ୍ରାପ୍ୟ କିଞ୍ଚିଦ୍‌ନବାଞ୍ଛତି, ନ ଶୋଚତି, ନଦ୍ୱେଷ୍ଟି, ନ ରମତେ, ନୋତ୍ସାହୀ ଭବତି ।' ଷଷ୍ଠ ସୂତ୍ର ଅନୁଯାୟୀ 'ଯଦ୍‌ଜ୍ଞାତ୍ୱା ମତ୍ତୋ ଭବତି, ସ୍ତବ୍ଧୋ ଭବତି, ଆତ୍ମରାମୋ ଭବତି ।

ଏହି ପରିପ୍ରେକ୍ଷୀରେ

' ହଇରିତି, ହଇରିତି ଜପତି ସ କାମଂ
ବିରହ ବିହିତ ମରଣେବ ନିକାମମ୍
ରାଧିକା ତବ ବିରହେ
ସା ରୋମାଞ୍ଚିତ, ଶୀତ୍ କରୋତି, ବିଳପତ୍ୟୁତ୍ କମ୍ପିତୋ ତାମ୍ୟତି
ଧାୟତ୍ୟୁଦ୍ ଭ୍ରମତି, ପ୍ରମୀଳତି ପତତ୍ୟୁଦ୍‌ଯାତି ମୂର୍ଚ୍ଛତ୍ୟପି ।'

ଏହି ପଂକ୍ତିକୁ ଅନୁଧ୍ୟାନ କଲେ ରାଧାଙ୍କର ଭକ୍ତିଭାବ ଥିଲା ଅତି ଉଦ୍ଦାମତାର ଚରମ ନିଦର୍ଶନ । ସେ ହରି ହରି ବୋଲି ବିରହ ତାପରେ ମରଣଠାରୁ ବଳି ଅଧିକ ତପ୍ତ ହେଉଥିଲେ । କେତେବେଳେ ରୋମାଞ୍ଚ, ଶୀତ୍କାର ବିଳାପ, କମ୍ପନ, ଧ୍ୟାନ, ଭ୍ରମଣ, ଚକ୍ଷୁ ନିମୀଳନ, ଲୋମହର୍ଷଣ, କାମଜ୍ୱର, ଭୂମିଶୟନ, ଅଚେତନ ଓ ମୂର୍ଚ୍ଛା ଯିବାର ଲକ୍ଷଣ ସବୁ ଦୃଷ୍ଟି ଦେଲେ ଏହା ନାରଦ ଭକ୍ତି ସୂତ୍ରାନୁସାରେ ରଚିତ । ଏହି ବର୍ଣ୍ଣନାଟି ନବମ ସନ୍ଦର୍ଭରେ ଅଛି ।

ଶ୍ଳିଷ୍ୟତି, ଚୁମ୍ବତି ଜଳଧର କଳ୍ପଂ
ହଇରୁପଗତ ଇତି ତିମିର ମନଳ୍ପଂ'

ଏହି ବର୍ଣ୍ଣନାରେ ରାଧା ଶ୍ରୀକୃଷ୍ଣଙ୍କୁ କଳ୍ପନା କରି ନବ ଜଳଧରଙ୍କୁ ଚୁମ୍ବନ ଦେବା 'ମତ୍ତୋଭବତି'ର ପରିକଳ୍ପନା ଏହା ଶାସ୍ତ୍ରୀୟ ବିଧିରେ ବିରଚିତ ହୋଇଛି । ବିଗତ ଦ୍ୱାଦଶ ଶତାବ୍ଦୀର ରଚନାର ଅନବଦ୍ୟତା କେବଳ ଅନୁଭବନୀୟ ।

ମେଘୈର୍ମେଦୁରମମ୍ବରଂ ବନଭୁବଂ ଶ୍ୟାମାସ୍ତମାଳ ଦ୍ରୁମୈଃ
ର୍ନକ୍ତଂ ଭୀରୁରୟଂ ତ୍ୱମେବତଦିମଂ ରାଧେ ଗୃହଂ ପ୍ରାପୟ
ଇତ୍ଥଂ ନନ୍ଦନିଦେଶଶ୍ଚଳିତୟୋଃ ପ୍ରତ୍ୟଧ୍ୱ କୁଞ୍ଜଦ୍ରୁମଂ
ରାଧା ମାଧବେର୍ୟୋଜୟନ୍ତି ଯମୁନା କୂଳେ ରହଃ କେଳୟ ।

ଏଠାରେ 'ମାଧବ' ଶବ୍ଦର ଉଚ୍ଚାରଣରେ ଉତ୍କଳର ମାଧବ ସଭ୍ୟତାକୁ ସଂକେତ ନିର୍ଦ୍ଦେଶ କରିଛନ୍ତି କବି । ନିଆଳି ମାଧବ, ମୁଦ୍ଗଲ ମାଧବ, ନୀଳମାଧବର ଦେଶ ଉତ୍କଳ । ନୀଳମାଧବ

ଜଗନ୍ନାଥ ରୂପେ ପରିକୀର୍ତ୍ତିତ । ତେଣୁ ଯେଉଁ ପଦ୍ମାବତୀଙ୍କୁ ସର୍ବଦା ସେବା କରୁଥିଲେ କବି ତାଙ୍କୁ ସ୍ମରଣ କରି ବାଗ୍‌ଦେବତା ରୂପିଣୀ ପଦ୍ମାବତୀଙ୍କୁ ଧ୍ୟାନ କରି ସେ ଲେଖିଛନ୍ତି -

'ବାକ୍‌ଦେବତା ଚରିତ ଚିତ୍ରିତ ଚିତ୍ତ ସଦ୍ମା
ପଦ୍ମାବତୀ ଚରଣ-ଚାରଣ-ଚକ୍ରବର୍ତ୍ତୀ
ଶ୍ରୀବାସୁଦେବ ରତିକେଳୀ କଥା ସମେତ
ମେତଂ କରୋତି ଜୟଦେବ କବି ପ୍ରବନ୍ଧମ୍ ।'

କବି ଅମୃତମୟ ପ୍ରେମର ରସାବେଶମୟ କାବ୍ୟ ରଚନା କରିଥିଲେ ମଧ୍ୟ ତାଙ୍କର ସହଧର୍ମିଣୀ ପଦ୍ମାବତୀଙ୍କ ସନ୍ଦର୍ଭରେ ସେ ଆପଣାକୁ ପଦ୍ମାବତୀ ଚରଣ ଚାରଣ ଚକ୍ରବର୍ତ୍ତୀ ବୋଲି ବର୍ଣ୍ଣନା କରିଛନ୍ତି । କେନ୍ଦୁଲୀରେ କବିଙ୍କର ଘରଡିହ ଏବେ ବି ବିଦ୍ୟମାନ । ଜୟଦେବଙ୍କ ଆରାଧ୍ୟ ଦେବୀ ପଦ୍ମାବତୀ ମଧ୍ୟ ଅଛନ୍ତି । ଏହା ପ୍ରମାଣ କର ଯେ ସେ ପଦ୍ମାବତୀଙ୍କର ଉପାସକ ଥିଲେ । ଖ୍ରୀ:ପୂ: ସମୟରେ ନିର୍ମିତ ହୋଇଥିବା ଓ ୧୯୬୯ ମସିହାରେ ପୁନରୁଦ୍ଧାର କରାଯାଇଥିବା ମନ୍ଦିରରେ ଆଜି ବି ପଦ୍ମାବତୀ ଓ ଜାଗେଶ୍ୱରୀଙ୍କ ବିଗ୍ରହ ଶୋଭାପାଏ । ମନ୍ଦିରର ମୁଖଶାଳାରେ ଏବଂ ଗର୍ଭଗୃହରେ ଥିବା ପଦ୍ମାବତୀଙ୍କର ଦୁଇଟି ବିଗ୍ରହ ଆଦି ପର୍ଯ୍ୟଟକର ଦୃଷ୍ଟି ଆକର୍ଷଣ କରେ । ନିକଟରେ ଅଷ୍ଟମ ଶତାବ୍ଦୀର ମୁକ୍ତେଶ୍ୱର ମହାଦେବ ମନ୍ଦିର ଅଛି । ପ୍ରତିଦିନ ଗୀତଗୋବିନ୍ଦର ଦଶାବତାର ସର୍ଗ ସନ୍ଧ୍ୟାରେ ଏଠି ଗାନ ହୁଏ । ପଦ୍ମବନରୁ ରାଧାଙ୍କର ଜନ୍ମ ହେତୁ ଏହି ପଦ୍ମାବତୀ ହିଁ କୃଷ୍ଣଙ୍କର ପ୍ରିୟବତୀ ରାଧିକା । ଗୀତଗୋବିନ୍ଦ ବର୍ଣ୍ଣିତ ଦଶାବତାର ନାମଅନୁସାରେ ଦଶଗୋଟି ଗାଁର ନାମ ମଧ୍ୟ କେନ୍ଦୁବିଲ୍ୱ ନିକଟରେ ଅଛି ଯାହାର ପାଣିପବନ ଜୟଦେବଙ୍କ କଥା କହେ । କେନ୍ଦୁଲୀର ଏକପାର୍ଶ୍ୱରେ ପ୍ରାଚୀନଦୀ ଓ ଅନ୍ୟପଟେ କୁଶଭଦ୍ରା ନଦୀ । ମଧ୍ୟଭାଗରେ ଦେବଦେବୀ ପୀଠ ପରିପୂର୍ଣ୍ଣ । ସବୁଠାରେ ସନ୍ଧ୍ୟାରେ ଗୀତଗୋବିନ୍ଦ ପାଠ ହୁଏ । ଏହା ଗ୍ରାମବାସୀଙ୍କର ଅଭ୍ୟାସ । ସ୍ଥାପିତ ସଂଗ୍ରହାଳୟରେ ବହୁ ପ୍ରାଚୀନ ଶିଳାଲେଖ, ମୂର୍ତ୍ତି, ଜୟଦେବଙ୍କ ସମୟର ଇତିହାସରେ ଉତ୍କୀର୍ଣ୍ଣ ଗାଁର ଧାନ ବିଲରୁ ଭୈରବ, ଦୁର୍ଗା, ବିଷ୍ଣୁ ମୂର୍ତ୍ତି, ଶିଳାଲେଖ, ମାଟିଘୁମ, ମାଟିଦୀପ ମିଳିଛି । କେନ୍ଦୁଲୀର ଦେଢ଼ କିଲୋମିଟର ଉତ୍ତରକୁ ଅଡ଼ଶପୁରରେ ଶିବ ମନ୍ଦିରରେ ଜୈନଆଦି ତୀର୍ଥ ଋଷଭନାଥ ଓ ପାର୍ଶ୍ୱନାଥଙ୍କର ବିଗ୍ରହ । କୁଶଭଦ୍ରା ନଦୀ କୂଳର ବାଗଲପୁରରେ ଥିବା ଜୈନମୂର୍ତ୍ତି ଏଠିକାର ପ୍ରାଚୀନ ସଭ୍ୟତା ସଂପର୍କରେ ସୂଚନା ଦିଏ ।

କେନ୍ଦୁଲୀର ଏକ ବୈଶିଷ୍ଟ୍ୟ ପ୍ରାଚୀନ ତିରୁମଲ୍ଲ ମନ୍ଦିର । ବିଜୟ ନଗରର ରାଜା ତିରୁମଲ୍ଲ ରାୟ (୧୫୬୫-୧୫୮୦) ଜଗନ୍ନାଥ ଦର୍ଶନରେ ଆସି ଏଠି ମଠ ସ୍ଥାପନ କରିଥିଲେ । ତାଙ୍କ ସଭାର ପଣ୍ଡିତ ଲକ୍ଷ୍ମଣ ସୁରୀ ଯେ କି ଗୀତଗୋବିନ୍ଦ ଶ୍ରୁତିରଞ୍ଜନ ଟୀକା ରଚନା କରିଥିଲେ ସେ ମଧ୍ୟ ଏହି ଗାଁର ଭ୍ରମଣରେ ଆସିଥିଲେ । ଏହାବ୍ୟତୀତ ନୃସିଂହନାଥ ମନ୍ଦିର ଓ ଅନତି ଦୂରରେ ଥିବା ମାଧବ ଗ୍ରାମର ପ୍ରସିଦ୍ଧ ମାଧବ ମନ୍ଦିର ଜୟଦେବଙ୍କ ଭାସ୍ୱର କୀର୍ତ୍ତି ସ୍ୱାକ୍ଷର ବହନ କରେ । ଏହି ସମସ୍ତ ଦୃଶ୍ୟାବଳି ଦେଖି ସାରିବା ପରେ ଗତ ୨୦୦୩ ମସିହାରେ ଏକ ସାଂସ୍କୃତିକ ଉତ୍ସବରେ ଦିନ ଜୟଦେବ ଭବନରେ ଭରପୂର ଦର୍ଶକଙ୍କ ସମ୍ମୁଖରେ ବଙ୍ଗଳାର ଦୁଇ ବିଶିଷ୍ଟ ଐତିହାସିକ ସତ୍ୟକାମ ସେନଗୁପ୍ତ ଓ ଆଶିଷ କୁମାର ଚକ୍ରବର୍ତ୍ତୀ ସ୍ୱୀକାର କରିଛନ୍ତି ଯେ ରାଧାକୃଷ୍ଣଙ୍କ ଅପ୍ରାକୃତ ପ୍ରେମର ଦ୍ୟୋତକ ଓ ସନ୍ଦର୍ଶନ ବହନ କରିଥିବା ସଂସ୍କୃତ କାବ୍ୟ ଗୀତଗୋବିନ୍ଦର ଲେଖକ ଜୟଦେବ ଓଡ଼ିଶାର । ଜୟଦେବ ଫାଉଣ୍ଡେସନ ଟ୍ରଷ୍ଟ, ସଂସ୍କୃତି ବିଶ୍ୱବିଦ୍ୟାଳୟ, ଜୟଦେବ ସାଂସ୍କୃତିକ ପରିଷଦ, ପୂର୍ବାଞ୍ଚଳ ସାଂସ୍କୃତିକ କେନ୍ଦ୍ର କଲିକତା ଓ ସଂସ୍କୃତି ନିର୍ଦ୍ଦେଶାଳୟର ମିଳିତ ଆନୁକୂଲ୍ୟରେ ଆୟୋଜିତ ସଭାରେ ଭାଷଣ ଦେଇ ରବୀନ୍ଦ୍ର ଭାରତୀର ପୂର୍ବତନ ପ୍ରଫେସର ତଥା ଗବେଷକ ସତ୍ୟକାମ ସେନଗୁପ୍ତ କହିଲେ ଯେ ବୀରଭୂମରେ ଥିବା କେନ୍ଦୁଲୀ ଗ୍ରାମ ଯେଉଁଠାରେ ଜୟଦେବ ଜନ୍ମ ହୋଇଥିଲେ ବୋଲି ଦାବୀ କରନ୍ତି, ସେଠାରେ ମାଧବ ସଭ୍ୟତା ଦେଖାଯାଏ ନାହିଁ । ବରଂ ସେଠାକାର ମେଳାରେ ବାଉଲ ସଂଗୀତ, ଝୁମର, ପତାନାଚ ଛେଲନାଚ ଅନୁଷ୍ଠିତ ହୁଏ । ମାତ୍ର କେନ୍ଦୁଲୀ ଗ୍ରାମ ସମେତ ଏହାର ପାର୍ଶ୍ୱସ୍ଥ ଗ୍ରାମମାନଙ୍କରେ ଗୀତଗୋବିନ୍ଦ ଗାନ ସହ ମାଧବ ପୂଜାର ବ୍ୟାପକ ପ୍ରଚଳନ ଦେଖାଯାଏ । ଦ୍ୱାଦଶ ଶତାବ୍ଦୀରେ ବୀରଭୂମ ନିକଟରେ ଅଜୟ ନଦୀର ଉପସ୍ଥିତିକୁ ଅସ୍ୱୀକାର କରି ସେ କହିଲେ ଯେ ୧୭୦୭ ମସିହାରେ ରେନେଲ ସାହେବ ତିଆରି କରିଥିବା ମାନଚିତ୍ରରେ ଅଜୟା ନଦୀର ଚିହ୍ନ ବର୍ଣ୍ଣ ନାହିଁ । ମାତ୍ର କେନ୍ଦୁଲୀ ଗ୍ରାମ ନିକଟରେ ଥିବା ପ୍ରାଚୀନଦୀର ସୌନ୍ଦର୍ଯ୍ୟ ଜୟଦେବଙ୍କର ପ୍ରେରଣାର ଉତ୍ସ ଥିଲା । ପୁନଶ୍ଚ ଐତିହାସିକ ଗୁସ୍ତାଉଦୋରେଙ୍କ 'ସିଭିଲାଇଜେସନ୍ ଇନ୍ ଇଣ୍ଡିଆ'କୁ ଉଦ୍ଧାର କରି ପ୍ରଫେସର ସେନଗୁପ୍ତ କହିଲେ ଯେ ବର୍ତ୍ତମାନ ପଶ୍ଚିମ ବଙ୍ଗରେ ଥିବା ବର୍ଦ୍ଧମାନ, ବୀରଭୂମ, ମେଦିନୀପୁର ଓ ହୁଗୁଳି ଥିଲା ନିମ୍ନ କଳିଙ୍ଗ । ବଙ୍ଗଳାର ଐତିହାସିକ ଡଃ ସୁକୁମାର ସେନ, ଡଃ ସୁନୀତି ଚାଟର୍ଜୀ, ଡଃ ଅତୁଲ ସୁର ଓ ଡଃ ଆଶୁତୋଷ ଭଟ୍ଟାଚାର୍ଯ୍ୟଙ୍କର ଜୟଦେବଙ୍କ ଗୀତଗୋବିନ୍ଦର ଭାଷା, ଏଥିରେ ବର୍ଣ୍ଣିତ ମାଧବ ସଂସ୍କୃତି ଓ ଆଞ୍ଚଳିକ ପର୍ବମାନ ତଥା କଳାକୃତି ଉପରେ ଗବେଷଣାରୁ ପ୍ରତିପାଦିତ ହୁଏ ଯେ, ଏ ସମସ୍ତ ତଥ୍ୟ କେନ୍ଦୁବିଲ୍ୱ ସପକ୍ଷରେ ନାହିଁ । ବରଂ ଏପରି

ସଂସ୍କୃତି କେବଳ ପ୍ରାଚୀକୂଳସ୍ଥ କେନ୍ଦୁଲୀ ଗ୍ରାମରେ ଦେଖାଯାଏ ବୋଲି ସେ ଦୃଢ଼ ସ୍ୱରରେ କହିଥିଲେ । ଅନ୍ୟତମ ବକ୍ତା ଗୁରୁସଦୟ ସଂଗ୍ରହାଳୟ ଅଧିକ୍ଷକ ଆଶିଷ କୁମାର ଚକ୍ରବର୍ତ୍ତୀ ପ୍ରାଞ୍ଜଳ ଭାବେ ବୁଝାଇଥିଲେ ଯେ ଜୟଦେବଙ୍କର ଘର ଓଡ଼ିଶାର ପ୍ରାଚୀ କୂଳରେ ଥିବା କେନ୍ଦୁଲୀ ଗ୍ରାମ । ଗୀତଗୋବିନ୍ଦ ବର୍ଣ୍ଣିତ ବିଷ୍ଣୁଙ୍କ ଦଶାବତାର ରୂପର ପ୍ରତିଫଳନ ଓଡ଼ିଶାର ମନ୍ଦିରଗୁଡ଼ିକର ଦେଖାଯାଉଥିବା ବେଳେ ଏହା ପଶ୍ଚିମବଙ୍ଗରେ ଦେଖାଯାଏ ନାହିଁ । ବୀରଭୂମଠାରେ ଥିବା ଅଷ୍ଟାଦଶ ଶତାବ୍ଦୀର ଟେରାକୋଟା ମନ୍ଦିରରେ ଦଶାବତାରର ନାମଗନ୍ଧ ନଥିବାବେଳେ କେନ୍ଦୁଲୀରେ ଏହା ପ୍ରତିଫଳିତ । ଏପରିକି ଜୟଦେବଙ୍କର ଜନ୍ମକୁ ନେଇ ବୀରଭୂମରେ କୌଣସି ପଟ୍ଟଚିତ୍ର ନାହିଁ ବିଶିଷ୍ଟ ଐତିହାସିକ ଡଃ ବାତ୍ସାୟନ ଯେତେବେଳେ ସତୁରୀ ଦଶକରେ କଲିକତା ଆସିଥିଲେ ସେତେବେଳେ ତାଙ୍କଠାରୁ ପ୍ରାମାଣିକ ପଟ୍ଟଚିତ୍ର ଚାହିଁଥିଲେ । ମାତ୍ର ଏପରି ପଟ୍ଟଚିତ୍ର ନ ମିଳିବାରୁ ସେ ଗୁରୁ ସଦୟ ଦତ୍ତଙ୍କ କୃତ (୧୮୮୨-୧୯୪୧) ପଟୁଆ ସଂଗୀତ ନାମକ ପଟ୍ଟଚିତ୍ର ଗୁଚ୍ଛକୁ ଦେଖି ଫେରିଯାଇଥିଲେ ପରେ ତାଙ୍କୁ ପ୍ରାମାଣିକ ପଟ୍ଟଚିତ୍ର ନିର୍ମାଣ କରିବାକୁ କୁହାଗଲା । ଶେଷରେ ମେଦିନୀପୁରର 'ହରେନ୍ଦ୍ରନାଥ ଚିତ୍ରକର' ନାମକ ବ୍ୟକ୍ତିଙ୍କ ଦ୍ୱାରା କରାଯାଇଥିବା ଚିତ୍ରଟିଏ ବାତ୍ସାୟନଙ୍କ ନିକଟକୁ ଦିଲ୍ଲୀକୁ ପଠାଯାଇଥିଲା । ତେଣୁ ବୀରଭୂମରେ ପ୍ରମାଣ ନଥିବା ବେଳେ ପ୍ରାଚୀନଦୀ କୂଳରେ ଥିବା ବହୁପୂର୍ବରୁ ମାଧବ ସଂସ୍କୃତି ଓ ଜଗନ୍ନାଥ ସଂସ୍କୃତିର ଭିତ୍ତିଭୂମିରେ ଗଢ଼ି ଉଠିଥିବା ଗୀତଗୋବିନ୍ଦ କାବ୍ୟର ରଚନା ଲୋକମାନସରେ ପ୍ରସାର ଓ ପ୍ରଚାର ଲାଭ କରିଛି । ଜୟଦେବଙ୍କ ପତ୍ନୀ ପଦ୍ମାବତୀ ଜଣେ ନୃତ୍ୟ ପଟ୍ଟୟସୀ ମହିଳା ଥିଲେ । ସେ ଗାନ୍ଧର୍ବ ବିଦ୍ୟା ପ୍ରବୀଣା 'ଓଁ ଶ୍ଲୀଂ ରାଧିକାୟୈ ବିଦ୍ମହେ ଗାର୍ନ୍ଧବିକାୟୈ ଧିମହୀ ତନ୍ନୋରାଧା ପ୍ରଚ୍ଛାଦୟାତ୍' - ଗାୟତ୍ରୀରୁ ଏହା ପ୍ରମାଣିତ ମେ ରାଧାସ୍ୱରୂପିଣୀ ପଦ୍ମାବତୀ ନୃତ୍ୟବିଦ୍ୟା ବିଶାରଦା ଥିଲେ । ତାଙ୍କର ପ୍ରେରଣାରେ ଜୟଦେବ ରଚନା କରିଥିଲେ ଗୀତଗୋବିନ୍ଦ । କବି ଏହି କାବ୍ୟରେ ମାଧବଙ୍କର ଆଶୀର୍ବାଦ ଭିକ୍ଷା କରିବା ସଙ୍ଗେ ସଙ୍ଗେ ନିଖିଳ ଜଗତର କଲ୍ୟାଣ ମନାସିଛନ୍ତି । ରାଧାମାଧବ ଉପାସନା ସ୍ୱକୀୟା ପ୍ରେମର ପରକୀୟା ଭାବ ପ୍ରକାଶ । ଏହା ଆତ୍ମା-ପରମାତ୍ମାର ଅବ୍ୟକ୍ତ ତତ୍ତ୍ୱ ଲୀଳା ।

'ସ୍ମରଗରଳ ଖଣ୍ଡନଂ ମମଶରିସି ମଣ୍ଡନଂ
ଦେହି ପଦ ପଲ୍ଲବ ମୁଦାରଂ'
ଜ୍ୱଳତି ମୟି ଦାରୁଣୋ ମଦନ କଦନାରୁଣୋ
ହରତୁ ତଦୁପାହିତବିକାରଂ ।' (ଦଶମସର୍ଗ)

ଏହି ଲେଖାରେ ପ୍ରେମର ମହତତ୍ତ୍ୱର ବିକାଶ ଘଟିଛି । ପୂର୍ଣ୍ଣ ଆତ୍ମ ସମର୍ପଣ ଭାବରେ ସମସ୍ତ ଲୀଳା ଶେଷ ହୋଇଚି ସେହିଠାରୁ ସୃଷ୍ଟି ହୁଏ ମହାଭାବ । ସେହି ମହାଭାବରେ ସଚରାଚର ପୃଥିବୀରେ ଜୀବନର ପରିପ୍ରକାଶ ଘଟିଛି । ଯେଉଁ ଚୈତନ୍ୟ ରାଜମହେନ୍ଦ୍ରୀଠାରେ ରାୟରାମାନନ୍ଦଙ୍କର ମୁଖରୁ କାନ୍ତାପ୍ରେମର ପରାକାଷ୍ଠା ଶୁଣିଥିଲେ ସେ ଗୀତଗୋବିନ୍ଦ ସଂକୀର୍ତ୍ତନ କରି ପ୍ରାଚୀ କୂଳକୁ ଯାଉଥିଲେ । ୧୫୨୦ରେ ଶ୍ରୀ ଚୈତନ୍ୟ ଓ ବୈଷ୍ଣବ ଗୋଷ୍ଠୀ ଏକତ୍ର ଭୁବନେଶ୍ୱର ଆସି କୀର୍ତ୍ତନରସ ପ୍ରସାରଣ କରି ଲିଙ୍ଗରାଜଙ୍କୁ ତୁଳସୀ ବେଲପତ୍ର ଲାଗି କରି ବିନ୍ଦୁସାଗରରେ ସ୍ନାନ କରି ବାସୁଦେବ ମନ୍ଦିରରେ କୀର୍ତ୍ତନ କରି ପ୍ରସାଦ ସେବନ କରୁଥିଲେ । ସେଠାରୁ ମକର ମେଳାରେ ଯୋଗଦେବାକୁ ବାଳକାଟୀଠାରେ ମଦନ ମୋହନ ମଠରେ ଅବସ୍ଥାନ କରି ବାଲିପାଟଣାସ୍ଥିତ ଶିଶୁ ଅନନ୍ତ ମଠରେ ପ୍ରସାଦ ସେବନ କରୁଥିଲେ, ପୁଣି ପୁଣ୍ୟତୋୟା ପ୍ରାଚୀନଦୀରେ ସ୍ନାନ କରି ଜୟଦେବ ପୀଠ କେନ୍ଦୁଲୀରେ ସଂକୀର୍ତ୍ତନ କରି ନିଆଳି ମାଧବ ମନ୍ଦିର ଦର୍ଶନ କରିବାକୁ ଯାଉଥିଲେ । ତେଣୁ ଶ୍ରୀ ଚୈତନ୍ୟଙ୍କ ବହୁ ପୂର୍ବରୁ ଓଡ଼ିଶାରେ ଜୟଦେବ ସଂସ୍କୃତି ପ୍ରଚାର ପ୍ରସାର ଲାଭ କରିଥିଲା । ଡଃ ବନମାଳି ରଥ ଏ ବିଷୟରେ ଲେଖିଛନ୍ତି ।

ଉପରୋକ୍ତ ଅଧ୍ୟୟନରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ବିରଭୂମ ଜିଲ୍ଲାର କେନ୍ଦୁବିଲ୍ୱ ଗ୍ରାମ ଓ ଜୟଦେବ ସିଦ୍ଧାନ୍ତରେ ଭିତ୍ତିଭୂମି ନାହିଁ । କାରଣ ରାଧା ବିନୋଦ ମନ୍ଦିରରେ ଜୟଦେବ ପ୍ରତିଦିନ ପୂଜା କରୁଥିବାର ନିର୍ଦ୍ଦିଷ୍ଟ ଭିତ୍ତିନାହିଁ । କାରଣ ଯେଉଁ ରାଧାବିନୋଦ ମନ୍ଦିରରେ ଜୟଦେବ ପ୍ରତିଦିନ ପୂଜା କରୁଥିଲେ ତାହାକୁ ବର୍ଦ୍ଧମାନର ମହାରାଜା କୀର୍ତ୍ତିଚନ୍ଦ୍ର ମାତା ୧୭୧୪ ଶକାବ୍ଦ ବା ୧୬୯୨ ଖ୍ରୀଷ୍ଟାବ୍ଦରେ ନିର୍ମାଣ କରିଥିଲେ । ବୈଷ୍ଣବ ମଠଟି ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ବ୍ରଜବାସୀ ରାଧାମୋହନଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ତାଙ୍କ ଉତ୍ତରାଧିକାରୀମାନେ ସେହି ମଠର ମହନ୍ତ । ଯଦି କେନ୍ଦୁଲୀ ଗ୍ରାମ ଜୟଦେବଙ୍କ ଜନ୍ମ ସ୍ଥାନ ହୋଇଥାଆନ୍ତା ତେବେ ଚୈତନ୍ୟ ଦେବ ସେହି ସ୍ଥାନ ନିଶ୍ଚିତ ଭାବେ ପରିଦର୍ଶନ କରିଥାନ୍ତେ । ବିଶିଷ୍ଟ ବୈଷ୍ଣବ ଗୋସ୍ୱାମୀମାନଙ୍କର ନିରବଚ୍ଛିନ୍ନ ନୀରବତା ଦୃଷ୍ଟିରୁ ଏହା ନିର୍ବିବାଦରେ ଗ୍ରହଣ କରାଯାଇପାରେ ଯେ ବୀରଭୂମ ଜିଲ୍ଲାର କେନ୍ଦୁଲୀ ଗ୍ରାମ ଜୟଦେବଙ୍କର ଜନ୍ମ ସ୍ଥାନ ଭାବରେ ସପ୍ତଦଶ ଶତାବ୍ଦୀର ଶେଷ ଭାଗରେ ରାଧାବିନୋଦ ମନ୍ଦିର ନିର୍ମାଣ ପରେ ଉଦ୍ଦେଶ୍ୟମୂଳକ ଭାବେ ପ୍ରଚାରିତ ହୋଇଛି ।

ରାୟବାହାଦୂର ରୋଡ଼ (ବଳଗଣ୍ଡି)
ପୁରୀ

# ଜୟଦେବ, ଗୀତଗୋବିନ୍ଦ ଓ ଶ୍ରୀଜଗନ୍ନାଥ

କୃଷ୍ଣଚନ୍ଦ୍ର ପଟ୍ଟନାୟକ

ପୁଣ୍ୟଭୂମି ଉତ୍କଳର ଗୌରବ ଭକ୍ତକବି ଜୟଦେବ ବିଶ୍ୱର ଅନ୍ୟତମ ମହାନ୍ ସଂସ୍କୃତ କବି ଭାବରେ ଚିର ପୂଜ୍ୟ । ତାଙ୍କ ରଚିତ ସଂସ୍କୃତ କାବ୍ୟ 'ଗୀତଗୋବିନ୍ଦ' ବିଶ୍ୱପ୍ରସିଦ୍ଧ ଓ ସାହିତ୍ୟ ଭଣ୍ଡାରର ଏକ ଅନବଦ୍ୟ ସମ୍ଭାର । ସମଗ୍ର ଭାରତବର୍ଷରେ ଗୀତଗୋବିନ୍ଦ ବିଶେଷ ଭାବରେ ଆଦୃତ । ଉତ୍କଳର ଘରେ ଘରେ ମଧ୍ୟ ଗୀତଗୋବିନ୍ଦର ବିଶେଷ ଆଦର ରହିଛି ।

ସ୍ୱର୍ଗତଃ ଜଗବନ୍ଧୁ ସିଂହ ଓ ବିଶିଷ୍ଟ ଐତିହାସିକ ଡଃ ନବୀନ କୁମାର ସାହୁଙ୍କ ଗବେଷଣାରୁ ଜଣାଯାଏ ଯେ, ଜୟଦେବ ଦ୍ୱାଦଶ ଶତାବ୍ଦୀର କବି । ସେ ବାଲିଅନ୍ତା ଥାନା ଅନ୍ତର୍ଗତ କେନ୍ଦୁଲୀ ଗ୍ରାମର ଏକ ବ୍ରାହ୍ମଣ ପରିବାରରେ ଭୋଜଦେବ ଔରସରୁ ଜନ୍ମ ଗ୍ରହଣ କରିଥିଲେ । ଜୟଦେବଙ୍କୁ ୧୧ ବର୍ଷ ବୟସ ହୋଇଥିବା ସମୟରେ ତାଙ୍କର ପିତା, ମାତା ଇହଲୀଳା ସମ୍ବରଣ କରିଥିବାରୁ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଲେ ମଧ୍ୟ ଭଗବଦ୍ କୃପାକୁ ଆଶ୍ରୟ କରି ସମୟ ଅତିବାହିତ କରୁଥିଲେ ।

ଜଣାଯାଏ ଯେ, କେତେକ ଘଟଣାବଳୀରେ ଜୟଦେବ ଭଗବଦ୍ କୃପା ଲାଭ କରିଥିବାରୁ ସମସ୍ତ ସମସ୍ୟା ସମାଧାନ ହୋଇ ଯିବାରୁ ଭଗବାନଙ୍କ ପ୍ରତି ତାଙ୍କର ଅଟଳ ବିଶ୍ୱାସ ଜାତ ହୋଇଥିଲା । ତେଣୁ ପୁରୁଷୋତ୍ତମ କ୍ଷେତ୍ରରେ ରହି ପ୍ରତ୍ୟେକ ଦିନ ମହାପ୍ରଭୁ ଜଗନ୍ନାଥଙ୍କ ଦର୍ଶନ ଲାଭ କରି ଜୀବନ କଟାଇବେ ବୋଲି ସେ ସ୍ଥିର କଲେ । କିଛି ଦିନ ପରେ ଘର ଦ୍ୱାର ମାୟା ତ୍ୟାଗ କରି ପରାଶର ନାମକ ଜଣେ ବ୍ରାହ୍ମଣ ବାଳକକୁ ସଙ୍ଗରେ ଧରି ଶ୍ରୀକ୍ଷେତ୍ର ଅଭିମୁଖେ ଯାତ୍ରା କଲେ । ଯାତ୍ରା ସମୟରେ ଭୋକ ଶୋଷରେ ପଡ଼ି ବହୁ କଷ୍ଟର ସମ୍ମୁଖୀନ ହେବାରୁ ଦୀନବନ୍ଧୁ ମହାପ୍ରଭୁ ଜଗନ୍ନାଥଙ୍କୁ ସେ ବିନମ୍ର ପ୍ରାର୍ଥନା କଲେ । ମହାପ୍ରଭୁ ତାଙ୍କ ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ମାୟାରେ ମାନବ ବେଶ ଧାରଣ କରି ଜୟଦେବଙ୍କ ସମ୍ମୁଖରେ ଆବିର୍ଭାବ ହୋଇ ତାଙ୍କର ସମସ୍ତ ଅସୁବିଧା ନିବାରଣ କରି ପୁରୀ କ୍ଷେତ୍ରରେ ନେଇ ପହଞ୍ଚାଇ ଦେଇଥିଲେ । ପୁରୀରେ ମହାପ୍ରଭୁ ଜଗନ୍ନାଥଙ୍କ ଦର୍ଶନ ଲାଭ କରି ଅତ୍ୟନ୍ତ ମୁଗ୍ଧ ହୋଇଥିଲେ । ସେ ସନ୍ନ୍ୟାସୀ ବେଶ ଧାରଣ କରି ତାଙ୍କ ସହିତ ଆସିଥିବା ବାଳକ ସହିତ ପ୍ରତିଦିନ ଭିକ୍ଷାମାଗି ସେଥିରେ ଦୁଇଜଣ ଆନନ୍ଦରେ ଚଳି ଯାଉଥିଲେ । ଏକ ବଟବୃକ୍ଷ ମୂଳକୁ ଆଶ୍ରୟସ୍ଥଳୀ ଭାବରେ ବାଛି ନେଇ ସେମାନେ ପ୍ରତିଦିନ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ଆନନ୍ଦରେ କିଛି ଦିନ ଅତିବାହିତ କଲାପରେ ଏକଦା ଜୟଦେବ ଧ୍ୟାନସ୍ଥ ଥିବା ସମୟରେ ପ୍ରଭୁ ଶ୍ରୀକୃଷ୍ଣ ଆବିର୍ଭାବ ହୋଇ ମୂରଲୀ ବାଦନ ପୂର୍ବକ ନୃତ୍ୟ କରିବାରୁ ତାଙ୍କ ଧ୍ୟାନ ଭଙ୍ଗ ହେଲା । ତତ୍ପରେ ପ୍ରଭୁଙ୍କ ଦର୍ଶନ କରି ସ୍ୱତଃ ଜୟଦେବଙ୍କ ମୁଖରୁ ଏକ ଶ୍ଳୋକ ନିଃଶ୍ରୁତ ହେଲା -

'ମେଘୈର୍ମେଦୁର ମମ୍ବରଂ ବନଭୁବଃ ... ଯମୁନାକୂଳେ ରହଃ କେଳୟଃ ।'

ଏହିଦିନଠାରୁ ଜୟଦେବଙ୍କଠାରେ କବି ପ୍ରତିଭା ପ୍ରକାଶ ପାଇଲା । ଅନ୍ୟ କୌଣସି ଦିଗରେ ମନ ନିବେଶ ନକରି ଜୟଦେବ ସର୍ବଦା ମହାପ୍ରଭୁଙ୍କ ଗୁଣ କୀର୍ତ୍ତନ, ଭଜନ ଜଣାଣ କରି ସମୟ ଅତିବାହିତ କଲେ । ଏହାପରେ ଜୟଦେବ ଧ୍ୟାନ ବଳରେ ପୁରୀଠାରେ ଭଗବାନଙ୍କ ଦଶ ଅବତାର ଲୀଳା ପ୍ରତ୍ୟକ୍ଷଭାବେ ଦର୍ଶନ କରି ଗୀତଗୋବିନ୍ଦ ଗ୍ରନ୍ଥ ଆରମ୍ଭ କରିବାକୁ ସକ୍ଷମ ହୋଇଥିଲେ । 'ଜୟ ଜଗଦୀଶ ହରେ' ଲଗାଇ ଦଶ ଅବତାର ରଚନା ଖୁବ୍ ଦ୍ରୁତ ଗତିରେ ଆଗେଇ ଚାଲିଲା । ଭଗବାନଙ୍କ ଅପାର କରୁଣା ତାଙ୍କଠାରେ ପ୍ରତିଫଳିତ ହେଲା ।

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ସ୍ୱପ୍ନାଦେଶାନୁସାରେ ଜଣେ ଧର୍ମ ନିଷ୍ଠ ବ୍ରାହ୍ମଣଙ୍କ କନ୍ୟା (ପଦ୍ମାବତୀ)ଙ୍କୁ ପତ୍ନୀ ରୂପେ ଗ୍ରହଣ କଲେ । ଜୟଦେବ ନିଜର ଜନ୍ମସ୍ଥାନ କେନ୍ଦୁଲି ଗ୍ରାମକୁ ପ୍ରତ୍ୟାବର୍ତ୍ତନ କଲେ । ନିଜ ଗୃହରେ ରାଧାମାଧବଙ୍କ ମୂର୍ତ୍ତି ସ୍ଥାପନ କରି ପ୍ରତ୍ୟହ ପୂଜା ଆରାଧନା ପୂର୍ବକ ସଂସାର ପଥରେ ବ୍ରତୀ ହେଲେ । ଜୟଦେବ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ଓ ଜଗଦୀଶ ଜଗନ୍ନାଥ ହିଁ

କୃଷ୍ଣ ଏହା ସେ ଜାଣିଥିଲେ । ଏଣୁ ତାଙ୍କର ଲୀଳା ବର୍ଣ୍ଣନା କରିବା ନିମନ୍ତେ ସେ ଗୀତଗୋବିନ୍ଦ ରଚନା କରିବାକୁ ମନରେ ସ୍ଥିର କଲେ । ଜୟଦେବ ଥିଲେ କବି ପଣ୍ଡିତ । ତାଙ୍କର ରାଗ ଓ ତାଳରେ କାବ୍ୟ ରଚନାରେ ଜ୍ଞାନ ଥିଲା । ପଦ୍ମାବତୀ ବି ଥିଲେ ନୃତ୍ୟ ନିପୁଣା । ଜୟଦେବ ଗୀତଗୋବିନ୍ଦ ରଚନା କରନ୍ତି ଓ ପଦ୍ମାବତୀ ତାଙ୍କୁ ନୃତ୍ୟରେ ରୂପ ଦିଅନ୍ତି । ପ୍ରତ୍ୟେକ ଦିନର ଗୀତଗୋବିନ୍ଦ ରଚନା ରୂପାୟିତ ହୁଏ ପଦ୍ମାବତୀଙ୍କ ନୃତ୍ୟ ଛନ୍ଦରେ । ଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ଆସୁଥିବା ବିଦେଶାଗତ ଯାତ୍ରୀମାନେ ଗୀତଗୋବିନ୍ଦର ପଦ ଲାଳିତ୍ୟ ଓ ନୃତ୍ୟ ପ୍ରତି ଆକୃଷ୍ଟ ହୋଇ ପଡ଼ିଲେ ଏବଂ ଏହି କାବ୍ୟ ପୋଥିରୁ ନକଲମାନ ନେଇ ସେମାନେ ସେମାନଙ୍କ ଦେଶରେ ତାହା ପ୍ରଚାର କରିଥିଲେ ।

ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ସାଧୁ ପ୍ରଧାନ ଶ୍ରୀଜୟଦେବଙ୍କର ନାମ ସମଗ୍ର ଭାରତବର୍ଷରେ କ୍ରମଶଃ ବ୍ୟାପିଗଲା । କଳିଙ୍ଗ ସମ୍ରାଟ ସ୍ୱୟଂ ଜଗନ୍ନାଥ ଓ ଜୟଦେବ ଅଭିନ୍ନ ଜାଣି ତାଙ୍କ (ଜୟଦେବ) ଦର୍ଶନରେ ଆସୁଥିଲେ । ଜୟଦେବଙ୍କ ଗୀତଗୋବିନ୍ଦ ଓ ନୃତ୍ୟ ଶ୍ରୀଜଗନ୍ନାଥଙ୍କ ସେବାରେ ମଧ ଅନ୍ତର୍ଭୁକ୍ତ ହୋଇଥିଲା । ପ୍ରତ୍ୟେକ ଦିନ ଜୟଦେବ ଗୀତଗୋବିନ୍ଦ ରଚନା କରୁଥାନ୍ତି । ଦିନେ ସକାଳେ ବସି ଜୟଦେବ ତାଳପତ୍ରରେ ଗୀତଗୋବିନ୍ଦ ଲେଖୁଥାନ୍ତି, କିନ୍ତୁ ତଳ ପଦ ଶେଷ ଚରଣଟି ତାଙ୍କର ଆଦୌ ମନେ ପଡୁନଥାଏ । କ'ଣ ଲେଖିବେ ଏହି ଚିନ୍ତାରେ ସେ ମୁଣ୍ଡରେ ହାତ ଦେଇ ବସିଛନ୍ତି ।

'ସ୍ମର ଗରଳ ଖଣ୍ଡନଂ ମମ ଶିରସି ମଣ୍ଡନଂ ।'

ଏହିଠାରୁ ହିଁ ଗୀତଗୋବିନ୍ଦର ଲେଖନୀ ରହିଗଲା । ଏହି ସମୟରେ ତାଙ୍କ ପତ୍ନୀ ପଦ୍ମାବତୀ ଉପସ୍ଥିତ ହେବାରୁ ତାଙ୍କୁ ଏହି ସମସ୍ୟା ଜଣାଇବାରୁ ସେ କହିଲେ, 'ଆପଣ ସ୍ନାନ ସାରି ପ୍ରଭୁଙ୍କ ପ୍ରସାଦ ଗ୍ରହଣ କରିବା ପରେ ଠିକ୍ ଭାବରେ ଉକ୍ତ ଶେଷ ଚରଣଟି ମନେ ପଡ଼ିଯିବ ।' ଜୟଦେବ ତାଙ୍କ କଥାରେ ରାଜି ହୋଇ ସ୍ନାନ ନିମନ୍ତେ ପ୍ରାଚୀନଦୀକୁ ଚାଲିଗଲେ । ଜୟଦେବ ଏହି ଗଙ୍ଗା ରୂପକ ପ୍ରାଚୀନଦୀରେ ପ୍ରତ୍ୟହ ସ୍ନାନ କରନ୍ତି ।

ଜୟଦେବଙ୍କ ପ୍ରସ୍ଥାନର କିଛି ସମୟ ପରେ ମାୟାଧର ଶ୍ରୀକୃଷ୍ଣ ଜୟଦେବଙ୍କ ବେଶ ଧାରଣ କରି ଆସି ପହଞ୍ଚିଲେ ଜୟଦେବଙ୍କ ଘରେ । ପଦ୍ମା ଦେଖିଲେ ସ୍ୱାମୀ ଜୟଦେବ ସ୍ନାନ ସାରି ଫେରି ଆସିଛନ୍ତି । ଏହା ଭାବି ତାଙ୍କର ଭୋଜନ ବ୍ୟବସ୍ଥା କଲେ । ଆହାରାନ୍ତେ ଜୟଦେବ ଅସମାପ୍ତ ପାଦ ପୂରଣ କରିବା ନିମନ୍ତେ ଗୀତଗୋବିନ୍ଦ ପୋଥି ଆଣି ପାଦ ପୂରଣ କରି ଶୟନ କକ୍ଷରେ ବିଶ୍ରାମ ନେଲେ । ଅଚାନକ ପଦ୍ମା ମଧ ସ୍ୱାମୀଙ୍କ ଆହାରାନ୍ତେ ଭୋଜନରେ ବସିଲେ । ପଦ୍ମା ଚକିତ ଦୃଷ୍ଟିରେ ଦେଖିଲେ ଜୟଦେବ ପୁନର୍ବାର ସ୍ନାନ ସାରି ଫେରି ଆସିଛନ୍ତି । ପଦ୍ମା ଏହି ଅଲୌକିକ ଘଟଣାରେ ବିସ୍ମୟ ହେଲେ ଏବଂ ଜୟଦେବ ମଧ ପଦ୍ମାଙ୍କୁ ତାଙ୍କ ଭୋଜନ ପୂର୍ବରୁ ଭୋଜନ କରୁଥିବାର ଦେଖି ଆହୁରି ବିସ୍ମିତ ହେଲେ । ପଦ୍ମାଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ମହାକବି ଗୀତଗୋବିନ୍ଦ ଅସମାପ୍ତ ପୋଥିକୁ ଆଣି ଦେଖିଲେ, ସେଥିରେ ପାଦପୂରଣ ହୋଇ ଲେଖା ହୋଇଛି ।

'ଦେହୀ ପଦ ପଲ୍ଲବ ମୁଦାରଂ' କବି ପୁନର୍ବାର ପଢ଼ିଲେ -

ସ୍ମର ଗରଳ ଖଣ୍ଡନଂ - ମମ ଶିରସି ମଣ୍ଡନଂ
ଦେହି ପଦ ପଲ୍ଲବ ମୁଦାରଂ ।

ପଦ୍ମାଙ୍କଠାରୁ ସମସ୍ତ ଘଟଣା ଶୁଣି ଶୟନ କକ୍ଷକୁ ଦୌଡ଼ି ଯାଇ ଜୟଦେବ ଦେଖିଲେ ସେଠାରେ ମାୟାଧର ଶ୍ରୀକୃଷ୍ଣ ଆଉ ନାହାନ୍ତି । କେବଳ ମୃଗମଦ କସ୍ତୁରୀ ଓ ଚନ୍ଦନର ଗନ୍ଧରେ କକ୍ଷଟି ପୂରି ଉଠିଛି । ପାଗଳ ପରି ଜୟଦେବ ପଦ୍ମାଙ୍କର ଚରଣ ଦୁଇଟିକୁ ଧରି ଉଠିଲେ, 'ଧନ୍ୟ ପତ୍ନୀ ତୁମେ ଧନ୍ୟ ।' ଧନ୍ୟ ତମର ଭକ୍ତି । ତୁମଠାରୁ ଭାଗ୍ୟବତୀ କେହି ନାହିଁ । କବି ଓ କବିଙ୍କ ପତ୍ନୀଙ୍କ ଚକ୍ଷୁରୁ ଲୋତକର ଧାର ବହିବାକୁ ଲାଗିଲା । ଯେହେତୁ ତୁମେ ଆଜି ଭଗବାନଙ୍କୁ ସ୍ୱଚକ୍ଷୁରେ ଦର୍ଶନ କଲ ଏବଂ ମୁଁ ଏହି ସୁଯୋଗରୁ ବଞ୍ଚିତ ହୋଇଥିବାରୁ ମୁଁ ହେଉଛି ମହାପାପୀ । ଏହି ଘଟଣା ପରେ ଖୁବ୍ ଅଳ୍ପ ଦିନ ମଧରେ ଗୀତଗୋବିନ୍ଦ ବାକି ଥିବା ଅଂଶଟିକୁ ଜୟଦେବ ଶୀଘ୍ର ସଂପୂର୍ଣ୍ଣ କରି ଆନନ୍ଦରେ କବି ଜୟଦେବ ଓ ପଦ୍ମା ଗୀତଗୋବିନ୍ଦ ଗାଇବାକୁ ଲାଗିଲେ । ଏମାନେ ଯେଉଁଠି ଗୀତଗୋବିନ୍ଦ ଗାୟନ କରୁଥିଲେ, ସେହି ସ୍ଥାନରେ ନନ୍ଦନନ୍ଦନ ଶ୍ରୀକୃଷ୍ଣ ବାଳକ ବେଶରେ ବିରାଜମାନ ହୋଇ ଗୀତଗୋବିନ୍ଦ ଶ୍ରବଣ କରୁଥିଲେ ।

ପରିଶେଷରେ ନିଜ ଜନ୍ମସ୍ଥାନ କେନ୍ଦୁଲି ଗ୍ରାମରେ ଇହଲୀଳା ସମ୍ବରଣ କରିଥିଲେ ବୋଲି ଜଣାଯାଏ । ମହାପ୍ରଭୁ ଜଗନ୍ନାଥଙ୍କ ଶ୍ରୀଚରଣାରବିନ୍ଦରେ, କବି ଜୟଦେବ ଗୀତଗୋବିନ୍ଦ ଉତ୍ସର୍ଗ କରି ତାଙ୍କର ଅମ୍ଳାନ କୀର୍ତ୍ତି ପୃଥିବୀ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇଥିବାରୁ, ସେ ଚିର ଅମର । ବଡ଼ସିଂହାର ବେଶ ପରେ ଶ୍ରୀମନ୍ଦିରରେ ପ୍ରତ୍ୟହ ଜୟଦେବଙ୍କ ଗୀତଗୋବିନ୍ଦ ପାଠ କରାଯାଏ । ରାଜକବି ନରସିଂହ ଦେବ (୧୨୮୪-୧୩୦୬) ସର୍ବପ୍ରଥମେ ଶ୍ରୀମନ୍ଦିରରେ ଗୀତଗୋବିନ୍ଦ

ପାଠ ପ୍ରବର୍ତ୍ତନ କରିଥିଲେ । ଶ୍ରୀଜଗନ୍ନାଥ ଦେବଙ୍କ ଚନ୍ଦନଯାତ୍ରା ଉତ୍ସବରେ ଏକୋଇଶ ଦିନ ଚନ୍ଦନ ସମୟରେ ଅଣସର ପିଣ୍ଡିରେ ଦେବଦାସୀ ଏହି ପବିତ୍ର ଗୀତଗୋବିନ୍ଦ ଗାୟନ କରନ୍ତି । ଗୀତଗୋବିନ୍ଦ ଖଣ୍ଡୁଆ ଜଗନ୍ନାଥଙ୍କ ପ୍ରିୟବସ୍ତ୍ର । ଗୀତଗୋବିନ୍ଦର ଦଶଅବତାର ସ୍ତୋତ୍ରାଦି ବୁଣା ହୋଇଥିବା ପାଟର ପ୍ରବର୍ତ୍ତନ ଫଳରେ ସମଗ୍ର ବିଶ୍ୱରେ ବିସ୍ମୟ ସୃଷ୍ଟିକାରୀ କେବଳ ଏହି ଦଶାବତାର ବାନ୍ଧ ନୁହେଁ, ତାଳପତ୍ରର ଚିତ୍ରିତ ଦଶାବତାର ଗାଥାର ରଙ୍ଗୀନ ଚିତ୍ର ଅତ୍ୟନ୍ତ ମନୋରମ । ପୁରୀର ମଠମାନଙ୍କରେ ଝୁଲଣ ଯାତ୍ରାରେ ପ୍ରଦର୍ଶିତ ଗୋଟିପୁଅ ନାଚ ମଧ୍ୟ ଗୀତଗୋବିନ୍ଦର ଗାନମାନଙ୍କୁ ଅତ୍ୟନ୍ତ ଜୀବନ୍ତ ଭାବେ ପରି ପ୍ରକାଶ କରିଥାଏ ।

ଏହି ସବୁ ତଥ୍ୟାବଳିକୁ ସଂକ୍ଷେପରେ ବିଚାର କଲେ ବୋଧହୁଏ ଗୀତଗୋବିନ୍ଦ ଓ ଜଗନ୍ନାଥ ମନ୍ଦିର ପରସ୍ପର ମଧ୍ୟରେ ଏତେ ନିବିଡ଼ ସଂପର୍କ ରହିଛି ଯେ ମନ୍ଦିରକୁ ଭାବିଲେ ଗୀତଗୋବିନ୍ଦ ଗାନ ମନେ ପଡ଼େ ଓ ଗୀତଗୋବିନ୍ଦ ଗାନ ସମୟରେ ଆପେ ଆପେ ମନ୍ଦିରର ଦୃଶ୍ୟ ପ୍ରତିଭାତ ହୁଏ । ଏହିପରି କବି କିଏ ଅଛି କିଏ ଅଛି ମହି ତଳେ ଯା'ର ଗୀତ ସବୁବେଳେ ଜଗନ୍ନାଥ ମନ୍ଦିରରେ ଖୋଜା ହୁଏ ? ଏପରି ଭାଗ୍ୟ ଖୁବ୍ କମ୍ କବିଙ୍କର । ଜୟଦେବଙ୍କ ସାରସ୍ୱତ ସୃଷ୍ଟିର ବ୍ୟାପକ ପ୍ରଚାର ଓ ପ୍ରସାର ଉପରେ ଗୁରୁତ୍ୱ ଦିଆଯିବା ଆବଶ୍ୟକ । ଗୀତଗୋବିନ୍ଦ ଭଳି କାଳଜୟୀ ସୃଷ୍ଟି ଓଡ଼ିଶା ତଥା ଭାରତର ବାଣୀ ଭଣ୍ଡାରକୁ ସମୃଦ୍ଧ କରିଛି !

ଖରାଖିଆ ବୈଦ୍ୟନାଥ ସାହି
ପୁରୁଣା ଭୁବନେଶ୍ୱର-୨



# ଶ୍ରୀଜୟଦେବଙ୍କ ସ୍ୱନକ୍ଷତ୍ର ଓ ସ୍ୱଧାମ : ଏକ ସ୍ୱତନ୍ତ୍ର ଅଧ୍ୟୟନ

ଡଃ ସି.ବି. ପଟେଲ୍

**ଭା**ରତବର୍ଷର ଶେଷ ଶାସ୍ତ୍ରୀୟ ତଥା ପ୍ରଥମ ଆଧୁନିକ କବି ଭାବରେ କବି ଜୟଦେବ ଅଗ୍ରଗଣ୍ୟ । ସମଗ୍ର ଭାରତବର୍ଷର ପ୍ରାତଃସ୍ମରଣୀୟ କବିମାନଙ୍କ ମଧ୍ୟରେ ଉତ୍କଳୀୟ କବି ଶ୍ରୀ ଜୟଦେବ ନିଃସନ୍ଦେହରେ ଜଣେ ଅପ୍ରତିଦ୍ୱନ୍ଦୀ କବି । ସଂସ୍କୃତରେ ରଚିତ ତାଙ୍କର ଶ୍ରୀଗୀତଗୋବିନ୍ଦ କାବ୍ୟ ଏକ ଅନବଦ୍ୟ କୃତି । ଦ୍ୱାଦଶ ଶତାବ୍ଦୀରେ ରଚିତ ଏହି କାବ୍ୟଗ୍ରନ୍ଥରେ ରାଧାକୃଷ୍ଣଙ୍କ ଦିବ୍ୟଲୀଳାକୁ ଅତି ଚମତ୍କାର ଭାବେ ବର୍ଣ୍ଣନା କରାଯାଇଛି । ଏହାର ଲଳିତ ସୁନ୍ଦର ପଦାବଳୀ କେବଳ ଶ୍ରୀକ୍ଷେତ୍ରରେ ନୁହେଁ ସାରା ବିଶ୍ୱରେ ଆଦୃତି ଲାଭ କରିଛି । ଏଯାବତ୍ ଏହାର ୫୦ ଖଣ୍ଡ ଟୀକା ଏବଂ ଶହେ ପଞ୍ଚାବନ ଖଣ୍ଡ ଅନୁରୂପ କାବ୍ୟ ରଚିତ ହୋଇଛି । ଫରାସୀ, ଇଂରାଜୀ, ଋଷୀୟ ଆଦି ବିଭିନ୍ନ ୟୁରୋପୀୟ ଭାଷାରେ ଏବଂ ଭାରତର ବହୁ ପ୍ରାଦେଶିକ ଭାଷାରେ ଏହି କାବ୍ୟର ଅନୁବାଦ କାର୍ଯ୍ୟ ସଂପନ୍ନ ହୋଇସାରିଛି । ସୁତରାଂ କବି ଭାବରେ ଶ୍ରୀଜୟଦେବ ସାରା ବିଶ୍ୱରେ ମାନ୍ୟତା ଲାଭ କରି ସାରିଛନ୍ତି ।

ବହୁ ବିଚାର ବିଶ୍ଳେଷଣ ପରେ ଓଡିଶାର ପ୍ରାଚୀନଦୀ ତଟର କେନ୍ଦୁବିଲ୍ୱ ଗ୍ରାମ (ଅଧୁନା କେନ୍ଦୁଲୀ ଭାବେ କଥିତ)କୁ କବିଙ୍କର ଜନ୍ମସ୍ଥାନ ଭାବେ ଗ୍ରହଣ କରାଯାଇଛି । ମାତ୍ର କେତକ ଭିତ୍ତିହୀନ ମିଥ୍ୟା ତଥ୍ୟକୁ ଅବଲମ୍ବନ କରି ବଙ୍ଗଳାର କତିପୟ ଗବେଷକ କବିଙ୍କ ଜନ୍ମସ୍ଥାନ ବଙ୍ଗଳା ବୋଲି ଉଲ୍ଲେଖ କରିବା ସହିତ ଏହାକୁ ପ୍ରତିପାଦିତ କରିବା ପାଇଁ ବୃଥା ପ୍ରୟାସ କରିଛନ୍ତି ।

ମୈଥିଳୀ କବି ବିଦ୍ୟାପତି 'ଅଭିନବ ଶ୍ରୀଗୀତଗୋବିନ୍ଦ'ର ରଚୟିତା ହୋଇଥିବାରୁ କେତେକ ଗବେଷକ ମତ ପ୍ରଦାନ କରନ୍ତି ଯେ, ଗୀତଗୋବିନ୍ଦ କାବ୍ୟର ରଚୟିତା ବିହାର ଅନ୍ତର୍ଗତ ତିରହୁତ୍ ନିକଟସ୍ଥ ବାହାନ ନଦୀ କୂଳରେ ସମ୍ଭବତଃ ଜନ୍ମଗ୍ରହଣ କରିଥିଲେ । ବାଂଲାଦେଶରେ କେନ୍ଦୁଲୀ ନାମକ ଏକ ଗ୍ରାମ ଅବସ୍ଥିତ ଥିବାରୁ କବିଙ୍କ ଜନ୍ମସ୍ଥାନ ବାଂଲାଦେଶରେ ହୋଇଥିବା ସମ୍ଭବ ବୋଲି ଆଉ କେତେକ ଗବେଷକ ମତ ପ୍ରକାଶ କରିଛନ୍ତି ।

ଶ୍ରୀଗୀତଗୋବିନ୍ଦ କାବ୍ୟର ଆଦ୍ୟ ୪ଗୋଟି ପଦରେ ଉମାପତିଧର, ଶରଣ, ଗୋବର୍ଦ୍ଧନ ଏବଂ ଧୋୟୀ ଏହି ପ୍ରମୁଖ ଚତୁର୍କବିଙ୍କର ନାମୋଲ୍ଲେଖ ରହିଛି । ଜୟଦେବଙ୍କ ସମେତ ଏହି ପାଞ୍ଚଜଣ କବି ବଙ୍ଗଳାର ଅଧିପତି ଲକ୍ଷ୍ମଣସେନ୍‌ଙ୍କ ଦରବାରର ରାଜକବି ଥିଲେ ବୋଲି ତଥାକଥିତ ଲକ୍ଷ୍ମଣସେନ ସମ୍ବତ୍ ଗଣନା ପୂର୍ବକ କେତେକ ବଙ୍ଗ ଭାଷାନୁରାଗୀ ଯୁକ୍ତି ଦର୍ଶାଇଛନ୍ତି । ମାତ୍ର ଏଠାରେ ପ୍ରଣିଧାନଯୋଗ୍ୟ ଯେ, ଲକ୍ଷ୍ମଣସେନ୍ ସମ୍ଭବତଃ ବିହାରରେ ପ୍ରଚଳିତ ଥିଲା । ବଙ୍ଗଳାରେ ନୁହେଁ ।

୧୨୦୫ ଖ୍ରୀଷ୍ଟାବ୍ଦରେ ଶ୍ରୀଧର ଦାସ ବିରଚିତ 'ସଉକ୍ତି କର୍ଣ୍ଣାମୃତ'ରେ ବଙ୍ଗଳାର ଲକ୍ଷ୍ମଣସେନ୍‌ଙ୍କ ବିଷୟରେ ଉଲ୍ଲେଖ ରହିଅଛି । ଏହି କାବ୍ୟ ଅନୁସାରେ ଲକ୍ଷ୍ମଣସେନ୍‌ଙ୍କ ରାଜତ୍ୱ ୧୧୮୧ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇଥିଲା । ଏହି ସମୟ ଅନୁସାରେ କବି ଜୟଦେବଙ୍କ ପ୍ରଦତ୍ତ ଅନ୍ୟ କବିଗଣଙ୍କ ସମୟକୁ ବିଚାରକୁ ନିଆଯାଉ ।

ଲକ୍ଷ୍ମଣସେନ୍‌ଙ୍କ ପିତାମହ ବିଜୟସେନ୍‌ଙ୍କ ଦେଓପଡା ପ୍ରଶସ୍ତିର ରଚନା କରିଥିଲେ ଉମାପତି । ତେଣୁ ଏହା ନିଃସନ୍ଦେହରେ କୁହାଯାଇପାରେ ଯେ, ଉମାପତି ଲକ୍ଷ୍ମଣସେନ୍‌ଙ୍କ ଦରବାରରେ ନଥିଲେ । ଶରଣ ଏବଂ ଗୋବର୍ଦ୍ଧନ ଲକ୍ଷ୍ମଣସେନ୍‌ଙ୍କ ରାଜଦରବାରରେ କବି ଥିବାର କୌଣସି ପ୍ରମାଣସିଦ୍ଧ ତଥ୍ୟ ମଧ୍ୟ ମିଳିନାହିଁ । ଐତିହାସିକ ଡଃ ନବୀନ କୁମାର ସାହୁ ଧୋୟୀଙ୍କୁ ପରବର୍ତ୍ତୀ କାଳର କବି ଭାବରେ ଅଭିହିତ କରିଛନ୍ତି । ଅତଏବ ଗୋବର୍ଦ୍ଧନ, ଶରଣ, ଉମାପତି ଏବଂ ଧୋୟୀଙ୍କ ସମେତ ଜୟଦେବ ଯେ ରାଜା ଲକ୍ଷ୍ମଣସେନ୍‌ଙ୍କ ଦରବାରର କବି ଥିଲେ, ଏହା ଗ୍ରହଣୀୟ ନୁହେଁ ।

ବର୍ତ୍ତମାନ କବିଙ୍କର ସମୟ ନିରୂପଣ ନିମନ୍ତେ ଅନ୍ୟାନ୍ୟ ଉତ୍ସ ପ୍ରତି ଦୃଷ୍ଟିପାତ କରାଯାଉ । ଗୀତଗୋବିନ୍ଦ କାବ୍ୟର ସର୍ବପ୍ରଥମ ଟୀକାକାର ହେଉଛନ୍ତି ଉଦୟନ । ଭୁବନେଶ୍ୱରସ୍ଥିତ ମେଘେଶ୍ୱର

ମନ୍ଦିର ଏବଂ ନିଆଳିସ୍ଥିତ ଶୋଭନେଶ୍ୱର ମନ୍ଦିରର ଅଭିଲେଖାକାର ହେଉଛନ୍ତି ଏହି ଉଦୟନ । ଗଙ୍ଗବଂଶୀ ରାଜା ରାଜରାଜ (୨ୟ)ଙ୍କର ଭଗିନୀପତି ସ୍ୱପ୍ନେଶ୍ୱର ଦେବ, ମେଘେଶ୍ୱର ମନ୍ଦିରର ନିର୍ମାତା । ରାଜରାଜ (୨ୟ)ଙ୍କର ରାଜତ୍ୱର ଅବଧି ଥିଲା ୧୧୭୦ରୁ ୧୧୯୪ ଖ୍ରୀଷ୍ଟାବ୍ଦ । ତେବେ ଏଥିରୁ ସ୍ପଷ୍ଟ ଅନୁମାନ କରିହୁଏ ଯେ, ଗୀତଗୋବିନ୍ଦର ରଚନା ୧୧୭୦ ଖ୍ରୀଷ୍ଟାବ୍ଦ ପୂର୍ବରୁ ସମାପ୍ତ ହୋଇସାରିଥିଲା । ଉଦୟନଙ୍କର ଜ୍ୟୋଷ୍ଠଭ୍ରାତା ଗୋବର୍ଦ୍ଧନ ଆଚାର୍ଯ୍ୟଙ୍କ କୃତିକୁ ଯଦି ଆମେ ବିଚାରକୁ ନେଉ, ତେବେ ଏହା ସ୍ୱତଃ ପ୍ରମାଣିତ ହୁଏ ଯେ ସେ ଗୋବର୍ଦ୍ଧନଙ୍କ ପୂର୍ବରୁ ପ୍ରତିଷ୍ଠା ଲାଭ କରିଥିଲେ । ତେଣୁ ଗୀତଗୋବିନ୍ଦର ରଚନା ୧୧୫୦ ଖ୍ରୀଷ୍ଟାବ୍ଦ ବେଳକୁ ସଂପନ୍ନ ହୋଇ ସାରିଥିଲା ।

ରାଘବ ଦେବଙ୍କ ଲିଙ୍ଗରାଜ ମନ୍ଦିର ଅଭିଲେଖରେ କୁରୁମପାଟକର ଜନୈକ ସାଧୁପ୍ରସାଦ ଜୟଦେବଙ୍କ ବିଷୟରେ ଉଲ୍ଲେଖ ଅଛି । ଦ୍ୱିତୀୟ ଭାନୁଦେବଙ୍କ ରାଜତ୍ୱ କାଳର ପୁରୀ ତାମ୍ର ଶାସନରେ ଲିଖିତ କୁରୁମପଦ ଏବଂ ଉପରୋକ୍ତ କୁରୁମପାଟକ ସମସ୍ଥାନ ବୋଲି ଅନୁମାନ କରାଯାଏ । ଏହି କୁରୁମପଦକୁ ସଂପ୍ରତି ପୁରୀ ଜିଲ୍ଲାର ରାହାଙ୍ଗ ଗ୍ରାମ ରୂପେ ଚିହ୍ନଟ କରାଯାଇଛି । ୧୬୬୩ ଖ୍ରୀଷ୍ଟାବ୍ଦରେ କୃତ୍ତିବାସ ଦେବଙ୍କୁ ମହାଦୀପ ପ୍ରଦାନ କାର୍ଯ୍ୟରେ ମଧ୍ୟମା ଦେବୀଙ୍କୁ ସାଧୁ ପ୍ରଧାନ ଜୟଦେବ ସାହାଯ୍ୟ କରିଥିଲେ ବୋଲି ଲିଙ୍ଗରାଜ ମନ୍ଦିର ଅଭିଲେଖରେ ଉଲ୍ଲେଖ ରହିଛି ।

ଉତ୍କଳ ତଥା ଭାରତର ବହୁ ମଧ୍ୟଯୁଗୀୟ କବି ସେମାନଙ୍କ କୃତିରେ କବି ଜୟଦେବଙ୍କର ନାମୋଲ୍ଲେଖ କରିଛନ୍ତି । ୧୫୫୩ ଖ୍ରୀଷ୍ଟାବ୍ଦରେ ରଚିତ 'ସଂପ୍ରଦାୟ ପ୍ରଦୀପ'ରେ ଏହାର ପ୍ରଣେତା ଗଦା ଦ୍ୱିବେଦୀ ଜୟଦେବଙ୍କୁ ଉତ୍କଳର କବି ଭାବେ ଅଭିହିତ କରିଛନ୍ତି । ଗୋଆଲିୟରର କବି ନାବଜୀ ତାଙ୍କର ଭକ୍ତମାଳା ଗ୍ରନ୍ଥରେ ସହମତି ପ୍ରଦାନ କରିଛନ୍ତି । ମରାଠୀ କବି ମହୀପତି କର୍ତ୍ତୃକ ଭକ୍ତ ବିଜୟ କାବ୍ୟରେ ଉଲ୍ଲେଖ କରାଯାଇଛି ଯେ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁବିଲ୍ୱ ବା ତିନ୍ଦୁବିଲ୍ୱ ଗ୍ରାମ ଉତ୍କଳର ପୁରୀ ଜିଲ୍ଲାରେ ଅବସ୍ଥିତ । ସେ ଆହୁରି ଲେଖିଛନ୍ତି ଯେ କବି ଜୟଦେବ ପୁରୁଷୋତ୍ତମ କ୍ଷେତ୍ରରେ ପଦ୍ମାବତୀଙ୍କୁ ବିବାହ କରିଥିଲେ । କବି କୃଷ୍ଣଦାସଙ୍କର ଭକ୍ତମାଳା କାବ୍ୟରେ ମହୀପତିଙ୍କ ଏହି ଉକ୍ତି ଉଲ୍ଲିଖିତ ଅଛି । ମିଥିଳାର କବି ଚନ୍ଦ୍ରଦତ୍ତ ତାଙ୍କର କାବ୍ୟ 'ଭକ୍ତମାଳା'ରେ ମଧ୍ୟ ଠିକ୍ ଏହି କଥା ଦର୍ଶାଇବାକୁ ଯାଇ ଲେଖିଛନ୍ତି ଯେ ଜୟଦେବ ଜଣେ ବ୍ରାହ୍ମଣ କବି ଥିଲେ । ସେ ପ୍ରଭୁ ପୁରୁଷୋତ୍ତମଙ୍କର ପରମଭକ୍ତ ଥିଲେ । ପୁରୀ ସନ୍ନିକଟ ବିନ୍ଦୁବିଲ୍ୱ ନାମକ ଏକ ଗ୍ରାମରେ ସେ ଜନ୍ମଗ୍ରହଣ କରିଥିଲେ ଏବଂ ଗୀତଗୋବିନ୍ଦ ଶୀର୍ଷକ କାବ୍ୟ ରଚନା କରିଥିଲେ । ଏ ସମସ୍ତ ତଥ୍ୟରୁ ଜୟଦେବ ଯେ ଜଣେ ଉତ୍କଳୀୟ କବି ଏହା ସହଜରେ ଗ୍ରହଣ କରାଯାଇପାରେ ।

ଜୟଦେବ ଚରିତ ଶୀର୍ଷକ ଏକ ଗ୍ରନ୍ଥ ବଙ୍ଗୀୟ ସାହିତ୍ୟ ପରିଷଦ ପକ୍ଷରୁ ପ୍ରକାଶିତ । କବି ଜୟଦେବଙ୍କ ଜନ୍ମସ୍ଥାନ ବଙ୍ଗଳାର ବୀରଭୂମ ଜିଲ୍ଲା ବୋଲି ଏଥିରେ ଉଲ୍ଲେଖ କରାଯାଇଛି । ଏହି ଗ୍ରନ୍ଥର ଅନୁରୂପ ଦ୍ୱିତୀୟ ଗ୍ରନ୍ଥ ଆଉ ନାହିଁ କିମ୍ବା ଏହି ଗ୍ରନ୍ଥର ତଥ୍ୟକୁ ସମର୍ଥନ କଲାଭଳି କୌଣସି ସୂଚନା ହସ୍ତଗତ ହୋଇନାହିଁ । କେବେ କେବେ ଏହି ଗ୍ରନ୍ଥରେ ସନ୍ନିବେଶିତ ତଥ୍ୟକୁ ନେଇ ବହୁ ବଙ୍ଗୀୟ ଗବେଷକ ମତ ଦିଅନ୍ତି ଯେ ବଙ୍ଗଳାର ବୀରଭୂମ ଜିଲ୍ଲା ଅନ୍ତର୍ଗତ ଅଜୟ ନଦୀ ତଟବର୍ତ୍ତୀ କେନ୍ଦୁଲୀ ଗ୍ରାମରେ କବି ଜୟଦେବ ଜନ୍ମଗ୍ରହଣ କରିଥିଲେ । ସାର୍ ଉଇଲିଅମ୍ ଜୋନ୍ସ ଏ ସଂକ୍ରାନ୍ତରେ ଦେଇଥିବା ବକ୍ତବ୍ୟ ବେଶ୍ ପ୍ରଣିଧାନଯୋଗ୍ୟ । ସେ କହିଛନ୍ତି ଯେ କେବଳ କେନ୍ଦୁଲୀ ନାମକ ଗ୍ରାମର ଅବସ୍ଥିତି ଯୋଗୁଁ ଏହା ଜୟଦେବଙ୍କ ଜନ୍ମସ୍ଥାନ ଭାବେ ଗ୍ରହଣ କରିବା ଅସମୀଚୀନ । ଶ୍ରୀ ଚୈତନ୍ୟଙ୍କ ପୂର୍ବବର୍ତ୍ତୀ କିମ୍ବା ପରବର୍ତ୍ତୀ କୌଣସି କାବ୍ୟକୃତିରେ ଏ ସଂପର୍କରେ ଆଦୌ କୌଣସି ଉଲ୍ଲେଖ ନାହିଁ ।

ଅପରପକ୍ଷରେ ପ୍ରାଚୀ ତୀରର କେନ୍ଦୁଲୀ ଗ୍ରାମରେ ଷଷ୍ଠ/ସପ୍ତମ ଶତାବ୍ଦୀର ବହୁ ପ୍ରତ୍ନତାତ୍ତ୍ୱିକ ଅବଶେଷ ଦେଖିବାକୁ ମିଳେ । ତନ୍ମଧ୍ୟରୁ ଶାକ୍ତ, ବୈଷ୍ଣବ ଓ ଶୈବ ମୂର୍ତ୍ତି ସମୂହ ବିଶେଷ ଦର୍ଶନୀୟ । ଏଥିରୁ ମିଳିଥିବା ଲକୁଳୀଶା, ଭୈରବ, ମାଧବ ଏବଂ ଅମ୍ବିକାଙ୍କର ପ୍ରାଚୀନ ମୂର୍ତ୍ତି ସମେତ ଜଟାଜୁଟ ଧାରଣ ଏକ ଦ୍ୱିଭୁଜ ଅବୟବକୁ କବି ଜୟଦେବଙ୍କର ବୋଲି ବିଶ୍ୱାସ କରାଯାଏ । ଅମ୍ବିକାଙ୍କ ମୂର୍ତ୍ତିଟି ବେଲଗଛ ତଳୁ ମିଳିଥିବା ବେଳେ ଅନ୍ୟ ଏକ ଜାଗେଶ୍ୱରୀ ମୂର୍ତ୍ତି କେନ୍ଦୁଗଛ ମୂଳରୁ ମିଳିଛି । ଏହି ଦୁଇଦେବୀ କେନ୍ଦୁଲୀର ଅଧିଷ୍ଠାତ୍ରୀ ଦେବୀ ଭାବେ ଏବେ ବି ପୂଜା ପାଉଛନ୍ତି ।

କେନ୍ଦୁଲୀଠାରେ ଅବସ୍ଥିତ ଜରାଜୀର୍ଣ୍ଣ ଅମ୍ବିକା ମନ୍ଦିରର ଦ୍ୱାରବନ୍ଧ ଉପରେ ଦ୍ୱାଦଶ ଶତାବ୍ଦୀ କାଳର ଏକ ଅଭିଲେଖ ଦେଖିବାକୁ ମିଳେ । ଏହି ଅଭିଲେଖର ଜୟ ଜଗଦୀଶ ହରେ ଦର୍ଶନ ଯୋଗୁଁ, ଅଭିଲେଖଟିର ରଚନାକାଳ ୧୧୧୨ ଶକାବ୍ଦ ଅର୍ଥାତ୍ ୧୧୯୦ ଖ୍ରୀଷ୍ଟାବ୍ଦ ବୋଲି ଏଥିରେ ସ୍ପଷ୍ଟ ଉଲ୍ଲେଖ ରହିଛି । କବି ଜୟଦେବଙ୍କ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ଏହି ମନ୍ଦିରଟି ନିର୍ମାଣ କରାଯାଇଥିଲା ବୋଲି ବିଶ୍ୱାସ କରାଯାଏ । କେନ୍ଦୁଲୀ ଗ୍ରାମର ମଧ୍ୟଭାଗରେ ଏକ ଲକ୍ଷ୍ମୀ ନୃସିଂହ ମନ୍ଦିର ବିଦ୍ୟମାନ । ସମ୍ଭବତଃ

ରାଧାକୃଷ୍ଣ ତତ୍ତ୍ୱ ବଦଳରେ ଏଠାରେ ଲକ୍ଷ୍ମୀ ନୃସିଂହଙ୍କ ଉପାସନା ପରବର୍ତ୍ତୀ କାଳରେ ପ୍ରଚଳିତ କରାଯାଇଥିଲା ।

ଗଙ୍ଗବଂଶୀ ନରପତି ନରସିଂହ ଦେବ (୪ର୍ଥ)ଙ୍କ ଏକ ତାମ୍ର ଶାସନ ମଧ୍ୟ ଏହି ସ୍ଥାନରୁ ମିଳିଅଛି । ୧୩୭୮ ଖ୍ରୀଷ୍ଟାବ୍ଦରୁ ୧୪୦୧ ଖ୍ରୀଷ୍ଟାବ୍ଦ ଏହି ଅବଧିରେ ନରସିଂହ ଦେବ ରାଜତ୍ୱ କରୁଥିଲେ । ଏହି ସ୍ଥାନର ସାମାନ୍ୟ ଦୂରରେ ପ୍ରାଚୀ, କୁଶଭଦ୍ରା ଓ ଧନୁଆ ଏହି ତିନିଟି ନଦୀର ସଂଯୋଗସ୍ଥଳ ତ୍ରିବେଣୀ ଘାଟ ବିଦ୍ୟମାନ । ଏଠାରେ ପୂଜିତ ହେଉଥିବା ବିଷ୍ଣୁଙ୍କ ନାମ ତ୍ରିବେଣୀ ମାଧବ । ପ୍ରତିବର୍ଷ ଏଠାରେ ଏକ ବଡ ଧରଣର ମେଳା ଅନୁଷ୍ଠିତ ହୁଏ । ଜନଶ୍ରୁତି କହେ ଯେ କବି ଜୟଦେବ ଏଠାରେ ସ୍ନାନ ସମାପନ କରି ତ୍ରିବେଣୀ ମାଧବଙ୍କୁ ଆରାଧନା କରୁଥିଲେ । କବି ଜୟଦେବଙ୍କ ସ୍ମୃତିକୁ ଅମର କରିବା ପାଇଁ ପ୍ରତିବର୍ଷ ଏଠାରେ ଏହି ମେଳା ମହା ସମାରୋହରେ ପାଳିତ ହୋଇଆସୁଛି ।

ଏଠାରେ ଏହା ଉଲ୍ଲେଖ କରାଯାଇପାରେ ଯେ ସପ୍ତମ/ଅଷ୍ଟମ ଶତାବ୍ଦୀରେ ଓଡ଼ିଶାର ସର୍ବତ୍ର ବୈଷ୍ଣବ ଧର୍ମ ପରିବ୍ୟାପ୍ତ ହୋଇଥିଲା । ଦଶାବତାର ମୂର୍ତ୍ତି ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା । ପଶ୍ଚିମ ଓଡିଶା ବିଶେଷତଃ ସଇଁତଳା ଓ ରାଣୀପୁର-ଝରିଆଲ୍‌ରେ ଆମେ ଏହି ଦଶାବତାର ବିଗ୍ରହର ଅବଶେଷ ଦେଖିବାକୁ ପାଉ । ଗବେଷକ ଶ୍ରୀ ଶଶାଙ୍କ ଶେଖର ପଣ୍ଡା ସଇଁତଳାର ବିଷ୍ଣୁ ବିଗ୍ରହରେ ସନ୍ନିହିତ ଦୁର୍ଗାମୂର୍ତ୍ତି ସମୂହକୁ ଚିହ୍ନଟ କରିଛନ୍ତି । ଏହି ବିଗ୍ରହ ସଇଁତଳାର ଏକ ଧ୍ୱଂସପ୍ରାପ୍ତ ମନ୍ଦିରରୁ ମିଳିଅଛି । ପ୍ରାଚୀ ଅବବାହିକାରେ ମାଧବ ଉପାସନା, ଦଶାବତାର ଏବଂ ଗୋପୀନାଥ ଉପାସନା ମଧ୍ୟ ବିପୁଳ ଆଦୃତି ଲାଭ କରିଥିଲା । ଜନମାନସର ଏହି ବୈଷ୍ଣବ ଅନୁରକ୍ତି କବି ଜୟଦେବଙ୍କୁ ବିଶେଷ ଭାବେ ପ୍ରଭାବିତ କରିଥିଲା । ଓଡିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ଦଶମ ଶତାବ୍ଦୀର ଏକ କୃଷ୍ଣ ବିଷ୍ଣୁ ମୂର୍ତ୍ତିରେ ମଧ୍ୟ ଆମେ ଦଶାବତାର ବିଗ୍ରହ ଦେଖିବାକୁ ପାଉ ।

କେନ୍ଦୁଲୀ ଗ୍ରାମଟି ମୂଳତଃ ଏକ ଶାସନ । ବର୍ତ୍ତମାନ ମଧ୍ୟ ଏହାର ଏକ ଅଂଶକୁ କେନ୍ଦୁଲୀ ଶାସନ କୁହାଯାଏ । ଅନ୍ୟ ଦୁଇଟି ଅଂଶ ଯଥାକ୍ରମେ କେନ୍ଦୁଲୀ ପାଟଣା ଓ କେନ୍ଦୁଲୀ ଦେଉଳୀ ଭାବରେ କଥିତ । ଏ ସମସ୍ତ ତଥ୍ୟରୁ ସ୍ପଷ୍ଟ ଆଭାସ ମିଳେ ଯେ, ବର୍ତ୍ତମାନର କେନ୍ଦୁଲୀ ଗ୍ରାମ ହିଁ ପ୍ରାଚୀନ କାଳର କେନ୍ଦୁବିଲ୍ୱ ନାମରେ କଥିତ ହେଉଥିଲା ଏବଂ ଏହା କବି ଜୟଦେବଙ୍କର ଜନ୍ମସ୍ଥାନ ଥିଲା ।

କହିବା ନିଷ୍ପ୍ରୟୋଜନ ଯେ ଲୋକପ୍ରିୟତା ଦୃଷ୍ଟିରୁ କବି ଜୟଦେବଙ୍କ ଗୀତଗୋବିନ୍ଦ ସମସ୍ତ ଭୌଗୋଳିକ ସୀମା ଅତିକ୍ରମ କରି ଯାଇଛି । ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟର ପ୍ରଫେସର ବାରବରା ଷ୍ଟୋଲାର ମିଲର ଯଥାର୍ଥରେ କହିଛନ୍ତି ଯେ, ପୂର୍ବ ଭାରତରେ ଦ୍ୱାଦଶ ଶତାବ୍ଦୀରେ ରଚିତ ଏହି କାବ୍ୟର ଲୋକପ୍ରିୟତା ଅଦ୍ୟାପି ଅକ୍ଷୁଣ୍ଣ ରହିଛି । ସମଗ୍ର ଉପମହାଦେଶରେ ଏହାର ସଂଗୀତ ମାଧୁର୍ଯ୍ୟକୁ ଅନୁଭବ କରିହୁଏ । ପଶ୍ଚିମ ଭାରତର ଗୁଜରାଟର ତ୍ରୟୋଦଶ ଶତାବ୍ଦୀର ମନ୍ଦିରର ଶିଳାରେ ଏହାର କିଛି ଅଂଶ ଉତ୍‌କୀର୍ଣ୍ଣ ହୋଇଛି । ଭାରତର ପ୍ରାୟ ସବୁ ସ୍ଥାନରେ ଏହାର ଟୀକା ଦେଖିବାକୁ ମିଳେ । ଓଡିଶା, ବଙ୍ଗଳା ବ୍ୟତୀତ ଦକ୍ଷିଣ ଭାରତର ଭକ୍ତି ସଂଗୀତରେ ମଧ୍ୟ ଏହାର ସ୍ଥାନ ସ୍ୱତନ୍ତ୍ର । ଷୋଡଶ ଶତାବ୍ଦୀଠାରୁ ଏଯାବତ୍ କେରଳର ବିଷ୍ଣୁ ମନ୍ଦିରମାନଙ୍କରେ ଏହି କାବ୍ୟର ସୁମଧୁର ସଂଗୀତ ଗାନ କରାଯାଉଛି । ମଧ୍ୟଯୁଗୀୟ ରାଜସ୍ଥାନୀ ଚିତ୍ରକଳାରେ ଏହି କାବ୍ୟର ଗୀତିକଥାକୁ ଏକ ମୁଖ୍ୟ ବିଷୟ ଭାବରେ ଗ୍ରହଣ କରାଯାଇଛି । ଏପରିକି ନେପାଳ ଓ ମଣିପୁରର ନାଟ୍ୟ ପରମ୍ପରାରେ ମଧ୍ୟ ଗୀତଗୋବିନ୍ଦର ପ୍ରତିଫଳନ ଅଦ୍ୟାବଧି ଦେଖିବାକୁ ମିଳେ ।

ରାଜ୍ୟ ସଂଗ୍ରହାଳୟ ଦ୍ୱାରା କେନ୍ଦୁଲୀ ଠାରେ ପ୍ରତ୍ନତାତ୍ତ୍ୱିକ ଖନନ କାର୍ଯ୍ୟ ହାତକୁ ନିଆଯାଇଛି । ତ୍ରିମାଳୀ ମଠ ଓ ପ୍ରହରାଜ ଡିହାଠାରେ ଖନନ କାର୍ଯ୍ୟ ଦ୍ରୁତଗତିରେ ଚାଲିଛି । ପ୍ରାରମ୍ଭିକ ପ୍ରତ୍ନତାତ୍ତ୍ୱିକ ପର୍ଯ୍ୟାଲୋଚନାରୁ କେନ୍ଦୁଲୀର ପ୍ରାଚୀନତା ପ୍ରଥମ ଶତାବ୍ଦୀର ବୋଲି ଅନୁମାନ କରାଯାଉଛି । ଏଠାରେ ମିଳିଥିବା ପ୍ରାଚୀନ ମାଟି ପାତ୍ରାଂଶ, ଘରଦ୍ୱାର ଓ ମନ୍ଦିରର କିଛି ଧ୍ୱଂସାବଶେଷ କେନ୍ଦୁଲୀ ଗ୍ରାମ ଅତୀ ପ୍ରାଚୀନ ବୋଲି ସୂଚାଇଦିଏ । ତେଣୁ ନିଃସନ୍ଦେହରେ କୁହାଯାଇପାରେ ଯେ, କାଳଜୟୀ ଭକ୍ତକବି ଶ୍ରୀ ଜୟଦେବ ଓଡିଶାର କେନ୍ଦୁଲୀ ଗ୍ରାମରେ ହିଁ ଦ୍ୱାଦଶ ଶତାବ୍ଦୀରେ ଜନ୍ମ ଗ୍ରହଣ କରିଥିଲେ । ଏ ତଥ୍ୟକୁ କେନ୍ଦୁଲୀରୁ ପ୍ରାପ୍ତ କେନ୍ଦୁଲୀ ତାମ୍ରଫଳକର ଲେଖା ଆହୁରି ଦୃଢ଼ିଭୂତ କରେ ।

ଓଡିଶା ରାଜ୍ୟ ସଂଗ୍ରହାଳୟ
ଭୁବନେଶ୍ୱର

# ଭକ୍ତକବି ଜୟଦେବ ଓ ଶ୍ରୀଗୀତଗୋବିନ୍ଦ

କାହ୍ନୁଚରଣ ସାହୁ

ଜଗନ୍ନାଥ ପୁରୀପ୍ରାନ୍ତେ ଦେଶେ ଚୈବୋତ୍କଳାବିଧେ,
କେନ୍ଦୁବିଲ୍ୱ ଇତି ଖ୍ୟାତୋ ଗ୍ରାମୋ ବ୍ରାହ୍ମଣ ସଙ୍କୁଳଃ,
ତତ୍ରୋତ୍କଳେ ଦ୍ୱିଜୋଜାତୋ 'ଜୟଦେବ' ଇତି ଶ୍ରୁତଃ
ବିଦ୍ୟାଭ୍ୟାସରତଃ ଶାନ୍ତଃ ପୁରୁଷୋତ୍ତମ ପୂଜକଃ ।

ମୈଥିଳୀ ପଣ୍ଡିତ ଚନ୍ଦ୍ରଦତ୍ତଙ୍କ ରଚିତ 'ଭକ୍ତମାଳା'ରେ ଏହା ବର୍ଣ୍ଣନା କରାଯାଇଛି । ଶ୍ରୀକ୍ଷେତ୍ରର ନିକଟବର୍ତ୍ତୀ ବ୍ରାହ୍ମଣ ବସତିପୂର୍ଣ୍ଣ କେନ୍ଦୁବିଲ୍ୱ ଗ୍ରାମରେ ଜୟଦେବ ଜନ୍ମ ହୋଇ ଜଗନ୍ନାଥଙ୍କ ପୂଜକ ରୂପେ ଖ୍ୟାତିଲାଭ କରିଥିଲେ । ତାଙ୍କ ରଚିତ ଗୀତଗୋବିନ୍ଦ କାବ୍ୟ ମଞ୍ଜୁଳ ଶବ୍ଦ ଗୁମ୍ଫନ ଉପମା ପଦଲାଳିତ୍ୟ ଓ ସର୍ବୋପରି ସାଙ୍ଗୀତିକତା ଦ୍ୱାରା କାଳଜୟୀ ହୋଇଉଠିଛି । ସଂସ୍କୃତରେ ଗୋଟିଏ ଶ୍ଳୋକ ଅଛି -

ତୟା କବିତୟା କିମ୍ବା ତୟା ବନିତୟାଥବା
ପଦବିନ୍ୟାନ ମାତ୍ରେଣ ଜୟା ନାପହୃତଂ ମନଃ ।

ଅର୍ଥାତ୍ ସେହି କବିତାରେ କି ମାଧୁର୍ଯ୍ୟ ଅଛି ଏବଂ ସେହି ବନିତାଠାରେ କି ସୌନ୍ଦର୍ଯ୍ୟ ଅଛି ? ଯେଉଁ କବିତା ରମଣୀୟ ପଦ ବିନ୍ୟାସଦ୍ୱାରା ପାଠକର ଚିତ୍ତ ହରଣ କରେ ନାହିଁ ଏବଂ ଯେଉଁ ସୁନ୍ଦରୀର ଧୀର ମନ୍ଥର ପଦବିନ୍ୟାସ ଦ୍ୱାରା ରସିକ ପୁରୁଷର ମନ ଆକୃଷ୍ଟ ହୁଏ ନାହିଁ । କବିତା ସହିତ ବନିତାର ଆରୋପ କରି କବିମାନେ ସୁନ୍ଦର ସୁନ୍ଦର ଶ୍ଳୋକ ରଚନା କରିଯାଇଛନ୍ତି ।

ସ୍ୱ-କାବ୍ୟର ଉତ୍କର୍ଷ ପ୍ରତିପାଦନ କରି ଭକ୍ତକବି ଜୟଦେବ ଗୀତଗୋବିନ୍ଦ କାବ୍ୟର ମୂଳରେ ପ୍ରକାଶ କରି କହନ୍ତି -

ଯଦି ହରି ସ୍ମରଣେ ସରସଂ ମନୋ
ଯଦି ବିଳାସ କଳାସୁ କୁତୂହଳମ୍
ମଧୁର କୋମଳ କାନ୍ତ ପଦାବଳୀଂ
ଶୃଣୁତଦା ଜୟଦେବ ସରସ୍ୱତୀମ୍ ।

ଅର୍ଥ- ହେ ରସଜ୍ଞ ଭକ୍ତ ଜନତା ! ଯଦି ରାଧା ମାଧବଙ୍କୁ ସ୍ମରଣ କରିବା ପାଇଁ ତୁମ ମନ ରସାଣିତ ହେଉଛି, ଯଦି ନୃତ୍ୟ ଗୀତାଦି କଳା ବିଦ୍ୟା ପ୍ରତି ତୁମ ମନରେ କୌତୁହଳ ଜନ୍ମିଛି, ତେବେ ମଧୁର କୋମଳ କାନ୍ତ ପଦାବଳୀ ଦ୍ୱାରା ରଚିତ ଶ୍ରୀ ଜୟଦେବଙ୍କ ଗୀତଗୋବିନ୍ଦ କାବ୍ୟ ଶ୍ରବଣ କର । ଏହି କାବ୍ୟର ଶେଷରେ କବି କହିଛନ୍ତି -

ସାଧ୍ୱୀ ମାଧ୍ୱୀକ ଚିନ୍ତା ନ ଭବତି ଭବତଃ
ଶର୍କରେ କର୍କ ରାସି,
ଦ୍ରାକ୍ଷେ ଦ୍ରକ୍ଷନ୍ତି କେତ୍ୱା ମମୃତ ମୃତମସି
କ୍ଷୀର ନୀରଂ ରସସ୍ତେ ।
ମାକନ୍ଦ କ୍ରନ୍ଦ କାନ୍ତାଧର ଧରଣୀ ତଳଂ
ଗଚ୍ଛ ଯଚ୍ଛନ୍ତି ଯାବତ୍
ଭାବଂ ଶୃଙ୍ଗାର ସାରସ୍ୱତ ମିହ ଜୟ ଦେବସ୍ୟ
ବିଷ୍ୱଗ୍ ବଚାଂଶି । ୧୨/୯

ହେ ମଧୁର ରସପୂର୍ଣ୍ଣ ମଦିରେ ! ତୁମେ ଜୟଦେବଙ୍କ ଗୀତଗୋବିନ୍ଦ କାବ୍ୟର ମାଦକତାକୁ ବଳିଯିବା ପାଇଁ ଆଦୌ ବୃଥା ଚେଷ୍ଟା କର ନାହିଁ । ହେ ଶର୍କରେ ! ତୁମ ସ୍ୱାଦୁ ଗୀତଗୋବିନ୍ଦ ତୁଳନାରେ ନିତାନ୍ତ ତିକ୍ତ । ହେ ଦ୍ରାକ୍ଷେ ! ତୁମକୁ ଆଉ କେହି ଲୋଡ଼ିବେ ନାହିଁ । ହେ ଅମୃତ ! ତୁମର ମୃତ୍ୟୁ ହୋଇ ଗଲାଣି ବୋଲି ଜାଣ । ହେ ଦୁଗ୍ଧ ! ତୁମେ ଏବେ ପାଣିରେ ପରିଣତ ହୋଇଗଲାଣି । ହେ ଆମ୍ବ ! ତୁମେ କାନ୍ଦି କାନ୍ଦି ଥକି ଗଲେବି ତୁମକୁ କେହି ପଚାରିବେ ନାହିଁ । ପ୍ରେୟସୀର ଅଧର ମଧୁ ମଧ୍ୟ ଅନାଦୃତ ହେବ । ଏଣୁ ତୁମ୍ଭେମାନେ ଆମ୍ଭ ମର୍ଯ୍ୟାଦା ରକ୍ଷାକରି ରସାତଳଗାମୀ ହୁଅ । ଜୟଦେବଙ୍କ ଶୃଙ୍ଗାର ସାରସ୍ୱତ ଭାବପୂର୍ଣ୍ଣ ଆଦରଣୀୟ ଗୀତଗୋବିନ୍ଦ କାବ୍ୟ ଯେତେ ଦିନ ଯାଏଁ ଗାନ ହେଉଥିବ, ସେତେ ଦିନ ଯାଏ ସଂସାରର ସମସ୍ତ ମଧୁର ପଦାର୍ଥ ନୀରସ ବୋଧ ହେଉଥିବ ।

ଜୟଦେବ ଗୋସ୍ୱାମୀ ଗୀତଗୋବିନ୍ଦ କାବ୍ୟରେ ଶୃଙ୍ଗାର ରସକୁ ସର୍ବଶ୍ରେଷ୍ଠ ମାନ୍ୟତା ପ୍ରଦାନ କରିଛନ୍ତି । ରାଧାକୃଷ୍ଣଙ୍କର ମଞ୍ଜୁଳ ପ୍ରଣୟ ବର୍ଣ୍ଣନାରେ କାବ୍ୟର ପରିସମାପ୍ତି ଘଟିଛି । ସମ୍ଭୋଗ ଶୃଙ୍ଗାର ଓ ବିପ୍ରଲମ୍ଭ ଶୃଙ୍ଗାରର ଚିତ୍ରଣରେ କବିଙ୍କ ଲେଖନୀ ଶତମୁଖ ହୋଇଉଠିଛି । ପ୍ରେମ ପାଗଳିନୀ ଶ୍ରୀରାଧା ଶ୍ରୀକୃଷ୍ଣଙ୍କ ସହ ମିଳିତ ହେବା ପାଇଁ ମାନସିକ ଭାରସାମ୍ୟ ହରାଇ ବସିଛନ୍ତି । ସଖୀମାନେ ପ୍ରବୋଧନା ଦେଇ ମିଳନ କୁଞ୍ଜକୁ ଯିବା ପାଇଁ ପ୍ରେରଣା ଦେଉଛନ୍ତି । ରସରାଜ ଶ୍ରୀକୃଷ୍ଣ ତାଙ୍କ ଆସିବା ପଥକୁ ଚାହିଁ ଚାହିଁ କ୍ଳାନ୍ତ ହୋଇ ପଡ଼ିବା ସହ କାମବାଣରେ ଜର୍ଜରିତ ହେବା କଥା ଦର୍ଶାଇଛନ୍ତି । କାମର ଦଶଦଶା ଯଥା- ଅଭିଳାଷ, ଚିନ୍ତା, ସ୍ମୃତି, ଗୁଣକଥନ, ଉଦ୍‌ବେଗ, ପ୍ରଳାପାଦିରେ ଉଦ୍‌ବେଳିତ ହୋଇ ମାନସିକ ଅଶାନ୍ତି ଓ ଶାରୀରିକ କ୍ଳେଶ ଅନୁଭବ କରୁଛନ୍ତି । ଏଣୁ ଗୋ ରାଧିକେ ! ଅବିଳମ୍ବେ ମାଧବଙ୍କୁ ଅନୁସରଣ କରି ମିଳନ କୁଞ୍ଜରେ ନିବିଡ଼ ଅନ୍ଧକାର ମଧରେ ମିଳିତ ହୁଅ । ତାହା ନହେଲେ ବଡ଼ ଅସୁବିଧା ପରିସ୍ଥିତି ସୃଷ୍ଟି ହୋଇପାରେ । ସଖୀ ଗୋଟିଏ ଘଟଣା ବର୍ଣ୍ଣନା କରି ଶ୍ରୀରାଧାଙ୍କୁ ମନରେ ଉଦ୍ଦୀପନ ଭାବନା ସଞ୍ଚାର କଲେ । ଯଥା-

ଆଶ୍ଳେଷା ଦନୁ ଚୁମ୍ବନା ଦନୁ ନଖୋଲ୍ଲେଖା ଦନୁ ସ୍ୱାନ୍ତଜ
ପ୍ରୋଦ୍‌ବୋଧା ଦନୁ ସମ୍ଭ୍ରମା ଦନୁରତା ରମ୍ଭାଦନୁ ପ୍ରୀତୟୋଗ
ଅନ୍ୟର୍ଥଂ ଗତୟୋର୍ଭ୍ରମାନ୍ମିଳିତୟୋଃ ସମ୍ଭାଷଣୈର୍ଜାନତୋ-
ର୍ଦମ୍ପତ୍ୟୋରିହ କୋନ କୋନ ତମସି ବ୍ରୀଡ଼ା ବିମିଶ୍ରୋ ରସଃ ।'

ଅର୍ଥ - ନିବିଡ଼ ଅନ୍ଧକାର ମଧରେ ଗୋଟିଏ ପୁରୁଷ ୫/୫ ଅନ୍ୟ ସ୍ତ୍ରୀର ଅନୁସରଣରେ ଚାଲିଥିଲା ଏବଂ ସେହିପୁରୁଷର ପତ୍ନୀ ମଧ ଅନ୍ୟ ଜଣେ ପୁରୁଷକୁ କଣ୍ଠ ଦେଇ ଅନ୍ଧକାର ମଧରେ ଅଭିସାର ରଚନା କରୁଥିଲା । ଦୁହେଁ ଦୁହିଁଙ୍କୁ ଚିହ୍ନି ନପାରି ନିଜ ନିଜର ବାଞ୍ଛିତ ପ୍ରେମିକ ପ୍ରେମିକା ଭାବି ଆଲିଙ୍ଗନ, ଚୁମ୍ବନ, ନଖକ୍ଷତ ଓ ସୁରତ ଆରମ୍ଭ କରି ଦେଲେ । ରତିକ୍ରୀଡ଼ା ପରେ ଆନନ୍ଦରେ ଆଳାପ କରିବା ବେଳେ ଦୁହେଁ ଦୁହିଁଙ୍କୁ ଚିହ୍ନି ପାରି ଲଜ୍ଜିତ ହେଲେ । ତା' ଫଳରେ ଦୁହେଁ ସେମାନଙ୍କର ଦୋଷ ଅବଗତ ହୋଇ ଆନନ୍ଦରେ ଆତ୍ମହରା ହୋଇଉଠିଲେ । ଏଥିଲା ନିବିଡ଼ ଅନ୍ଧକାର ରଜନୀର ଆଶୀର୍ବାଦ । ତେଣୁ ଏହି ଘନ ଅନ୍ଧକାର ମଧରେ ଆଉ ବିଳମ୍ବ ନକରି ଯଥାଶୀଘ୍ର ଗମନ କର । ତା' ନହେଲେ ପୂର୍ବୋକ୍ତ ପତି ପତ୍ନୀ ପରି ହୁଏତ ଶ୍ରୀକୃଷ୍ଣ ତୁମକୁ ମନେ କରି ଆଉ କାହା ସହିତ ମିଳିତ ହୋଇପାରନ୍ତି । ପଣ୍ଡିତ ଗୋପବନ୍ଧୁଙ୍କ ଭାଷାରେ -

ପ୍ରେମପରା ସହେ ସହି ସୁଖପାଏ
ପ୍ରେମ ନ ଜାଣଇ କେବେ ଶୋଚନା
ପ୍ରିୟଜନେ ନୁହେଁ ପ୍ରେମିକ ବିମୁଖ
ହେଲେ ହେଉ ପଛେ ଗୁରୁଗଞ୍ଜଣା ।

ଶ୍ରୀରାଧାଙ୍କ ବିରହରେ ଶ୍ରୀକୃଷ୍ଣ ସନ୍ତାପିତ ହୋଇ କାମ ଦେବଙ୍କୁ ନିନ୍ଦା କରି କହିଛନ୍ତି -

ହୃଦି ବିସଲତା ହାରୋନାୟଂ ଭୁଜଙ୍ଗଃ ମନାୟକଃ,
କୁବଳୟ ଦଳ ଶ୍ରେଣୀ କଣ୍ଠେ ନସା ଗରଳ ଦ୍ୟୁତିଃ ।
ମଳୟଜ ରଜୋନେଦଂ ଭସ୍ମପ୍ରିୟା ରହିତେ ମିୟି,
ପ୍ରହର ନ ହର ଭ୍ରାନ୍ତ୍ୟାନଙ୍ଗ ! କ୍ରୁଧା କୁମୁ ଧାବସି । ୩/୩

ଶ୍ରୀକୃଷ୍ଣ ବିନୀତ ଭାବରେ କାମ ଦେବଙ୍କୁ ଅନୁରୋଧ କରି କହିଛନ୍ତି - ହେ ଅନଙ୍ଗ ! ପୂର୍ବେ ତୁମକୁ ଶିବ ଭସ୍ମ କରି ଦେଇଥିବାରୁ ସେହି କ୍ରୋଧରେ ତୁମେ ମୋତେ ଭୁଲରେ ଶିବ ବୋଲି ଅନୁମାନ କରି ଯେଉଁ ପ୍ରହାର କରୁଛ ମୁଁ ତାହା ସହିବା ପାଇଁ ସମର୍ଥ ନୁହେଁ । ମୋର ବକ୍ଷସ୍ଥଳରେ ଶୀତଳ ମୃଣାଳ ହାର ଦେଖି ତୁମେ ସର୍ପହାର ବୋଲି ମନେ କରିଛ । ମୋ' କଣ୍ଠରେ ନୀଳ କଇଁକୁ ଦେଖି ତୁମେ ଶିବକଣ୍ଠ ବିଷ ବୋଲି ଭାବିଛ । ପ୍ରିୟା ବିରହରେ ସନ୍ତପ୍ତ ହୋଇ ଶରୀରକୁ ଶୀତଳ କରିବା ପାଇଁ ଯେଉଁ ଚନ୍ଦନ ବୋଳି ଥିଲି ତାହା ଶୁଖିଯାଇ ଶୁଭ୍ରୋଜ୍ୱଳ ଦେଖାଯାଉଛି, ମାତ୍ର ତାହା ଶିବଙ୍କ ବିଭୂତି ନୁହେଁ । ତୁମେ ମୋତେ ଶିବଜ୍ଞାନ କରି ଫୁଲ ଧନୁରେ ପ୍ରହାର କରିବା ପାଇଁ ଧାଇଁ ଆସିବା ଯୁକ୍ତି ସଙ୍ଗତ ନୁହେଁ ।

ରାଧା ମାଧବଙ୍କ ପ୍ରେମ ବର୍ଣ୍ଣନାରେ ଗୀତଗୋବିନ୍ଦ କାବ୍ୟ ରସାଳ ହୋଇଉଠିଛି । ଜୟଦେବଙ୍କ ମଞ୍ଜୁଳ ଶବ୍ଦ ଯୋଜନା ସଂସ୍କୃତ ଭାଷାକୁ ବୁଝିବା ପାଇଁ ଆଗ୍ରହ ସୃଷ୍ଟି କରିଥାଏ । ଏଣୁ ତାଙ୍କୁ ଜାତୀୟ କବି କୁହାଯାଇଛି । ସେ କେବଳ ଉତ୍କଳରେ କି ଭାରତରେ ବିଖ୍ୟାତ ନୁହନ୍ତି, ସାରା ପୃଥିବୀରେ ତାଙ୍କ ସୁଖ୍ୟାତି ଗାନ କରାଯାଇଛି । କବି ଜୟଦେବଙ୍କୁ ବଙ୍ଗବାସୀମାନେ ବଙ୍ଗଳାର କବି ବୋଲି ପ୍ରଚାର କରି ପ୍ରମାଣ କରିପାରିନାହାନ୍ତି । ସେ ଓଡ଼ିଶାର ପୁରୀ ନିକଟବର୍ତ୍ତୀ କେନ୍ଦୁବିଲ୍ୱ ବା କେନ୍ଦୁଲୀରେ ଜନ୍ମ ହେବା ପ୍ରସଙ୍ଗ ଭକ୍ତକବି ରାମ ଦାସ 'ଦାର୍ଢ୍ୟତା ଭକ୍ତି'ରେ ପ୍ରକାଶ କରିଛନ୍ତି । ଏହାଛଡ଼ା ଇଂରେଜ ସମାଲୋଚକ ଉଇଲିୟମ ଜୋନ୍‌ସ, ଏଡ଼୍‌ଉଇଲ୍ ଆରନୋଲ୍‌ଡ ମଧ ତାଙ୍କୁ କଳିଙ୍ଗର ଲୋକ ବୋଲି ପ୍ରକାଶ କରିଛନ୍ତି । ପ୍ରସିଦ୍ଧ ବଙ୍ଗୀୟ ଆଲୋଚକ ଡକ୍ଟର ସୁକୁମାର ସେନ୍ ଓ ଡକ୍ଟର ଆଶୁତୋଷ ଭଟ୍ଟାଚାର୍ଯ୍ୟ ମଧ ତାଙ୍କୁ ଉତ୍କଳୀୟ ବୋଲି

ସ୍ୱୀକାର କରିଛନ୍ତି । ଐତିହାସିକ କେଦାରନାଥ ମହାପାତ୍ର, ଜଗବନ୍ଧୁ ସିଂହ ମଧ୍ୟ କେନ୍ଦୁବିଲ୍ୱବାସୀ ବୋଲି କହିଛନ୍ତି । ଏତେଗୁଡ଼ିଏ ପ୍ରମାଣ ଥାଇ ମଧ୍ୟ କେତେକ ବ୍ୟକ୍ତି ତାଙ୍କୁ ଠିକ୍ ରୂପେ ଚିହ୍ନି ନପାରିବା କ୍ଷୋଭର ବିଷୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଶ୍ରୀଜଗନ୍ନାଥ ମନ୍ଦିରରେ ଶ୍ରୀଗୀତଗୋବିନ୍ଦ ଗାନ ହେବାର ପରମ୍ପରା ମହାରାଜା ପ୍ରତାପରୁଦ୍ର ଦେବଙ୍କ ସମୟରୁ ଚଳି ଆସୁଛି । ମାହାରୀର ନୃତ୍ୟ ଗୀତାନ୍ତେ ମହାପ୍ରଭୁ ସୁଖନିଦ୍ରା ଯାଆନ୍ତି । ଏଣୁ ଗୀତଗୋବିନ୍ଦ ଶ୍ରୀଜଗନ୍ନାଥଙ୍କର ଅତିପ୍ରିୟ ହୋଇପାରିଛି । 'ସ୍ମର ଗରଳ ଖଣ୍ଡନଂ, ମମ ଶିରସି ମଣ୍ଡନଂ' ପରେ ପାଦ ପୂରଣ ପାଇଁ କବି ଜୟଦେବ ଯେତେବେଳେ ବିଚଳିତ ହୋଇପଡ଼ିଛନ୍ତି ନିଜେ ମହାପ୍ରଭୁ ଜୟଦେବ ରୂପେ ଆସି ଅବଶିଷ୍ଟାଂଶ ପୂରଣ କରିଯାଇଛନ୍ତି । ଧନ୍ୟ କବି ! ଧନ୍ୟ ତୁମର ଭକ୍ତି ଭାବନା ! ପ୍ରେମ, ପ୍ରଣୟ ଓ ଭକ୍ତିର ଅନବଦ୍ୟ କାବ୍ୟ ଶ୍ରୀଗୀତଗୋବିନ୍ଦ । ଏଣୁ କୁହାଯାଇଛି -

'କବିଙ୍କ ହୃଦେ ବିଷ୍ଣୁ ରଚନ୍ତି ନିଜ ଘର,  
ପାଟବଂଶୀ ଶାରଦାଙ୍କୁ ଘେନିଣ ସଙ୍ଗର ।  
ବିଷ୍ଣୁ ଅଂଶୀ ନୋହିଲେ ଯେ ପଦ ନୋହେକରି  
କବି ରୂପେ ଜନ୍ମନ୍ତି ବିଷ୍ଣୁ ନରଦେହ ଧରି ।'

ପୋ- ମଞ୍ଜୁରିରୋଡ଼  
ଭଦ୍ରକ- ୭୫୬୧୨୧



# ଭକ୍ତକବି ଜୟଦେବ

କୃଷ୍ଣଚନ୍ଦ୍ର ସୁଆର

ଉତ୍କଳର ସନ୍ଥ ସାଧକମାନଙ୍କ ମଧ୍ୟରେ ଭକ୍ତକବି ଜୟଦେବ ହେଉଛନ୍ତି ଚିର ନମସ୍ୟ । ସଂସ୍କୃତ ଭାଷାରେ ତାଙ୍କ ଲେଖନୀକୃତ 'ଗୀତଗୋବିନ୍ଦ' ହେଉଛି ଏକ ଅନବଦ୍ୟ ସୃଷ୍ଟି । ବିଶ୍ୱବିଖ୍ୟାତ କବି କାଳିଦାସ, ଭବଭୂତି, ଶ୍ରୀହର୍ଷ ଓ ମାଘଙ୍କ ପରି ଗୀତଗୋବିନ୍ଦର ସ୍ରଷ୍ଟା ସୁପ୍ରସିଦ୍ଧ । ତାଙ୍କର ଭକ୍ତି ସାଧନା କେବଳ ଭାରତବର୍ଷ କାହିଁକି ପୃଥିବୀର ବିଭିନ୍ନ ମହାଦେଶର ଅଗଣିତ ଜନଗଣଙ୍କ ମନରେ ନୂତନ ଚେତନା ଉଦ୍ରେକ କରିଛି । ଓଡ଼ିଶାର ଘରେ ଘରେ ନିତ୍ୟ ପଠିତ ହେଉଥିବା ଜଗନ୍ନାଥ ଦାସଙ୍କ ଭାଗବତ ପରି ସନ୍ଥ ଶିରୋମଣି ଜୟଦେବଙ୍କ ଗୀତଗୋବିନ୍ଦ ଅତ୍ୟନ୍ତ ଲୋକପ୍ରିୟ । ଏହା ଓଡ଼ିଶାର ପ୍ରାଚୀନ କଳା, ସଂଗୀତ ଓ ଭାସ୍କର୍ଯ୍ୟ ମଧ୍ୟରେ ଥିବା ସାମଞ୍ଜସ୍ୟର ପ୍ରତୀକ । ପୂର୍ବକାଳରେ ମଠ, ମନ୍ଦିର, ମଣ୍ଡପ, ରାଜନଅର ଓ ଅଭିଜାତ ଶ୍ରେଣୀର ବାସଗୃହର କାନ୍ଥ ଦେହରେ ବିଭିନ୍ନ ରଂଗର ଦଶବତାର ଚିତ୍ର ଅଙ୍କନ କରିବା ଓଡ଼ିଶୀ ଚିତ୍ରକଳାର ଏକ ମହନୀୟ ପରମ୍ପରା ଥିଲା । ଅତି ମନୋରମ କାନ୍ତକୋମଳ ପଦାବଳୀ ଓ ଭାଷା ବିନ୍ୟାସ ହିଁ ତାଙ୍କ ରଚନାର ଅଦ୍‌ଭୁତ୍ ପରାକାଷ୍ଠା । ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ କବି ପ୍ରତ୍ୟହ ଭକ୍ତି ତଦ୍‌ଗତ ଚିତ୍ତରେ 'ଗୀତଗୋବିନ୍ଦ' ଗାନ କରୁଥିଲେ । ସେ ଦଶାବତାର ସ୍ତୋତ୍ରରେ ଜଗନ୍ନାଥଙ୍କୁ ବିଷ୍ଣୁଙ୍କର ବୌଦ୍ଧାବତାର ବୋଲି ଉଲ୍ଲେଖ କରିଅଛନ୍ତି । ଓଡ଼ିଶାର ଧର୍ମ ସାହିତ୍ୟର ପରମ୍ପରାରେ ଜୟଦେବଙ୍କ 'ଗୀତଗୋବିନ୍ଦ' କୋକିଳର କୁହୁତାନ ବୋଲି ମନେହୁଏ ।

ଶ୍ରୀକ୍ଷେତ୍ର ତଥା ସମଗ୍ର ଉତ୍କଳରେ ଶ୍ରୀଗୀତଗୋବିନ୍ଦର କ୍ରମବର୍ଦ୍ଧମାନ ଲୋକପ୍ରିୟତାକୁ ଯଥୋଚିତ ସମ୍ମାନ ପ୍ରଦର୍ଶନ ନିମିତ୍ତ ଗଙ୍ଗବଂଶୀୟ ସମ୍ରାଟ ନରସିଂହ ଦେବ ଶ୍ରୀଜଗନ୍ନାଥଙ୍କ ନିକଟରେ ନିତ୍ୟ ଶ୍ରୀଗୀତଗୋବିନ୍ଦ ଗାନ ଏକ ସେବା ରୂପେ ପ୍ରଚଳନ କରିଥିବା ମାଦଳାପାଞ୍ଜିରୁ ଜଣାଯାଏ ।

ମହାପ୍ରଭୁ ଶ୍ରୀ ଚୈତନ୍ୟ, ଶ୍ରୀକ୍ଷେତ୍ର ଅବସ୍ଥାନ କାଳରେ ବିଦ୍ୟାପତିଙ୍କ ବୈଷ୍ଣବ ପଦାବଳୀ, ରାୟ ରାମାନନ୍ଦଙ୍କ ଜଗନ୍ନାଥ ବଲ୍ଲଭ ନାଟକ, ବିଲ୍ୱମଂଗଳ ସ୍ୱାମୀକୃତ ଶ୍ରୀକୃଷ୍ଣ କର୍ଣ୍ଣାମୃତ ଏବଂ କବିରାଜ ଶ୍ରୀଜୟଦେବ କୃତ ଶ୍ରୀଗୀତଗୋବିନ୍ଦ ଦିନରାତି ପରମ ଆନନ୍ଦରେ ଗାନ ଓ ଶ୍ରବଣ କରୁଥିବାର ଶ୍ରୀ ଚୈତନ୍ୟ ଚରିତାମୃତରୁ ଜଣାଯାଏ -

'ଚଣ୍ଡୀଦାସ ବିଦ୍ୟାପତି    ରାୟେର ନାଟକ ଗୀତି
କର୍ଣ୍ଣାମୃତ, ଶ୍ରୀଗୀତଗୋବିନ୍ଦ
ସ୍ୱରୂପ ରାମାନନ୍ଦ ସନେ    ମହାପ୍ରଭୁ ରାତ୍ରି ଦିନେ
ରାୟ ଶୁନେ ପରମ ଆନନ୍ଦ ।'

ଏହି ବହୁମୁଖୀ ପ୍ରତିଭାର ଅଧିକାରୀ ଭକ୍ତକବି ଜୟଦେବ ଓଡ଼ିଶାର ପୁରୁଷୋତ୍ତମ କ୍ଷେତ୍ର ନିକଟସ୍ଥ କେନ୍ଦୁବିଲ୍ୱ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ବାଲିଅନ୍ତା ଥାନା ଅନ୍ତର୍ଗତ ପୁଣ୍ୟତୋୟା ପ୍ରାଚୀ ନଦୀ ତୀରରେ କେନ୍ଦୁଲୀ ଗ୍ରାମ ଅବସ୍ଥିତ । କିନ୍ଦୁ (କେନ୍ଦୁ) ବିଲ୍ୱ ନାମକ ବ୍ରାହ୍ମଣ ଶାସନରେ କେନ୍ଦୁ ଓ (ବିଲ୍ୱ) ବେଲଗଛ ବହୁ ସଂଖ୍ୟାରେ ଥିବାରୁ ଏହି ଗ୍ରାମ କେନ୍ଦୁବିଲ୍ୱ ନାମରେ ଅଭିହିତ ହୋଇଥିଲା । ଏହା ନିଆଳି ଓ ବ୍ରହ୍ମପୁର ଶାସନ ଦ୍ୱୟର ମଧ୍ୟବର୍ତ୍ତୀ ଅଞ୍ଚଳରେ ଅବସ୍ଥିତ । ଭୁବନେଶ୍ୱରଠାରୁ ୨୫ କି.ମି. ଦୂରରେ କେନ୍ଦୁଲୀ ଅବସ୍ଥିତ । ଏହାର ଅନତି ଦୂରରେ କଳ କଲ୍ଲୋଳିନୀ କୁଶଭଦ୍ରା ନଦୀ ପ୍ରବାହିତ । କେନ୍ଦୁଲୀର ପ୍ରାକୃତିକ ପରିବେଶ ଅତ୍ୟନ୍ତ ମନଲୋଭା । ଏହାର ଚିତ୍ତାକର୍ଷକ ଦୃଶ୍ୟରାଜି ଦୂରଦୂରାନ୍ତରୁ ଆସୁଥିବା ବହୁ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିଥାଏ । ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରୁ ତ୍ରୟୋଦଶ ଶତାବ୍ଦୀର ପ୍ରତ୍ନତାତ୍ତ୍ୱିକ ଭଗ୍ନାବଶେଷମାନଙ୍କରୁ ମିଳିଥିବା ତଥ୍ୟ ଅନୁଯାୟୀ କେନ୍ଦୁଲୀ ଅତୀତରେ ବୈଷ୍ଣବ ସଂସ୍କୃତିର କେନ୍ଦ୍ରସ୍ଥଳୀ ଥିଲା । ଏଠାରୁ ମିଳିଥିବା ମାଧବ ମୂର୍ତ୍ତିମାନଙ୍କରୁ ମାଧବ ସଂସ୍କୃତିର ସ୍ୱଷ୍ଟ ସୂଚନା ମିଳେ । ନିଆଳି ନିକଟସ୍ଥ ମାଧବ ମନ୍ଦିରରୁ ଜୟଦେବ ଉପାସନା କରିବାକୁ ଯାଉଥିବାର ଲୋକଶ୍ରୁତି ଶୁଣିବାକୁ ମିଳେ । ଏତଦ୍‌ବ୍ୟତୀତ ଅଡ଼ଶପୁରର ପ୍ରାଚୀ ତୀରରେ ତାଙ୍କର ଏକ ସାଧନାପୀଠ ମୂକସାକ୍ଷୀ ହୋଇ ରହିଅଛି ।

ତାଙ୍କ ପିତାଙ୍କ ନାମ ଭୋଜଦେବ ଓ ମା'ଙ୍କ ନାମ ବାମାଦେବୀ । ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁବିଲ୍ୱ ବୋଲି ମୈଥିଳୀ ପଣ୍ଡିତ ଚନ୍ଦ୍ର ଦତ୍ତ ତାଙ୍କ ସଂସ୍କୃତ ଭାଷାରେ ରଚିତ ଭକ୍ତମାଳା ପୁସ୍ତକରେ ଉଲ୍ଲେଖ କରିଛନ୍ତି । ନୀଳାଦ୍ରିନାଥ ଶ୍ରୀଜଗନ୍ନାଥଙ୍କ ଉପାସନାରେ ଦିନ ଅତିବାହିତ କରି ଜୟଦେବ 'ଗୀତିଗୋବିନ୍ଦ' ପରି ଏକ ଅପୂର୍ବ ରସମୟ କାବ୍ୟ ରଚନା କରିପାରିଛନ୍ତି ବୋଲି ମୈଥିଳୀ ପଣ୍ଡିତଙ୍କ ମତ । ତାଙ୍କ ରଚନା ଅନୁସାରେ -

'ଜଗନ୍ନାଥ ପୁରୀ ପ୍ରାନ୍ତେ ଦେଶେ ଚୈବୋତ୍କଳାଭିଦେ
କେନ୍ଦୁବିଲ୍ୱ ଇତି ଖ୍ୟାତୋ ଗ୍ରାମୋ ବ୍ରାହ୍ମଣ ସଂକୁଳଃ
ତତ୍ରୋତ୍କଳେ ଦ୍ୱିଜୋଜାତୋ ଜୟଦେବ ଇତିଶ୍ରୁତଃ
ବିଦ୍ୟାଭ୍ୟାସ ରତଃ ଶାନ୍ତଃ ପୁରୁଷୋତ୍ତମ ପୂଜକ ।'

ବିପ୍ର ରାମ ଦାସଙ୍କ ଲେଖନୀ କୃତ ଉକ୍ତିରେ ଜୟଦେବଙ୍କ ଚରିତ ପ୍ରସଙ୍ଗରେ ଯେଉଁ ବର୍ଣ୍ଣନା କରିଛନ୍ତି ତାହା ଅନନ୍ୟ, ଅଲୌକିକ ଓ ଅସାଧାରଣ । ଏତଦ୍‌ବ୍ୟତୀତ ପ୍ରାଚୀନ କବି ମାଧବ ପଟ୍ଟନାୟକ ତାଙ୍କ ପ୍ରଣିତ 'ବୈଷ୍ଣବ ଲୀଳାମୃତ' ଗ୍ରନ୍ଥରେ ଭକ୍ତକବି ଜୟଦେବଙ୍କ ସଂପର୍କରେ କହନ୍ତି,

'ବିପ୍ର ସେ ଜୟଦେବ ନାମ
କ୍ଷେତ୍ର ବରକୁ ଆଗମନ
କେନ୍ଦୁଲୀ ଶାସନ ତା' ଗ୍ରାମ
ପ୍ରାଚୀ ନଦୀର ତଟେ ପୁଣ
ଶ୍ରୀନୀଳମାଧବ ସମିପେ
ଭକ୍ତି କଲା ସେ ନାନା ରୂପେ
ଶାସ୍ତ୍ର ପୁରାଣେ ବିଚକ୍ଷଣ
କବିତ୍ୱ ମାର୍ଗେ ତା'ର ମନ
ଗୀତ ସେ ରଚିବ ବୋଇଲା
କ୍ଷେତ୍ରବାସକୁ ମନ ଦେଲା
ଶ୍ରୀଜଗନ୍ନାଥର ସମିପେ
ଶୁଦ୍ଧ ସାତ୍ତ୍ୱିକ ଭକ୍ତି ଭାବେ ।'

ତାଙ୍କୁ ମାତ୍ର ୧୧ ବର୍ଷ ବୟସରେ ତାଙ୍କ ପିତାମାତାଙ୍କ ଦେହାନ୍ତ ହୋଇଥିଲା । ଫଳରେ ବହୁ ଆର୍ଥିକ ଅସ୍ୱଚ୍ଛଳତା ମଧ୍ୟରେ ତାଙ୍କର ଜୀବନ କୁସୁମ ବିକଶିତ ହୋଇଥିଲା । ସେ ସଂସ୍କୃତ ଭାଷା ତଥା କାବ୍ୟ, ସାହିତ୍ୟ, ବ୍ୟାକରଣ, ଜ୍ୟୋତିଷ ଶାସ୍ତ୍ର ପ୍ରଭୃତି ଅଧ୍ୟୟନ କରି ପାଣ୍ଡିତ୍ୟ ଲାଭ କରିଥିଲେ । ବାଲ୍ୟାବସ୍ଥାରୁ ହିଁ ସେ ଥିଲେ ପ୍ରବଳ ଈଶ୍ୱର ବିଶ୍ୱାସୀ, କଷ୍ଟ ସହିଷ୍ଣୁ ଓ ଜନଗଣଙ୍କ ସେବାରେ ଉତ୍ସର୍ଗୀକୃତ ମଣିଷ ପରି ମଣିଷଟିଏ । ତୁଳସୀ ଦୁଇପତ୍ରରୁ ବାସିବା ପ୍ରାୟେକ ଅତି ଶୈଶବାସ୍ଥାରୁ ହିଁ ବାରି ହୋଇ ପଡୁଥିଲେ ବଡ଼ ହେଲେ ସେ ଜଣେ ଅଦ୍ୱିତୀୟ ମହାମନା ହେବେ ।

ପିତା ଭୋଜଦେବ ଘରର ଆର୍ଥିକ ଅସ୍ୱଚ୍ଛଳତା ଦୃଷ୍ଟିରୁ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ତାଙ୍କ ଗ୍ରାମର ଜଣେ ଗ୍ରାମବାସୀଙ୍କଠାରୁ ନିଜଗୃହକୁ ବନ୍ଧକ ସ୍ୱରୂପ କିଛି ଅର୍ଥ ଋଣ ଆକାରରେ ଆଣିଥିଲେ । ଋଣ ପରିଶୋଧ କରିନପାରିଲେ ତା' ପରିବର୍ତ୍ତେ ନିଜେ ରହୁଥିବା ଗୃହ ଖଣ୍ଡିକ ତାଙ୍କୁ ଦେବା ପାଇଁ ଚୁକ୍ତିବଦ୍ଧ ହୋଇଥିଲେ । ପୂର୍ବ ଚୁକ୍ତି ଅନୁସାରେ ପିତାଙ୍କର ମୃତ୍ୟୁ ପରେ ଉକ୍ତ ଗ୍ରାମବାସୀ ଜୟଦେବଙ୍କ ବାସଗୃହକୁ ଅଧିକାର କରିବାକୁ ଚାହିଁଲେ । ଜୟଦେବ ମଧ୍ୟ ସର୍ତ୍ତ ଅନୁସାରେ ବାସଗୃହ ଛାଡ଼ି ଦେଇ ସନ୍ୟାସୀ ହୋଇଯିବା ପାଇଁ ବାହାରି ଆସିଲେ । ମାତ୍ର ପ୍ରଭୁଙ୍କର ଅପାର କରୁଣାରୁ ଉକ୍ତ ଋଣ ଦାତାଙ୍କର ନିଜର ବାସଗୃହ ହଠାତ୍ ହୁ ହୁ ହୋଇ ଜଳି ଉଠିଲା । ଭକ୍ତ ଜୟଦେବ ବିବ୍ରତ ହୋଇ ସେହି ଜଳୁଥିବା ଘରକୁ ପଶିଯିବା ମାତ୍ରେ ଅଗ୍ନି ନିର୍ବାପିତ ହୋଇଯାଇଥିଲା । ପ୍ରଭୁଙ୍କର କି ଅଲୌକିକ ଲୀଳା । ଭାବ ବିନୋଦିଆ ଠାକୁର ଚିରକାଳ ଭକ୍ତର ପ୍ରେମ ରଜ୍ଜୁରେ ବନ୍ଧା । ଭକ୍ତାଧୀନ କୃଷ୍ଣଚନ୍ଦ୍ର ବାସ୍ତବରେ ନିଜଠାରୁ ଭକ୍ତକୁ ବଡ଼ ମଣନ୍ତି । ଏହି ଘଟଣାରେ ଗ୍ରାମବାସୀ ଜଣକ ମନରେ ବଡ଼ ପରିବର୍ତ୍ତନ ହୋଇଥିଲା ଏବଂ ସେ ନିଷ୍କପଟ, ମହାମନା ଓ ଲୀଳାପୁରୁଷ କୋମଳମତି ଜୟଦେବଙ୍କୁ ତାଙ୍କ ନିଜ ବାସଗୃହ ଖଣ୍ଡିକ ଫେରାଇ ଦେଇଥିଲେ । କିନ୍ତୁ ଜୟଦେବ ନିଜ ପ୍ରତିଜ୍ଞାରେ ଅଟଳ ଥିଲେ । ପିତାଙ୍କର ଚୁକ୍ତିକୁ ପୂରଣ କରିବା ପାଇଁ ସମସ୍ତ ପାର୍ଥିବ ମୋହ ତୁଟାଇ ସେ ସନ୍ୟାସୀ ଜୀବନଯାପନ କରିବା ପାଇଁ ଶ୍ରୀକ୍ଷେତ୍ରକୁ ଯାତ୍ରା କଲେ ।

ଶ୍ରୀକ୍ଷେତ୍ରରେ ପହଞ୍ଚି ପ୍ରଥମେ ଏକ ବୃକ୍ଷ ମୂଳରେ ପରେ ଏକ ଛୋଟିଆ କୁଡ଼ିଆ ମଧ୍ୟରେ ରହି ଧର୍ମଚର୍ଚ୍ଚା ଓ ଠାକୁର ଭଜନ କୀର୍ତ୍ତନରେ ସମୟ ଅତିବାହିତ କରିବାରେ ଏବଂ ପଦ୍ମାବତୀଙ୍କ ସହ ଶୁଭ ପରିଣୟ ମୂଳରେ ଏକ ସୁନ୍ଦର ଐଶୀ ଆଶିଷ ନିହିତ କିମ୍ବଦନ୍ତୀ ପ୍ରଚଳିତ ଅଛି ।

ପଦ୍ମାବତୀ ଥିଲେ ଦାକ୍ଷିଣାତ୍ୟ ବ୍ରାହ୍ମଣ ଦେବଶର୍ମାଙ୍କର କନ୍ୟା । ସ୍ୱପ୍ନାଦେଶରେ ଆଦିଷ୍ଟ ହୋଇ ଦେବଶର୍ମା କନ୍ୟା ପଦ୍ମାବତୀକୁ ସାଥିରେ ଧରି ପୁରୁଷୋତ୍ତମ କ୍ଷେତ୍ରକୁ ଯାଇଥିଲେ । କନ୍ୟାକୁ ଦେବଦାସୀ କରିବାର ସଂକଳ୍ପ ନେଇଥିଲେ ଦେବଶର୍ମା । ହେଲେ ଇଚ୍ଛାମୟ ଶ୍ରୀଜଗନ୍ନାଥଙ୍କ ଇଚ୍ଛା ଥିଲା ଅନ୍ୟ ପ୍ରକାରର । ସ୍ୱପ୍ନା ଦେଶରେ ପ୍ରଭୁ ଦେବଶର୍ମାଙ୍କୁ କହିଥିଲେ, ପଦ୍ମାବତୀକୁ ତାଙ୍କ ଭକ୍ତ ଜୟଦେବଙ୍କ ହସ୍ତରେ ସମର୍ପଣ କରିବାକୁ । ପ୍ରଭୁଙ୍କ ଆଦେଶ

ଅନୁସାରେ ଦେବଶର୍ମା ତାଙ୍କ କନ୍ୟାକୁ ଜୟଦେବଙ୍କ ହାତରେ ଅର୍ପଣ କରି ଦେଇଥିଲେ । ଜୟଦେବ ରଚନା କଲେ ଗୀତଗୋବିନ୍ଦ । ତାଙ୍କ ରଚିତ କାନ୍ତ କୋମଳ ପଦାବଳୀକୁ ନୃତ୍ୟ ମାଧ୍ୟମରେ ଜୀବନ୍ତ କରୁଥିଲେ ପଦ୍ମାବତୀ । ଗୀତଗୋବିନ୍ଦରେ ପଦ୍ମାବତୀଙ୍କ ନାମ କେତେକ ସ୍ଥାନରେ କବି ଉଲ୍ଲେଖ କରିଛନ୍ତି -

'ବାଗ୍‌ଦେବତା ଚରିତ୍ର ଚିତ୍ରିତ ଚିତ୍ତ ସଦ୍ମା
ପଦ୍ମାବତୀ-ଚରଣ-ଚାରଣ-ଚକ୍ରବର୍ତ୍ତୀ ।'

ଗୀତଗୋବିନ୍ଦ ରଚନା ସମୟରେ ଏକଦା ରାଧାଙ୍କର ମାନଭଂଜନ ପ୍ରସଙ୍ଗ ବର୍ଣ୍ଣନା କରିବା ସମୟରେ ଦଶମ ସର୍ଗରେ ମହାପ୍ରଭୁ ଶ୍ରୀକୃଷ୍ଣ ନିଜର ଦୋଷ ପାଇଁ ପ୍ରିୟତମା ରାଧାଙ୍କର ପାଦ ତଳେ କ୍ଷମାଭିକ୍ଷା କରିବା ଭାବନାକୁ ଗୀତରେ ପରିପ୍ରକାଶ କରିବାକୁ ଚାହୁଁଥିବା ବେଳେ ଉକ୍ତ ପଦଟି ପୂରଣ କରିବା ପାଇଁ ଜୟଦେବ ସମର୍ଥ ହୋଇନଥିଲେ । ପରେ ଚିନ୍ତାକରି ଲେଖିବେ ବୋଲି ସ୍ଥିର କରି ସେ ସ୍ନାନ କରିବା ଉଦ୍ଦେଶ୍ୟରେ ଚାଲିଗଲେ । ତାଙ୍କ ଅନୁପସ୍ଥିତିରେ ଭଗବାନ ଶ୍ରୀକୃଷ୍ଣ ନିଜେ ଜୟଦେବଙ୍କ ରୂପରେ ଆବିର୍ଭୂତ ହୋଇ ସ୍ନାନ କରିବାକୁ ଯାଇଥିବା ସମୟରେ ପଦଟି ସ୍ମରଣ ହେବାରୁ ଫେରି ଆସିଲି ବୋଲି ପଦ୍ମାଙ୍କୁ କହି ଗୀତଗୋବିନ୍ଦ ପାଣ୍ଡୁଲିପିରେ ଥିବା ଶୂନ୍ୟ ସ୍ଥାନଟିରେ 'ଦେହି ପଦ ବଲ୍ଲବ ମୁଦାରମ' ପଦଟି ଲେଖି ସଂଗେସଂଗେ ଅନ୍ତର୍ଦ୍ଧାନ ହୋଇଗଲେ । ଧନ୍ୟ ସେହି ବିଭୁ ଲୀଳା ! ଭକ୍ତ ଓ ଭଗବାନ ଯେ ଏକ ଏବଂ ଅଭିନ୍ନ ଏଥିରୁ ସ୍ପଷ୍ଟ ପ୍ରତିତ ହୁଏ । ସ୍ନାନ ସାରି ଜୟଦେବ ଫେରିଆସି ଦେଖନ୍ତି ଯେ ଶୂନ୍ୟଥିବା ପଦଟି ପୂରଣ ହୋଇଯାଇଛି । ଯୋଗୀଜନ ଦୁର୍ଲ୍ଲଭ ଭାବଗ୍ରାହୀ ଭଗବାନ ସ୍ୱୟଂ ଶ୍ରୀକୃଷ୍ଣ ଆସି ପଦଟି ଯେ ପୂରଣ କରି ଯାଇଛନ୍ତି ଏଥିରେ ତାଙ୍କୁ ଆଉ କିଛି ଅଛପା ରହିଲା ନାହିଁ ।

ଆଉ ଏକ ଅଲୌକିକ ଘଟଣା ହେଲା ପଦ୍ମାବତୀଙ୍କ ତୁଳସୀ ପତ୍ରରେ ଗୀତଗୋବିନ୍ଦ ଲେଖି ଜଗନ୍ନାଥଙ୍କୁ ସମର୍ପଣ କରିବା ଓ ଜନୈକ ଗ୍ରାମ୍ୟ ଯୁବତୀ ନିଜ ବାଡ଼ିରୁ ବାଇଗଣ ତୋଳୁଥିବା ସମୟରେ ଗୀତଗୋବିନ୍ଦର କେତେକ ପଂକ୍ତି ସୁଲଳିତ ସ୍ୱରରେ ଗାନ କରୁଥିବା ବେଳେ ଶ୍ରୀଜଗନ୍ନାଥ ତାଙ୍କର ପ୍ରିୟ ଗୀତଗୋବିନ୍ଦର ମଧୁର ମୂର୍ଚ୍ଛନାରେ ବିହ୍ୱଳିତ ହୋଇ ଶ୍ରୀମନ୍ଦିର ମଧ୍ୟରୁ ବାହାରି ଆସି ଗୋପନରେ ଉକ୍ତ ଯୁବତୀର ଅନୁଗମନ କରିବା ଓ ପ୍ରଭୁଙ୍କ ଶ୍ରୀଅଂଗରେ ଥିବା ବସ୍ତ୍ରରେ ବାଇଗଣ କଣ୍ଟାଲାଗି ପୂଜା ସମୟରେ ବଡ଼ ପଣ୍ଡାଙ୍କ ନଜର ପଡ଼ିବା ଓ ପରବର୍ତ୍ତୀ ସମୟରେ ସେବକ ରାଜାଙ୍କ ଦୃଷ୍ଟିକୁ ଆଣିବା ଓ ସେହି ଯୁବତୀର ଅନୁସନ୍ଧାନ କରି ମହାପ୍ରଭୁଙ୍କ ନିକଟରେ ଗୀତଗୋବିନ୍ଦ ଗାନ ସେବା କରିବାକୁ ନିଯୁକ୍ତି ଦିଆଯିବା ପ୍ରଭୃତି ଘଟଣା ତତ୍କାଳୀନ ସମୟରେ ଲୋକ ଲୋଚନରୁ ଆସିଥିଲା ।

ଓଡ଼ିଶାର ବିଶିଷ୍ଟ ଐତିହାସିକ, ପ୍ରତ୍ନତତ୍ତ୍ୱବିତ୍, ସାହିତ୍ୟିକ ଓ ଗବେଷକ ସ୍ୱର୍ଗତଃ କେଦାରନାଥ ମହାପାତ୍ରଙ୍କ 'ଶ୍ରୀଜୟଦେବ ଓ ଶ୍ରୀଗୀତଗୋବିନ୍ଦ' ହେଉଛି ଏ ପରିପ୍ରେକ୍ଷୀରେ ଏକ ଉଲ୍ଲେଖନୀୟ ସୃଷ୍ଟି । ଲେଖକ ଏଥିରେ କବି ଜୟଦେବ ଓ ଗୀତଗୋବିନ୍ଦ ସଂକ୍ରାନ୍ତରେ ବିଶଦ ଭାବେ ଆଲୋଚନା କରିବା ସାଙ୍ଗକୁ ଓଡ଼ିଶାର ସାହିତ୍ୟ ଓ କଳା, ଓଡ଼ିଆ ସଂଗୀତ, ବିଭିନ୍ନ କୃଷ୍ଣ କାବ୍ୟ ଓ ଭାରତର ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟ ଓ ସଂଗୀତରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ ପଡ଼ିବା ସଂପର୍କରେ ଆଲୋଚନା କରିଛନ୍ତି ।

ଓଡ଼ିଶାର ଆରାଧ୍ୟ ଠାକୁର ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କଠାରେ ଶ୍ରୀରାଧା କୃଷ୍ଣତ୍ୱ ଆରୋପର ପରମ୍ପରାରୁ କବି ଶ୍ରୀଜଗନ୍ନାଥଙ୍କୁ ଶ୍ରୀରାଧାମାଧବଙ୍କ ଯୁଗ୍ମ ବିଗ୍ରହ ତଥା ଦଶାବତାର ରୂପରେ ଚିନ୍ତାକରି ଏହି ଭାବଧାରାର ପରିପ୍ରକାଶ କରିଛନ୍ତି ସଂସ୍କୃତ ଭାଷାରେ ଗୀତଗୋବିନ୍ଦ ମହାକାବ୍ୟରେ । ମହାପ୍ରଭୁଙ୍କଠାରେ ତାଙ୍କର ଅଚଳା ଭକ୍ତି ଥିଲା ଏବଂ ତାଙ୍କ ସେବାରେ ସେ ନିଜ ଜୀବନ ଉତ୍ସର୍ଗ କରିଥିଲେ । ପାର୍ଥିବ ପ୍ରୀତି ସମ୍ୱଳିତ ରାଧାକୃଷ୍ଣ ପ୍ରଣୟ ଚିତ୍ରର ମାହାତ୍ମ୍ୟ ପ୍ରଖ୍ୟାପନ ପାଇଁ ବାସ୍ତବରେ ଗୀତଗୋବିନ୍ଦ ହେଉଛି ଏକ ସାର୍ଥକ କାବ୍ୟ । କବିଙ୍କ କାବ୍ୟ ମାନସୀ ରାଧା କେବଳ ସୌନ୍ଦର୍ଯ୍ୟର ମୂର୍ତ୍ତି ନୁହନ୍ତି, ସେ ମଧ୍ୟ ପ୍ରେମର ଜୀବନ୍ତ ବିଗ୍ରହ । ବିଦ୍ୱାନ ଓ ପଣ୍ଡିତମାନେ ରାଧାକୃଷ୍ଣଙ୍କର ମିଳନକୁ ଜୀବାତ୍ମା ଓ ପରମାତ୍ମାଙ୍କ ମିଳନ ରୂପେ ଗ୍ରହଣ କରନ୍ତି । ଏକର ଅଭାବରେ ଅନ୍ୟଟିର କଳ୍ପନା କରିବା ଦୁରୂହ ବ୍ୟାପାର । ପ୍ରକୃତି ଓ ପୁରୁଷ ପରସ୍ପରର ପରିପୂରକ । ପ୍ରେମର ପବିତ୍ରତା ପୂର୍ଣ୍ଣ ଆତ୍ମସମର୍ପଣରେ ନିହିତ । ରାଧାଙ୍କ ଅଭାବରେ ଭାରତୀୟ କାବ୍ୟ ମନ୍ଦିରରେ ପ୍ରେମର ପୂଜାବେଦୀ ହୁଏତ ଶୂନ୍ୟ ହୋଇ ରହିଥାନ୍ତା । ସେହି ରାଧାକୃଷ୍ଣ ଯଥାକ୍ରମେ ପୁରୁଷ ଓ ପ୍ରକୃତି ଏହାକୁ ଉପଜୀବ୍ୟ କରି ଗୀତଗୋବିନ୍ଦ ରଚିତ । ଯୁଗ ଯୁଗ ଧରି ଏହାର କାନ୍ତ କୋମଳ ପଦାବଳୀ ପ୍ରେମିକ କବି କୁଳ ପାଇଁ ଅପାର୍ଥିବ ପ୍ରେମ ସାଧନାର ଦିଗ୍‌ଦର୍ଶନ ଦେଇ ଆସୁଥିବାବେଳେ ଏହାର ସ୍ରଷ୍ଟା ଜୟଦେବ ମଧ୍ୟ ଏତାଦୃଶ ଅମର କୃତି ପାଇଁ ପ୍ରାତଃ ସ୍ମରଣୀୟ ହୋଇ ରହିଥିବେ ।

ଏମ୍.ଆଇ.ଜି.: ୱାନ୍-୪୨/୧
ଚନ୍ଦ୍ରଶେଖରପୁର ହାଉସିଂ ବୋର୍ଡ଼ କଲୋନୀ
ଭୁବନେଶ୍ୱର-୧୬

# ଶ୍ରୀକୂର୍ମରେ ଗୀତଗୋବିନ୍ଦ ରଚୟିତା

ଇଂ ନିରାକାର ମହାଳିକ

ପ୍ରାଚୀନ କାଳରେ ଓଡ଼ିଶାରେ କଳା, ସାହିତ୍ୟ, ସଂସ୍କୃତି, ସ୍ଥାପତ୍ୟ, ନୌବାଣିଜ୍ୟ ଓ ସାମରିକ କଳାରେ ଯେଉଁ ଉତ୍କର୍ଷ ସାଧିତ ହୋଇଥିଲା, ତା'ର ମୂଳରେ ଥିଲା ସଂସ୍କୃତ ସାହିତ୍ୟ । ସମଗ୍ର ଜମ୍ବୁଦ୍ୱୀପ ତଥା ଭାରତର ପ୍ରତ୍ୟେକ ପ୍ରାନ୍ତରରେ ସଂସ୍କୃତର ବିଦ୍ୱାନମାନେ ଉପଯୁକ୍ତ ସମ୍ମାନର ଅଧିକାରୀ ହୋଇଆସିଅଛନ୍ତି । ଏହି ବିଦ୍ୱାନମାନେ କାବ୍ୟ, କବିତା ଆଦି ରଚନା କରି ସଂସ୍କୃତ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି । ଏହି ସାହିତ୍ୟକୁ ଓଡ଼ିଶାର ଅବଦାନ କିଛି କମ୍ ନୁହେଁ । କୌଣସି ଲେଖକ ଓ କବିଙ୍କର ସାହିତ୍ୟକୃତି କୌଣସି ନିର୍ଦ୍ଦିଷ୍ଟ ସୀମା ସରହଦ ମଧ୍ୟରେ ଆବଦ୍ଧ ହୋଇ ରହିପାରେନା । ପାଶ୍ଚାତ୍ୟ ଗବେଷକ ଡଃ ଅଉରେଲ୍ ଷ୍ଟେଇନ ଲେଖିଛନ୍ତି ଯେ, ସେ ବିଗତ ଶତାବ୍ଦୀରେ ଜାମ୍ମୁ-କାଶ୍ମୀର ରାଜ୍ୟର ଜାମ୍ମୁଠାରେ ଥିବା ସଂସ୍କୃତ ଗ୍ରନ୍ଥାଗାରରୁ 'ସାହିତ୍ୟ ଦର୍ପଣ'ର ଏକ ପୂର୍ଣ୍ଣାଙ୍ଗ ପାଣ୍ଡୁଲିପି ପାଇଥିଲେ । ସେ ପାଣ୍ଡୁଲିପିଟି ତ୍ରୟୋଦଶ ଶତାବ୍ଦୀରୁ ଅଷ୍ଟାଦଶ ଶତାବ୍ଦୀ ମଧ୍ୟରେ ଓଡ଼ିଶାର ବିଶ୍ୱନାଥ କବିରାଜଙ୍କଦ୍ୱାରା ଲିଖିତ । ଏହାକିଛି କମ୍ ଗୌରବର କଥା ନୁହେଁ । ସଂସ୍କୃତ ସାହିତ୍ୟକୁ ଓଡ଼ିଶାର ଅବଦାନ - ଏହା ଏକ ଅନନ୍ୟ ଉଦାହରଣ । ଓଡ଼ିଶାରେ ଏ ଭଳି ପରମ୍ପରା ଯଦି ଅନୁସୃତ ହୋଇନଥାନ୍ତା, ମହାକବି ସାଧୁ ପ୍ରଧାନ ଜୟଦେବ ଅମୃତରସ ଶାଣିତ ସଂସ୍କୃତ କାବ୍ୟ 'ଗୀତଗୋବିନ୍ଦ' ରଚନା କରିପାରିନଥାନ୍ତେ । ତାଙ୍କର କୃତି 'ଶ୍ରୀଗୀତଗୋବିନ୍ଦ' ଭାରତୀୟ ସଂସ୍କୃତ ସାହିତ୍ୟ ଭଣ୍ଡାରରେ ଏକ ଅମୂଲ୍ୟ ରତ୍ନ ।

ଦ୍ୱାଦଶ ଶତାବ୍ଦୀରେ ସାଧୁପ୍ରଧାନ ଜୟଦେବ ପୁରୀ ଜିଲ୍ଲାର ପୁଣ୍ୟତୋୟା ପ୍ରାଚୀନଦୀ କୂଳରେ ଥିବା କେନ୍ଦୁଲୀ ଗ୍ରାମରେ ମାତା ବାମାଦେବୀ ଓ ପିତା ଭୋଜଦେବଙ୍କ ଔରସରୁ ଜନ୍ମଲାଭ କରିଥିଲେ । ତାଙ୍କ ବାଲ୍ୟସାଥୀ ପରାଶରଙ୍କ ସଙ୍ଗେ ପ୍ରାଚୀନଦୀ କୂଳେ ଭ୍ରମଣ ଓ ସାଙ୍ଗ ହୋଇ ପାଠପଢ଼ିବାରେ ଅବହେଳା କରୁନଥିଲେ । ସେ ପ୍ରାଚୀ କୂଳରେ ଥିବା ମାଧବଙ୍କୁ ସ୍ମରଣ କରି ସବୁକାର୍ଯ୍ୟ କରୁଥିଲେ । ଥରେ ଥରେ ମାଧବଙ୍କୁ ସ୍ମରଣ କରୁ କରୁ ସଂଜ୍ଞାହୀନ ହୋଇପଡୁଥିଲେ । ମାତ୍ର ୧୧ ବର୍ଷ ବୟସରେ ସେ ପିତୃମାତୃ ହରା ହୋଇପଡ଼ିଥିଲେ । ବାଲ୍ୟାବସ୍ଥାରେ ସେ ସଂସ୍କୃତ ଭାଷାରେ ସାହିତ୍ୟ, କାବ୍ୟ, ଜ୍ୟୋତିଷ ଆଦି ଶିକ୍ଷା କରିଥିଲେ । ତାଙ୍କ ପିତା ଗ୍ରାମର ଜଣେ ମହାଜନଙ୍କଠାରୁ ଋଣ ଆଣିଥିଲେ । ଜୟଦେବ ପିତାଙ୍କ ମୃତ୍ୟୁପରେ ସେ ଋଣ ସୁଝି ନ ପାରି ଜଣେ ସାଧୁ ସନ୍ନ୍ୟାସୀଙ୍କ ସଙ୍ଗେ ଯାଇ ପୁରୁଷୋତ୍ତମରେ ଅବସ୍ଥାନ କଲେ । ସେଠାରୁ ସେ କେତେକ ସାଧୁ-ସନ୍ନ୍ୟାସୀଙ୍କ ସଙ୍ଗେ କଳିଙ୍ଗର ତତ୍କାଳୀନ ପ୍ରସିଦ୍ଧ ବୈଷ୍ଣବ ପୀଠ ଶ୍ରୀକୂର୍ମକୁ ଚାଲିଯାଇଥିଲେ । ସେଠାରେ ସେ ସଂସ୍କୃତ ଶିକ୍ଷା ସହ ସଙ୍ଗୀତ ଓ ନୃତ୍ୟ ଶିକ୍ଷା କରିଥିଲେ । ତାଙ୍କର ଜଣେ ଶିଷ୍ୟା ପଦ୍ମାବତୀ ତାଙ୍କଠାରୁ ଶିକ୍ଷା ଗ୍ରହଣ କରି ଶ୍ରୀକୂର୍ମ ଓ ସିଂହାଚଳ ମନ୍ଦିରମାନଙ୍କରେ ନୃତ୍ୟ ପରିବେଷଣ କରୁଥିଲେ । ସାଧୁ ପ୍ରଧାନ ଜୟଦେବଙ୍କ ଉପସ୍ଥିତିରେ ଲିଙ୍ଗରାଜ ମନ୍ଦିରରେ ତାଙ୍କ ଶିଷ୍ୟା ପଦ୍ମାବତୀଙ୍କର ଅଖଣ୍ଡ ଦୀପଦାନ ଶ୍ରୀଲିଙ୍ଗରାଜ ମନ୍ଦିରର ଏକ ଶିଳାଲେଖରେ ଉତ୍କୀର୍ଣ୍ଣ ହେବା - ଏକ ଉଲ୍ଲେଖନୀୟ ଘଟଣା ।[୧] ସମ୍ଭବତଃ ସେ ଶିଷ୍ୟାଙ୍କ ସଙ୍ଗେ ପ୍ରଭୁ ଲିଙ୍ଗରାଜଙ୍କ ଦର୍ଶନ ପାଇଁ ଆସିଥିବା ସମୟର ଘଟଣା ।

ଗଙ୍ଗରାଜାମାନଙ୍କ ରାଜତ୍ୱ କାଳରେ ପ୍ରସିଦ୍ଧ ବୈଷ୍ଣବ କ୍ଷେତ୍ର ଶ୍ରୀକୂର୍ମରେ ବୈଷ୍ଣବ ସାଧୁମାନଙ୍କ ସମାବେଶ ହେତୁ ଏହା ଏକ ବିଶିଷ୍ଟ ଧର୍ମକ୍ଷେତ୍ରରେ ପରିଣତ ହୋଇଥିଲା । ଶ୍ରୀଜୟଦେବ ଶ୍ରୀକୂର୍ମଠାରେ ବିଶିଷ୍ଟ ବୈଷ୍ଣବସାଧୁ ନିମ୍ବାର୍କଙ୍କଠାରୁ ଦୀକ୍ଷାଗ୍ରହଣ କରିଥିଲେ ।[୨] ନିମ୍ବାର୍କ ରାମାନୁଜଙ୍କ ପରବର୍ତ୍ତୀ ଗୁରୁରୂପେ ବୈଷ୍ଣବ ସମାଜରେ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲେ । ସେ ପୁରୀକୁ ଆସି ସିଂହଦ୍ୱାରର ପୂର୍ବଦିଗ ଦୋଳମଣ୍ଡପ ସାହିରେ ଥିବା ରାଧାବଲ୍ଲଭ ମଠ ପ୍ରତିଷ୍ଠା କରିଥିଲେ । ସେହି ସମୟରେ ପରମ ବୈଷ୍ଣବ ଜୟଦେବ ଗୋସ୍ୱାମୀ ସନ୍ନ୍ୟାସବ୍ରତ ଅବଲମ୍ବନ ପୂର୍ବକ ଏହି ମଠର ବିଜେସ୍ଥଳୀଠାରେ ଏକ ପର୍ଣ୍ଣକୁଟୀର ନିର୍ମାଣ କରି

ସେଠାରେ ବାସ କରୁଥିଲେ । ଜୟଦେବଙ୍କ ଶିଷ୍ୟା ପଦ୍ମାବତୀଙ୍କ ପିତା ଦାକ୍ଷିଣାତ୍ୟର ଜନୈକ ବିପ୍ର ଦେବଶର୍ମା ଶ୍ରୀଜଗନ୍ନାଥଙ୍କ ବରପ୍ରସାଦରୁ ତାଙ୍କର ପ୍ରଥମ କନ୍ୟାକୁ ଲାଭ କରିଥିଲେ । ବିପ୍ର ଦେବଶର୍ମା ମହାପ୍ରଭୁଙ୍କ ନିକଟରେ ଅଙ୍ଗୀକୃତ ଶପଥ ଅନୁଯାୟୀ ତାଙ୍କ କନ୍ୟା ପଦ୍ମାବତୀକୁ ଶ୍ରୀକ୍ଷେତ୍ର ଆଣି ତାଙ୍କର ସେବା ପାଇଁ ଉତ୍ସର୍ଗ କରିଥିଲେ । କିନ୍ତୁ ସେ ମହାପ୍ରଭୁଙ୍କର ସ୍ୱପ୍ନାବିଷ୍ଟ ହୋଇ ତାଙ୍କର ପ୍ରିୟଭକ୍ତ ଜୟଦେବଙ୍କ ହସ୍ତରେ ସୁକନ୍ୟାଙ୍କୁ ଅର୍ପଣ କରିବାକୁ ଆଦେଶ ହେଲା । ସନ୍ନ୍ୟାସୀ ଜୟଦେବ ପ୍ରଥମେ ବିବାହ ଫାଶରେ ଆବଦ୍ଧ ହେବା ପାଇଁ ଅନିଚ୍ଛା ପ୍ରକାଶ କରିଥିଲେ ମଧ ପରେ ମହାପ୍ରଭୁଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ପଦ୍ମାବତୀଙ୍କ ପାଣିଗ୍ରହଣ କରିଥିଲେ । ଉକ୍ତ ଦମ୍ପତି ଏକ ପ୍ରାଣରେ ସଂଗୀତ ଓ ନୃତ୍ୟ ଦ୍ୱାରା ରାଧାବଲ୍ଲଭଙ୍କ ପୂଜାର୍ଚ୍ଚନାରେ କାଳାତିପାତ କଲେ ଏବଂ ବିବାହ ପରେ କିଛି ଦିନ ସ୍ୱ-ଗ୍ରାମରେ ଅବସ୍ଥାନ କରିଥିଲେ ।

ଐତିହାସିକ କେଦାରନାଥ ମହାପାତ୍ର ଲେଖିଛନ୍ତି ଯେ, ଜୟଦେବଙ୍କୁ ବିବାହ କରିବା ପୂର୍ବରୁ ପଦ୍ମାବତୀ ଜଣେ ନୃତ୍ୟ ପଟ୍ଟୟସୀ ମହିଳା ଥିଲେ । ଦାକ୍ଷିଣାତ୍ୟର ତିନୋଟି ମନ୍ଦିରରେ ପଦ୍ମାବତୀଙ୍କ ନାମ ନୃତ୍ୟାଙ୍ଗନା ଭାବେ ଶିଳାଲେଖରେ ଉଲ୍ଲେଖ ଅଛି । ଜୟଦେବ ମଧ କଳିଙ୍ଗର କୂର୍ମପାଟକରେ ଥିବା ସଂଗୀତ, ନୃତ୍ୟ ଓ ଶାସ୍ତ୍ରୀୟ କଳା ବିଦ୍ୟାଳୟରେ ଅଧକ୍ଷ ଥିବାର ପ୍ରମାଣ ମନ୍ଦିର ଶିଳାଲେଖରେ ମିଳୁଛି ।[୩]

ଶ୍ରୀକ୍ଷେତ୍ର ପୁରୀଠାରେ ସେହି କୁଟୀରରେ ରହି ଜୟଦେବ ସ୍ୱୀୟ ପରମାରାଧ ଶ୍ରୀଜଗନ୍ନାଥଙ୍କ ସନ୍ତୋଷ ବିଧାନ ନିମିତ୍ତ ଶ୍ରୀଗୀତଗୋବିନ୍ଦ ରଚନା ଆରମ୍ଭ କରିଥିଲେ । ପ୍ରତିଦିନ ଗୀତଗୋବିନ୍ଦର ଯେଉଁ ପଦଗୁଡ଼ିକ ସେ ରଚନା କରନ୍ତି, ତାକୁ ମନ୍ଦିର ମଧରେ ଭକ୍ତି ବିହ୍ୱଳ କଣ୍ଠରେ ଗାନ କରନ୍ତି । ଜୟଦେବ ସେହି ପଦଗୁଡ଼ିକ ଗାନ କରିବା ସମୟରେ ପତ୍ନୀ ପଦ୍ମାବତୀ ଗୀତର ତାଳେ ତାଳେ ନୃତ୍ୟ ପ୍ରଦର୍ଶନ କରିଥାନ୍ତି । ଜୟଦେବ ତାଙ୍କ ରଚିତ 'ଗୀତଗୋବିନ୍ଦ'ର

'ସ୍ମର ଗରଳ ଖଣ୍ଡନଂ ମମଶିରସି ମଣ୍ଡନଂ ।'

ଲେଖିସାରିଲା ପରେ ସଂଶୟାପନ୍ନ ହୋଇ ଉପଯୁକ୍ତ ଶବ୍ଦ ବିନ୍ୟାସ ଦ୍ୱାରା ପଦ ପୂରଣ କରିବାକୁ ଅସମର୍ଥ ହେବାରୁ ପ୍ରଭୁ ଶ୍ରୀକୃଷ୍ଣ ନିଜେ ଜୟଦେବଙ୍କ ଅନୁପସ୍ଥିତିରେ ଜୟଦେବଙ୍କ ବେଶରେ ଆସି ତାଙ୍କ ପର୍ଣ୍ଣକୁଟୀରରେ ପ୍ରବେଶ ପୂର୍ବକ ତାଳପତ୍ର ପାଣ୍ଡୁଲିପିର ସେହି ପଦତଳେ 'ଦେହି ପଦ ପଲ୍ଲବ ମୁଦାରମ୍' ଲେଖି ଦେଇ ଅନ୍ତର୍ହିତ ହୋଇଗଲେ । ସ୍ନାନସାରି ଜୟଦେବ ଆସି ଉପଯୁକ୍ତ ପଦପୂରଣ ହୋଇଥିବା ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଶ୍ରୀକୃଷ୍ଣ ତାଙ୍କୁ ରାତ୍ରି ଶେଷରେ ସ୍ୱପ୍ନରେ ସମସ୍ତ ବିଷୟ ଜଣାଇ ଦେଲେ । ସ୍ୱଚକ୍ଷୁରେ ପତ୍ନୀ ପଦ୍ମାବତୀ ଶ୍ରୀକୃଷ୍ଣଙ୍କ ଦର୍ଶନ ଲାଭ କରି ପରମ ସୌଭାଗ୍ୟବତୀ ହୋଇଥିବାରୁ ତାଙ୍କ ପ୍ରତି ଜୟଦେବଙ୍କର ଶ୍ରଦ୍ଧା ଓ ଭକ୍ତି ବିଶେଷ ଭାବେ ବୃଦ୍ଧି ପାଇଥିଲା । 'ଗୀତଗୋବିନ୍ଦ'ର ରଚନା ସମାପ୍ତ ହେବା ପରେ ଜୟଦେବ ଏହାକୁ ଶ୍ରୀଜଗନ୍ନାଥଙ୍କୁ ନୈବେଦ୍ୟ ରୂପେ ଅର୍ପଣ କରି ନିଜ ଜୀବନକୁ ଧନ୍ୟ ମଣିଥିଲେ । ବଡ଼ସିଂହାର ପରେ ଶ୍ରୀମନ୍ଦିରରେ ଗଙ୍ଗବଂଶୀୟ ରାଜା ଚୋଡ଼ଗଙ୍ଗ ଦେବଙ୍କ ଦ୍ୱିତୀୟ ପୁତ୍ର ରାଘବ ଦେବ (୧୧୫୬-୧୧୭୦) ଏହାର ପାଠ ଆରମ୍ଭ କରିଥିଲେ ଏବଂ ଜୟଦେବଙ୍କୁ ତାଙ୍କ ରାଜସଭାରେ ସ୍ଥାନ ଦେଇଥିଲେ । କିନ୍ତୁ 'ଗୀତଗୋବିନ୍ଦ'ର ଧାରାବାହିକ ଭାବେ ଶ୍ରୀମନ୍ଦିରରେ ପ୍ରତ୍ୟହ ପାଠ କବି ନରସିଂହ ଦେବଙ୍କ (ଖ୍ରୀ:୧୨୭୮ରୁ ଖ୍ରୀ:୧୩୦୬) ଠାରୁ ଆରମ୍ଭ ହୋଇଥିବାର ଜଣାଯାଏ ।

ଐତିହାସିକ ସତ୍ୟନାରାୟଣ ରାଜଗୁରୁ ଲେଖିଛନ୍ତି, 'ମହାକବି ଜୟଦେବଙ୍କ ଲେଖନୀ ସମ୍ଭୂତ ପ୍ରସିଦ୍ଧ 'ଗୀତଗୋବିନ୍ଦ' ସମ୍ଭବତଃ ସେହି ଶ୍ରୀ ବୈଷ୍ଣବ କ୍ଷେତ୍ରର ଶ୍ରୀକୂର୍ମର ସିନ୍ଧୁକୂଳରେ ରଚିତ ହୋଇଥିବା ଅନୁମିତ ହୁଏ । କାରଣ ତାଙ୍କ ପୂର୍ବରୁ ବିଲ୍ୱମଙ୍ଗଳ ଯେଉଁ ଭାଷା ଓ ସାହିତ୍ୟ ସୃଷ୍ଟି କରି ସାହିତ୍ୟ ସମାଜକୁ ଅଭିଭୂତ କରିଥିଲେ ସେହି କୃଷ୍ଣ କରୁଣାମୃତ କାବ୍ୟ ଜୟଦେବଙ୍କର 'ଗୀତଗୋବିନ୍ଦ'ର ପଥ ପ୍ରଦର୍ଶକ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।[୪]

ଦଶାବତାରୀ ଶ୍ରୀକୃଷ୍ଣ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ପ୍ରଣୀତ 'ଗୀତଗୋବିନ୍ଦ' ମହାକାବ୍ୟର ଦ୍ୱାଦଶ ସର୍ଗ ମଧରେ ଏଗାର ଗୋଟି ବିଭିନ୍ନ ରାଗର ଚବିଶଟି ସଂଗୀତ ଅଛି । ମହାକବି ଜୟଦେବ ବଳରାମ ଓ ବୁଦ୍ଧଙ୍କୁ ଦଶାବତାର ମଧରେ ନେଇ ଶ୍ରୀକୃଷ୍ଣଙ୍କୁ ଅବତାରୀ ରୂପେ ପ୍ରାର୍ଥନା କରିଛନ୍ତି । 'ଗୀତଗୋବିନ୍ଦ'ର ପ୍ରଥମ ଟୀକା 'ଭାବବିଭାବିନୀ'ର ପ୍ରଣେତା ହେଉଛନ୍ତି ଉତ୍କଳୀୟ ପଣ୍ଡିତ ଉଦୟନାଚାର୍ଯ୍ୟ । ତା'ପରେ ପରେ କବିରାଜ ନାରାୟଣ ଦାସ, ଲକ୍ଷ୍ମଣ ସୁରୀ, ଧନଞ୍ଜୟ ଦ୍ୱିଜ, ଲକ୍ଷ୍ମଣ ଭଟ୍ଟଙ୍କ ଭଳି ଉତ୍କଳୀୟ ପଣ୍ଡିତମାନେ ସଂସ୍କୃତରେ ଟୀକା ଲେଖିଛନ୍ତି । ଗୀତଗୋବିନ୍ଦ ଅବଲମ୍ବନରେ ବୃନ୍ଦାବନ ଦାସ, ଧରଣୀ ଧର, ଦୀନକୃଷ୍ଣ ଦାସ, ଉଦ୍ଧବ ଦାସ, ଜଗନ୍ନାଥ ମିଶ୍ର, ବଜରୀ ଦାସ, ବାସୁଦେବ ମିଶ୍ର, ପିଣ୍ଡିକ ଶ୍ରୀଚନ୍ଦନ, ଗୋପୀନାଥ ଧୀର, ଶ୍ୟାମସୁନ୍ଦର ଭଞ୍ଜ, ଗୌରହରି ପରିଚ୍ଛା, ପଟିଆରାଜା ଦିବ୍ୟସିଂହ ଦେବ ପ୍ରଭୃତି ବହୁ

ଉତ୍କଳୀୟ କବି ସ୍ୱତନ୍ତ୍ର ଟୀକା ରଚନା କରିଛନ୍ତି ।[৫] ଗୀତଗୋବିନ୍ଦ ଅନୁକରଣରେ କବିଚନ୍ଦ୍ର ରାୟ ଦିବାକର ମିଶ୍ର 'ଅଭିନବ ଗୀତଗୋବିନ୍ଦ' ରଚନା କରି ଗଜପତି ପୁରୁଷୋତ୍ତମ ଦେବଙ୍କ (ଖ୍ରୀ:୧୪୬୭-ଖ୍ରୀ:୧୪୯୭) ନାମରେ ଭଣିତା କରିଛନ୍ତି ।

ଦୋଳମଣ୍ଡପ ସାହିସ୍ଥିତ ରାଧାବଲ୍ଲଭ ମଠରେ କେତେକ ପ୍ରାଚୀନ ତାଳପତ୍ର ପୋଥି ମଧ୍ୟରେ 'ଗୀତଗୋବିନ୍ଦ', ଭାଗବତ ପ୍ରଭୃତି ଅଦ୍ୟାପି ବିଦ୍ୟମାନ । ଏହା ଏକ ପ୍ରାଚୀନ ମଠ । ପରମ୍ପରା ଅନୁସାରେ ଏହି ମଠର ନୂତନ ମହନ୍ତମାନେ ଗାଦିସୀନ ହେବା ସମୟରେ 'ମହନ୍ତାଇ ଶାଢ଼ୀ ବନ୍ଧା' ଉତ୍ସବ ପାଳିତ ହୁଏ । ସେଥିରେ ଚାରି ସମ୍ପ୍ରଦାୟ ମଧ୍ୟରେ ନିମ୍ବାର୍କ, ରାମାନୁଜ, ଗୌଡୀୟ ଓ ରାମାନନ୍ଦୀ ସଂପ୍ରଦାୟର ମଠାଧୀଶମାନେ ଉପସ୍ଥିତ ରହିଥାନ୍ତି । ଶ୍ରୀମନ୍ଦିରର ସ୍ୱତ୍ୱ ଲିପି ଅନୁଯାୟୀ ରାଧାବଲ୍ଲଭ ମଠ ମହନ୍ତଙ୍କର ଶ୍ରୀମନ୍ଦିରରେ ଉପଚାର ଓ ଆଲଟ ସେବା କରିବାର ଅଧିକାର ରହିଛି । ଏ ସେବା କରି ମଠ ମଶାଲ ପାଆନ୍ତି ।[୬] ମହାକବି ଜୟଦେବ ଏହି ମଠସ୍ଥଳୀରେ ଅବସ୍ଥାନ କରୁଥିବାରୁ ଏହା ଏକ ପବିତ୍ର ପୁଣ୍ୟସ୍ଥଳୀ ରୂପେ ବିବେଚିତ ହୁଏ ।

ଜୟଦେବ ଉତ୍କଳୀୟ ସଂସ୍କୃତିକୁ ବହୁ ଭାବରେ ପ୍ରଭାବିତ କରି ଉତ୍କଳୀୟ କବି ମଣ୍ଡଳୀର ମଉଡ଼ମଣୀ ରୂପେ ପ୍ରତ୍ୟେକ ଓଡ଼ିଆର ହୃଦୟ ସିଂହାସନରେ ବିରାଜମାନ କରୁଛନ୍ତି । ସେଥିପାଇଁ 'ଚୈତନ୍ୟ ଚରିତାମୃତ'ରେ ଲେଖାଅଛି ।

'ଜୟଦେବ ବିଦ୍ୟାପତି ରାୟେର ନାଟକ ଗୀତି
କର୍ଣ୍ଣାମୃତ ଶ୍ରୀଗୀତଗୋବିନ୍ଦ
ମହାପ୍ରଭୁ ରାତ୍ରି ଦିନେ ସ୍ୱରୂପ ନିତ୍ୟାନନ୍ଦ ସନେ
ଗାୟ ଶୁନେ ପରମ ଆନନ୍ଦେ ।'

**ପାଦଟୀକା**

୧. ଓଡ଼ିଶାର ସାଂସ୍କୃତିକ ଇତିହାସ - ୪ର୍ଥ ଖଣ୍ଡ - ଡଃ ସତ୍ୟନାରାୟଣ ରାଜଗୁରୁ
୨. OHRJ. vol-III, No.-1, page-20
୩. କବି ଜୟଦେବ - ସ୍ୱର୍ଗତଃ କେଦାରନାଥ ମହାପାତ୍ର, ଉତ୍କଳ ପ୍ରସଙ୍ଗ, ମଇ-୨୦୦୫
୪. ଓଡ଼ିଶାର ସାଂସ୍କୃତିକ ଇତିହାସ - ୪ର୍ଥ ଖଣ୍ଡ - ଡଃ ସତ୍ୟନାରାୟଣ ରାଜଗୁରୁ
୫. କବି ଜୟଦେବ - ଶ୍ରୀ ନୀଳମଣି ମିଶ୍ର, ଉତ୍କଳ ପ୍ରସଙ୍ଗ
୬. ପୁରୀର ମଠ ସଂସ୍କୃତି - ଭାସ୍କର ମିଶ୍ର

ଏନ୍-୧/୮୨,
ଆଇ.ଆର୍.ସି. ଭିଲେଜ, ଭୁବନେଶ୍ୱର-୧୫



# ଶ୍ରୀମନ୍ଦିରରେ ଦେବଦାସୀ ପ୍ରଥା ଓ ଶ୍ରୀଗୀତଗୋବିନ୍ଦ ସେବାର ପ୍ରଚଳନ

ଡାଃ ମିନତି ମହାରଣା

**ଉ**ତ୍କଳୀୟ ସଂସ୍କୃତିର ଆରାଧ୍ୟ ଦେବତା, ଓଡ଼ିଆ ଜାତିର ଆଧ୍ୟାତ୍ମ ପ୍ରାଣକେନ୍ଦ୍ର ତଥା ପବିତ୍ରତମ ପୀଠସ୍ଥଳୀ ଶ୍ରୀକ୍ଷେତ୍ର ଧାମ ପୁରୀର ଅଧୀଶ୍ୱର ଜଗତର ନାଥ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ନିତ୍ୟ ନିବାସସ୍ଥଳ ମର୍ତ୍ତ୍ୟ ବୈକୁଣ୍ଠ ଶ୍ରୀକ୍ଷେତ୍ର ପୁରୀସ୍ଥିତ ଶ୍ରୀମନ୍ଦିର କାହିଁ କେଉଁ ଅନାଦି କାଳରୁ ଅଗଣିତ ଭକ୍ତ ଜନଗଣଙ୍କୁ ଆକୃଷ୍ଟ କରିଆସିଛି । ଶ୍ରୀମନ୍ଦିରର ସମସ୍ତ ରୀତିନୀତି, ପୂଜାପଦ୍ଧତି ଯେପରି ଏକ ସୁବ୍ୟବସ୍ଥିତ ଓ ଶୃଙ୍ଖଳିତ ଢଙ୍ଗରେ ପ୍ରଥା ଓ ପରମ୍ପରାକ୍ରମ ଅନୁସୃତ ହୋଇଆସୁଛି, ସେପରି ଦୃଷ୍ଟାନ୍ତ ଯେକୌଣସି ଆଧ୍ୟାତ୍ମିକ ପୀଠରେ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ଶ୍ରୀମନ୍ଦିରର ଅନେକ ପ୍ରଥା ମଧ୍ୟରୁ ଦେବଦାସୀ ପ୍ରଥାର ଐତିହାସିକ ଗୁରୁତ୍ୱ ରହିଛି । ସେହିପରି ନିତ୍ୟ ଶ୍ରୀଗୀତଗୋବିନ୍ଦ ଗାନ ସେବାର ପ୍ରଚଳନର ପରମ୍ପରା ମଧ୍ୟ ନିଜସ୍ୱ ଏକ ସ୍ୱତନ୍ତ୍ର ପ୍ରସଙ୍ଗ ଉତ୍‌ଥାପନ କରେ ।

ଶ୍ରୀମନ୍ଦିରର ଦେବଦାସୀ ପ୍ରଥା ବହୁ ପ୍ରାଚୀନ ଓ ପରମ୍ପରାର ଅଂଶବିଶେଷ । ଆଜି ଯେଉଁ ଓଡ଼ିଶୀ ନୃତ୍ୟ ଶାସ୍ତ୍ରୀୟ ନୃତ୍ୟର ମାନ୍ୟତା ଲାଭ କରିଛି, ତାହା ଏହି ଦେବଦାସୀ ବା ମାହାରୀ ନୃତ୍ୟରୁ ସଂଭୂତ । ଶ୍ରୀକ୍ଷେତ୍ରରେ ଶ୍ରୀମନ୍ଦିରରେ ଦେବଦାସୀ ନିଯୁକ୍ତିକୁ କିଛି ସଂକୀର୍ଣ୍ଣମନା ବ୍ୟକ୍ତି କଳଙ୍କିତ ପ୍ରଥା ଓ କୁସଂସ୍କାର ବୋଲି କହିଥାନ୍ତି ଏବଂ ଆଉ କେତେ ବ୍ୟକ୍ତି ଏହାକୁ ଶ୍ରୀମନ୍ଦିରର ଏକ ଗୌରବମୟ ପରମ୍ପରା ବୋଲି ସ୍ୱୀକାର କରିଛନ୍ତି । ତେବେ ବାସ୍ତବ ପକ୍ଷରେ ଶ୍ରୀମନ୍ଦିରରେ ୩୬ ପ୍ରକାର ସେବାୟତମାନଙ୍କ ମଧ୍ୟରୁ ଦେବଦାସୀ ସେବାକୁ ଏକ ସେବା ଭାବରେ ଆଇନଗତ, ଧାର୍ମିକ ତଥା ସାଂସ୍କୃତିକ ଧାରାର ଅବିଚ୍ଛେଦ୍ୟ ଅଂଗ ଭାବରେ ଗ୍ରହଣ କରାଯାଇଛି ।

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରରେ ପ୍ରତ୍ୟହ ଦେବଦାସୀଙ୍କ ଦ୍ୱାରା ଶ୍ରୀଗୀତଗୋବିନ୍ଦ ଗାନ ସେବା ପ୍ରଚଳନର ପ୍ରଥା ରହିଆସିଛି । ତେବେ ଏହି ପ୍ରଥା କେବେ ଆରମ୍ଭ ହେଲା ତାହା ଶ୍ରୀମନ୍ଦିର ଇତିହାସର ବିଷୟବସ୍ତୁ ଅଟେ । ଐତିହାସିକ ପର୍ଯ୍ୟବେକ୍ଷଣରୁ ଏହି ସଂକ୍ରାନ୍ତରେ ଜଣାଯାଏ ଯେ, ସୋମବଂଶୀୟ ପ୍ରସିଦ୍ଧ ନରପତି ଉଦ୍ୟୋତ କେଶରୀଙ୍କ ବିଧବା ମାତା କୋଳାବତୀ ତାଙ୍କ ରାଜତ୍ୱର ଅଷ୍ଟାଦଶ ସମ୍ବତ୍ସର (୧୦୫୩ ଖ୍ରୀଷ୍ଟାବ୍ଦ)ରେ ବ୍ରହ୍ମେଶ୍ୱର ମନ୍ଦିର ନିର୍ମାଣ କରି ସେଠାରେ ନୃତ୍ୟଗୀତ ପାଇଁ ସଙ୍ଗୀତ ପ୍ରବୀଣା ସୁନ୍ଦରୀ ସ୍ତ୍ରୀମାନଙ୍କୁ ନିଯୁକ୍ତ କରିଥିଲେ । ଏହି ସତ୍ୟ ଭୁବନେଶ୍ୱରସ୍ଥ ପ୍ରସିଦ୍ଧ ବ୍ରହ୍ମେଶ୍ୱର ମନ୍ଦିରରେ ଖଚିତ ଶିଳାଲେଖ (ବର୍ତ୍ତମାନ ଲୁପ୍ତ)ରୁ ଜଣାଯାଏ । ପ୍ରାଚୀ କୂଳବର୍ତ୍ତୀ ନିଆଳି ଶାସନର ଶୋଭନେଶ୍ୱର ମନ୍ଦିର (ପ୍ରାୟ ୧୦୭୦ ଖ୍ରୀଷ୍ଟାବ୍ଦ) ଏବଂ ଏକାମ୍ର କ୍ଷେତ୍ର (ଭୁବନେଶ୍ୱରସ୍ଥ) ମେଘେଶ୍ୱର ମନ୍ଦିରରେ ଦୁଇ ମନ୍ଦିରର ନିର୍ମାତା ଯଥା- ବ୍ରାହ୍ମଣ ବଂଶୀୟ ସାମନ୍ତ ରାଜା ବୈଦ୍ୟନାଥ ଏବଂ ଗଙ୍ଗବଂଶୀୟ ସମ୍ରାଟ ରାଜ ରାଜ ଦେବଙ୍କ ଶାଳକ ସ୍ୱପ୍ନେଶ୍ୱର ଦେବଙ୍କ ଦ୍ୱାରା ରୂପ ଯୌବନ-ସମ୍ପନ୍ନା ନାନା ଭୂଷଣ ମଣ୍ଡିତା ଗୀତଜ୍ଞା ନର୍ତ୍ତକୀ ନିୟୋଗ ବିଷୟ ଉଭୟ ମନ୍ଦିରରେ ଥିବା ଶିଳାଲେଖରୁ ଜଣାଯାଏ ।

ନରେନ୍ଦ୍ରଶ୍ୱର ନାମକ ଶିବ ମନ୍ଦିରରେ ନୈବେଦ୍ୟ, ନୃତ୍ୟଗୀତ, ବାଦ୍ୟକରଣ ଓ ଦେବସ୍ଥାନର ଜୀର୍ଣ୍ଣ ସଂସ୍କାର ପାଇଁ ଉତ୍କଳର ପ୍ରଥମ ଗଙ୍ଗସମ୍ରାଟ ଚୋଳଗଙ୍ଗ ଦେବ ୧୦୮୩ ଖ୍ରୀଷ୍ଟାବ୍ଦରେ ମୁରୁପାକ ନାମକ ଗ୍ରାମ ଦାନ କରିଥିବା ତତ୍ରତ୍ୟ ଶିଳାଲେଖରୁ ଜଣାଯାଏ । ଚୋଳଗଙ୍ଗ ଦେବଙ୍କ ଅନ୍ୟ ଏକ ଶିଳାଲେଖରେ ଉଲ୍ଲେଖ ଅଛି ଯେ, ସେ ମୁଖଲିଙ୍ଗମ୍ (ପ୍ରାଚୀନ କଳିଙ୍ଗ ନଗର)ରେ ଅବସ୍ଥିତ ପ୍ରସିଦ୍ଧ ମଧୁକେଶ୍ୱରଙ୍କ ମନ୍ଦିରରେ ନୃତ୍ୟ ପାଇଁ ଦେବଗଣିକା (ଦେବଦାସୀ) ଗାୟକ ଓ ବାଦକ ନିଯୁକ୍ତ କରି ସେମାନଙ୍କ ପାଇଁ ଜମିବାଡ଼ି ଖଞ୍ଜି ଥିଲେ । ଏହି ଲେଖଟି ତାଙ୍କ ରାଜତ୍ୱର ଶେଷ ଆଡ଼କୁ (୧୦୪୫ ଖ୍ରୀ:ଅ:)ରେ ଖୋଦିତ ହୋଇଥିଲା । ଉକ୍ତ ଶିଳାଲେଖରେ ‘ଦେବଗଣିକା’ ବା ଦେବଦାସୀ ନିୟୋଗର ଅକାଟ୍ୟ ପ୍ରମାଣ ମିଳୁଥିବାରୁ ଗଙ୍ଗସମ୍ରାଟ ଚୋଳଗଙ୍ଗ ଦେବ ଶ୍ରୀକ୍ଷେତ୍ରସ୍ଥ ବର୍ତ୍ତମାନ ଉତ୍ତୁଙ୍ଗ ମନ୍ଦିର ନିର୍ମାଣ କରିବା ପରେ

'ମଧୁକେଶ୍ୱର' ଦେବଙ୍କ ପରି ଶ୍ରୀଜଗନ୍ନାଥଙ୍କ ସେବାରେ ଦେବଦାସୀ ବା ଦେବଗଣିକା ନିୟୋଗ ପ୍ରଥାର ପ୍ରଚଳନ କରିଥିଲେ ବୋଲି ଜଣାଯାଏ । ତେଣୁ ଶ୍ରୀମନ୍ଦିର ନିର୍ମାଣ ସମୟ (୧୧୧୨ ଖ୍ରୀ:ଅ:ରୁ ୧୧୪୭ ଖ୍ରୀ:ଅ:) ପରେ ପରେ ସେହିଠାରେ ଦେବଦାସୀ ପ୍ରଥା ପ୍ରଚଳିତ ହୋଇଆସୁଛି । ଏହି ସମୟ ମଧ ଶ୍ରୀଗୀତଗୋବିନ୍ଦର ରଚୟିତା ଶ୍ରୀଜୟଦେବଙ୍କ ପ୍ରେୟସୀ ପତ୍ନୀ ପଦ୍ମାବତୀ ମଧ ଦେବଦାସୀ ଭାବରେ ନିଯୁକ୍ତ ହୋଇଥିଲେ । ଭକ୍ତକବି ଶ୍ରୀଜୟଦେବ ସ୍ୱକୃତ ଶ୍ରୀଗୀତଗୋବିନ୍ଦର ଆଦ୍ୟପର ଶ୍ଳୋକରେ 'ପଦ୍ମାବତୀ-ଚରଣ-ଚାରଣ-ଚକ୍ରବର୍ତ୍ତୀ ରୂପେ ଗର୍ବ ଓ ଗୌରବ ସହକାରେ ଘୋଷଣା କରିବା ଦ୍ୱାରା ପ୍ରକାରାନ୍ତରେ ତାଙ୍କର ନୃତ୍ୟଗୀତ ପ୍ରବୀଣା ପ୍ରେୟସୀ ପଦ୍ମାବତୀ ସ୍ୱ-ପରମାରାଧ ଜଗଦୀଶ ବା ଜଗନ୍ନାଥଙ୍କ ସମ୍ମୁଖରେ ନୃତ୍ୟଗୀତ ପାଇଁ ଉତ୍ସୁକ ହୋଇଥିବା ସ୍ୱୀକାର କରିଛନ୍ତି । ଏହାକୁ ଭିତ୍ତିକରି ପରବର୍ତ୍ତୀ କାଳରେ ଭାରତର ନାନା ପ୍ରାନ୍ତରେ କେତେକ କିମ୍ବଦନ୍ତୀର ଉଦ୍ଭବ ଘଟିଥିବାର ପ୍ରମାଣ ମିଳେ, ଯଥା-

କ) ସଂତ ସରୋରୁହ ଷଂଡକୋ, ପଦମାବତୀ ସୁଖଜନକ ରବି
ଜୟଦେବ କବି ନୃପଚକ୍କବୈ, ଖଣ୍ଡମଣ୍ଡଳେଶ୍ୱର ଆନ କବି ।
(ନାଭାଦାସ କୃତ ଭକ୍ତମାଳା, ଚପୟ ୩୯)

ଖ) ଏକଦା ଜୟ ଦେବସ୍ତୁ ମନସ୍ୟେବମ ଚିନ୍ତୟତ୍ ।
ସ୍ୱୟଂ କୃତେନ ଗୀତେନ ତୋପୟିଷ୍ୟାମ୍ୟହଂ ହରିମ୍ ।
ଇତି ନିଶ୍ଚିତ୍ୟ ନିର୍ମାୟ ଗୀତଗୋବିନ୍ଦ ନାମକମ୍
ଗାୟଂସ୍ତୁ ଦେବଦେବାଗ୍ରେ ପତ୍ନ୍ୟାସହନନର୍ତ୍ତହ ।
(ଚନ୍ଦ୍ରବତକୃତ ଭକ୍ତମାଳା, ୩୯ ସର୍ଗ)

ସୁତରାଂ ପ୍ରୋକ୍ତ ସମସ୍ତ ଆଲୋଚନାରୁ ଏହା ସ୍ପଷ୍ଟ ହୁଏ ଯେ ସୋମବଂଶୀ ରାଜତ୍ୱ କାଳରୁ ଉତ୍କଳର ମନ୍ଦିରମାନଙ୍କରେ ଦେବଦାସୀ ନିୟୋଗ ପ୍ରଥାର ପ୍ରଚଳନ ଘଟିଥିଲା । ଶ୍ରୀଗୀତଗୋବିନ୍ଦର ସ୍ରଷ୍ଟା ଭକ୍ତକବି ଜୟଦେବଙ୍କ ପ୍ରିୟତମା ପତ୍ନୀ ପଦ୍ମାବତୀ ମଧ ଏକଦା ଦେବଦାସୀ ରୂପେ ନିଯୁକ୍ତ ହୋଇଥିଲେ । ଶ୍ରୀଗୀତଗୋବିନ୍ଦ ଗାନ ସେବାର ପ୍ରଚଳନ : କୃଷ୍ଣ ଭକ୍ତ ଗଙ୍ଗସମ୍ରାଟ ଦ୍ୱିତୀୟ ନରସିଂହ ଦେବ (୧୨୭୮-୧୩୦୭ ଖ୍ରୀଷ୍ଟାବ୍ଦ) ଶ୍ରୀକ୍ଷେତ୍ର ତଥା ସମଗ୍ର ଉତ୍କଳରେ ଶ୍ରୀଗୀତଗୋବିନ୍ଦର କ୍ରମବର୍ଦ୍ଧମାନ ଲୋକପ୍ରିୟତାକୁ ଯଥୋଚିତ ସମ୍ମାନ ପ୍ରଦର୍ଶନ ନିମିତ୍ତ ଶ୍ରୀଜଗନ୍ନାଥଙ୍କ ନିକଟରେ ନିତ୍ୟ ଶ୍ରୀଗୀତଗୋବିନ୍ଦ ଗାନ ଏକ ସେବା ରୂପେ ପ୍ରଚଳନ କରିଥିବା ମାଦଳା ପାଞ୍ଜିରୁ ଜଣାଯାଏ ।

ସୂର୍ଯ୍ୟବଂଶୀୟ କାଞ୍ଚିବିଜେତା ଗଜପତି ଶ୍ରୀପୁରୁଷୋତ୍ତମ ଦେବ ଯେପରି ଅମିତ ପରକ୍ରମ ମହାବୀର ରାଜାଥିଲେ, ସେହିପରି ମଧ ସେ ଜଣେ ପ୍ରତିଭାଶାଳୀ ପଣ୍ଡିତ ଥିଲେ ଏବଂ ତାଙ୍କ ରାଜସଭାରେ କବିଚନ୍ଦ୍ର ରାୟ ଦିବାକର ମିଶ୍ର ଏବଂ କବି ଡିଣ୍ଡିମ ଜୀବଦେବାଚାର୍ଯ୍ୟ ପ୍ରମୁଖ ଭାରତ ବିଖ୍ୟାତ କବି ପଣ୍ଡିତ ଥିଲେ । ଶ୍ରୀଜଗନ୍ନାଥ କୃପାରୁ ସେ ସିଂହାସନ ଲାଭ କରିଥିବାରୁ ତାଙ୍କର ଅଚଳା ଭକ୍ତି ଥିଲା ଏବଂ ତାଙ୍କ ସେବାରେ ସେ ନିଜ ଜୀବନ ଉତ୍ସର୍ଗ କରିଥିଲେ । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କଠାରେ ନିତ୍ୟଗୀତ ଓ ସମଗ୍ର ଭାରତରେ ଆଦୃତ ଶ୍ରୀଗୀତଗୋବିନ୍ଦ ଅନୁକରଣରେ ସେ ତାଙ୍କ ସଭାପଣ୍ଡିତ କବିଚନ୍ଦ୍ର ରାୟ ଦିବାକର ମିଶ୍ରଙ୍କ ଦ୍ୱାରା ରଚିତ 'ଅଭିନବ ଗୀତଗୋବିନ୍ଦ' ନାମକ ଗ୍ରନ୍ଥ ସ୍ୱ-ନାମରେ ରଚନା କରାଇ ମୂଳ ଗୀତଗୋବିନ୍ଦ ପରିବର୍ତ୍ତେ ଏହି ଅଭିନବ ଗୀତଗୋବିନ୍ଦମ୍‌କୁ ନିତ୍ୟ ସେବାରେ ଗାନ କରିବା ପାଇଁ ବାଧ୍ୟତାମୂଳକ କରିଥିଲେ । କିନ୍ତୁ ନିତ୍ୟ ପାଠ୍ୟ ଧର୍ମଗ୍ରନ୍ଥ ରୂପେ ଶ୍ରୀମନ୍ଦିରରେ ବହୁପୂର୍ବରୁ ପ୍ରଚଳିତ ଶ୍ରୀଗୀତଗୋବିନ୍ଦର ଆସ୍ଥାନ ଦୃଢ଼ମୂଳ ହୋଇଥିବାରୁ ଗଜପତି ପୁରୁଷୋତ୍ତମ ଦେବଙ୍କ ମୃତ୍ୟୁପରେ ଏହାର ମାହାତ୍ମ୍ୟମୁଗ୍ଧ ଭକ୍ତ ଓ ପଣ୍ଡିତମାନେ ଏହାର ପୁନଃପ୍ରଚଳନ ପାଇଁ ଆପତ୍ତି କରିଥିଲେ । ପୁରୁଷୋତ୍ତମ ଦେବଙ୍କ ପୁତ୍ର ଓ ଉତ୍ତରାଧିକାରୀ ଗଜପତି ପ୍ରତାପରୁଦ୍ର ଦେବ ସ୍ୱରାଜତ୍ୱର ତୃତୀୟ ବର୍ଷରେ ଏକ ରାଜକୀୟ ଘୋଷଣା ଦ୍ୱାରା ଶ୍ରୀମନ୍ଦିରରେ ଗୀତଗୋବିନ୍ଦ ଗାନ ସେବାକୁ ବାଧ୍ୟତାମୂଳକ କରିଥିଲେ ।

ଓଡ଼ିଶା ଆୟୁର୍ବେଦ ସେବା ସଂସ୍ଥା
ଏଫ୍.ଏଫ୍.-୩୩, ଇନ୍ଦ୍ରଧନୁ ମାର୍କେଟ୍
ଆଇ.ଆର୍.ସି. ଭିଲେଜ, ନୟାପଲ୍ଲୀ, ଭୁବନେଶ୍ୱର-୧୫



# ଓଡ଼ିଶାର କବି ଜୟଦେବ

ଦୀନକୃଷ୍ଣ ଯୋଷୀ

**ବୈ**ଶାଖ ମାସ ଶୁକ୍ଳପକ୍ଷ ତୃତୀୟା ତିଥିକୁ ଅକ୍ଷୟ ତୃତୀୟା ବୋଲି କୁହାଯାଏ । ବିଶେଷତଃ ଚାଷୀମାନେ ଏହି ଦିନ ନୂତନ ନିର୍ବାଚିତ ବିହନ ଜମିରେ ବୁଣିବାର ଦେଖାଯାଇଥାଏ । ତେଣୁ ଆଗରୁ ଜମି ପ୍ରସ୍ତୁତ କରି ଏକ ଶୁଭ ମୁହୂର୍ତ୍ତ ବାଛି ଉକ୍ତ ଦିନର ଅପେକ୍ଷାରେ ରହିଥାଆନ୍ତି । ଗ୍ରାମଦେବୀଙ୍କୁ ଏହିଦିନ ପୂଜା କରିବାର ବିଧାନ ମଧ୍ୟ ଅନେକ ସ୍ଥାନରେ ଦେଖିବାକୁ ମିଳିଥାଏ । ପୁରାଣ ବର୍ଣ୍ଣିତ ମହାନ୍ ଯୋଦ୍ଧା ଓ ସମାଜସେବୀ ପରଶୁରାମଙ୍କର ଜନ୍ମ ଏହିଦିନ ହୋଇଥିବାର ଜଣାଯାଏ । ତତ୍କାଳୀନ ସମାଜର ଭ୍ରଷ୍ଟାଚାର, କୁପ୍ରଥା, ଅସାମାଜିକତା ଓ ଦୁର୍ନୀତି ଇତ୍ୟାଦି ଦେଖି ପରଶୁରାମଙ୍କର ହୃଦୟ ବ୍ୟଥିତ ହୋଇ ପଡ଼ିଲା । ସେ ଏହାର କାରଣ ଜାଣିବା ସକାଶେ ବାହାରି ପଡ଼ିଲେ । ଅନୁସନ୍ଧାନରୁ ଜଣାପଡ଼ିଲା ଯେ ସେତେବେଳର ଶାସକମାନେ ବିଳାସବ୍ୟସନରେ ରହି ଶାସନ ବ୍ୟବସ୍ଥାକୁ ସୁଚାରୁରୂପେ ସଂପାଦନ କରିବା ପାଇଁ ଚାହୁଁ ନଥିଲେ । ପରଶୁରାମ ଜନ ଆନ୍ଦୋଳନ ମାଧ୍ୟମରେ ଶାସନ ବ୍ୟବସ୍ଥାକୁ ଠିକଣା ବାଟକୁ ଆଣିବା ପାଇଁ ଚିନ୍ତାକଲେ । କିନ୍ତୁ କ୍ଷତ୍ରୀୟ ଶାସକମାନଙ୍କ ଭୟରେ କେହି ହେଲେ ପରଶୁରାମଙ୍କୁ ସହାୟତା କରିବା ପାଇଁ ରାଜି ହେଲେ ନାହିଁ । ପରଶୁରାମ ଈଶ୍ୱରଙ୍କୁ ସାକ୍ଷୀ ରଖି ନିଜର ଶୌର୍ଯ୍ୟ ଓ ପରାକ୍ରମ ବଳରେ ଦୁର୍ନୀତିର ମୂଳୋତ୍ପାଟନ କରିବାକୁ ବାହାରି ପଡ଼ିଲେ ଓ ପରିଶେଷରେ ସେ ସଫଳ ମଧ୍ୟ ହୋଇଥିଲେ । ତାଙ୍କର ଯଶ ଚତୁର୍ଦ୍ଦିଗରେ ବୃଦ୍ଧି ପାଇବାରେ ଲାଗିଲା । ତେଣୁ ତାଙ୍କୁ ଅବତାରୀ ପୁରୁଷର ମାନ୍ୟତା ଦିଆଗଲା । ହିନ୍ଦୁ ମାନ୍ୟତା ଅନୁସାରେ ପରଶୁରାମ ହେଉଛନ୍ତି ଈଶ୍ୱରଙ୍କର ଦଶ ଅବତାର ମଧ୍ୟରୁ ଜଣେ । ତାଙ୍କର କାର୍ଯ୍ୟକଳାପ ଯୋଗୁଁ ସେ ଅମର ହୋଇ ରହିଅଛନ୍ତି । ଯୁଗେ ଯୁଗେ ମହାନ୍ ବ୍ୟକ୍ତି ମହାନତାର କଷଟିରେ ପରୀକ୍ଷିତ ହୋଇ ଏହି ଧରାପୃଷ୍ଠରୁ ବିଦାୟ ନେଲା ପରେ ମଧ୍ୟ ଜନମାନସରେ ସର୍ବଦା ପ୍ରେରଣାର ସ୍ରୋତ ଭାବରେ ରହିଆସିଛନ୍ତି ।



ଏହି ଦିନ ଓଡ଼ିଶା ମାଟିରେ ଜଣେ ମହାନ୍ ଭକ୍ତ ତଥା କବିଙ୍କର ଆବିର୍ଭାବ ଚତୁର୍ଦ୍ଦିଗରେ ସୁଗନ୍ଧ ବିତରଣ କରିଥିବାର ଇତିହାସ କହେ । ଏହି ବ୍ୟକ୍ତିତ୍ୱ ବର୍ତ୍ତମାନ ଖୋର୍ଦ୍ଧା ଜିଲ୍ଲାର ବାଲିପାଟଣା ଅନ୍ତର୍ଗତ ପ୍ରାଚୀ ନଦୀକୂଳରେ କେନ୍ଦୁଲି ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ପ୍ରାଚୀ ନଦୀକୁ କେତେକ ସ୍ଥାନରେ ଅଜୟ ନଦୀ ଓ କେନ୍ଦୁଲି ଗ୍ରାମକୁ କେନ୍ଦୁବିଲ୍ୱ ବୋଲି ବର୍ଣ୍ଣନା ଦେଖିବାକୁ ମିଳିଥାଏ । କେତେକ ବଙ୍ଗାଳୀ ଲେଖକ ପଶ୍ଚିମବଙ୍ଗର କେନ୍ଦୁଲି ଗ୍ରାମକୁ ଜୟଦେବଙ୍କର ଜନ୍ମସ୍ଥାନ ବୋଲି ଦାବି କରି ଆସୁଥିଲେ, କିନ୍ତୁ କେତେକ ଆନୁଷଙ୍ଗିକ ପ୍ରମାଣ ମିଳିସାରିବା ପରେ ସେମାନଙ୍କର ଦାବୀକୁ ଗୁରୁତ୍ୱ ଦିଆଯାଉନାହିଁ । ଏମିତି ଏକ ପ୍ରମାଣ ଚୈତନ୍ୟ ଦେବଙ୍କ ସମୟରେ ମିଳିଥିବାର ଜଣାଯାଏ । ଥରେ ଚୈତନ୍ୟ ଦେବ ପଞ୍ଚସଖାଙ୍କ ସହିତ ମିଶି ସଂକୀର୍ତ୍ତନ କରିବା ସମୟରେ ଜୟଦେବ ରଚିତ ଗୀତଗୋବିନ୍ଦର ତାଳ ସହିତ ତାଳ ଦେଇ ଭାବବିଭୋର ହୋଇ ନୃତ୍ୟ କରିଥିବାର ଜଣାଯାଇଛି । ତେଣୁ ଜୟଦେବଙ୍କର ଜନ୍ମସ୍ଥଳୀ ଓଡ଼ିଶାର କେନ୍ଦୁଲି ଗ୍ରାମ ବୋଲି ବିଶ୍ୱାସ କରାଯାଏ । ବର୍ତ୍ତମାନ ଆହୁରି ଅନେକ ପ୍ରମାଣ ମଧ୍ୟ ମିଳିସାରିଲାଣି । ଜୟଦେବଙ୍କର ଗୀତଗୋବିନ୍ଦ କାବ୍ୟ ସେତେବେଳେ ଓଡ଼ିଶା ବାହାରେ ମଧ୍ୟ ପ୍ରଚାର ହୋଇଥିବାର ଜଣାପଡ଼େ । ପୃଥ୍ୱୀରାଜ ଚୌହାନଙ୍କର ରାଜଦରବାରରେ

ଜୟଦେବଙ୍କର ଗୀତଗୋବିନ୍ଦ କବି ଚାନ୍ଦ ବରଦାଇଙ୍କ ଦ୍ୱାରା ପଠିତ ହୋଇଥିବାର ଇତିହାସରୁ ଜଣାପଡ଼େ । ରଚିତ ହେବାର ୩୦-୪୦ ବର୍ଷ ମଧ୍ୟରେ ଏହା ସମଗ୍ର ଭାରତବର୍ଷରେ ପ୍ରଚାରିତ ହୋଇଥିଲା । ଉତ୍କଳର ସଂସ୍କୃତି, ଐତିହ୍ୟ ଓ ପରମ୍ପରା, ସାହିତ୍ୟ, ନୃତ୍ୟ ଓ ସଂଗୀତର ଉତ୍କର୍ଷତା ସେତେବେଳେ କେତେ ଉଚ୍ଚକୋଟିର ଥିଲା ତାହା ଜଣାପଡ଼ିଥାଏ ।

ଜୟଦେବ ରାମାନୁଜାଚାର୍ଯ୍ୟଙ୍କର ଆରାଧ୍ୟ ଜଗନ୍ନାଥ ଓ ଲକ୍ଷ୍ମୀଙ୍କୁ କୃଷ୍ଣ ଓ ରାଧା ରୂପରେ ବିଶ୍ୱାସ କରୁଥିଲେ । ସମୁଦ୍ର ମନ୍ଥନ ସମୟରେ ଉତ୍ପତ୍ତି ଲାଭ କରିଥିବା ଲକ୍ଷ୍ମୀ ଯେ ରାଧା ତାହା ସେ ବିଶ୍ୱାସ କରୁଥିଲେ । ଗୀତଗୋବିନ୍ଦ କାବ୍ୟରେ ବାରଟି ଅଧ୍ୟାୟ ରହିଛି ଓ ପ୍ରତ୍ୟେକ ଅଧ୍ୟାୟରେ ଚବିଶିଟି ଛାନ୍ଦ ଓ ପ୍ରତ୍ୟେକ ଛାନ୍ଦରେ ଆଠଟି ପଦ ରହିଅଛି, ଏହାକୁ ଅଷ୍ଟପଦୀ ମଧ୍ୟ କୁହାଯାଏ । ଜୟଦେବଙ୍କର ଧର୍ମପତ୍ନୀ ହେଉଛନ୍ତି ପଦ୍ମାବତୀ । ତାଙ୍କର ପରିଣୟ ବିଷୟରେ ଏକ କିମ୍ବଦନ୍ତୀ ରହିଛି । ପଦ୍ମାବତୀଙ୍କ ପିତାମାତା ଦକ୍ଷିଣ ଭାରତରୁ ଜଗନ୍ନାଥଙ୍କର ଦର୍ଶନ ପାଇଁ ପୁରୀ ଆସିଥିଲେ । ପୁରୀରେ ସେମାନଙ୍କୁ ସ୍ୱପ୍ନାଦେଶ ହେଲା ଯେ ସେମାନେ ତାଙ୍କ ଝିଅର ବର କେନ୍ଦୁଲି ଗ୍ରାମରେ ପାଇବେ । ସେମାନେ କେନ୍ଦୁଲି ଗ୍ରାମକୁ ଯାଇ ଜୟଦେବଙ୍କୁ ଖୋଜିବାରେ ଲାଗିଲେ । ଜୟଦେବ ସେତେବେଳେ ଅଜୟ ନଦୀକୂଳରେ ଧ୍ୟାନମଗ୍ନ ଥାଆନ୍ତି । ଲୋକେ ତାଙ୍କୁ ଅର୍ଦ୍ଧପାଗଳ ବୋଲି ପରିଚୟ ଦେଇଥିଲେ । ପଦ୍ମାବତୀଙ୍କର ପିତାମାତା ତାଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇବା ପରେ ମଧ୍ୟ ସେ ବାହା ହେବାକୁ ରାଜି ହୋଇନଥିଲେ । ପରିଶେଷରେ ପଦ୍ମାବତୀଙ୍କର ପିତାମାତା ଜଗନ୍ନାଥଙ୍କୁ ଧ୍ୟାନ କରିବାକୁ ଲାଗିଲେ । ପରଦିନ ଜୟଦେବଙ୍କୁ ସ୍ୱପ୍ନାଦେଶ ହେବାରୁ ସେ ପଦ୍ମାବତୀଙ୍କୁ ପତ୍ନୀ ରୂପରେ ଗ୍ରହଣ କରିଥିଲେ । ବ୍ରାହ୍ମଣ ଦମ୍ପତ୍ତି ପଦ୍ମାବତୀଙ୍କୁ ଛାଡ଼ି ନିଜ ଗ୍ରାମକୁ ଯାତ୍ରା କଲେ । ପଦ୍ମାବତୀ ଅତି ଅଳ୍ପ ସମୟରେ ଗୀତଗୋବିନ୍ଦର ତାଳେ ତାଳେ ନୃତ୍ୟ କରିବାକୁ ଲାଗିଲେ । ସେ ନୃତ୍ୟରତା ସମୟରେ ଭାବବିଭୋର ହୋଇ ଉଠୁଥିଲେ । କେତେକଙ୍କ ମତରେ ଜୟଦେବ ପଦ୍ମାବତୀଙ୍କ ନୃତ୍ୟର ତାଳକୁ ଲକ୍ଷ୍ୟକରି ଏହି କାବ୍ୟ ରଚନା କରିଥିଲେ । ଜୟଦେବଙ୍କର ଗୀତଗୋବିନ୍ଦ ଓଡ଼ିଶା ତଥା ଓଡ଼ିଶା ବାହାରେ ବର୍ତ୍ତମାନ ସୁଦ୍ଧା ବେଶ୍ ଆଦୃତ ।

ଶ୍ରୀ ମାଧବ ପଟ୍ଟନାୟକ ହେଉଛନ୍ତି ଚୈତନ୍ୟ ଓ ପଞ୍ଚସଖା ଯୁଗର କବି ଯିଏକି ସେହି ସମୟର ଘଟଣାବଳୀ ସମ୍ପର୍କରେ ବର୍ଣ୍ଣନା କରି ଯାଇଛନ୍ତି । ୧୯୮୦ ମସିହାରେ ତାଙ୍କର ତିନୋଟି ତାଳପତ୍ରପୋଥି ଓଡ଼ିଶାର ତିନୋଟି ଭିନ୍ନ ଭିନ୍ନ ସ୍ଥାନରୁ ଆବିଷ୍କୃତ ହୋଇଥିଲା । ତାଙ୍କ ଅନୁସାରେ ଜୟଦେବଙ୍କ ଗୀତଗୋବିନ୍ଦ କାବ୍ୟ ୧୧୫୦ ଖ୍ରୀଷ୍ଟାବ୍ଦରେ ଚୋଡ଼ଗଙ୍ଗ ଦେବଙ୍କ ସମୟରେ ରଚିତ ହୋଇଥିଲା । ପଞ୍ଚସଖା ହେଉଛନ୍ତି ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ଅନନ୍ତ ଦାସ ଓ ଯଶୋବନ୍ତ ଦାସ । ଶ୍ରୀ ମାଧବ ପଟ୍ଟନାୟକ ତାଙ୍କ କୃତିରେ ଚୈତନ୍ୟ ଦେବ ଓ ପଞ୍ଚସଖାଙ୍କ ବିଷୟରେ ଅନେକ ଘଟଣାର ଅବତାରଣା କରିଯାଇଛନ୍ତି । ତେଣୁ ତାଙ୍କ କୃତିକୁ ପୌରାଣିକ ନ କହି ଐତିହାସିକ କହିବା ଉଚିତ ମନେ ହେବ । ପଦ୍ମାବତୀଙ୍କ ସମୟରୁ ହିଁ ପୁରୀ ମନ୍ଦିରରେ ଦେବଦାସୀ ପ୍ରଥାର ଆରମ୍ଭ ହୋଇଥିବାର ଜଣାଯାଇଛି । ଶ୍ରୀ ପଟ୍ଟନାୟକଙ୍କ ବର୍ଣ୍ଣନା ଅନୁସାରେ ପ୍ରଥମେ ଜୟଦେବ ମାଧବଙ୍କୁ ନିଆଳିଠାରେ ଆରାଧନା କରୁଥିଲେ । ସେ ପୁରାଣ, ଶାସ୍ତ୍ର, ନୃତ୍ୟ ଓ ସଂଗୀତରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ଅତି କମ୍ ସମୟ ମଧ୍ୟରେ ତାଙ୍କର କୃତି ଓଡ଼ିଶା ତଥା ବାହାରେ ଆଦରଲାଭ କରିଥିଲା ।

ଗବେଷକ, ଇତିହାସ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ
ଜ୍ୟୋତିବିହାର, ବୁର୍ଲା



# ଗୀତିକାବ୍ୟ ଗୀତଗୋବିନ୍ଦର ପଦଲାଳିତ୍ୟ

ବିପିନ ବିହାରୀ ତ୍ରିପାଠୀ

**ବା**ଗ୍‌ଦେବୀଙ୍କର ଶିରୀଷପୁଷ୍ପଠାରୁ ମଧ୍ୟ କୋମଳ ଏବଂ ମନୋରମ ଅଙ୍ଗ ହେଉଛି ଗୀତିକାବ୍ୟ । ତାହାମୁକ୍ତକ ଏବଂ ପ୍ରବନ୍ଧ ଭେଦରେ ଦୁଇ ପ୍ରକାର । ଯେଉଁ ଗୀତାକାବ୍ୟ କୌଣସି ନିର୍ଦ୍ଦିଷ୍ଟ ଘଟଣାକ୍ରମର ଅପେକ୍ଷା ନରଖି ସ୍ୱୟଂ ସଂପୂର୍ଣ୍ଣ ଭାବରେ ନିଜର ବିଷୟବସ୍ତୁଦ୍ୱାରା ରସିକ ମାନଙ୍କର ମନକୁ ରଞ୍ଜିତ କରି ରସୋତ୍ତୀର୍ଣ୍ଣ ହୋଇଥାଏ ତାହାକୁ ମୁକ୍ତକ କହନ୍ତି। ଯଥା-

'ପୂର୍ବାପରନିରପେକ୍ଷେଣାପି ହି ଯେନ
ରସଚର୍ବଣା କ୍ରିୟତେ ତଦେବ ମୁକ୍ତକମ୍ ।'
- ଆନନ୍ଦବର୍ଦ୍ଧନକୃତଃ ଧ୍ୱନ୍ୟାଲୋକଃ

ଏଥିରେ ପ୍ରତିଟି ପଦ ରସଯୁକ୍ତ ହୋଇଥାଏ ଓ ଏହାର ଆସ୍ୱାଦମାତ୍ରକେ ସହୃଦୟର ହୃଦୟ ତତ୍‌କ୍ଷଣାତ୍ ଆନନ୍ଦମୁଗ୍ଧ ହୋଇଯାଏ। ଅନ୍ୟପକ୍ଷରେ କୌଣସି ସତ୍ୟ ବା କଳ୍ପନାପ୍ରସୂତ କାହାଣୀ ବା ଘଟଣାପ୍ରବାହକୁ ନେଇ ରଚିତ ରସାଳ କବିତାବଳୀକୁ ପ୍ରବନ୍ଧାତ୍ମକ ଗୀତିକାବ୍ୟ କହନ୍ତି । ଗୀତିକାବ୍ୟରେ କବିମାନେ ସଂଗୀତମୟ ବୃତ୍ତର ପ୍ରୟୋଗ କରିଥାନ୍ତି ଓ ସେଥିରେ ସୁକୁମାର ଭାବଗୁଡ଼ିକୁ ତଦନୁରୂପ ମଧୁର ମଧୁରତର ପଦାବଳୀ ମାଧମରେ ପରିପ୍ରକାଶିତ କରିଥାଆନ୍ତି ।

ବୈଦିକ ସଂହିତାରେ ମଧ ଗୀତିକାବ୍ୟର ଦିବ୍ୟକାନ୍ତି ଦେଖିବାକୁ ମିଳିଥାଏ । ସମ୍ଭବତଃ କବିମାନେ ବେଦରୁ ଗୀତିକାବ୍ୟ ରଚନାର କଲ୍ୟାଣମୟୀ ପ୍ରେରଣା ଲାଭ କରିଥିଲେ । ସଂହିତାଗୁଡ଼ିକରେ ଉଷା, ଇନ୍ଦ୍ର, ଅଗ୍ନି, ବିଷ୍ଣୁ, ବରୁଣ, ମରୁତ୍ ଆଦି ଦେବତାମାନଙ୍କର ହୃଦୟହାରିଣୀ ସ୍ତୁତି ଅଧୟନ କରି କିମ୍ବା ଶ୍ରବଣ କରି କବିମାନେ ସ୍ୱକୀୟ ରଚନାକୁ ଗୀତିମୟ ଶୈଳୀରେ ରସାଳ ଭାବରେ ବ୍ୟକ୍ତ କରିବା ଲାଗି ଇଚ୍ଛା ପ୍ରକାଶ କରିଥିଲେ।

ଗୀତିକାବ୍ୟମାନଙ୍କ ମଧରେ ଉତ୍କଳର ବରପୁତ୍ର କବି ଜୟଦେବଙ୍କ ଗୀତଗୋବିନ୍ଦ ଅମର କାବ୍ୟ ଅଟେ । ଏଥିରେ ସଂସ୍କୃତ ଭାରତୀୟଙ୍କ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ଚରମ ସୀମା ଲକ୍ଷ୍ୟ କରାଯାଏ । କୋମଳ-କାନ୍ତ ପଦାବଳୀର ସରସ ପ୍ରବାହ ମଧରେ ଓ ମଧୁର ଭାବଗୁଡ଼ିକର ମଧୁମୟୀ ଧାରା ମଧରେ ଅବଗାହନ କରିବାକୁ ମନ କରୁଥିବା ରସିକମାନେ ଏହି କାବ୍ୟ ମଧରେ ନିଜ ଇଚ୍ଛାନୁସାରେ ଅବଗାହନ କରନ୍ତି, ସେମାନଙ୍କ ମନକୁ ଏ କାବ୍ୟକୁ ଛାଡ଼ି ଅନ୍ୟ କିଛି ତୃପ୍ତି ଦେଇପାରେ ନାହିଁ। ଏଥିରେ ଆନନ୍ଦକନ୍ଦ ବ୍ରଜଚନ୍ଦ୍ରଙ୍କର ଓ ଜଗଦ୍‌ବାଧା ରାଧାଙ୍କର ଲଳିତଲୀଳାଗୁଡ଼ିକର ଯେପରି ଶେଷ ଗାନ ଶୁଣାଯାଏ, ଅନ୍ୟ କେଉଁଠି ସେପରି ମିଳେ ନାହିଁ । କବିରାଜ ଜୟଦେବ ସ୍ୱ ଅମରକୃତି ଶ୍ରୀଗୀତଗୋବିନ୍ଦର ମହତ୍ତ୍ୱ ଓ ଉତ୍କର୍ଷ ଉପଲବ୍‌ଧି ନିମିତ୍ତ ପାଠକମାନଙ୍କୁ ଗ୍ରନ୍ଥାଦ୍ୟରେ ସମ୍ବୋଧନ କରିଛନ୍ତି-

'ଯଦି ହରିସ୍ମରଣେ ସରସଂ ମନଃ
ଯଦି ବିଳାସକଳାସୁ କୁତୂହଳଂ
ମଧୁର-କୋମଳ-କାନ୍ତ-ପଦାବଳୀଂ
ଶୃଣୁ ତଦା ଜୟଦେବସରସ୍ୱତୀମ୍ ।।'

'ହେ ପାଠକବୃନ୍ଦ! ଯଦି ଶ୍ରୀହରିସ୍ମରଣ ଦ୍ୱାରା ମନକୁ ସରସ କରିବାର ବାସନା ଅଛି, ଯଦି ଶ୍ରୀହରିଙ୍କ ବସନ୍ତ ରାସଲୀଳାର ବିଳାସ କଳା ବା ରସଚାତୁର୍ଯ୍ୟ ଜାଣିବା ପାଇଁ କୌତୂହଳ ରହିଛି, ତେବେ ଶ୍ରୀଜୟଦେବ ରଚିତ ଏହି ଗ୍ରନ୍ଥର ମଧୁର କୋମଳ କାନ୍ତ ପଦାବଳୀ ଶ୍ରବଣ କର ।' ଏତିକିରେ ସନ୍ତୁଷ୍ଟ ନହୋଇ ସେ ପରବର୍ତ୍ତୀ ଶ୍ଳୋକରେ ଉମାପତିଧର, ଶରଣ, ଗୋବର୍ଦ୍ଧନ ଆଚାର୍ଯ୍ୟ ଓ କବିରାଜ ଧୋୟୀନାମକ ଚାରିଜଣ ପ୍ରସିଦ୍ଧ କବିଙ୍କ ରଚନାରେ ଦୋଷ ପ୍ରଦର୍ଶନପୂର୍ବକ ନିଜ ରଚନାର ଗାରିମା ପ୍ରଦର୍ଶନ କରିଛନ୍ତି । ଯଥା-

'ବାଚଃ ପଲ୍ଲବୟତ୍ୟୁମାପତିଧରଃ ସନ୍ଦର୍ଭଶୁଦ୍ଧିଂ ଗିରାମ୍
ଜାନୀତେ ଜୟଦେବ ଏବ ଶରଣଃ ଶ୍ଳାଘ୍ୟୋ ଦୁରୁହଦ୍ରୁତେ।
ଶୃଙ୍ଗାରୋତ୍ତରସତ୍‌ପ୍ରମେୟରଚନୈରାଚାର୍ଯ୍ୟଗୋବର୍ଦ୍ଧନଃ
ସ୍ପର୍ଦ୍ଧୀ କୋ[illegible] ନ ବିଶ୍ରୁତଃ ଶ୍ରୁତିଧରୋ ଧୋୟୀ କବିକ୍ଷ୍ମାପତିଃ ।।'

ଏହି ଶ୍ଲୋକରେ ଶ୍ରୀଜୟଦେବ ପ୍ରଶଂସା ଛଳରେ ସନ୍ଧିବିଗ୍ରହିକ ଉମାପତିଧରଙ୍କ ପଲ୍ଲବଗ୍ରାହୀ ପାଣ୍ଡିତ୍ୟ, ଶରଣଙ୍କର ନୀରସ କବିତା ରଚନା ଶକ୍ତି ବ୍ୟତୀତ ଅନ୍ୟପ୍ରକାର କବିତ୍ୱର ଅଭାବ, ଅପ୍ରତିଦ୍ୱନ୍ଦୀ ଶୃଙ୍ଗାର କବି ଆଚାର୍ଯ୍ୟ ଗୋବର୍ଦ୍ଧନଙ୍କର ରସାନ୍ତର ଅଜ୍ଞତା, ତଥାକଥିତ କବିରାଜ ଧୋୟୀଙ୍କର ପଶୁସୁଲଭ ଶ୍ରୁତିଧରତା ପ୍ରତି ତୀବ୍ର କଟୂକ୍ତି କରି ନିଜର ଅସାଧାରଣ ପାଣ୍ଡିତ୍ୟ, କବିତ୍ୱ ଓ ରସଗ୍ରାହିକତା ପ୍ରତିପାଦନ କରିଛନ୍ତି ।

ତାଙ୍କ ରଚିତ ଗୀତଗୋବିନ୍ଦରେ ସରସ ସୁନ୍ଦର ଲଳିତ-କୋମଳ-କାନ୍ତ ପଦାବଳୀର ସଫଳ ପ୍ରୟୋଗ ଖାଲି ସଂସ୍କୃତ ସାହିତ୍ୟରେ କାହିଁକି, ସାରା ପୃଥିବୀର ଯେ କୌଣସି ସାହିତ୍ୟରେ ଦୁର୍ଲଭ । ଏସବୁ କୋମଳ- ଶବ୍ଦର ନିର୍ଝରିଣୀ ବିନା ଚେଷ୍ଟାରେ ସତେ କି କବିଙ୍କ ମାନଶୈଳରୁ ସ୍ୱତଃ ଝରି ଆସିଥିଲା । ଏତେ ସୁନ୍ଦର ଶବ୍ଦ ସଂଯୋଜନା ଦେଖିଲେ ମନେହୁଏ ସତେ କି ଭଗବଦ୍ କରୁଣା ମଧୁର କୋମଳକାନ୍ତ ପଦାବଳୀ ରୂପରେ କବିଙ୍କ ଲେଖନୀରୁ ସ୍ୱତଃ ଝରିଯାଇଛି । ଭାବଗୁଡ଼ିକର ଭବ୍ୟତା, ଶବ୍ଦମାନଙ୍କର ସୁନ୍ଦରତା, ଅର୍ଥମାନଙ୍କର ସରସତା ଏଠାରେ ସର୍ବ ଆଭରଣଯୁକ୍ତା ହୋଇଥିବା ପରି ଦେଖାଯାଏ । ଏହାଙ୍କର ଗୀତିସୁଧା ସୁରସୁଧାକୁ ବି ନ୍ୟୁନ କରିଦେଇଛି । ଯଥା :-

'ଉନ୍ମଦ-ମଦନ-ମନୋରଥ-ପଥିକ-ବଧୂଜନ-ଜନିତ-ବିଳାପେ
ଅଳିକୁଳ-ସଂକୁଳ-କୁସୁମ-ସମୂହ-ନିରାକୁଳ-ବକୁଳ-କଳାପେ ।
କେଳିକଳା-କୁତୁକେନ ଚ କାଚିଦମୁଂ ଯମୁନାବନକୂଳେ,
ମଞ୍ଜୁଳ-ବଞ୍ଜୁଳ-କୁଞ୍ଜଗତଂ ବିଚକର୍ଷ କରେଣ ଦୁକୂଳେ।।
ମନୋଭବାନନ୍ଦନ-ଚନ୍ଦନାନିଳ ପ୍ରସୀଦରେ ଦକ୍ଷିଣ
ମୁଞ୍ଚ ବାମତାମ୍ ।
କ୍ଷଣଂ ଜଗତ୍ପ୍ରାଣ ବିଧାୟ ମାଧବଂ
ପୁରୋ ମମ ପ୍ରାଣହରୋ ଭବିଷ୍ୟସି।।'

ଗୀତଗୋବିନ୍ଦରେ ବାରଟି ସର୍ଗ ରହିଛି । ପ୍ରତ୍ୟେକ ସର୍ଗ ଗୀତ ସହିତ ସମନ୍ୱିତ ହୋଇଛି । ସର୍ଗଗୁଡ଼ିକୁ ପରସ୍ପର ସହିତ ମିଳିତ କରିବା ଲାଗି ତଥା କଥାର ସୂତ୍ରକୁ ବୁଝାଇ ଦେବା ଲାଗି କେତେଗୋଟି ବର୍ଣ୍ଣନାତ୍ମକ ପଦ୍ୟ ମଧ ରହିଛି । ଯଦି ପ୍ରଶ୍ନ କରାଯାଏ ଯେ 'ଗୀତଗୋବିନ୍ଦ କ'ଣ ?' ତେବେ ଏହାର ଏକମାତ୍ର ସହଜ ଉତ୍ତର ହେଉଛି-ଭଗବତୀ ସଂସ୍କୃତ ଭାରତୀୟଙ୍କ ସୌନ୍ଦର୍ଯ୍ୟ ତଥା ମାଧୁର୍ଯ୍ୟର ପରାକାଷ୍ଠା । ମହାକବି କାଳିଦାସଙ୍କ କବିତାରେ ମଧ ଏପରି ରସପେଶଳ ମଧୁରଭାବର ଦର୍ଶନ ଆମକୁ ମିଳେନା। ଏ କାବ୍ୟରେ ରାଧା ଓ କୃଷ୍ଣଙ୍କ ଲଳିତ ଲୀଳାର ଯେପରି ଶୀର୍ଷ ବର୍ଣ୍ଣନା ମିଳେ, ସେପରି ଅନ୍ୟତ୍ର କୁତ୍ରାପି ଦେଖିବାକୁ ମିଳେ ନାହିଁ । ଯେପରି -

'ଲଳିତ-ଲବଙ୍ଗଲତା-ପରିଶୀଳନ-କୋମଳ-ମଳୟ-ସମୀରେ
ମଧୁକର-ନିକର-କରମ୍ବିତ-କୋକିଳ-କୂଜିତ-କୁଞ୍ଜକୁଟୀରେ ।'୩

ଆଦି ଅଷ୍ଟପଦୀର ପଠନମାତ୍ର ପର୍ଯ୍ୟାପ୍ତ ହେବ ।

ଗୀତଗୋବିନ୍ଦରେ ପଦଲାଳିତ୍ୟ ଯେପରି ମନଛୁଆଁ ଭାବସୌଷ୍ଠବ ମଧ ସେତିକି ପରିମାଣରେ ହୃଦୟହାରୀ ଅଟେ। ବିରହିଣୀ ରାଧିକାଙ୍କ ବର୍ଣ୍ଣନାରେ କବିଙ୍କର ଏହି ଉକ୍ତିଟି କେତେ ହୃଦୟଗ୍ରାହୀ ତାହା ଅବଶ୍ୟ ଲକ୍ଷ୍ୟ କରିବାର କଥା । ରାଧାଙ୍କର ଦୁଇ ଆଖିରୁ ଅଶ୍ରୁଧାରା ବହିଯାଉଛି । ମନେ ହେଉଛି ଯେପରି ବିକଟ ରାହୁର ଦାନ୍ତରେ ଚାପି ହୋଇଯିବା ଦ୍ୱାରା ଚନ୍ଦ୍ର ଦେହରୁ ଅମୃତ-ଧାରା ବହି ଯାଉଛି । ଯଥା-

'ବହିତ ଚ ବିଗଳିତ-ଲୋଚନ-ଜଳଭରମାନନ-କମଳମୁଦାରମ୍ ।
ବିଧୁମିବ ବିକଟ-ବିଧୁନ୍ତୁଦ-ଦନ୍ତ-ଦଳନ-ଗଳିତାମୃତଧାରମ୍ ।'

ଉପମାର କଳ୍ପନା ଓ ଉତ୍ପ୍ରେକ୍ଷାର ବର୍ଣ୍ଣନାରେ ଏ କାବ୍ୟ ଅନୁପମ । ଏହାର ସବୁଠାରୁ ବଡ଼ ବିଶେଷତ୍ୱ ହେଉଛି ପ୍ରେମର ଉଦାତ୍ତ ଭାବନା । ରାଧାକୃଷ୍ଣଙ୍କ ପ୍ରେମର ନିର୍ମଳତା ତଥା ଆଧ୍ୟାତ୍ମିକତା ସୁନ୍ଦର ଶବ୍ଦାବଳୀ ମାଧ୍ୟମରେ ଏଥିରେ ଅଭିବ୍ୟକ୍ତ କରାଯାଇଛି । ଶୃଙ୍ଗାରଶିରୋମଣି କୃଷ୍ଣ ଭଗବଦ୍ ତତ୍ତ୍ୱର ପ୍ରତିନିଧି ଅଟନ୍ତି ଏବଂ ଏହାଙ୍କ ପ୍ରେୟସୀ ଗୋପିକାମାନେ ଜୀବର ପ୍ରତୀକ ଅଟନ୍ତି । ରାଧା-କୃଷ୍ଣଙ୍କ ମିଳନ ଜୀବ-ବ୍ରହ୍ମର ମିଳନ ଅଟେ । ଏହି ସାଧନା ମାର୍ଗର ଅନେକ ତଥ୍ୟର ରହସ୍ୟ ଏଠାରେ ଉନ୍ମୋଚିତ ହୋଇଛି । ଅର୍ଥର ମାଧୁରୀ ପାଇଁ ଏହି ପଦ୍ୟଟିର ପର୍ଯ୍ୟାଲୋଚନା ପର୍ଯ୍ୟାପ୍ତ ହେବ ।-

'ଦୃଶୌ ତବ ମଦାଳସେ ବଦନମିନ୍ଦୁମତ୍ୟନ୍ୱିତଂ
ଗତିସ୍ତବ ମନୋରମା ବିଧୁତରମ୍ଭମୂରୁଦ୍ୱୟମ୍ ।
ରତିସ୍ତବ କଳାବତୀ ରୁଚିର-ଚିତ୍ର ଲେଖେ ଭ୍ରୁବା-
ବହୋ ବିବୁଧଯୌବତଂ ବହସି ତନ୍ୱି ! ପୃଥ୍ୱୀଗତା ।'
ଏ ହେଉଛି ରାଧାଙ୍କ ରୂପର ରସମୟ ବର୍ଣ୍ଣନା ।
ତୁମର ନେତ୍ରଯୁଗଳ ମଦଯୋଗୁଁ ଅଳସ ହୋଇଛି ।
(ମଦାଳସା ନାମ୍ନୀ ଅପ୍ସରାର ନାମ ଉଚ୍ଚାରିତ ହୋଇଛି)

ମୁଖମଣ୍ଡଳ ଚନ୍ଦ୍ରକୁ ଆଲୋକିତ କରୁଛି (ଇନ୍ଦୁମତୀ ନାମକ ଅପ୍ସରାର ସ୍ମରଣ କରାଯାଇଛି), ତୁମର ଗତି (ଚାଲି) ଲୋକମାନଙ୍କର ମନକୁ ଆନନ୍ଦିତ କରୁଛି(ମନୋରମା' ନାମକ

ଅପ୍ସରାର ସ୍ମରଣ), ତୁମର ଉରୁଯୁଗଳ ସୌନ୍ଦର୍ଯ୍ୟରେ ରମ୍ଭାବୃକ୍ଷର ଶୋଭାକୁ ପରାସ୍ତ କରୁଛି (ରମ୍ଭା' ଅପ୍ସାରାର ସ୍ମରଣ), ତୁମର ରତି କଳାଦ୍ୱାରା ପରିପୂର୍ଣ୍ଣ (କଳାବତୀ ଅପ୍ସରାର କଥା କୁହାଯାଇଛି), ତୁମର ଦୁଇ ଭ୍ରୂଲତା ଚିତ୍ରଲେଖା ସଦୃଶ ସୁନ୍ଦର ଦିଶୁଛି (ଏଠାରେ 'ଚିତ୍ରଲେଖା' ଅପ୍ସରା), ହେ ତନ୍ୱି ! ତୁମେ ପୃଥ୍ୱୀ ଉପରେ ରହି ମଧ୍ୟ ଦେବଯୁବତି ସମୂହଙ୍କ ନିଜ ଶରୀରରେ ଧାରଣ କରିଛ। ଏହି କମନୀୟ ପଦ୍ୟରେ 'ଶ୍ଳେଷ'ର ମାହାତ୍ମ୍ୟ ଦ୍ୱାରା ଦେବାଙ୍ଗନାମାନଙ୍କ ନାମ ଉଲ୍ଲେଖ କରାଯାଇଛି । ପୁନଶ୍ଚ ଏ କବିତାଟି 'ପୃଥ୍ୱୀ' ଛନ୍ଦରେ ରଚିତ ହୋଇଥିବାର ରୁଚିର ସଂକେତ ସହୃଦୟମାନଙ୍କ ଆନନ୍ଦର ବିଷୟ ଅଟେ ।

ଗୀତଗୋବିନ୍ଦ ଦ୍ୱାଦଶ ସର୍ଗାତ୍ମକ ଖଣ୍ଡକାବ୍ୟ । ଯଦିଓ ଏହା ସବୁଦୃଷ୍ଟିରୁ କାବ୍ୟ ବିଭାଗରେ ଆସୁନାହିଁ, ତଥାପି ଏହାର ବର୍ଣ୍ଣନାପରକ ଖଣ୍ଡକାବ୍ୟତ୍ୱ ଅବଶ୍ୟ ସ୍ୱୀକର୍ତ୍ତବ୍ୟ । କେତେକ ଆଧୁନିକ ସମାଲୋଚକ ଗୀତଗୋବିନ୍ଦକୁ ଗୀତିନାଟ୍ୟ ବୋଲି ମନେ କରନ୍ତି ।

Macdonell କହିଛନ୍ତି -

The transitional stage between pure lyric and pure drama, lyrical drama though dating from the twelfth century is the earliest literary specimen of primitive type of play.....

The poem contains no dialogue in the proper sense.

ଅତଏବ ଗୀତଗୋବିନ୍ଦକୁ ଶୁଦ୍ଧ ଗୀତିକାବ୍ୟ ଓ ଶୁଦ୍ଧନାଟ୍ୟର ମଧ୍ୟବର୍ତ୍ତୀ ବୋଲି ବିଚାର କରାଯାଏ ।

ଯଦିଓ ଏହା ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ହୋଇଥିଲା ତଥାପି ଏହାକୁ ପରିପକ୍ୱତା ଲାଭ କରିଥିବା ନାଟ୍ୟର ଉଦାହରଣରୂପରେ ପ୍ରଥମ ନିଦର୍ଶନ ବୋଲି ମନେ କରାଯିବା ଉଚିତ୍ । ଯଦିଓ ଏଥିରେ କୌଣସି ସଂଳାପ ନାହିଁ ତଥାପି ଏହାକୁ ଶୁଦ୍ଧନାଟ୍ୟର ଅନୁଗାମୀ ବୋଲି ମନେ କରାଯାଇପାରେ ।

ଗୀତଗୋବିନ୍ଦର ବାରଟି ଯାକ ସର୍ଗ ଗୀତିମୟ । ସରସ ମଧୁର କବିତାର ପରାକାଷ୍ଠା ଏଥିରେ ନିଦର୍ଶିତ ହୋଇଛି । ଭକ୍ତି ଓ ସରସ କବିତାର ଏକତ୍ର ସମାବେଶ ଗୀତଗୋବିନ୍ଦ ପରି ଆଉ କେଉଁଠି ସମ୍ଭବ ହୋଇନାହିଁ । ଯେପରି-

'ଚନ୍ଦନ-ଚର୍ଚ୍ଚିତ-ନୀଳ-କଳେବର-ପୀତବସନ-ବନମାଳୀ
କେଳି-ଚଳନ-ମଣିକୁଣ୍ଡଳ-ମଣ୍ଡିତ-ଗଣ୍ଡଯୁଗ-ସ୍ମିତଶାଳୀ ।
ହରିରିହ ମୁଗ୍ଧବଧୂନିକରେ
ବିଳସତି ବିଳାସିନୀ କେଳିପୁରେ ॥'

ଅଥବା

'ରତିସୁଖସାରେ ଗତିମଭିସାରେ ମଦନମମୋହରବେଶଂ
ନ କୁରୁ ନିତମ୍ବିନି ଗମନବିଳମ୍ବନମନୁସର ତଂ ହୃଦୟେଶଂ ।
ଧୀରସମୀରେ ଯମୁନାତୀରେ ବସତି ବନେ ବନମାଳୀ
ପୀନ-ପୟୋଧର-ପରିସର-ମର୍ଦ୍ଦନ-ଚଞ୍ଚଳ-
କରଯୁଗଶାଳୀ ॥'

କେତେକ ବିଦ୍ୱାନ '' ପୀନ ପୟୋଧର'' ଇତ୍ୟାଦି ଶୃଙ୍ଗାରପ୍ରଧାନ ପଦଗୁଡ଼ିକୁ ଦେଖି ଅଶ୍ଳୀଳତା ବୋଲି କହନ୍ତି । କିନ୍ତୁ ବାସ୍ତବରେ ଏହି ଗ୍ରନ୍ଥରେ ଶ୍ରୀକୃଷ୍ଣ ହେଉଛନ୍ତି ପରମାତ୍ମା ତତ୍ତ୍ୱ ଓ ଗୋପିକାମାନେ ହେଉଛନ୍ତି ଜୀବତତ୍ତ୍ୱ । ସେ ଦୁହିଙ୍କର ମିଳନ ଏଠାରେ ବର୍ଣ୍ଣିତ ହୋଇଛି ବୋଲି ଅନ୍ୟମାନେ ମତ ଦିଅନ୍ତି । ସେମାନେ ଅଶ୍ଳୀଳତାକୁ ଖଣ୍ଡନ କରି କହନ୍ତି-

ଗାଃ ପାତି ଇତି ଗୋପଃ ଅର୍ଥାତ୍ ଶରୀରମ୍।
ଗୋପ + ଇନ୍ = ଗୋପୀ ଅର୍ଥାତ୍ ଶରୀରୀ = ଆତ୍ମା
ପୀନଃ = ବିଶାଳଃ, ପୟୋଧରଃ = ଅଜ୍ଞାନମେଘଃ
ଜ୍ଞାନାବରକତ୍ୱାତ୍ । ତସ୍ୟ ମର୍ଦ୍ଦନେ କରଯୁଗମ୍ ସାଳମ୍ବନ
ନିରାଲମ୍ବନ ସମାଧିରୂପ ପ୍ରକାଶକ୍ଷମମ୍ ତଚ୍ଛାଳୀ ଇତ୍ୟାଦି।

ଏହି ପ୍ରକାରର ଅର୍ଥ କରି ଏହାର ଅଶ୍ଳୀଳତାକୁ ଅପନୋଦନ କରିଥାଆନ୍ତି ।

ଗୀତଗୋବିନ୍ଦରେ ଥିବା ଗୀତଗୁଡ଼ିକ ରାଗ ଓ ତାଳ ଦ୍ୱାରା ଶୁଦ୍ଧ, ପରିଷ୍କୃତ ପଦଯୁକ୍ତ ଏବଂ ନିତ୍ୟାନ୍ତ ମଧୁର ।

'ଚିନ୍ତୟାମି ତଦାନନଂ କୁଟିଳଭ୍ରୂରୋଷ ଭରେଣ
ଶୋଣପଦ୍ମମିବୋପରି ଭ୍ରମତାକୁଳଂ ଭ୍ରମରେଣ ।
ନିନ୍ଦତି ଚନ୍ଦନମିନ୍ଦୁକିରଣମନୁବିନ୍ଦତି ଖେଦମଧୀମରମ୍
ବ୍ୟାଳନିଳୟମିଳନେନ ଗରଳମିବ କଳୟତି ମଳୟ ସମୀରମ୍ ।'

ଇତ୍ୟାଦି ଗୀତଗୁଡ଼ିକ ସରସ କବିତାର ଅସମାନ ନିଦର୍ଶନ । କେବଳ ଗୀତନିର୍ମାଣରେ ନୁହେଁ, ପରନ୍ତୁ ପଦ ନିର୍ମାଣରେ ମଧ୍ୟ ପରମ ଉତ୍କର୍ଷ ଏଥିରେ ପ୍ରକାଶିତ ହୋଇଛି । ଯଥା-

'ଅତ୍ରାନ୍ତରେ ଚ କୁଳଟା-କଳ-ବର୍ତ୍ମପାତ-
ସଞ୍ଜାତ-ପାତକଇବସ୍ଫୁଟଲାଞ୍ଛନଶ୍ରୀଃ

ବୃନ୍ଦାବନାନ୍ତର ମଦୀପୟଦଂଶୁଜାଳୈ-
ର୍ଦିକ୍ ସୁନ୍ଦରୀ-ବଦନ-ଚନ୍ଦନବିନ୍ଦୁରିନ୍ଦୁଃ॥'

ପୁନଶ୍ଚ "The Wonder that was India" ''ପୁସ୍ତକରେ (A.L. Basham) ଜୟଦେବଙ୍କ କବିତାର ଇଂରାଜୀ ଅନୁବାଦର ଚମତ୍କାରିତାକୁ ଲକ୍ଷ୍ୟ କରନ୍ତୁ ।

'ବହତି ମଳୟସମୀରେ ମଦନମୁପନିଧାୟ
ସ୍ଫୁଟତି କୁସୁମନିକରେ ବିରହିହୃଦୟଦଳନାୟ
ସଖି ହେ ସୀଦତି ତବ ବିରହେ ବନମାଳୀ॥'

"When the breeze blows from the Southern mountains and brings the Love- god with it, When masses of flowers burst forth to rend the hearts of parted lovers, he is grieved at separation from you, decked with his forest garlands."

ଶ୍ରୀ ଗୀତଗୋବିନ୍ଦରେ ବିଷୟବସ୍ତୁର ସମାବେଶ, ପ୍ରକାଶଭଙ୍ଗୀ ଓ ଭାଷାଶୈଳୀ ଯେପରି ଅସାମାନ୍ୟ ଲୋକ-ପ୍ରିୟତା ଅର୍ଜନ କରିଛି, ସେହିପରି ପରବର୍ତ୍ତୀ ସମଗ୍ର ଭାରତବର୍ଷର ବିଭିନ୍ନ ଭାଷାର କବିମାନଙ୍କୁ ମଧ୍ୟ ଏହି ଶୈଳୀରେ କାବ୍ୟରଚନା କରିବାଲାଗି ପ୍ରଭାବିତ କରିଛି ।

ରାଧାକୃଷ୍ଣଙ୍କର ଏହି ଅମର ପ୍ରେମକାହାଣୀ ଆଜି ମଧ୍ୟ ଓଡ଼ିଶାର ଗ୍ରାମେ ଗ୍ରାମେ ମନ୍ଦିରମାନଙ୍କରେ ଗାନ କରାଯାଏ । ପୁରୀର ଜଗନ୍ନାଥ ମନ୍ଦିରରେ ମଧ୍ୟ ଏହା ପ୍ରତ୍ୟହ ବୋଲାଯିବା ବିଧି ରହିଛି। କବି ଜୟଦେବ ପତ୍ନୀ ପଦ୍ମାବତୀଙ୍କ ସହିତ ଭକ୍ତିଗଦ୍‌ଗଦ୍ କଣ୍ଠରେ ସ୍ୱରଚିତ ଏହି କବିତା ଗାନ କରି ପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ସମ୍ମୁଖରେ ଭକ୍ତିର ପସରା ଅଜାଡ଼ି ଦେଉଥିଲେ ଦ୍ୱାଦଶ ଶତକରେ । ସାରା ମନ୍ଦିର ପରିବେଶ ଆନନ୍ଦ କଲ୍ଲୋଳରେ ନିମଜ୍ଜିତ ହୋଇଯାଉଥିଲା । ସେଥିପାଇଁ ବାସ୍ତବରେ କୁହାଯାଇଛି-

'ବାଗ୍ ଦେବତା ଚରିତ ଚିତ୍ରିତଚିତ୍ତସଦ୍ମା
ପଦ୍ମାବତୀଚରଣଚାରଣଚକ୍ରବର୍ତ୍ତୀ ।
ଶ୍ରୀବାସୁଦେବରତିକେଳିକଥାସମେତ-
ମେତଂ କରୋତି ଜୟଦେବକବିଃ ପ୍ରବନ୍ଧମ୍।'



# ସ୍ମର ଗରଳ ଖଣ୍ଡନଂ ମମ ଶିରସି ମଣ୍ଡନଂ

ମଧୁସୂଦନ ପଟ୍ଟନାୟକ

**କେ**ନ୍ଦୁବିଲ୍ୱ ପୁରୀ ଜିଲ୍ଲାର ଏକ କ୍ଷୁଦ୍ରଗ୍ରାମ । ସେଠାରେ ଜୟଦେବ ପିତା ଭୋଜଦେବ ଓ ମାତା ବାମାଦେବୀଙ୍କ ଔରସରୁ ଜନ୍ମ ଗ୍ରହଣ କରିଥିଲେ । ଶୈଶବାବସ୍ଥାରେ ଜୟଦେବ ପିତୃମାତୃହୀନ ହୋଇପଡ଼ିଲେ । ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରି ଶିକ୍ଷାଲାଭର କୌଣସି ସୁବିଧା ପାଇନଥିଲେ ସୁଦ୍ଧା ସଂସ୍କୃତ ଭାଷାରେ ଯଥେଷ୍ଟ ପାରଦର୍ଶିତା ଲାଭ କରିଥିଲେ । ଏହି ବାଲ୍ୟକାଳରୁ ହିଁ ତାଙ୍କର ଜଗନ୍ନାଥଙ୍କଠାରେ ପ୍ରଗାଢ଼ ଭକ୍ତି ଥିଲା ।

ସେତେବେଳେ ଦେବଶର୍ମା ନାମକ ଜନୈକ ବ୍ରାହ୍ମଣ ନିଃସନ୍ତାନ ଥିବାରୁ ପୁରୀ ଆସି ପୁତ୍ରଲାଭ ଆଶାରେ ଜଗନ୍ନାଥଙ୍କ ନିକଟରେ ମାନସିକ କଲେ । ପ୍ରଭୁଙ୍କ କୃପାରୁ ଯଦି ତାଙ୍କର କୌଣସି ସନ୍ତାନସନ୍ତତି ହୁଅନ୍ତି, ତେବେ ପ୍ରଥମ ଗର୍ଭର ସନ୍ତାନକୁ ଜଗନ୍ନାଥଙ୍କ ସେବାରେ ଉତ୍ସର୍ଗ କରିବେ ।

ନିର୍ଦ୍ଦିଷ୍ଟ ସମୟ ଅତିକ୍ରାନ୍ତ ହେବାପରେ ପ୍ରଥମେ ତାଙ୍କର ଏକ କନ୍ୟା ଜାତ ହେଲା । ପରେ ଏକ ପୁତ୍ରମଧ୍ୟ ଜାତ ହେଲା । ବ୍ରାହ୍ମଣ ଜଗନ୍ନାଥଙ୍କ ନିକଟରେ ମନାସି ଥିବା ବିଷୟ ସ୍ମରଣ କଲେ । କନ୍ୟା ବଡ଼ ହେବା ପରେ ଦେବଶର୍ମା କନ୍ୟାକୁ ଘେନିଆସି ପୁରୀରେ ପହଞ୍ଚିଲେ । ଦେବଦର୍ଶନ ପରେ ଜଗନ୍ନାଥଙ୍କୁ ନିଜ ମନକଥା ଜଣାଇଲେ । ଜଗନ୍ନାଥ ସେଦିନ ରାତିରେ ସ୍ୱପ୍ନରେ ବ୍ରାହ୍ମଣଙ୍କୁ ଆଦେଶ ଦେଲେ ଯେ କନ୍ୟାକୁ ନେଇ ତାଙ୍କର ପରମଭକ୍ତ ଜୟଦେବଙ୍କୁ ପ୍ରଦାନ କରନ୍ତୁ । ତଦ୍ୱାରା ସେ ଭାରି ଖୁସି ହେବେ ।

ସ୍ୱପ୍ନାଦେଶ ଲାଭ କରି ପରଦିନ ପ୍ରଭାତରେ ବ୍ରାହ୍ମଣ ଜୟଦେବଙ୍କ ନିକଟରେ କନ୍ୟାସହ ପହଞ୍ଚିଲେ । ସେତେବେଳେ ଜୟଦେବ ଏକ ଝାଟିମାଟି କୁଡ଼ିଆରେ ଦରିଦ୍ର ବେଶରେ ବାସ କରୁଥିଲେ । ଦେବଶର୍ମା ତାଙ୍କୁ ଜଗନ୍ନାଥଙ୍କ ସ୍ୱପ୍ନାଦେଶ ଜଣାଇ କନ୍ୟାକୁ ଗ୍ରହଣ କରିବାକୁ ଅନୁରୋଧ କଲେ । କିନ୍ତୁ ଜୟଦେବ ଏହା ସଂପୂର୍ଣ୍ଣ ମିଥ୍ୟା ବୋଲି କହି ଅସମ୍ମତ ହେଲେ । ବ୍ରାହ୍ମଣ କନ୍ୟାକୁ କହିଲେ - 'ମା', ଯେ ତୋର ସ୍ୱାମୀ । ତାଙ୍କର ଆଜ୍ଞା ପାଳନ କରିବା ତୋର ପରମ ଧର୍ମ ।' ଏହା କହି କନ୍ୟାକୁ ଛାଡ଼ି ଚାଲି ଆସିବାକୁ ଉଦ୍ୟମ କରନ୍ତେ ଜୟଦେବ କନ୍ୟାକୁ କହିଲେ - 'ତୁମେ ପିତାଙ୍କ ସହିତ ଚାଲିଯାଅ । ମୁଁ ତୁମକୁ ଗ୍ରହଣ କରିପାରିବିନି ।' କନ୍ୟା କହିଲେ- 'ପିତା ମୋତେ ଯାହାଙ୍କୁ ସମର୍ପଣ କରି ଦେଇଗଲେ, ସେ ମୋର ସ୍ୱାମୀ । ତାଙ୍କୁ ଛାଡ଼ି ମୁଁ କଦାପି ଯାଇପାରିବି ନାହିଁ ।' ଜୟଦେବ ବାଧହୋଇ ଦେବଶର୍ମାଙ୍କ ଘରକୁ ଯାଇ ସାମାଜିକ ପ୍ରଥାନୁସାରେ ସେହି କନ୍ୟାକୁ ବିବାହ କଲେ ଓ ତାଙ୍କର ନାମ ରଖିଲେ ପଦ୍ମାବତୀ । ବିବାହ ପରେ ଦମ୍ପତି ଏକମନ ଏକପ୍ରାଣ ହୋଇ ଜଗନ୍ନାଥଙ୍କ ସେବାରେ ନିଜକୁ ନିୟୋଜିତ କଲେ ।

ତତ୍‌ପରେ ଜୟଦେବ ରଚନା କଲେ ଗୀତିକାବ୍ୟ ଗୀତଗୋବିନ୍ଦ । ପ୍ରତ୍ୟହ ପତ୍ନୀସହ ଜଗନ୍ନାଥ ମନ୍ଦିରରେ ନାଚି ନାଚି ଗାଇବାକୁ ଲାଗିଲେ । ଏଥିରେ ପ୍ରଭୁ ଏପରି ସନ୍ତୁଷ୍ଟ ହେଲେ ଯେ ଶେଷକୁ ସେ ନୃତ୍ୟଗୀତ ପ୍ରଭୁଙ୍କ ଦୈନନ୍ଦିନ ନୀତିରେ ପରିଣତ ହେଲା। ।

ଜୟଦେବ ଗୀତଗୋବିନ୍ଦ ରଚନା ସମୟରେ ରାଧାଙ୍କର ମାନଭଞ୍ଜନ ଲେଖୁ ଲେଖୁ 'ସ୍ମର ଗରଳ ଖଣ୍ଡନଂ, ମମ ଶିରସି ମଣ୍ଡନଂ ଦେହି ପଦପଲ୍ଲବ ମୁଦାରଂ' - ଏହି ଭାବ ମନରେ ଉଦ୍ରେକ ହେଲା । କିନ୍ତୁ ସେ ଶ୍ରୀକୃଷ୍ଣଙ୍କର ଐଶ୍ୱରିକତା ବିଷୟ ଚିନ୍ତାକରି ତାହା ଲିପିବଦ୍ଧ କରିବାକୁ ସଂକୁଚିତ ହେଲେ ଏବଂ ଅନ୍ୟ କୌଣସି ଉପଯୁକ୍ତ ଭାବନ ପାଇ ସେହି ପଦଟିକୁ ସଂପୂର୍ଣ୍ଣ କରିନପାରି ସ୍ନାନ କରିବାକୁ ଚାଲିଗଲେ । ଇତ୍ୟବସରରେ ଜୟଦେବ ବେଶରେ ଶ୍ରୀକୃଷ୍ଣ ଆସି ପଦ୍ମାବତୀଙ୍କଠାରୁ ପୋଥି ମାଗିନେଇ ପାଦପୂରଣ କରିଦେଇ ସ୍ନାନ କରିବାକୁ ଗଲେ । ସ୍ନାନସାରି ପ୍ରକୃତ ଜୟଦେବ କିୟତ୍‌କ୍ଷଣ ପରେ ଘରକୁ ଆସିଲେ ।

ପଦ୍ମାବତୀ ତାଙ୍କୁ ପୁଣି ହଠାତ୍ ସ୍ନାନ ସାରି ଆସିବାର ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ ଏବଂ ପୋଥି ମାଗିନେଇ ପଦ

ଯୋଡ଼ିବା କଥା କହିଲେ । ପୋଥିଖେଦା ଖୋଲି ଜୟଦେବ ଦେଖିଲେ ପଦଟି ପୂର୍ଣ୍ଣଭାବେ ଲେଖାହୋଇଛି । ଏହାର ରହସ୍ୟ ଜୟଦେବ ବୁଝିନପାରି ଚିନ୍ତାଶୀଳ ହେଲେ । ପ୍ରଭୁ ରାତ୍ରରେ ସ୍ୱପ୍ନଯୋଗେ ତାଙ୍କୁ ସମସ୍ତ କଥା କହି ତାଙ୍କର ସନ୍ଦେହ ମୋଚନ କଲେ । ଗୀତଗୋବିନ୍ଦ ସଂପୂର୍ଣ୍ଣ ଲେଖାହେବା ପରେ ଜୟଦେବ ଜଗନ୍ନାଥଙ୍କୁ ସମର୍ପଣ କରି ଧନ୍ୟ ହେଲେ ।

ଉତ୍କଳର ରାଜା ସେହି ଗୀତଗୋବିନ୍ଦର ଅନୁକରଣରେ ନିଜେ ଏକ କାବ୍ୟ ରଚନା କରି ରାଜ୍ୟରେ ଘୋଷଣା କଲେ ଯେ ମୋ' ପ୍ରଣିତ ଗୀତଗୋବିନ୍ଦ ନ ଗାଇ ଜୟଦେବଙ୍କ ଗୀତଗୋବିନ୍ଦ ଯେ ଗାୟନ କରିବ, ତାକୁ ଉପଯୁକ୍ତ ଶାସ୍ତିବିଧାନ କରାଯିବ । ଦିନେ ଜୟଦେବ ସ୍ୱରଚିତ ଗୀତଗୋବିନ୍ଦ ଗାଉଥିବା ବେଳେ ରାଜା ନିଜେ ଶୁଣି ଆଦେଶ ଉଲଙ୍ଘନର କାରଣ ପଚାରିଲେ । ଜୟଦେବ ଉତ୍ତର ଦେଲେ - 'ମହାଭାଗ, ଜଗନ୍ନାଥ ମୋର ଗୀତଗୋବିନ୍ଦ ଶୁଣି ପରମ ପ୍ରୀତ ହୁଅନ୍ତି ।' ଏହାଶୁଣି ରାଜା ଉଭୟ ଗୀତଗୋବିନ୍ଦକୁ ଜଗନ୍ନାଥଙ୍କ ସମ୍ମୁଖରେ ସ୍ଥାପନ କରି କହିଲେ - 'ଏହି ଦୁଇ ଗୀତଗୋବିନ୍ଦ ମଧ୍ୟରୁ ଯେଉଁଟି ଅଧିକ ପ୍ରିୟ, ତାହାର ଆସନ ଉଚ୍ଚରେ ହେଉ ।' ଏହା କହିବା ପରେ ମନ୍ଦିର ଦ୍ୱାର ବନ୍ଦ କରି ଦିଆଗଲା । କିୟତ୍‌କ୍ଷଣ ପରେ ଦ୍ୱାର ଫିଟାଗଲା । ସ୍ୱୟଂ ରାଜା ଓ ଅନ୍ୟମାନେ ମନ୍ଦିର ଭିତରେ ପ୍ରବେଶ କରି ଦେଖିଲେ ଯେ ପ୍ରକୃତରେ ଜୟଦେବଙ୍କ ଗୀତଗୋବିନ୍ଦ ପ୍ରଭୁଙ୍କ ହୃଦୟରେ ସ୍ଥାନ ପାଇଛି ଏବଂ ରାଜାଙ୍କ ଗୀତଗୋବିନ୍ଦ ପଦତଳେ ନିକ୍ଷିପ୍ତ ହୋଇଛି । ଏଥିରେ ରାଜା ଦୁଃଖିତ ହେବାରୁ ପ୍ରଭୁ ସ୍ୱପ୍ନରେ ରାଜାଙ୍କୁ ଦର୍ଶନ ଦେଇ ଆଶ୍ୱାସନା ଦେଲେ ।

କଥିତ ଅଛି, ରାଣୀ ଦିନେ ପଦ୍ମାବତୀଙ୍କୁ ପରୀକ୍ଷା କରିବା ପାଇଁ ମନରେ ଭାବି ମିଥ୍ୟାରେ ତାଙ୍କୁ ଜୟଦେବଙ୍କ ମୃତ୍ୟୁ ସମ୍ବାଦ ଦେଲେ । ପଦ୍ମାବତୀ ଏହା ଶୁଣିଲା କ୍ଷଣି ମୂର୍ଚ୍ଛାଗଲେ । ସେହି ମୂର୍ଚ୍ଛିତାବସ୍ଥା ମହାନିଦ୍ରାରେ ପରିଣତ ହେଲା । ଏହା ଦେଖି ରାଣୀ ଧୈର୍ଯ୍ୟହରା ହେଲେ । ତତ୍ପରେ ଜୟଦେବ ଆସି ନାନା ବାଦ୍ୟ ବଜାଇ ମାନଭଞ୍ଜନର ପଦଦ୍ୱୟ ଗାନ କଲେ - 'ପ୍ରିୟେ ଚାରୁଶୀଳେ, ମୁଞ୍ଚମୟିମାନମନିଦାନଂ ।' ତାହୁଁ ତାହୁଁ ପଦ୍ମାବତୀ ପୁନର୍ଜୀବିତ ହେଲେ ।

ଅନ୍ୟ ଏକ ଘଟଣା । ଦିନେ ଜୟଦେବ ଗାଁରୁ ଧନରତ୍ନାଦି ନେଇ ଆସୁଥିବା ସମୟରେ ଦଳେ ଦସ୍ୟୁଙ୍କ ହାବୁଡ଼ରେ ପଡ଼ିଲେ । ସେମାନେ ଯାହା ଧନରତ୍ନ ତ ନେଲେ, ତାଙ୍କର ହାତପାଦ କାଟି ବନ ମଧ୍ୟରେ ପକାଇ ଦେଇ ଚାଲିଗଲେ । ସୌଭାଗ୍ୟବଶତଃ ସେଦିନ ମୃଗୟାକୁ ଯାଇ ଉତ୍କଳରାଜା ଜୟଦେବଙ୍କର ଏ ମୁମୂର୍ଷୁ ଅବସ୍ଥା ଦେଖି ରାଜପୁରୀକୁ ଅଣାଇଲେ ଓ ଚିକିତ୍ସାର ବନ୍ଦୋବସ୍ତ କରାଇଲେ । ଅଳ୍ପଦିନରେ ସେ ଆରୋଗ୍ୟ ଲାଭ କଲେ ସିନା ତାଙ୍କର ହାତଗୋଡ଼ ଖଣ୍ଡିଆ ରହିଲା । କିଛିଦିନ ପରେ ସେହି ଦସ୍ୟୁଦଳ ଛଦ୍ମସନ୍ନ୍ୟାସୀ ବେଶରେ ଜୟଦେବଙ୍କ ଘରେ ପହଞ୍ଚିଲେ । ଜୟଦେବ ସେମାନଙ୍କୁ ଅତିଥିଭାବରେ ସତ୍କାର କଲେ ଏବଂ ରାଜାଙ୍କ ଆଗରେ ସେମାନଙ୍କର ସଦ୍‌ଗୁଣାବଳୀ ବର୍ଣ୍ଣନା କରି ନାନା ଉପହାର ପ୍ରଦାନ କରାଇଲେ । ଅଧିକନ୍ତୁ, ଦୁର୍ଗମ ବନପଥ ଅତିକ୍ରମ କରାଇ ଦେବାପାଇଁ କେତେଜଣ ପାଇକଙ୍କୁ ସେମାନଙ୍କ ସାଥିରେ ଦେଲେ । ଯାଉ ଯାଉ ବାଟରେ ଛଦ୍ମବେଶୀ ଦସ୍ୟୁମାନେ ପାଇକମାନଙ୍କୁ କହିଲେ - ଯେଉଁ ବ୍ରାହ୍ମଣ ଆମ୍ଭଙ୍କୁ ଧନରତ୍ନ ଦିଆଇଲେ, ସେ ଜଣେ ଚୋର । ଦିନେ ସେ ଚୋରିକରି ପ୍ରାଣଦଣ୍ଡ ପାଇଥିଲେ । ଆମ୍ଭେମାନେ ତାଙ୍କର ଜୀବନରକ୍ଷା କରିଥିଲୁ । ମାତ୍ର ଘାତକମାନେ ତାଙ୍କର ହାତପାଦ ଛେଦନ କରିଦେଲେ । ଏଣୁ ସେ ପୂର୍ବ ଉପକାର ମନେପକାଇ ଶ୍ରଦ୍ଧାଭକ୍ତି ଦେଖାଇ ଧନରତ୍ନ ଦିଆଇଲେ । ଏହା କହିବା ମାତ୍ରେ ସେମାନଙ୍କ ମସ୍ତକରେ ବଜ୍ରପାତ ହେଲା । ପାଇକମାନେ ରାଜାଙ୍କ ନିକଟରେ ଏ ବିଷୟରେ ଜଣାଇଲେ । ଜୟଦେବ ସେମାନଙ୍କ ମୃତ୍ୟୁ ସମ୍ବାଦ ଶୁଣି ହାତପାଦ କଚାଡ଼ି କାନ୍ଦିଲେ । ଫଳାଫଳସ୍ୱରୂପ ହସ୍ତପଦ ପୂର୍ଣ୍ଣାଙ୍ଗ ହେଲା ।

ଜୟଦେବ ପ୍ରତିଦିନ ଗଙ୍ଗାସ୍ନାନ କରନ୍ତି । ବାର୍ଦ୍ଧକ୍ୟ ଆକ୍ରମଣ ଯୋଗୁଁ ସେ ଆଉ ଗଙ୍ଗାନଦୀକୁ ଯାଇ ସ୍ନାନ କରି ପାରିଲେ ନାହିଁ । ଗଙ୍ଗାମାତା ଏହା ଜାଣି ତାଙ୍କୁ ସ୍ୱପ୍ନରେ କହିଲେ - 'ଜୟଦେବ ! କାଲିଠାରୁ ତୁମେ ଏଠାକୁ ଆସିବା ଦରକାର ନାହିଁ । ମୁଁ ତୁମ୍ଭ ପୁଷ୍କରିଣୀରେ ଆବିର୍ଭୂତ ହେବି । ପୋଖରୀରେ ଏକ ପଦ୍ମଫୁଲ ପ୍ରସ୍ଫୁଟିତ ହେବ । ସେହିଠାରେ ସ୍ନାନ କରିବ ।' ରାଜା ମଧ୍ୟ ଏହି ସ୍ୱପ୍ନ ଦେଖିଲେ । ପରଦିନ ଅବିକଳ ତାହା ଘଟିଲା, ଯାହାକୁ ସେମାନେ ସ୍ୱପ୍ନରେ ଦେଖିଥିଲେ । ଜୟଦେବ ପୁଷ୍କରିଣୀରେ ସପ୍ତଦିନ ସ୍ନାନକରି ଦିବ୍ୟଦେହ ଧାରଣ କଲେ ।

ଜୟଦେବ ତାଙ୍କର ଅନ୍ତିମ ଜୀବନ ପତ୍ନୀ ପଦ୍ମାବତୀଙ୍କ ସହିତ ବୃନ୍ଦାବନରେ ଅତିବାହିତ କଲେ । ସେଠାରେ ପତିପତ୍ନୀ ଅପ୍ରକଟ ହୋଇଥିଲେ । ତାଙ୍କର କୁଳଦେବତା ରାଧାମାଧବ ତାଙ୍କ ପାଖରେ ଥିଲେ । ଜୟଦେବଙ୍କ ମହାପ୍ରୟାଣ ପରେ ଜୟପୁର ରାଜା ସେ ଦେବ ବିଗ୍ରହଙ୍କୁ ନିଜ ରାଜ୍ୟକୁ ଅଣାଇ ଦିବ୍ୟ ମନ୍ଦିରରେ ରଖାଇଲେ । ସେଠାରେ ବିଗ୍ରହଙ୍କ ପୂଜା ଆରାଧନା ଅଦ୍ୟାବଧି କରାଯାଉଛି ।

କୈବଲ୍ୟ
ଦଣ୍ଡତୋଟା, ପୁରୀ

# ଶ୍ରୀ ଜୟଦେବ - ଏକ ବିରଳ ବ୍ୟକ୍ତିତ୍ୱ

ମଧୁମିତା ମିଶ୍ର

ଯଦି ହରିସ୍ମରଣେ ସରସଂ ମନୋ
ଯଦି ବିଳାସକଳାସୁ କୁତୂହଳମ୍
ମଧୁର କୋମଳକାନ୍ତ ପଦାବଳୀଂ
ଶୃଣୁ ତଦା ଜୟଦେବ ସରସ୍ୱତୀମ୍ ।

ଅର୍ଥାତ୍ ଯଦି ହରିଙ୍କୁ ସ୍ମରଣ କରି ଗୀତଗୋବିନ୍ଦ ପାଠ କରାଯାଏ ତେବେ ଭକ୍ତି ରସ ପାନ କରିପାରିବ ଏବଂ ଯଦି ବିଳାସ କଳା ହିସାବରେ ଗୀତଗୋବିନ୍ଦ ପାଠ କରାଯାଏ, ତେବେ ଶୃଙ୍ଗାର ରସ ପାନ କରିବ । ଏଣୁ ଏହି ଶ୍ଳୋକରୁ ଶ୍ରୀଗୀତଗୋବିନ୍ଦର ରଚୟିତା ଶ୍ରୀ ଜୟଦେବଙ୍କ କଳାକୃତିର ପରିଚୟ ମିଳେ ।



ଭାରତୀୟ ସାହିତ୍ୟ ଇତିହାସରେ କେତେ ବିରଳ ସାହିତ୍ୟ କଳାକୃତି ମଧ୍ୟରୁ ଶ୍ରୀ ଜୟଦେବଙ୍କ ଗୀତଗୋବିନ୍ଦ ଅନ୍ୟତମ । ଜର୍ମାନର କବି ଗୋଇଥିଙ୍କ ମତରେ ଅମର କବି କାଳିଦାସଙ୍କ କଳାକୃତି ସହିତ କାଳଜୟୀ କବି ଶ୍ରୀ ଜୟଦେବଙ୍କ ଗୀତଗୋବିନ୍ଦ ଭାରତୀୟ ସାହିତ୍ୟାକାଶର ଧ୍ରୁବତାରା ସଦୃଶ୍ୟ ।

ପୁରୀ ଜିଲ୍ଲାର ପ୍ରାଚୀନଦୀ କୂଳରେ କେନ୍ଦୁ ଓ ବିଲ୍ୱ ପରିବେଷ୍ଟିତ କେନ୍ଦୁବିଲ୍ୱ ଗ୍ରାମରେ ଜନ୍ମିତ ଏହି ଓଡ଼ିଆ କବି ସରଳ ସଂସ୍କୃତ ଭାଷାରେ ଶ୍ରୀଗୀତଗୋବିନ୍ଦ ରଚନା କରିଥିଲେ । ଭକ୍ତକବି ଶ୍ରୀ ଜଗନ୍ନାଥ ଦାସଙ୍କ 'ଭାଗବତ' ପରି ଶ୍ରୀଗୀତଗୋବିନ୍ଦର କାନ୍ତକୋମଳ ପଦାବଳୀର ମଧୁରତା ଚାରିଆଡ଼େ ଏପରି ବ୍ୟାପୀ ଯାଇଥିଲା ଯେ ତାହାର ମଧୁର ମୂର୍ଚ୍ଛନାରେ ଶ୍ରୀଜଗନ୍ନାଥ ନିଜେ ବିଭୋର ହୋଇଥିଲେ । ଏହି ଗୀତଗୋବିନ୍ଦର ସାଙ୍ଗିତିକ ପଦାବଳୀରେ ଆକୃଷ୍ଟ ହୋଇ ମାଳିକନ୍ୟା ଯେତେବେଳେ ବଗିଚାରେ ଗୀତଗାଇଛି, ସେତେବେଳେ ଶ୍ରୀଜଗନ୍ନାଥ ରତ୍ନସିଂହାସନ ଛାଡ଼ି ତା'ପଛେ ତନ୍ମୟ ହୋଇ ଶୁଣିଛନ୍ତି ଏବଂ କଣ୍ଟାରେ ତାଙ୍କ ଲୁଗା ଲାଗି ଚିରିଯାଇଛି । ଏକଥା ରାଜା ଶୁଣିବା ପରେ ଉଦ୍‌ବିଗ୍ନ ହୋଇ ଉଠିଥିଲେ ଏବଂ ମହାପ୍ରଭୁଙ୍କ ସ୍ୱପ୍ନାଦେଶ ଅନୁଯାୟୀ ମାଳିକନ୍ୟାକୁ ଶ୍ରୀମନ୍ଦିରରେ ଗୀତଗୋବିନ୍ଦ ଗାନ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଏଣୁ ଏଥିରୁ ତାଙ୍କ ବିରଳ ବ୍ୟକ୍ତିତ୍ୱର ପରିଚୟ ମିଳେ । ଗଙ୍ଗସମ୍ରାଟ କାମାର୍ଣ୍ଣବ ଦେବ ଶ୍ରୀଗୀତଗୋବିନ୍ଦ ଗାନ ନ ଶୁଣିବା ପର୍ଯ୍ୟନ୍ତ ଜଳଗ୍ରହଣ କରୁନଥିଲେ । ଶ୍ରୀଗୀତଗୋବିନ୍ଦର ମାଧୁର୍ଯ୍ୟରେ ପ୍ରଭାବିତ ହୋଇ ଅନେକ କବି ହଜାର ହଜାର ଛାନ୍ଦ, ଚଉପଦୀ, ଚଉତିଶା, ପୋଇ ବା ପଦୀ ରଚନା କରିଛନ୍ତି । ଇଂରାଜୀ ଭାଷା ଛଡ଼ା ଜର୍ମାନ୍, ଡଚ୍, ଫରାସୀ ଓ ଲାଟିନ୍ ଭାଷାରେ ମଧ୍ୟ ଗୀତଗୋବିନ୍ଦର ଅନୁବାଦ ପ୍ରକାଶିତ ହୋଇଛି । ଧର୍ମ ମତବାଦ ନିର୍ବିଶେଷରେ ଗୀତଗୋବିନ୍ଦ ପୋଥି ପୂଜିତ, ପଠିତ ଓ ଆଦୃତ ହେବାର ପରମ୍ପରା ଓଡ଼ିଶା ବ୍ୟତୀତ ଅନ୍ୟ କେଉଁଠାରେ ଦେଖାଯାଏ ନାହିଁ । ଶ୍ରୀଗୀତଗୋବିନ୍ଦର ମାଧୁର୍ଯ୍ୟରେ ଉଦ୍‌ବୃତ୍ତ ହୋଇ ଶ୍ରୀଜଗନ୍ନାଥ ଗୀତଗୋବିନ୍ଦ ଖଣ୍ଡୁଆ ପରିଧାନ କରିଥାଆନ୍ତି । ଏତଦ୍‌ବ୍ୟତୀତ କେନ୍ଦୁଲୀ ଶାଢ଼ୀ, ଦଶାବତାର ଶାଢ଼ୀ, ମାଳ ଓ ମୁଦି ଓ ଦଶାବତାର ଫଟୋ ଚିତ୍ର ମଧ୍ୟ ପ୍ରଭୁଙ୍କ କାର୍ଯ୍ୟରେ ଲାଗି ହେଉଛି । ଏଣୁ ଶ୍ରୀ ଜୟଦେବଙ୍କ ଲେଖନୀର ମୂନ ଏତେ ଶକ୍ତିଶାଳୀ ଥିଲା ଯେ ତାହା ସମସ୍ତଙ୍କ ହୃଦୟରେ ଭକ୍ତି ଓ ଶୃଙ୍ଗାରର ଏକ ତୀର ସଦୃଶ୍ୟ ଭେଦି ଯାଇଥିଲା । ତେଣୁ ସେ ହେଉଛନ୍ତି ଶ୍ରେଷ୍ଠ କବି ।

କବି ବ୍ୟତୀତ ତାଙ୍କର ଅନ୍ୟ ଏକ ବିରଳ ଗୁଣ ଥିଲା ସେ ନୃତ୍ୟ ଓ ସଂଗୀତ ନିର୍ଦ୍ଦେଶକ । ଏହାର ପ୍ରମାଣ ତାଙ୍କ ରଚିତ ଏକ ଶ୍ଳୋକରୁ ମିଳେ ।

'ବାଗ ଦେବତା - ଚରିତ ଚିତ୍ରିତ - ଚିତ୍ତସଦ୍ମା
ପଦ୍ମାବତୀ ଚରଣ ଚାରଣ ଚକ୍ରବର୍ତ୍ତୀ
ଶ୍ରୀବାସୁଦେବ ରତି କେଳି କଥା ସମେତ
ମେତଂ କରୋତି ଜୟଦେବ କବିଃ ପ୍ରବନ୍ଧମ୍ ।'

ଶ୍ରୀ ଜୟଦେବଙ୍କ ପତ୍ନୀ ପଦ୍ମାବତୀ ଥିଲେ ନୃତ୍ୟନିପୁଣା । ଶ୍ରୀମନ୍ଦିରରେ ପ୍ରତ୍ୟହ ନୃତ୍ୟ ସେବା ନିମନ୍ତେ ସେ ଶ୍ରୀଜଗନ୍ନାଥଙ୍କ ଆଦେଶ ପାଇଥିଲେ । ତେଣୁ ତାଙ୍କର ଚରଣକୁ ଚଳାଇବାର ଅଧିକାର ଅର୍ଥରେ ଶ୍ରୀ ଜୟଦେବ ନିର୍ଦ୍ଦେଶନା ଦେଉଥିଲେ । ଶ୍ରୀମନ୍ଦିରରେ ଜୟଦେବ ନିଜ ଲିଖିତ ଗୀତଗୋବିନ୍ଦ ଗାନ କଲାବେଳେ ପଦ୍ମାବତୀ ଗୀତଗୋବିନ୍ଦର ତାଳେ ତାଳେ ନୃତ୍ୟ କରି ଶ୍ରୀଜଗନ୍ନାଥଙ୍କଠାରେ ନୃତ୍ୟ ସେବା କରୁଥିଲେ । କାରଣ ଭକ୍ତିର ୬୪ ଅଂଶରୁ ନୃତ୍ୟ ଓ ସଂଗୀତ ସେବା ଏକ ଶ୍ରେଷ୍ଠ ଅଂଶ ଅଟେ । ଶ୍ରୀ ଜୟଦେବ ରାଗ ଓ ତାଳ ବିଶେଷଜ୍ଞ ଥିଲେ । ତାଙ୍କ ରଚିତ ଶ୍ରୀଗୀତଗୋବିନ୍ଦରେ ସେ ପ୍ରତ୍ୟେକ ଗୀତ ନିମନ୍ତେ ରାଗ ଠିକ୍ କରିଥିଲେ । ଏହି ରାଗ ସବୁ ହେଉଛି ମଙ୍ଗଳ ଗୁଜ୍ଜରୀ, ବରାଡ଼ି, ଦେଶ ବରାଡ଼ୀ, ରାମକେରୀ, ଗୁଜ୍ଜରୀ, ଗୁଣ୍ଡକେରୀ, କର୍ଣ୍ଣାଟ, ଦେଶାକ୍ଷ, ଭୈରବୀ, ବସନ୍ତ ଇତ୍ୟାଦି । ନୃତ୍ୟ ଓ ସଂଗୀତ ଶିଳ୍ପୀମାନଙ୍କ ନିମନ୍ତେ ଶ୍ରୀଗୀତଗୋବିନ୍ଦ ଏକ ଅମୂଲ୍ୟ ଗ୍ରନ୍ଥ ଅଟେ । କାରଣ ଏହା ଏକ ନୃତ୍ୟ ଓ ସଂଗୀତ ରୂପକ ରସାଳିତ ଗ୍ରନ୍ଥ । ଏଣୁ ଶ୍ରୀ ଜୟଦେବ ଏକାଧାରରେ ଜଣେ ଲେଖକ, ନୃତ୍ୟ ନିର୍ଦ୍ଦେଶକ ଓ ସଂଗୀତ ନିର୍ଦ୍ଦେଶକ ଥିଲେ ।

ଶ୍ରୀ ଜୟଦେବଙ୍କ ଭୂମିକା ଓଡ଼ିଶା ସାଂସ୍କୃତିକ ଇତିହାସରେ ଖୁବ୍ ଗୁରୁତ୍ୱପୂର୍ଣ୍ଣ ମନେ ହୁଏ । ଓଡ଼ିଶାର ଧର୍ମକ୍ଷେତ୍ରରେ ଘଟୁଥିବା ବୈପ୍ଳବିକ ପରିବର୍ତ୍ତନରେ ଶ୍ରୀ ଜୟଦେବଙ୍କ ଭୂମିକା ମୂଲ୍ୟବାନ ଅଟେ । ଓଡ଼ିଶାରେ ଜୈନ, ବୌଦ୍ଧ, ଶାକ୍ତ ମତବାଦର ପ୍ରାବଲ୍ୟରେ ବୈଷ୍ଣବ ମତବାଦ ନିଜର ସ୍ୱାତନ୍ତ୍ର୍ୟ କେବଳ ଶ୍ରୀ ଜୟଦେବଙ୍କ ପାଇଁ ବଜାୟ ରଖିଥିଲା । ଶ୍ରୀ ଚୈତନ୍ୟଙ୍କ ଆବିର୍ଭାବର ବହୁତ ପୂର୍ବରୁ ଜୟଦେବ, ଶ୍ରୀରାଧାମାଧବଙ୍କୁ ଓଡ଼ିଶାର ଧର୍ମ ଇତିହାସରେ ପ୍ରତିଷ୍ଠିତ କରାଇଥିଲେ । ତାଙ୍କ ରଚନାରେ ସେ ଶ୍ରୀକୃଷ୍ଣ, ମାଧବ, ବାସୁଦେବ, ଜଗଦୀଶ, କେଶବ, ପୁରୁଷୋତ୍ତମ, ହରି, ମୁରାରୀ ଇତ୍ୟାଦି ଭିନ୍ନ ଭିନ୍ନ ନାମକରଣ କରି ବିଭିନ୍ନ ଧର୍ମୀୟ ମତବାଦର ସମନ୍ୱୟ କରିଥିଲେ । ଶ୍ରୀଜଗନ୍ନାଥଙ୍କ ନିକଟରେ ଶ୍ରୀଗୀତଗୋବିନ୍ଦକୁ ପରିବେଷଣ କରି ସର୍ବମତର ଦେବତା ଶ୍ରୀଜଗନ୍ନାଥ ବୋଲି ପ୍ରମାଣ କରାଇଥିଲେ । ଶ୍ରୀ ଜୟଦେବଙ୍କ ରଚିତ 'ଦଶାବତାର' ଶ୍ଳୋକରେ ବୌଦ୍ଧପନ୍ଥୀ, ରାମପନ୍ଥୀ, ମାଧବପନ୍ଥୀଙ୍କୁ ଏକତ୍ର କରାଇପାରିଥିଲେ । ଶ୍ରୀ ଜୟଦେବ ଉତ୍କଳ ଛଡ଼ା ସର୍ବଭାରତୀୟ ସ୍ତରରେ ଶ୍ରୀଜଗନ୍ନାଥଙ୍କ ପ୍ରଚାର କରିଥିଲେ । ଜୀବନର ଶେଷ ଅବସ୍ଥାରେ ତିର୍ଥାଟନରେ ଯାଇ ଶ୍ରୀଜଗନ୍ନାଥ ଓ ଗୀତଗୋବିନ୍ଦର ପ୍ରଚାର କରିଥିଲେ । ଶ୍ରୀଗୀତଗୋବିନ୍ଦର ମହକତାରେ ଉଦ୍‌ବୁଦ୍ଧ ହୋଇ ଭାରତର ବିଭିନ୍ନ ଶାସ୍ତ୍ରୀୟ ନୃତ୍ୟ ଓ ସଂଗୀତ ଶିଳ୍ପୀମାନେ ନିଜ ଶୈଳୀରେ ଗୀତଗୋବିନ୍ଦ ପରିବେଷଣ କରିଥାଆନ୍ତି ।

ଶ୍ରୀ ଜୟଦେବଙ୍କ ରଚିତ 'ଦଶାବତାର' ଶ୍ଳୋକଟି ଏକ ଅମୂଲ୍ୟ ସମ୍ପଦ ଅଟେ । ଶ୍ରୀବିଷ୍ଣୁଙ୍କ ଅବତାର ସମ୍ବନ୍ଧରେ ଅନେକ ଗ୍ରନ୍ଥ ରଚିତ ହୋଇଛି । କେତେକ ବ୍ରାହ୍ମଣ ଏବଂ ଆରଣ୍ୟକରେ ବରାହ, ମତ୍ସ୍ୟ, କୂର୍ମ ଓ ନୃସିଂହ ଉଲ୍ଲେଖ ଥିଲାବେଳେ ମହାଭାରତରେ ହଂସ, କୂର୍ମ, ମତ୍ସ୍ୟ, ବରାହ, ନରସିଂହ, ବାମନ, ରାମ ଓ କଳ୍କୀ ଅବତାର ଉଲ୍ଲେଖ ଅଛି । ହରିବଂଶରେ ହଂସ, କୂର୍ମ, ମତ୍ସ୍ୟ, ବରାହ, ନରସିଂହ, ବାମନ, ରାମ, କୃଷ୍ଣ, କଳ୍କୀ ଓ ବୁଦ୍ଧ ଏବଂ ଅଗ୍ନି ପୁରାଣରେ ଓ ବରାହ ପୁରାଣରେ ମତ୍ସ୍ୟ, କୂର୍ମ, ବରାହ, ନରସିଂହ, ବାମନ, ପରଶୁରାମ, ରାମ, କୃଷ୍ଣ, ବୁଦ୍ଧ, ଓ କଳ୍କୀ ଏହି କ୍ରମରେ ବର୍ଣ୍ଣିତ ଅଛି ।

ସେପରି ମହାବଳୀପୁରମ୍‌ର ବରାହ ପେରୁମଲ୍ଲ ମନ୍ଦିରରେ ଥିବା ଏକ ପାଟପଥରରେ ମତ୍ସ୍ୟ, କୂର୍ମ, ବରାହ, ନରସିଂହ, ବାମନ, ରାମୋ, ରାମଶ୍ଚ, ରାମଶ୍ଚ (୩ଟି ରାମ ଅର୍ଥ ପରଶୁରାମ, ଦାଶରଥିରାମ ଏବଂ ବଳରାମ) ବୁଦ୍ଧ ଓ କଳ୍କୀ ଶ୍ଳୋକ ଖୋଦିତ ଅଛି । ସେପରି ଶଙ୍କରାଚାର୍ଯ୍ୟ, କ୍ଷେମେନ୍ଦ୍ର, ଶ୍ରୀହର୍ଷ ଇତ୍ୟାଦି କବିଗଣଙ୍କ ଦଶାବତାର ମଧ ରହିଛି । ଶ୍ରୀ ଜୟଦେବଙ୍କ ଲିଖିତ ଦଶାବତାରର କ୍ରମାନ୍ୱୟ ବିଜ୍ଞାନ ସମ୍ମତ ଅଟେ । ଯଥା- ମତ୍ସ୍ୟ, କୂର୍ମ, ଶୁକର, ନରସିଂହ, ବାମନ, ଭୃଗୁପତି, ରାମ, ହଳଧର, ବୁଦ୍ଧ ଓ କଳ୍କୀର କ୍ରମାନ୍ୱୟ ପୃଥିବୀର ବିବର୍ତ୍ତନ ବାଦର ପ୍ରତୀକ ଅଟେ । ୧୮୦୦ ଶତାବ୍ଦୀର ବିଶିଷ୍ଟ ବୈଜ୍ଞାନିକ ଡାରଉଇନ୍‌ଙ୍କ Evalution Theoryର ବହୁତ ପୂର୍ବରୁ ଅର୍ଥାତ୍ ଦ୍ୱାଦଶ ଶତାବ୍ଦୀର କବି ଶ୍ରୀ ଜୟଦେବଙ୍କ ରଚିତ ଦଶାବତାରର କ୍ରମାନ୍ୱୟ ବିଜ୍ଞାନ ସମ୍ମତ ଅଟେ । ଶ୍ରୀ ଜୟଦେବ ସୃଷ୍ଟିର ଆରମ୍ଭ ଜଳରୁ (ମତ୍ସ୍ୟ) କରି ଉଭୟରେ (କଚ୍ଛପ), ସ୍ଥଳଚର (ଶୂକର), ଅଧାପଶୁ ଅଧାମାନବ (ନରସିଂହ), କ୍ଷୁଦ୍ରମାନବ (ବାମନ), ଶକ୍ତିଶାଳୀ ମାନବ (ପରଶୁରାମ), ଶାନ୍ତ ମାନବ (ରାମ), କୃଷିପ୍ରିୟ ମାନବ (ହଳଧର), କରୁଣା ଅବତାର ମାନବ (ବୁଦ୍ଧ) ଓ ଶେଷରେ

ଉତ୍କର୍ଷ ମାନବ (କଳ୍କୀ) ଦର୍ଶାଇଛନ୍ତି । ଏହାଛଡ଼ା ଶ୍ରୀ ଜୟଦେବ ଜଣେ ପ୍ରକୃତି ପ୍ରେମୀ କବି ଥିଲେ । କାରଣ ତାଙ୍କ ରଚନାରେ ସେ ଭକ୍ତି ଓ ଶୃଙ୍ଗାର ଛଡ଼ା ଋତୁର ଆଗମନରେ ପ୍ରକୃତିର ପରିବର୍ତ୍ତନକୁ ଦର୍ଶାଇଛନ୍ତି । 'ଲଳିତ ଲବଙ୍ଗ ଲତା'ରେ ବସନ୍ତ ଋତୁ, 'ଚନ୍ଦନ ଚର୍ଚ୍ଚିତରେ' ଗ୍ରୀଷ୍ମଋତୁ, 'ରାସେ ହରିମିହ'ରେ ବର୍ଷାଋତୁର ଶୋଭା ବର୍ଣ୍ଣନା କରିଛନ୍ତି । ଅନେକ ନିରଳ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ ଶ୍ରୀ ଜୟଦେବ । ଏଣୁ ପ୍ରତ୍ୟେକ ବ୍ୟକ୍ତିବିଶେଷ ଏହି ବିରଳ ବ୍ୟକ୍ତିତ୍ୱଙ୍କର ମହତ୍ୱ ବୁଝି ପ୍ରଚାର ଓ ପ୍ରସାର ଦିଗରେ ଆଗେଇ ଆସିବା ଉଚିତ । ଏହି କାର୍ଯ୍ୟର ପ୍ରଚାର ଓ ପ୍ରସାର ନିମନ୍ତେ 'ଜୟଦେବ ଫାଉଣ୍ଡେସନ୍'ର ଉଦ୍ୟମ ପ୍ରଶଂସନୀୟ ।

## ସହାୟକ ଗ୍ରନ୍ଥ ଓ ନିବନ୍ଧ


ଶ୍ରୀ ଜୟଦେବ ଓ ଶ୍ରୀଗୀତଗୋବିନ୍ଦ - ଶ୍ରୀ କେଦାରନାଥ ମହାପାତ୍ର

ଶ୍ରୀ ଜୟଦେବଙ୍କ ଜୟନ୍ତୀ ସମାରୋହ ପୁସ୍ତିକା - ସୂଚନା ଓ ଲୋକ ସଂପର୍କ ବିଭାଗ ଦ୍ୱାରା ପ୍ରକାଶିତ (୧୯୯୯)

ଓଡ଼ିଶାର ପରମ୍ପରା ଓ ସଂସ୍କୃତିରେ କବିରାଜ ଜୟଦେବ ଓ ଗୀତଗୋବିନ୍ଦ - ଶ୍ରୀ ଭଗବାନ ପଣ୍ଡା

Geetagovinda of Jayadeva of Orissa - Nilamadhab Panigrahi



ନୃତ୍ୟସୁଧା
ଭୁବନେଶ୍ୱର




# କାଳଜୟୀ ଗୀତିକାବ୍ୟ ଶ୍ରୀଗୀତଗୋବିନ୍ଦ

ଡକ୍ଟର ଜ୍ୟୋତିର୍ମୟୀ ସାମନ୍ତରାୟ

ଦ୍ୱାଦଶ ଶତାବ୍ଦୀରେ ଓଡ଼ିଶାର ଖୋର୍ଦ୍ଧା ଜିଲ୍ଲା ଅନ୍ତର୍ଗତ ପ୍ରାଚୀ ଉପତ୍ୟକାରେ ବାଲିଅନ୍ତା ବ୍ଲକ୍‌ର କେନ୍ଦୁବିଲ୍ୱ ଗ୍ରାମରେ ଜନ୍ମଲାଭ କରିଥିବା ମହାନ୍ ସନ୍ଥକବି ଶ୍ରୀ ଜୟଦେବଙ୍କ 'ଗୀତଗୋବିନ୍ଦ'ର ଲାଳିତ୍ୟଭରା ସଂଗୀତ ସହିତ ନୃତ୍ୟ ଶ୍ରୀଜଗନ୍ନାଥଙ୍କର ପୂଜାପଦ୍ଧତିର ଏକ ଅଙ୍ଗ ଭାବେ ଚୋଡ଼ଗଙ୍ଗଙ୍କର (୧୦୭୭-୧୧୪୨) ପୁତ୍ର କାମାର୍ଣ୍ଣବ ଦେବ (୧୧୪୨-୧୧୫୭)ଙ୍କ ସମୟରୁ ପ୍ରଚଳିତ ହୋଇ ଆସିଅଛି । ଜୟଦେବଙ୍କ ଉତ୍କଳୀୟତ୍ୱ ସମ୍ବନ୍ଧରେ ସବୁ ବାଦାନୁବାଦର ଅବସାନ ହୋଇଅଛି । କେଦାରନାଥ ମହାପାତ୍ର, ଶ୍ରୀ ଅଜିତ୍ କୁମାର ତ୍ରିପାଠୀ, ସୁକୁମାର ସେନ, ସତ୍ୟ ନାରାୟଣ ରାଜଗୁରୁ, ଡୋନାଲଡ଼ସନ ଓ ଓ୍ୱିଣ୍ଟିରନିଟଙ୍କ ଭଳି ବହୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଗବେଷକମାନଙ୍କ ସ୍ପଷ୍ଟ ଅଭିମତ ଯେ, ଭକ୍ତକବି ଶ୍ରୀଜୟଦେବ ଉତ୍କଳୀୟ ଓ ତାଙ୍କଦ୍ୱାରା ରଚିତ 'ଶ୍ରୀଗୀତଗୋବିନ୍ଦ' ଜଗନ୍ନାଥ ପୂଜା ପଦ୍ଧତିର ସଂଗୀତାୟନ କାର୍ଯ୍ୟକ୍ରମର ଏକ ଅନନ୍ୟ ଅଙ୍ଗ ।

ଶ୍ରୀକ୍ଷେତ୍ରବାସୀ ଶ୍ରୀଜୟଦେବ ଉତ୍କଳର ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଜଣେ ପରମଭକ୍ତ ଥିବା ବିଷୟ ମୈଥିଳି ପଣ୍ଡିତ ଶ୍ରୀଚନ୍ଦ୍ରଦତ୍ତ କୃତ ପ୍ରସିଦ୍ଧ 'ଭକ୍ତମାଳ' ଗ୍ରନ୍ଥରେ ବର୍ଣ୍ଣନା କରାଯାଇଛି । ମହାକବି ଜୟଦେବ ତାଙ୍କର ପରମ ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କର ସନ୍ତୋଷ ବିଧାନ ପାଇଁ ଶ୍ରୀଗୀତଗୋବିନ୍ଦ ରଚନା ନିମନ୍ତେ ନିଜକୁ ସମର୍ପଣ କରିଥିଲେ । ଏକଦା ଉପଯୁକ୍ତ ଶବ୍ଦ ବିନ୍ୟାସ ଦ୍ୱାରା ଏକ ଗୀତର ପାଦ ପୂରଣ କରିବା ପାଇଁ ଅସମର୍ଥ ହେବାରୁ ଶ୍ରୀକୃଷ୍ଣ ତାଙ୍କର ଅନୁପସ୍ଥିତି ସମୟରେ ଶ୍ରୀ ଜୟଦେବ ବେଶରେ ପର୍ଣ୍ଣକୁଟୀରରେ ପ୍ରବେଶ କରି ଏହି ପାଦ ପୂରଣ କରି ଅନ୍ତର୍ଦ୍ଧାନ ହୋଇ ଯାଇଥିଲେ ।

କେନ୍ଦୁବିଲ୍ୱ ଗ୍ରାମବାସୀ 'କବିରାଜ ଓ ରସରାଜ' ଶ୍ରୀ ଜୟଦେବ ଗୃହତ୍ୟାଗ କରି ସନ୍ନ୍ୟାସୀ ଭାବେ ଜୀବନଯାପନ କରୁଥିଲେ । କବିରାଜ ଶ୍ରୀ ଜୟଦେବ ସ୍ୱୀୟ ଅମରକୃତି 'ଶ୍ରୀଗୀତଗୋବିନ୍ଦ'ର ଶେଷ ସର୍ଗର ଶେଷାଂଶରେ ସ୍ୱ-ପିତା ଭୋଜଦେବ ଓ ମାତା ବାମାଦେବୀଙ୍କ ନାମ ଉଲ୍ଲେଖ କରିଛନ୍ତି ।

'ଶ୍ରୀ ଭୋଜଦେବ ପ୍ରଭବସ୍ୟ ବାମାଦେବୀ ସୁତ ଶ୍ରୀଜୟଦେବସ୍ୟ,
ପରାଶରଦି ପ୍ରିୟବର୍ଗ କଣ୍ଠେ ଶ୍ରୀଗୀତଗୋବିନ୍ଦ କବିତ୍ୱମସ୍ତୁ ।'
(ଶ୍ରୀଗୀତଗୋବିନ୍ଦ ଦ୍ୱାଦଶ ସର୍ଗ)

ଦିନେ ଜୟଦେବ ଘରଛାଡ଼ି ଶ୍ରୀକ୍ଷେତ୍ର ପଳାଇ ଆସିଥିଲେ । ପୁରୀ ବଡ଼ଦାଣ୍ଡ ବଟବୃକ୍ଷ ତଳେ ଜୟଦେବ ଆଶ୍ରୟ ନେଉଥିବା ବେଳେ ପଣ୍ଡିତ ଦେବଶର୍ମା ନିଜ ଦିବ୍ୟସୁନ୍ଦରୀ କନ୍ୟା ପଦ୍ମାବତୀଙ୍କୁ ନିଜ ସତ୍ୟ ରକ୍ଷା କରି ଦେବଦାସୀ ଭାବେ ଜଗନ୍ନାଥଙ୍କର ପାଦପଦ୍ମରେ ଅର୍ପଣ କଲେ । କିନ୍ତୁ, ସ୍ୱପ୍ନ ନିର୍ଦ୍ଦେଶ ଅନୁସାରେ 'କନ୍ୟାଙ୍କୁ ବଟବୃକ୍ଷ ତଳେ ବସିଥିବା ବ୍ରାହ୍ମଣ ଯୁବକଙ୍କୁ ଅର୍ପଣ କର ।' ଦେବଶର୍ମା ବିଭୁ ନିର୍ଦ୍ଦେଶରେ ଶ୍ରୀ ଜୟଦେବଙ୍କ ସହିତ ପଦ୍ମାବତୀଙ୍କୁ ବିବାହ କରାଇଥିଲେ ।

ଦିନେ ଶ୍ରୀକ୍ଷେତ୍ରବାସିନୀ ଏକ ମାଳିର କନ୍ୟା ବାଇଗଣ ବାଡ଼ିରେ ବାଇଗଣ ତୋଳିବା ସମୟରେ ଶ୍ରୀଗୀତଗୋବିନ୍ଦର ପଞ୍ଚମ ସର୍ଗର ଶ୍ଳୋକ-

'ନକୁରୁ ନିତମ୍ବିନି ଗମନ ବିଳମ୍ବନମନୁସର୍ ତଂ ହୃଦୟେଶମ୍,
ଧୀର ସମୀରେ ଯମୁନା ତୀରେ ବସତି ବନେ ବନମାଳୀ ।'

ମଧୁର କଣ୍ଠରେ ଗାନ କରିବାରେ ଲାଗିଲେ । ଏହି ଗୀତର ମଧୁର ମୂର୍ଚ୍ଛନାରେ ମୁଗ୍ଧ ହୋଇ ମହାପ୍ରଭୁ ଜଗନ୍ନାଥ ଅଲକ୍ଷିତ ଭାବରେ ଗୀତ ଶୁଣୁଶୁଣୁ ତାଙ୍କର ଝୀନ ବସନ ବାଇଗଣ କଣ୍ଟାରେ ଚିରିଗଲା । ମାଳିନୀ ବାଇଗଣ ତୋଳା ସାରି ଘରକୁ ଫେରି ଯିବାରୁ ମହାପ୍ରଭୁ ଶ୍ରୀମନ୍ଦିରରେ ବିଜେ ହେଲେ । ଶ୍ରୀଗୀତଗୋବିନ୍ଦର ଏପରି ମାହାତ୍ମ୍ୟ ହୃଦୟଙ୍ଗମ କରି ରାଜା ରାଜ୍ୟରେ ଡେଙ୍ଗୁରାପିଟି ନିର୍ଦ୍ଦିଷ୍ଟ ସମୟରେ ଉତ୍ତମ ସ୍ଥାନରେ ଓ

ଉପଯୁକ୍ତ ରାଗରେ ଶ୍ରୀଗୀତଗୋବିନ୍ଦ ଗାନ କରିବା ପାଇଁ ଘୋଷଣା କରିଥିଲେ ।

ଗୀତଗୋବିନ୍ଦ ହୁଏତ ପୃଥିବୀର କ୍ଷୁଦ୍ରତମ ମହାକାବ୍ୟ । ୧୨ ଗୋଟି ସର୍ଗ, ୨୪ ପ୍ରବନ୍ଧ, ୭୨ ପଦରେ ଏହା ସମାବିଷ୍ଟ । ଏହାର ସରସ, ସୁନ୍ଦର, ମନମୁଗ୍ଧକର ରଚନାଶୈଳୀ, କାନ୍ତ, କୋମଳ ପଦାବଳୀ ବିଶ୍ୱରେ ବହୁ ପଣ୍ଡିତଙ୍କର ଦୃଷ୍ଟି ଆକର୍ଷଣ କରିଛି ।

ଗୀତଗୋବିନ୍ଦର ପ୍ରତି ସର୍ଗ ଯେତିକି ସଂକ୍ଷିପ୍ତ, ସେତିକି ନିର୍ଦ୍ଦିଷ୍ଟ ରୀତିରେ ବର୍ଣ୍ଣାଢ଼୍ୟ ହୋଇପାରିଛି । ପ୍ରଥମ ସର୍ଗ ଦାମୋଦର କୃଷ୍ଣଙ୍କର ବସନ୍ତକାଳୀନ କେଳି ବର୍ଣ୍ଣନା, ଦ୍ୱିତୀୟ କୃଷ୍ଣଙ୍କ ପ୍ରତି ରାଧାଙ୍କର ଅଭିମାନ ବର୍ଣ୍ଣନା, ତୃତୀୟରେ କୃଷ୍ଣଙ୍କର ଉତ୍କଣ୍ଠା ଓ ବିରହ, ଚତୁର୍ଥ ସ୍ନିଗ୍ଧ ମଧୁସୂଦନରେ କୃଷ୍ଣଙ୍କ ପାଖେ ସଖୀମାନଙ୍କ ଦ୍ୱାରା ରାଧାଙ୍କର ବିରହ ବର୍ଣ୍ଣନା, ପଞ୍ଚମରେ ରାଧାଙ୍କ ପାଇଁ କୃଷ୍ଣଙ୍କର ବ୍ୟାକୁଳତା, ଷଷ୍ଠରେ ଧୃଷ୍ଟ ବୈକୁଣ୍ଠରେ ରାଧାଙ୍କର ବାସକସଜ୍ଜା, ସପ୍ତମରେ ନାଗର ନାରାୟଣରେ କୃଷ୍ଣ ଦର୍ଶନ ପାଇଁ ରାଧାଙ୍କର ବିଳାପ, ଅଷ୍ଟମରେ ବିଲକ୍ଷ ଲକ୍ଷ୍ମୀପତି କୃଷ୍ଣଙ୍କ ଆଗମନକୁ ରାଧାଙ୍କ କୋପ, ନବମ ମୁଗ୍ଧମୁକୁନ୍ଦ ରାଧାଙ୍କ କୋପ, ଶାନ୍ତିପାଇଁ ସଖୀଙ୍କ ସାନ୍ତ୍ୱନା, ଦଶମ ରାଧାଙ୍କ ମାନଭଞ୍ଜନ ପାଇଁ କୃଷ୍ଣଙ୍କ ଚାଟୁକ୍ତି, ଏକାଦଶରେ ସାନନ୍ଦ ଗୋବିନ୍ଦରେ ଅଭିସାରିକା ରାଧାଙ୍କ ବର୍ଣ୍ଣନା, ଦ୍ୱାଦଶରେ ସୁପ୍ରୀତି ପୀତାମ୍ବର ରାଧାକୃଷ୍ଣଙ୍କର ବସନ୍ତମିଳନ ବର୍ଣ୍ଣନା କରାଯାଇଛି ।

ଓଡ଼ିଶାର ସାହିତ୍ୟ ଓ ଶିଳ୍ପରେ ଶ୍ରୀଗୀତଗୋବିନ୍ଦର ଗଭୀର ପ୍ରଭାବ ପଡ଼ିଥିଲା । ଏହା ବେଶ୍ ଲୋକପ୍ରିୟତା ହାସଲ କରିଥିଲା । ତେଣୁ ପୁରାତନ ମଠ, ମନ୍ଦିର ଓ ରାଜନଗର ଏବଂ ଗ୍ରାମର ମିଳନ ପୀଠ ଭାଗବତ ଟୁଙ୍ଗୀଠାରୁ ଆରମ୍ଭ କରି ସମ୍ଭ୍ରାନ୍ତ ବ୍ରାହ୍ମଣ, ଖଣ୍ଡାୟତ ପରିବାରରେ ଶ୍ରୀ ଜଗନ୍ନାଥ ଦାସଙ୍କ ଭାଗବତ ପୋଥି ସହିତ ଗୀତଗୋବିନ୍ଦରୁ ଖଣ୍ଡିଏ ବା ଦୁଇଖଣ୍ଡ ନିଶ୍ଚୟ ରହିଥାଏ । ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତରେ 'ଶ୍ରୀଗୀତଗୋବନ୍ଦ ମାଧ୍ୟମରେ ଦଶାବତାର ଓଡ଼ିଶାରେ ବହୁଳ ଭାବେ ପ୍ରଚାରିତ ହୋଇଥିଲା' । ଓଡ଼ିଶାର ଚିତ୍ରକଳାରେ ଦଶାବତାର ବହୁଳ ଭାବେ ସ୍ଥାନ ପାଇବା ବ୍ୟତୀତ ଦଶାବତାର ଶାଢ଼ୀ, ଦଶାବତାର ମୁଦି, ଦଶାବତାର ମାଳ ଇତ୍ୟାଦି ବ୍ୟବହୃତ ହୋଇଥିବାର ଅନେକ ପ୍ରମାଣ ସାରଳା ସାହିତ୍ୟରୁ ମିଳେ ।

ଡକ୍ଟର ମାୟାଧର ମାନସିଂହଙ୍କ ମତରେ ଗୀତଗୋବିନ୍ଦ ଓଡ଼ିଶାର କଳା, ସମାଜ ଓ ସାହିତ୍ୟରେ ଯେପରି ଗଭୀର ଓ ବ୍ୟାପକ ପ୍ରଭାବ ପକାଇ ପାରିଛି, ତାହା ବୋଧହୁଏ ଭାରତର ଅନ୍ୟ କୌଣସି ଅଞ୍ଚଳରେ ଦେଖାଯାଏ ନାହିଁ । ଆନୁପ୍ରାସିକ ଭାଷା, ଶ୍ରୁତି ରସାୟନ ସଂଗୀତ ଓ ମନୋଜ୍ଞ ଯୌନ ସଂକେତମୟ ତରୁଣ ରାଧା-କୃଷ୍ଣ ପ୍ରେମ ଚିତ୍ରଣ ଏସବୁ ଗୀତଗୋବିନ୍ଦ ଓ ଚଉତିଶା ମଧ୍ୟରେ ଦେଖାଯାଏ ।

ଶ୍ରୀଗୀତଗୋବିନ୍ଦର ଓଡ଼ିଆ ପଦ୍ୟାନୁବାଦ ମଧ୍ୟରେ ଶ୍ରୀ ଧରଣୀଧରଙ୍କର ପଦ୍ୟାନୁବାଦ, ପ୍ରାଚୀନତମ, ବୈଷ୍ଣବ କବି ବୃନ୍ଦାବନ ଦାସ 'ଶ୍ରୀଗୀତଗୋବିନ୍ଦ'ର ଓଡ଼ିଆ ପଦ୍ୟାନୁବାଦର ନାମକରଣ କରିଛନ୍ତି 'ରାସବାରିଧି' । କବି ଦୀନକୃଷ୍ଣ ଦାସ ଦଶମ ସ୍କନ୍ଧ ଭାଗବତର ଗୋପଲୀଳା ଓ ଶ୍ରୀଗୀତଗୋବିନ୍ଦକୁ ଏକତ୍ର କରି 'ଅମୃତ ସାଗର ବୋଲି' ନାମକ ୪୫ ଛାନ୍ଦ ବିଶିଷ୍ଟ ଏକ ବୃହତ୍ ଗ୍ରନ୍ଥ ରଚନା କରିଥିଲେ । ଉଦ୍ଧବ ଦାସ, ଚୈତନ୍ୟ ଦାସ ଓ ରଘୁ ଦାସ 'ଶ୍ରୀଗୀତଗୋବିନ୍ଦ'ର ପଦ୍ୟାନୁବାଦ କରି ନିଜକୁ ଧନ୍ୟ ମନେ କରିଛନ୍ତି । ପଣ୍ଡିତ ଶ୍ରୀ ଜଗନ୍ନାଥ ମିଶ୍ର ଶ୍ରୀଗୀତଗୋବିନ୍ଦକୁ ଓଡ଼ିଆ ଗଦ୍ୟରେ ଅନୁବାଦ କରିଥିଲେ । ପ୍ରାଚୀନ ଓଡ଼ିଆ ଭାଷାରେ ଲିଖିତ ବହୁ କୃଷ୍ଣକାବ୍ୟରେ ମଧ୍ୟ ଶ୍ରୀଗୀତଗୋବିନ୍ଦର ପ୍ରଭାବ ଅନୁଭୂତ ହୋଇଥାଏ । ସେଥିମଧ୍ୟରୁ ଦୀନକୃଷ୍ଣ ଦାସକୃତ 'ରସକଲ୍ଲୋଳ' ଶିଶୁ ଶଙ୍କରଙ୍କ 'ଉଷାଭିଳାସ', ଦେବଦୁର୍ଲ୍ଲଭଙ୍କର ରହସ୍ୟମଞ୍ଜରୀ, ଭୂପତି ପଣ୍ଡିତକୃତ 'ପ୍ରେମ ପଞ୍ଚାମୃତ', ଦାଶରଥୀ ଦାସକୃତ 'ବ୍ରଜବିହାର' ଅନ୍ୟତମ ।

ସମାଜରେ ଶ୍ରୀଭାଗବତ ଓ ଶ୍ରୀଗୀତଗୋବିନ୍ଦ ପ୍ରଚାର ଓ ପ୍ରଭାବ ଯୋଗୁଁ ଅଳ୍ପ କେତେ ବର୍ଷ ମଧ୍ୟରେ ବିଷ୍ଣୁ-କୃଷ୍ଣ ପ୍ରତିମା ପରିବର୍ତ୍ତେ ଦ୍ୱିଭୁଜ ଗୋପୀନାଥ କୃଷ୍ଣଙ୍କ ପ୍ରତିମା ପୂଜା ପାଇଁ ଉତ୍କଳର ବିଭିନ୍ନ ସ୍ଥାନରେ ଶହ ଶହ ମନ୍ଦିର ନିର୍ମାଣ କରାଯାଇଥିଲା । ଭାରତର ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟ ଓ ସଙ୍ଗୀତରେ ମଧ୍ୟ ଶ୍ରୀଗୀତଗୋବିନ୍ଦର ପ୍ରଭାବ ରହିଛି । ପ୍ରାଚୀନ ହିନ୍ଦୀ, ପଞ୍ଜାବୀ, ଗୁଜୁରାଟୀ, ଆସାମୀ, ମଣିପୁରୀ, ମରହଟ୍ଟୀ, ଆନ୍ଧ୍ରପ୍ରଦେଶ, ତାମିଲନାଡୁ, କର୍ଣ୍ଣାଟକ, କେରଳ ଇତ୍ୟାଦି ସାହିତ୍ୟରେ ମଧ୍ୟ ଶ୍ରୀଗୀତଗୋବିନ୍ଦର ଯଥେଷ୍ଟେ ପ୍ରଭାବ ରହିଛି ।

ଶ୍ରୀକ୍ଷେତ୍ରର ପଣ୍ଡିତମଣ୍ଡଳୀ ଦ୍ୱାରା ଶ୍ରୀଗୀତଗୋବିନ୍ଦର ଏହି ରାଜସଂସ୍କରଣ ଅନୁମୋଦିତ ହେବା ଦ୍ୱାରା ଏହା ଭାରତବର୍ଷରେ ପ୍ରସାର ଲାଭ କରିଥିଲା । ମହାନ୍ କବି ଶ୍ରୀଜୟଦେବଙ୍କୁ ତା' କୋଳରେ ଜନ୍ମ ଦେଇ ଓଡ଼ିଶା ମାଟି ଆଜି ଗର୍ବିତ । ଏହି ଏକବିଂଶ ଶତାବ୍ଦୀରେ ଜଗତିକରଣର ଘୂର୍ଣ୍ଣିବାତ୍ୟାରେ ଉଗ୍ର ଭୋଗବାଦର ତାଣ୍ଡବ ଲୀଳା ଚାଲିଥିବାବେଳେ ଆଧୁନିକ

ଭୋଗବାଦୀ ମଣିଷ ମନରୁ କଳାତ୍ମକ ମନୋଭାବ ଧୀରେ ଧୀରେ ବିସ୍ମୃତ ହୋଇଯାଉଛି । ଚଳଚ୍ଚିତ୍ରରେ ହିଂସା ଓ ନଗ୍ନତା ଭରା ଦୃଶ୍ୟମାନ, ଯୁବଗୋଷ୍ଠୀଙ୍କୁ ବିପଥଗାମୀ କରୁଅଛି । ସଂସ୍କୃତିର ଏହି ସଂକଟ ମୁହୂର୍ତ୍ତରେ ଭକ୍ତିରସରେ ରସାୟିତ ଶ୍ରୀ ଜୟଦେବଙ୍କ ଲିଖିତ 'ଶ୍ରୀଗୀତଗୋବିନ୍ଦ'ର ଅଧିକ ଅଧ୍ୟୟନ ଓ ସେଥିରେ ବର୍ଣ୍ଣିତ ମାଧୁର୍ଯ୍ୟଭରା ଭାବଗୁଡ଼ିକ ନୃତ୍ୟ ସଂଗୀତରେ ବ୍ୟବହାରର ଯଥେଷ୍ଟ ଆବଶ୍ୟକତା ରହିଛି । ଏହାଦ୍ୱାରା ସାଂପ୍ରତିକ ସମୟର ଅପସଂସ୍କୃତିର ଧାରାକୁ ପ୍ରତିରୋଧ କରାଯାଇପାରିବ ବୋଲି ବିଶ୍ୱାସ ଆନନ୍ଦର କଥା ଯେ, ଓଡ଼ିଶା ସରକାରଙ୍କର ସଂସ୍କୃତି ବିଭାଗ ଦ୍ୱାରା ପ୍ରଚଳିତ 'ଜଗନ୍ନାଥାୟନ' - ସାଂସ୍କୃତିକ କାର୍ଯ୍ୟକ୍ରମ 'ଶ୍ରୀଗୀତଗୋବିନ୍ଦ'ର ଭକ୍ତିରସର ପ୍ରସାରରେ ସହାୟକ ହୋଇପାରୁଛି ।

**ଗ୍ରନ୍ଥସୂଚୀ**


୧. 'ଜୟଦେବ ଓ ଶ୍ରୀଗୀତଗୋବିନ୍ଦ', ଶ୍ରୀ କେଦାରନାଥ ମହାପାତ୍ର, ପ୍ରକାଶକ- ଗ୍ରନ୍ଥକର୍ତ୍ତା ୧୯୭୩ ।

୨. ଓଡ଼ିଆ ସାହିତ୍ୟରେ 'ଗୀତଗୋବିନ୍ଦ'ର ପ୍ରଭାବ - ଶ୍ରୀ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଝଙ୍କାର ଦଶମ ସଂଖ୍ୟା, ୨୧ଶ ବର୍ଷ, ପୃ. ୯୬୧-୬୨ ।

୩. 'ଓଡ଼ିଆ ସାହିତ୍ୟର ଇତିହାସ' - ଡକ୍ଟର ମାୟାଧର ମାନସିଂହ, ପ୍ରଥମ ସଂସ୍କରଣ, ୧୯୬୭, ପୃ. ୧୪୬-୪୭ ।

୪. ଭକ୍ତକବି ଜୟଦେବ, ରଘୁନାଥ ପୃଷ୍ଟି, ପ୍ରାଚ୍ୟ ସାହିତ୍ୟ ପ୍ରତିଷ୍ଠାନ ଦ୍ୱାରା ପ୍ରକାଶିତ, ୧୯୮୯ ।



ସହକାରୀ ସୂଚନା ଅଧିକାରୀ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର




# ଗୀତିକାବ୍ୟ ଗୀତଗୋବିନ୍ଦ ପ୍ରଣେତା ଶ୍ରୀ ଜୟଦେବ

ଶିବସୁନ୍ଦର ପଟ୍ଟନାୟକ

**ସଂ**ସ୍କୃତ ଭାଷାର ପ୍ରଥମ ଗୀତିକବି ତଥା ଉତ୍କଳର ବରପୁତ୍ର ଶ୍ରୀରାଧାମାଧବଙ୍କ ଚରଣ ସେବକ, ହିନ୍ଦୁ ଦର୍ଶନର ଶୃଙ୍ଗାର ରସ ମାଧ୍ୟମରେ ଦୈତବାଦର ପ୍ରବର୍ତ୍ତକ ଓ ପ୍ରଚାରକ, 'ଗୀତଗୋବିନ୍ଦ'ର ରଚୟିତା କବି ଶ୍ରୀ ଜୟଦେବ କେବଳ ଉତ୍କଳ କାହିଁକି ସାରା ଭାରତରେ ପ୍ରସିଦ୍ଧ ଯେ କି ପରବର୍ତ୍ତୀ ଯୁଗର କବିମାନଙ୍କୁ ପ୍ରଭାବିତ କରିଥିଲେ । କେତେ ଯେ କବି ଶ୍ରୀ ଜୟଦେବ କୃତ ଗୀତଗୋବିନ୍ଦ ଅନୁକରଣରେ ନିଜନିଜର ପାଣ୍ଡିତ୍ୟର ପରାକାଷ୍ଠା ପାଇଁ ଅବିକଳ କାବ୍ୟ ସୃଷ୍ଟି କରିବାକୁ ଚେଷ୍ଟା କରି ମଧ୍ୟ ଅକୃତକାର୍ଯ୍ୟ ହୋଇଅଛନ୍ତି ।

ଓଡ଼ିଆ ଭାଷାରେ ସାରଳା ଦାସଙ୍କ ମହାଭାରତ ଓ ପରବର୍ତ୍ତୀ ଯୁଗରେ ଜଗନ୍ନାଥ ଦାସଙ୍କ ଭାଗବତ ଓ ବଳରାମ ଦାସଙ୍କ ଦାଣ୍ଡୀ ରାମାୟଣ ଓଡ଼ିଆ ଭାଷା ସାହିତ୍ୟକୁ କେବଳ ଋଦ୍ଧିମନ୍ତ କରି ନାହିଁ । ଏହିସବୁ ଗ୍ରନ୍ଥ ଭାରତର ପ୍ରଥମ ଆଞ୍ଚଳିକ ଭାଷାଭିତ୍ତିକ ଗ୍ରନ୍ଥ ରୂପେ ସ୍ୱୀକୃତ । ଏହାର ବହୁ ପୂର୍ବରୁ ଓଡ଼ିଆ କବି ଶ୍ରୀ ଜୟଦେବଙ୍କ 'ଗୀତଗୋବିନ୍ଦ' ଓ ଶ୍ରୀ ବିଶ୍ୱନାଥ କବିରାଜଙ୍କ 'ସାହିତ୍ୟ ଦର୍ପଣ' ସଂସ୍କୃତ ଭାଷାରେ ଅମୂଲ୍ୟ କୃତି ଯାହାକି ସର୍ବଭାରତୀୟ ସ୍ତରରେ ଆଦୃତ । ଦ୍ୱାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଶ୍ରୀ ଜୟଦେବ 'ଗୀତଗୋବିନ୍ଦ' ରଚନା କରିଥିଲେ । ଶ୍ରୀ ବିଶ୍ୱନାଥ କବିରାଜ ଚତୁର୍ଦ୍ଦଶ ଶତାବ୍ଦୀର ବ୍ୟକ୍ତି । ଉଲ୍ଲେଖିତ ଦୁଇ ସଂସ୍କୃତ ଗ୍ରନ୍ଥ ଭାରତୀୟ ସଂସ୍କୃତ ସାହିତ୍ୟର ପ୍ରତ୍ୟେକ ସ୍ତରରେ ଅଦ୍ୱିତୀୟ କୃତି ଯାହାକି ଅଦ୍ୟାବଧି ନିଜର ସ୍ଥାନ ବଜାଏ ରଖିଅଛି ଏବଂ ଭାରତ ବାହାରେ ମଧ୍ୟ ଏହା ସ୍ୱୀକୃତ ହୋଇଆସୁଅଛି । 'ସାହିତ୍ୟ ଦର୍ପଣ'ର ପ୍ରଣେତା ଶ୍ରୀ ବିଶ୍ୱନାଥ କବିରାଜ ଓ 'ଦାଢ୍ୟତା ଭକ୍ତି' ରଚୟିତା ଶ୍ରୀରାମ ଦାସଙ୍କ ଦ୍ୱାରା ଶ୍ରୀ ଜୟଦେବ ଓ 'ଗୀତଗୋବିନ୍ଦ' ସ୍ୱୀକୃତ ହୋଇଅଛି । ମୈଥିଳୀ ପଣ୍ଡିତଦ୍ୱୟ 'ଅଳଙ୍କାର ଶେଖର' ପ୍ରଣେତା କେଶବ ମିଶ୍ର ଓ ଭକ୍ତିମାଳା' ପ୍ରଣେତା ଚନ୍ଦ୍ରଦତ୍ତ ଶ୍ରୀ ଜୟଦେବଙ୍କୁ ଉତ୍କଳର କବି ବୋଲି ସ୍ୱୀକାର କରିଅଛନ୍ତି ।

ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁବିଲ୍ୱ ବା କେନ୍ଦୁଲୀ ବ୍ରାହ୍ମଣ ଶାସନ ଏବଂ ଏହା ଭୁବନେଶ୍ୱର ନିକଟବର୍ତ୍ତୀ ପ୍ରାଚୀନଦୀ କୂଳରେ ଅବସ୍ଥିତ । ବୈଶାଖ ଶୁକ୍ଳ ଅକ୍ଷୟ ତୃତୀୟା ଦିନ ତାଙ୍କର ଜନ୍ମ ହୋଇଥିଲା । ତାଙ୍କ ପିତାଙ୍କ ନାମ ଭୋଜଦେବ ଓ ମାତାଙ୍କ ନାମ ବାମା ଦେବୀ । ସେ ପିଲାଟି ଦିନରୁ ଗ୍ରାମ ଦେବତା ମାଧବ ଆଶ୍ରିତ ଥିଲେ ଓ ରାଧାମାଧବ ଉପାସକ ଥିଲେ । ପିଲାଟି ଦିନରୁ ବାପ ମା ଛେଉଣ୍ଡ ହୋଇ ସେ ପୁରୀ ଆସି ମାମୁଁଙ୍କ ଆଶ୍ରିତ ହେଲେ ଓ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଁ ପ୍ରତ୍ୟହ ଯିବା ଆସିବା କଲେ । ଇତ୍ୟବସରରେ ଦକ୍ଷିଣ କଳିଙ୍ଗର ଗଙ୍ଗାବାଡ଼ି ନିବାସୀ ଶମ୍ଭୁଦେବ ଶର୍ମା ନିଜର ଏକ ମାତ୍ର କନ୍ୟା ପଦ୍ମାବତୀଙ୍କୁ ଶ୍ରୀଜଗନ୍ନାଥଙ୍କ ଦେବଦାସୀ ରୂପେ ଶ୍ରୀମନ୍ଦିରରେ ଛାଡ଼ିଦେବାରୁ ପଦ୍ମାବତୀ ପୁରାଣ ପଣ୍ଡାଙ୍କୁ ପିତା ରୂପେ ସ୍ୱୀକାର କଲେ ଏବଂ ପୁରାଣ ପଣ୍ଡାଙ୍କ ନିର୍ଦ୍ଦେଶରେ ଶ୍ରୀ ଜୟଦେବ ପଦ୍ମାବତୀଙ୍କୁ ବିବାହ କରିଥିଲେ । ପଦ୍ମାବତୀଙ୍କ ପ୍ରେରଣାରେ ଶ୍ରୀ ଜୟଦେବ ସଂସ୍କୃତ ଭାଷାରେ ଗୀତିକାବ୍ୟ 'ଗୀତଗୋବିନ୍ଦ' ରଚନା କରିଥିଲେ ଏବଂ ଶ୍ରୀଜଗନ୍ନାଥଙ୍କ ବଡ଼ସିଂହାର ବେଶବେଳେ ଲଳିତ ଗୀତ 'ଗୀତଗୋବିନ୍ଦ'ର ତାଳେ ତାଳେ ପଦ୍ମାବତୀଙ୍କ ନୂପୁରର ରୁଣୁଝୁଣ ସହ ନୃତ୍ୟ କେବଳ ମନୋହର ନୁହେଁ, ଏହା ଶ୍ରୀଜଗନ୍ନାଥଙ୍କ ଦ୍ୱାରା ଆଦୃତ ତଥା ଅଦ୍ୟାବଧି ମଧ୍ୟ 'ଗୀତଗୋବିନ୍ଦ' ସେବାଭାବେ ପ୍ରଚଳିତ । ଏହି ମନୋରମ ଦୃଶ୍ୟ ଦେଖି ନିତ୍ୟଲୀଳା ପ୍ରବିଷ୍ଟ ଶ୍ରୀ ଶ୍ରୀ ଠାକୁର ଅଭିରାମ ପରମହଂସ ଗାଇ ଉଠିଥିଲେ, 'ଶୋଭା ବଡ଼ସିଂହାର ବେଶ, ହେ ରାଧାଇଶ ...' । 'ଗୀତଗୋବିନ୍ଦ'କୁ ପ୍ରଭୁ ଶ୍ରୀଜଗନ୍ନାଥ ଏତେ ଆଦର କରନ୍ତି ଯେ 'ଗୀତଗୋବିନ୍ଦ' ଶ୍ଳୋକ ଲିପିବଦ୍ଧ ବା ବାନ୍ଧେଣୀ ହୋଇଥିବା ପାଟପଟନୀ ଓ ଖଣ୍ଡୁଆ ପିନ୍ଧିବାକୁ ପ୍ରଭୁ ଭଲ ପାଆନ୍ତି ।

'ଗୀତଗୋବିନ୍ଦ'ର ରଚୟିତା ଲଳିତ କବି ଶ୍ରୀ ଜୟଦେବ । ନିଜକୁ ଜୟଦେବ ପଣ୍ଡିତ କବେଃ କୃଷ୍ଣୈକତାନାତ୍ମନ୍' (ଶ୍ରୀକୃଷ୍ଣ ପରାୟଣ କବିବର ପଣ୍ଡିତ ଜୟଦେବ) ବର୍ଣ୍ଣନା କରିଅଛନ୍ତି । ଶ୍ରୀ ଜୟଦେବଙ୍କ ଅନବଦ୍ୟ ସୃଷ୍ଟି 'ହରିଚରଣ ସ୍ମରଣାମୃତ କୃତକବି

କଳୁଷ ଭବଜ୍ୱର ଖଣ୍ଡନେ’ ନିମନ୍ତେ କେବଳ ହୋଇଛି । କଳିର ଦୋଷ ବା ପାପମୋଚନ ପାଇଁ ହରିଚରଣ ସ୍ମରଣ କରିବା ଆବଶ୍ୟକ ଏବଂ ହରିଭକ୍ତି ଚରମ ବା ନିବିଡ଼ ହେଲେ ଭବଜ୍ୱର ବା ସାଂସାରିକ ଯନ୍ତ୍ରଣା ଲୋପ ହେବ ଏବଂ ଜୀବ ସାଲୋକ୍ୟ ମୁକ୍ତି ବା ସାଜୁଜ୍ୟ ମୁକ୍ତି ପାଇପାରିବ, ଏହା ହିଁ ଶ୍ରୀ ଜୟଦେବଙ୍କ ଉଦ୍ଦେଶ୍ୟ । ଏହି କାବ୍ୟରେ ଶୃଙ୍ଗାର ରସ ପ୍ରାଚୁର୍ଯ୍ୟ ଅଛି ବୋଲି କେତେକ ଯୁକ୍ତି କଲେ ହେଁ ପ୍ରକୃତରେ ଏହା ଜୀବ ଓ ପରମାତ୍ମାର ମିଳନ ଓ ମୁକ୍ତି ଅଭିଳାଷିତ ।

ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କ ଆବିର୍ଭାବ ପୂର୍ବରୁ ଉତ୍କଳରେ ଯେ ବୈଷ୍ଣବ ଧର୍ମ ବିଶେଷତଃ ଦ୍ୱୈତବାଦର ପ୍ରସାର ହୋଇନଥିଲା ତାହା ନୁହେଁ । ଏହା ଅନ୍ତତଃ ପକ୍ଷେ ଶୈଳୋଦ୍ଭବ ରାଜବଂଶ ବେଳୁ ଚାଲି ଆସୁଅଛି । ତେଣୁ ଶ୍ରୀ ଜୟଦେବଙ୍କର ଏ ଗୀତିକାବ୍ୟ ସାଧାରଣ ଜୀବମାନଙ୍କର ପ୍ରେମର ବହିର୍ପ୍ରକାଶ ନୁହେଁ । ଏହା ଜୀବ ଓ ପରମାତ୍ମାଙ୍କ ମଧ୍ୟରେ ସଂପର୍କ । ଏହା ଐଶ୍ୱରୀକଭାବ । ତେଣୁ ଶ୍ରୀ ଜୟଦେବଙ୍କୁ କେହି ଅଶ୍ଳୀଳ ପ୍ରେମର ଉପାସକ କହି ପାରିବ ନାହିଁ । ତାଙ୍କ ପୂର୍ବରୁ କାଳିଦାସ, ମାଘ ଓ ଶ୍ରୀହର୍ଷ ମଧ୍ୟ ପ୍ରଣୟ କାବ୍ୟ ଲେଖିଅଛନ୍ତି । ଏପରିକି କାଳିଦାସ ମେଘଦୂତରେ ଜଗତମାତା ସୀତାଦେବୀଙ୍କ ରୂପ ବର୍ଣ୍ଣନାରେ ‘ସଦ୍ୟସ୍ନାତା ଜନକତନୟା’ ଇତ୍ୟାଦି ଇତ୍ୟାଦି ବର୍ଣ୍ଣନା କରିଅଛନ୍ତି । ଏପରିକି ଶ୍ରୀ ଶଙ୍କରାଚାର୍ଯ୍ୟ ମଧ୍ୟ ‘ଶ୍ରୀୟାଶ୍ଳିଷ୍ଟ ବିଷ୍ଣୁ’ ଏବଂ ‘କଦାଚିତ୍ କାଳିନ୍ଦୀ ତଟ ବିପିନ୍ ସଙ୍ଗୀତ କରୋବ, ମୃଦାଭିରୀ ନାରୀ ବଦନକମଳା ସ୍ୱାଦ ମଧୁପ’ ଏବଂ ‘ରସାନନ୍ଦୋ ରାଧା ସରସବପୁରାଲିଙ୍ଗନ ସୁଖୋ’ ବର୍ଣ୍ଣନା କରିଅଛନ୍ତି । ସେ ଯାହାହେଉ ଏ କଥା ଜାଣି ରଖିବାକୁ ହେବ ଯେ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ଗୋପ ବୃନ୍ଦାବନରେ ମାତ୍ର ଏଗାର ବର୍ଷ ଘଟିଥିଲା । ଶ୍ରୀ ଜୟଦେବଙ୍କ ଗୀତଗୋବିନ୍ଦର ପ୍ରାରମ୍ଭ ଦଶଅବତାର ବର୍ଣ୍ଣନା ତଥା ‘କୃଷ୍ଣେକେତାନାମ୍ନନ’ ଓ ‘ହରିଚରଣ ସ୍ମରଣାମୃତ’ ଏବଂ ‘କଳୁଷ ଭବଜ୍ୱର ଖଣ୍ଡନେ’ ଇତ୍ୟାଦି ତାତ୍ତ୍ୱିକ ଶବ୍ଦରୁ ଶ୍ରୀକୃଷ୍ଣ ଯେ ସ୍ୱୟଂ ପରମବ୍ରହ୍ମ ଓ ତାଙ୍କର ଚରଣାଶ୍ରିତ ହେଲେ ସାଂସାରିକ ମାୟାବନ୍ଧନରୁ ମୁକ୍ତି ମିଳିବ ଏଥିପାଇଁ କବି ସଚେତନ ଅଛନ୍ତି ଓ ଆମ୍ଭମାନଙ୍କୁ ନିର୍ଦ୍ଦେଶ ଦେଇଅଛନ୍ତି ।

‘ଗୀତଗୋବିନ୍ଦ’ର ଶବ୍ଦ ଲାଳିତ୍ୟ ଶ୍ରୀ ହର୍ଷଙ୍କ କାବ୍ୟଠାରୁ ଶ୍ରେଷ୍ଠ । ଋତୁର ବର୍ଣ୍ଣନା, ମାନବୀୟ ରୂପ ଲାବଣ୍ୟ ତଥା ପର ଦେବତା ଶ୍ରୀକୃଷ୍ଣଙ୍କ ଶ୍ରୀଅଙ୍ଗ ଶୋଭା ବର୍ଣ୍ଣନା ଅତୁଳନୀୟ ଏବଂ ଏହା କାଳିଦାସ, ମାଘ ଓ ଶ୍ରୀ ହର୍ଷଙ୍କ ଶୋଭା ବର୍ଣ୍ଣନାର ଊର୍ଦ୍ଧ୍ୱରେ । ମେଘମେଦୁର ଅମ୍ବର, ତଟିନୀର କୁଳ, କୁଳ ନାଦ, ଶ୍ୟାମତମାଳ ଦ୍ରୁମରାଜି ପୂର୍ଣ୍ଣ ବନଭୂମି ଶ୍ରୀ ଜୟଦେବଙ୍କୁ ପ୍ରେରଣା ଦେଇଛି । ବିଶେଷତଃ ବ୍ୟାସଦେବ କୃତ ‘ଶ୍ରୀମଦ୍ ଭାଗବତମ୍’ରେ ଶରତ ରାସ ବୈଷ୍ଣବ ଭକ୍ତି ସ୍ୱୀକୃତ ଥିବାବେଳେ ଶ୍ରୀ ଜୟଦେବ ବସନ୍ତ ରାସର ଅବତାରଣା କରିଅଛନ୍ତି । ତାହା ହିଁ ଓଡ଼ିଶାର ସ୍ୱତନ୍ତ୍ରତା । ଜୀବର ପରମାତ୍ମାଙ୍କ ସହ ମିଳନ ସଦାବେଳେ ଲାଗି ରହିଥିବ । ଶ୍ରୀରାଧା ଯୋଗମାୟା ଶକ୍ତି ଓ ସେ ଭଗବାନଙ୍କ ଆହ୍ଲାଦିନୀ ଶକ୍ତିକୁ କ୍ରୀୟାଶୀଳ କରାନ୍ତି, ଯେପରି ଶ୍ରୀଲକ୍ଷ୍ମୀ ଓ ଶ୍ରୀସୀତା କରାନ୍ତି ।

‘ଗୀତଗୋବିନ୍ଦ’ର ଆଳଙ୍କାରିତ ଲଳିତ ପଦାବଳୀ, ବିଶେଷଣ, ଅବ୍ୟୟ ଓ କ୍ରିୟା, ଯମକ, ଅନୁପ୍ରାସ, ଯତିପାତର ସମନ୍ୱୟ ଫଳରେ ଏହାକୁ ଏକ ଗୀତିକାବ୍ୟର ମାନ୍ୟତା ଦିଆଯିବ ଏବଂ ଏହା ଏତେ ହୃଦୟସ୍ପର୍ଶୀ ହୋଇଛି ଯେ, ଭାରତୀୟ ସାହିତ୍ୟ ପ୍ରେମୀଙ୍କର ଏହା ଆଦରର କାବ୍ୟ ହୋଇଛି । ଗୋଟିଏ ଉଦାହରଣ ଦେଖାଯାଉ -

‘ଲଳିତ ଲବଙ୍ଗ ଲତା ପରିଶୀଳନ କୋମଳ ମଳୟ ସମୀରେ,
ମଧୁକର ନିକର କରମ୍ବିତ କୋକିଳ କୂଜିତ କୁଞ୍ଜ କୁଟୀରେ ।
ବିହରତି ହରିରିହ ସରସ ବସନ୍ତେ,
ନୃତ୍ୟତି ଯୁବତୀ ଜନେବ ସମଂସଖି, ବିରହି ଜନସ୍ୟ ଦୂରନ୍ତେ ।’

ପ୍ରଥମ ପାଦରେ ‘ଲ’ର ଅନୁପ୍ରାସ ବା ବାରମ୍ବାର ପ୍ରୟୋଗ । ଦ୍ୱିତୀୟ ପାଦରେ ‘କ’ର ଅନୁପ୍ରାସ ଓ ପର ଦୁଇପାଦରେ ‘ଇ’ର ଅନୁପ୍ରାସ ।

ପୁନଶ୍ଚ,

‘ଶ୍ରିତ କମଳା କୁଚମଣ୍ଡଳ ଧୃତ କୁଣ୍ଡଳ ।
କଳିତ ଲଳିତ ବନମାଳା, ଜୟ ଜୟ ଦେବ ହରେ ।
ଦିନମଣି ମଣ୍ଡଳ ମଣ୍ଡନ, ଭବ ଖଣ୍ଡନ
ମୁନିଜନ ମାନସ ହଂସ, ଜୟ ଜୟ ଦେବ ହରେ ।’

ପ୍ରଥମ ଦୁଇ ପାଦରେ ‘ଳ’ର ଅନୁପ୍ରାସ, ତୃତୀୟ ପାଦରେ ‘ଣ୍ଡ’ର ଅନୁପ୍ରାସ ଓ ଶେଷ ପାଦରେ ‘ସ’ର ଅନୁପ୍ରାସ ।

ସେହିପରି ଆଦ୍ୟଯମକ, ମଧ୍ୟ ଯମକ ଇତ୍ୟାଦି ତଥା ବିଶେଷଣ ଓ ଅବ୍ୟୟ ପ୍ରୟୋଗ ଉପଯୁକ୍ତ ଭାବେ କରାଯାଇଅଛି । ଏଥିରେ ବାରଟି ସର୍ଗ ଏବଂ ସର୍ଗବନ୍ଧଃ ଏହାର ପ୍ରଧାନ ଲକ୍ଷଣ ହେତୁ ଏହାକୁ ମହାକାବ୍ୟର ମାନ୍ୟତା ଦିଆଯିବ । ଏହା ବୈଦର୍ଭୀ ରୀତିରେ ଲେଖାଯାଇଅଛି ଯେହେତୁ ଏହାର ଅଭିବ୍ୟକ୍ତି ଗୁଣଯୁକ୍ତ ଅଟେ । ଏଥିରେ ମାଳବ (୨ଟି), ମାଳବ ଗୌଡ଼ା (୧ଟି), ଗୁଜ୍ଜରୀ (୬ଟି), ବସନ୍ତ (୩ଟି), ରାମକେରୀ (୨ଟି) କର୍ଣ୍ଣାଟ (୧ଟି)

ଦେଶାଖ୍ୟ (୧ଟି), ଦେଶୀ ବରାଡ଼ି (୩ଟି), ବରାଡ଼ି (୨ଟି), ବିଭାସ (୧ଟି) ଗୁଣ୍ଡକିରୀ (୧ଟି), ଭୈରବୀ (୧ଟି), ଏପରି ବାରଟି ରାଗ ଓ ତାଳ (୫ଟି) ଯଥା- ଯତି (୧୧ଟି), ରୂପକ (୬ଟି), ଏକତାଳି (୫ଟି), ନିଃସାରୀ (୧ଟି) ଓ ଅଷ୍ଟତାଳ (୧ଟି) ବ୍ୟବହାର ହୋଇଅଛି । ଏହି ରାଗ ଓ ତାଳର ସମନ୍ୱୟ କବି ଶ୍ରୀ ଜୟଦେବଙ୍କୁ କେବଳ ଶ୍ରେଷ୍ଠ କବି ଓ ପ୍ରଖ୍ୟାତ ସଂସ୍କୃତ ସାହିତ୍ୟ ସ୍ରଷ୍ଟା ରୂପେ ପ୍ରମାଣ ଦେଇନାହିଁ, ବରଂ ତାଙ୍କର ଗୀତର ତାଳ ତାଙ୍କୁ ବିଖ୍ୟାତ ସଙ୍ଗୀତକାରର ସମ୍ମାନ ଦେଇଛି । ଏହି ସଙ୍ଗୀତ ସୃଷ୍ଟି ପରବର୍ତ୍ତୀ କାଳରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ବଳଦେବ ରଥ ଓ ବନମାଳୀଙ୍କୁ ଓଡ଼ିଆ ଭାଷାରେ ସଙ୍ଗୀତ ରଚନା କରିବାରେ ପ୍ରେରଣା ଦେଇଛି । ଶ୍ରୀ ଜୟଦେବଙ୍କ କୋମଳ, ମଧୁର ଓ ଲଳିତ ପଦାବଳୀ ଏହି ଗୀତିକାବ୍ୟକୁ ରଚିମନ୍ତ କରିଅଛି ।

ପ୍ରଖ୍ୟାତ ନାଟ୍ୟକାର କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ ଗୀତଗୋବିନ୍ଦକୁ ଏକ ଗୀତିନାଟ୍ୟର ମାନ୍ୟତା ଦେଇଅଛନ୍ତି । ପୂର୍ବକାଳରେ ନାଟକର ସଂଳାପ ଅଭିନେତା ଗୀତ ମାଧ୍ୟମରେ ପ୍ରକାଶ କରୁଥିଲେ । ସଂସ୍କୃତ ନାଟକ ଛଡ଼ା ଓଡ଼ିଆ ଭାଷାରେ ଜଗନ୍ନାଥ ପାଣି, ମୋହନ ଗୋସ୍ୱାମୀ, ଗୌର ଗୋସ୍ୱାମୀ ଏବଂ ବୈଷ୍ଣବ ପାଣି ଗୀତ ମାଧ୍ୟମରେ ଅଭିବ୍ୟକ୍ତି ପ୍ରକାଶ କରୁଥିଲେ । ଗୀତଗୋବିନ୍ଦକୁ ଗୀତିନାଟ୍ୟ ମାନ୍ୟତା ଦେବାରେ ଅଯୁକ୍ତିକତା କିଛି ନାହିଁ । ନାଟକ ଯେପରି ହଠାତ୍ ଆରମ୍ଭ ହୋଇ କ୍ରମେ ଉତ୍‌ଥାନ କରିଚାଲେ ଏବଂ ଶୀର୍ଷକୁ ଗଲେ ଅବତରଣ କରେ, 'ଗୀତଗୋବିନ୍ଦ'ରେ ଏହି ସ୍ତରରେ କଥାଟି ଫୁଟିଅଛି । ମେଘମେଦୁର ଅବନୀ ଦର୍ଶନରେ ନାଟକଟି ଆରମ୍ଭ ହୋଇ କ୍ରମେ ଧୀରେ ଧୀରେ ଉତ୍‌ଥାନ କରି ଦ୍ୱନ୍ଦ୍ୱ ମଧ୍ୟରେ ଗତି କରି ଶୀର୍ଷ ସ୍ଥାନରେ ପହଞ୍ଚିଲା ପରେ ଶ୍ରୀକୃଷ୍ଣ କହିଅଛନ୍ତି - 'ଦେହି ପଦ ପଲ୍ଲବ ମୁଦାରଂ' । ଏହାପରେ ଏହି ଗୀତିନାଟ୍ୟର ଅବରୋହଣ ଆରମ୍ଭ ହୋଇଛି ।

ଗୀତଗୋବିନ୍ଦର ବିଶେଷତ୍ୱ ଅଛି । ଶ୍ରୀଜଗନ୍ନାଥଙ୍କ ପ୍ରେରଣାରେ ଏହି ଗୀତିକାବ୍ୟଟି ରଚନା କରାଯାଇଥିଲା । ଯାହାର ପାଦ ଶ୍ରୀଜଗନ୍ନାଥ ଛଦ୍ମବେଶରେ ଜୟଦେବଙ୍କ ରୂପରେ ଆସି ପୂରଣ କରିଥିଲେ - ଦେହି 'ପଦ ପଲ୍ଲବ ମୁଦାରଂ' । ଅଚ୍ୟୁତାଙ୍କ ଲେଖାରେ ଭକ୍ତ ପାଇଁ ଭଗବାନଙ୍କ ବ୍ୟାକୁଳତା ବିସ୍ତୀର୍ଣ୍ଣ ରୂପେ ଦେଖିବାକୁ ମିଳିବ । ଚୈତନ୍ୟ ଭାଗବତରେ ନବମ ଅଧ୍ୟାୟରେ ଭକ୍ତ ପାଇଁ ଭଗବାନ ହାରମାନିବା ବା ନମ୍ର ଭାବ ବର୍ଣ୍ଣନା ଅଛି । ସେଥିରୁ ଏକ ପାଦ ଗୀତ - ଭକ୍ତିବଶେ ତୁମି କାନ୍ଧେ କଇଲେ ଗୋପବାମା ।' ଦ୍ୱିତୀୟଟି ହେଲା 'ଅଭିନବ ଗୀତଗୋବିନ୍ଦ' ଓ ଶ୍ରୀ ଜୟଦେବ କୃତ 'ଗୀତଗୋବିନ୍ଦ' ଦୁଇଟି ଗ୍ରନ୍ଥ ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ରଖି ପରେ ଦେଖିଲା ବେଳକୁ ଗୀତଗୋବିନ୍ଦ ଶୀର୍ଷ ସ୍ଥାନରେ ରହିଥିଲା । ତୃତୀୟତଃ ପରବର୍ତ୍ତୀ କାଳରେ ଶ୍ରୀମନ୍ଦିରର ଜୟବିଜୟ ଦ୍ୱାରଠାରେ ବାହୁଡ଼ା ବିଜେ ଦିନ (୧୫୦୦ ଖ୍ରୀ:ଅ: ଜୁଲାଇ ୮ ତାରିଖ ଆଷାଢ଼ ଶୁକ୍ଳ ଦଶମୀ ବୁଧବାର ଦିନ) ଖୋଦିତ ଆଦେଶନାମାରେ ଶ୍ରୀ ଜୟଦେବଙ୍କ 'ଗୀତଗୋବିନ୍ଦ' ଛଡ଼ା ଅନ୍ୟ କୌଣସି ଗୀତ ବା ନୃତ୍ୟ ବଡ଼ସିଂହାର ବେଳେ ହୋଇପାରିବ ନାହିଁ ବୋଲି ଗଜପତି ପ୍ରତାପରୁଦ୍ର ଦେବ ଆଦେଶ ଦେଇଥିଲେ ଯାହାକି ଅଦ୍ୟାବଧି ବଳବତ୍ତର ଅଛି ।

ଉପସଂହାରରେ କୁହାଯାଇପାରେ ଯେ ଶ୍ରୀ ଜୟଦେବ ଜଣେ ବିଶିଷ୍ଟ କବି ଯାହାଙ୍କର ଲେଖନୀ ନିଃସୃତ ଅନବଦ୍ୟ ସୃଷ୍ଟି ଲାଗି ଓଡ଼ିଶାର ଅନ୍ୟ ଏକ ବିଶିଷ୍ଟ କବି ଉପେନ୍ଦ୍ର ଭଞ୍ଜ ଏହି କ୍ରମରେ ବନ୍ଦନା କରି ଅଛନ୍ତି -

'କହେ ଉପଇନ୍ଦ୍ର ଭଞ୍ଜ ଟେକି ବେନି ବାହାକୁ
ରବି ତଳେ କବି ପଣେ ନ ଗଣେ ମୁଁ କାହାକୁ ।
ଜୟଦେବ ଦୀନକୃଷ୍ଣ ଏକା ମୋର ଶରଣ,
ଆନ କବିଙ୍କର ମୁଣ୍ଡେ ମୋର ବାମଚରଣ ।'

ବନ୍ଦନୀୟ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ବନ୍ଦନା ଶିରୋଧାର୍ଯ୍ୟ ।

ଆଡ଼ଭୋକେଟ
ଜେଲ୍ ରୋଡ଼, ଖୋର୍ଦ୍ଧା



# ନିଷ୍କାମ ଈଶ୍ୱର ପ୍ରୀତିର ଉତ୍ସ-ଗୀତଗୋବିନ୍ଦ

ସଂଜିବ କୁମାର ପ୍ରଧାନ

**କେ**ନ୍ଦୁଲି ଗାଁରେ ଜଣେ ବ୍ରାହ୍ମଣ ପଣ୍ଡିତ ରୁହନ୍ତି । ତାଙ୍କର ନାମ ଭୋଜଦେବ । ଭାରି ଗରିବ ସେ । ସେତେବେଳେ ସଂସ୍କୃତ ଭାଷାର ପ୍ରଭାବ ଥିଲା । ଯିଏ ପାଠ ଦି ଅକ୍ଷର ପଢ଼ିଥିଲା, ତାକୁ ପଣ୍ଡିତ କୁହାଯାଉଥିଲା । ସମାଜରେ ତାର ଖୁବ୍ ଆଦର ଥିଲା । ଲୋକେ ପଣ୍ଡିତଙ୍କୁ ବହୁତ ସମ୍ମାନ କରୁଥିଲେ । ଭୋଜଦେବ ସେହି ଗାଁରେ ପାଠଶାଳାଟି କରିଥିଲେ । ସେ ପିଲାମାନଙ୍କୁ ସେଠାରେ ଶିକ୍ଷା ଦିଅନ୍ତି । ତା' ବଦଳରେ ତାଙ୍କୁ କିଛି ପଇସା ମିଳେ । ସେଥିରେ ତାଙ୍କର ପରିବାର ଚଳିଯାଏ । ତାଙ୍କ ସ୍ତ୍ରୀ ବାମାଦେବୀ । ପୁଅଟିଏ । ନାମ ଜୟଦେବ ।

ଜୟଦେବ ବାପାଙ୍କ ପାଠଶାଳାରେ ପାଠପଢ଼ା ଆରମ୍ଭ କଲେ । ଖୁବ୍ କମ୍ ଦିନରେ ଜୟଦେବ ସଂସ୍କୃତ ପାଠ ଶିକ୍ଷା କଲେ । ଧୀରେ ଧୀରେ ଜୟଦେବ ସଂସ୍କୃତ ଭାଷାରେ ଦକ୍ଷତା ପାଇଲେ । ଥରେ ବାପା ଭୋଜଦେବଙ୍କ ଦେହ ଖୁବ୍ ଖରାପ ହେଲା । ସେ ଆରପାରିକୁ ବାଟ କାଟିଲେ । ତାଙ୍କର ଜମିବାଡ଼ି କିଛି ନଥିଲା । ସେତେବେଳେ ଜୟଦେବଙ୍କୁ ମାତ୍ର ଆଠବର୍ଷ । ଘରର ଅବସ୍ଥା ଦିନକୁ ଦିନ ଖରାପ ଆଡ଼କୁ ଗତି କଲା । ଏମିତି ସମୟ ଆସିଲା ଦିନେ ଦିନେ ତାଙ୍କୁ ଉପବାସ ରହିବାକୁ ପଡ଼ିଲା । ପିଲାବେଳର ସେହି ତିକ୍ତ ଅନୁଭୂତି ତାଙ୍କୁ ଜୀବନରେ ଅନେକ କଥା ଶିକ୍ଷା ଦେଇଥିଲା ।

ସୁଲଳିତ କାନ୍ତ କୋମଳ ପଦାବଳୀ 'ଗୀତଗୋବିନ୍ଦ' ଗୀତିକାବ୍ୟର ରଚୟିତା ମହାକବି ଜୟଦେବ ପୁରୀ ଜିଲ୍ଲାରେ କେନ୍ଦୁବିଲ୍ୱ ଗାଁରେ ଜନ୍ମ ହୋଇଥିବା କଥା ଚନ୍ଦ୍ରଦତ୍ତଙ୍କ 'ଭକ୍ତମାଳାରୁ' ଜଣାଯାଏ । ତାଙ୍କର ରାଧାମାଧବଙ୍କର କେଳିଲୀଳାରେ ମୁଖରିତ ଗୀତଗୋବିନ୍ଦ ସାରାଭାରତରେ ପ୍ରସିଦ୍ଧିଲାଭ କରିଛି । କବିଙ୍କ କୃତିତ୍ୱ ସର୍ବଭାରତୀୟ ଗୀତିକାବ୍ୟ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ହୋଇଥିବାସ୍ଥଳେ କବିଙ୍କର ଜନ୍ମ ସଂପର୍କିତ ବିଷୟ କେତେ ଦୃଷ୍ଟିରୁ ଅଦ୍ୟାପି ବିବଦମାନ ।

କବି ଜୟଦେବଙ୍କ ବାସସ୍ଥଳୀ ପୁରୁଷୋତ୍ତମ କ୍ଷେତ୍ର । ଶ୍ରୀଜଗନ୍ନାଥଙ୍କ ପୁଣ୍ୟ ପୁରୁଷୋତ୍ତମ ଧାମରେ ରହି ଏହି ଭକ୍ତକବି ବିଶ୍ୱବିଶ୍ରୁତ ଗୀତଗୋବିନ୍ଦ ରଚନା କରିଥିଲେ । କେତେକ ପଣ୍ଡିତ ନିଜର ଯୁକ୍ତି ବଳରେ ଜୟଦେବ ବଙ୍ଗୀୟ କବି ଓ ବୀରଭୂମି ଜିଲ୍ଲାରେ କେନ୍ଦୁବିଲ୍ୱ ଗ୍ରାମରେ ଜାତ ବୋଲି ମତ ପ୍ରକାଶ କରି ଏହି ପ୍ରସିଦ୍ଧ ଉତ୍କଳୀୟ କବିଙ୍କ ଜନ୍ମସ୍ଥାନ ସଂପର୍କରେ ଭିନ୍ନମତ ପ୍ରକାଶ କରିଥାନ୍ତି ।

ଶ୍ରୀ ଜୟଦେବ ଏକ ଅନନ୍ୟ ପ୍ରତିଭାର ଦୀପ୍ତିମନ୍ତ ପ୍ରତୀକ ଥିଲେ । ତାହା ତାଙ୍କର ପ୍ରଚଳିତ ଗୀତଗୋବିନ୍ଦ କାବ୍ୟରୁ ଜଣାପଡ଼େ । ଭଗବାନ ଶ୍ରୀକୃଷ୍ଣ ଏବଂ ସର୍ବଜ୍ଞାନର ଅଧିକାରିଣୀ ମାତା ରାଧାଙ୍କ ସହ ବିରହ ମିଳନର ସମନ୍ୱୟ ଏବଂ ଭକ୍ତି ପ୍ରାଣର ପ୍ରତିବିମ୍ବ ହେଉଛି ଏହି ବାକ୍ୟ । ଅତିବଡ଼ି ଜଗନ୍ନାଥ ଦାସଙ୍କ ଭାଗବତରେ କୁହାଯାଇଛି - କୃଷ୍ଣ ପ୍ରୀତିରେ ରତିଯା'ର । ସେ ନର ଭବ ମଧ୍ୟେ ସାର । ଅର୍ଥାତ୍ ମଣିଷର ପୂର୍ଣ୍ଣତାପ୍ରାପ୍ତି କେବଳ ଧନାଢ୍ୟ କିମ୍ବା ବେଦାନ୍ତ ବିଦ୍ୟାରେ ସୀମିତ ନୁହେଁ । ତାହାର ପୂର୍ଣ୍ଣତା ଭଗବାନଙ୍କ ପଦାରବିନ୍ଦରେ ଭକ୍ତିପୂତ ଆତ୍ମନିବଦେନକୁ ବୁଝାଏ ।

କବି ଜୟଦେବ ଅତି ଚମତ୍କାର ଭାବରେ ରତି ସୁଖସାର ଇତ୍ୟାଦି ଶବ୍ଦ ସଂଯୋଜନା କରି ତାଙ୍କର ଏକାନ୍ତ ବିଷ୍ଣୁପ୍ରୀତିକୁ ପ୍ରକାଶ କରିଛନ୍ତି । ରତି ସୁଖ ସଂପର୍କରେ ଜୟଦେବ ଏକାନ୍ତ ଉଦାର । ରତିସୁଖ ଚିରସ୍ଥାୟୀ ନୁହେଁ, ତେଣୁ ଏହି ରତି ସୁଖକୁ ସାରବତ୍ କରିବାକୁ ହେଲେ ଭଗବାନଙ୍କୁ ସିଧାସଳଖ ନିଷ୍କାମ ପ୍ରେମ କରିବାକୁ ହେବ ଏହା ହିଁ ଭକ୍ତିରସର ରୂପାନ୍ତରିତ ପ୍ରକ୍ରିୟା ।

ଉତ୍କଳ ଭୂମିର ବରପୁତ୍ର ଭାବରେ କବି ଜୟଦେବ ଚିର ନମସ୍ୟ ଏବଂ ଚିରସ୍ମରଣୀୟ । ଉକ୍ତ କାବ୍ୟ ଭାରତର ପ୍ରତ୍ୟେକ ଭାଷାରେ ଅନୂଦିତ ହୋଇପାରିଲେ ଉତ୍କଳ ଭୂମିର ମର୍ଯ୍ୟାଦା ବହୁଗୁଣରେ ବୃଦ୍ଧି ପାଇବ । 'ଗୀତଗୋବିନ୍ଦ' ଏବଂ ଜୟଦେବ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଏହା ସୁଖପାଠ୍ୟ, ବୋଧଗମ୍ୟ ଏବଂ ନିଷ୍କାମ ଈଶ୍ୱରପ୍ରୀତିର ଉତ୍ସ ।

ନିର୍ଦ୍ଦେଶକ
ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଭୁବନେଶ୍ୱର

# କବି ଜୟଦେବ - ନାରୀ ଶକ୍ତିର ସଶକ୍ତିକରଣ

ଡଃ ଦୁର୍ଗା ପ୍ରସନ୍ନ ଚୌଧୁରୀ

ପ୍ରେମ, ପବିତ୍ର, ଶାଶ୍ୱତ ଓ ଶୁଦ୍ଧ । ସେ ପ୍ରେମର ପ୍ରେମିକ ଥିଲେ କବି ଜୟଦେବ । ସେ ପ୍ରେମ ମଧ୍ୟରେ ନାରୀର ପବିତ୍ରତା, ସ୍ୱଚ୍ଛତା ଓ ସ୍ୱାଧୀନତାକୁ କବି ଜୟଦେବ ସ୍ୱୀକୃତ ଦେଇଥିଲେ । ସେ ଯଡାତିକେଶରୀ ଶକାବ୍ଦ ୫୭୪ ମାଘ ଅମାବାସ୍ୟା ଦିନ ୧୧୬୭ ଖ୍ରୀଷ୍ଟାବ୍ଦରେ ଜନ୍ମଲାଭ କରିଥିଲେ । କବିଙ୍କର ଶୈଶବ ଅତ୍ୟନ୍ତ ଦୁଃଖଦାୟକ । ଯେତେବେଳେ ତାଙ୍କୁ ୪ ବର୍ଷ ବୟସ ତାଙ୍କର ମା' ବାମାଙ୍କର ପରଲୋକ ହେଲା । ତାଙ୍କୁ ୧୧ ବର୍ଷ ହୋଇଥିବାବେଳେ ତାଙ୍କର ପିତା ଭୋଜଦେବ ସ୍ୱର୍ଗାରୋହଣ କଲେ । ତତ୍‌ପରେ ସେ ତାଙ୍କର ଭିଣୋଇଙ୍କ ଗୃହରେ ଅବସ୍ଥାନ କଲେ । ଭିଣୋଇଙ୍କ ବ୍ୟବହାରରେ ଅତିଷ୍ଠିତ ହୋଇ ଲୁଚି କରି ଜୟଦେବ ଗ୍ରାମରୁ ପଳାଇ ଆସିଲେ ଏବଂ ପୁରୀରେ ତାଙ୍କର ଲେଖାଯୋଖା ମାଇଁଙ୍କ ଘରେ ଅବସ୍ଥାନ କଲେ । ସେଠାରେ ସେ ଶାସ୍ତ୍ର ଚର୍ଚ୍ଚା, ସଂଗୀତ ଚର୍ଚ୍ଚା, ଉପାସନା ଓ ଜଗନ୍ନାଥ ଦର୍ଶନରେ ସମୟ ଅତିବାହିତ କଲେ ।

ଅନନ୍ତବର୍ମା ଚୂଡ଼ଙ୍ଗ ଗଜପତି ମହାରାଜାଙ୍କ ସମୟରେ ଶ୍ରୀମନ୍ଦିରରେ ଦେବଦାସୀ ନୃତ୍ୟ ଓଡ଼ିଶୀ ଭଙ୍ଗୀରେ ଭର୍ତ୍ତି କରାଗଲା । ସେହି ପ୍ରଥାରେ ଯେଉଁ ଯୁବତୀମାନେ ଦେବତାଙ୍କ ଉଦ୍ଦେଶ୍ୟରେ ଆତ୍ମବିସର୍ଜନ କରୁଥିଲେ, ସେମାନେ ମଧ୍ୟ ବହୁ ସନ୍ତାନବତୀ ହୋଇଥିଲେ । ସନ୍ତାନମାନେ ମଠାଧିକାରୀ, ମନ୍ଦିରର ଧନବନ୍ତ ସେବକ ବା ଅଧିକାରୀଙ୍କଦ୍ୱାରା ଶିକ୍ଷା ଲାଭ କରି ସମାଜରେ ସ୍ଥାନ ଲାଭ କରୁଥିଲେ । ତେଣୁ ସନ୍ତାନସନ୍ତତି ନ ହେଲେ ବହୁ ସମ୍ଭ୍ରାନ୍ତ ପରିବାର ଲୋକେ ଠାକୁରଙ୍କୁ କନ୍ୟାଟିଏ ହେଲେ ଦେଇଦେବେ ବୋଲି ଚୁକ୍ତି କରୁଥିଲେ । ସେ ଚୁକ୍ତି ସଫଳ ହେଉଥିଲା ବୋଲି ବିଶ୍ୱାସ । କିନ୍ତୁ ଆଜିକାଲି କନ୍ୟାଭ୍ରୁଣ ହତ୍ୟା କରାଯାଉଛି । ଏହାଦ୍ୱାରା ସମାଜରେ ନାରୀପ୍ରତି ଅବମାନନା କରାଯାଉଛି । କନ୍ୟାଭ୍ରୁଣ ହତ୍ୟା ଏକ ଅପରାଧ ବୋଲି ବିଧିରେ ଉଲ୍ଲେଖ ଅଛି । ଏହାର କାରଣମାନଙ୍କ ମଧ୍ୟରେ ଉପରୋକ୍ତ ବିଶ୍ୱାସ ଏକ କାରଣ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଦେବଦାସୀମାନେ ରାତ୍ରରେ ଦେବତାଙ୍କ ଶୟନ କକ୍ଷରେ ବିଜେ ପ୍ରତିମାଙ୍କ ସହିତ ଯଥାସମ୍ଭବ ସମୟ ଅତିବାହିତ କରି ଚନ୍ଦନ, କର୍ପୂର, କସ୍ତୁରୀ ସର୍ବାଙ୍ଗ ହୋଇ ନାନା ସୁଗନ୍ଧ ପୁଷ୍ପରେ ବିମଣ୍ଡିତ ହୋଇ ଫେରି ଗୋପନରେ ବଖାଣୁଥିଲେ ଯେ ଠାକୁର ତାଙ୍କୁ ରମଣ କରିଛନ୍ତି ।

ସେମାନେ ଠାକୁରଙ୍କୁ ନିଜର ଅଙ୍ଗ ଦେବାକୁ ଆବୃଡ଼ା ପଡୁଥିଲେ । ତାଙ୍କର ନୃତ୍ୟ ଠାକୁରଙ୍କୁ ମୁଗ୍ଧ କରିବାକୁ ଥିଲା, ଏହା ଏକ ଆଧାତ୍ମିକ ପ୍ରେମ । ଜୟଦେବ ମଧ୍ୟ ଶ୍ରୀମନ୍ଦିରରେ ସଂଗୀତ ଦେଉଥିଲେ ଓ ଦେବଦାସୀମାନେ ନୃତ୍ୟ କରୁଥିଲେ ।

ଜୟଦେବଙ୍କ ବିବାହ ଏକ ଅଲୌକିକ ଘଟଣା ଉପରେ ପର୍ଯ୍ୟବସିତ । ପଦ୍ମାବତୀ ଗଙ୍ଗାବାଡ଼ିର ଶମ୍ଭୁ ଦେବଶର୍ମା ଓ ଧର୍ମପତ୍ନୀ ଅପର୍ଣ୍ଣାଙ୍କ ଔରସରୁ ଜନ୍ମ । ସେ ଅତ୍ୟନ୍ତ ସୁନ୍ଦରୀ ଥିଲେ । ଦିନେ ଶ୍ରୀମନ୍ଦିରରେ ବର୍ଷା ହେଉଥିଲା । ଦେବଶର୍ମା ଓ ଅପର୍ଣ୍ଣା, ପଦ୍ମାବତୀଙ୍କୁ ସୁନ୍ଦର, ଚର୍ଚ୍ଚିତ ଓ ଅଳଙ୍କାରରେ ଆଚ୍ଛାଦିତ କରି ଠାକୁରଙ୍କ ଆଗରେ ସମର୍ପଣ କରି ଦେଲେ । ଝିଅଟି କୋଟି ଭୁବନ ମୋହିନୀ ଲଳନାରତ୍ନ ଥିଲେ । ତାକୁ ଏକୁଟିଆ ଛାଡ଼ି ହଠାତ୍ ଦେବଶର୍ମା ଓ ଅପର୍ଣ୍ଣା ଅନ୍ତର୍ଦ୍ଧାନ ହୋଇଗଲେ । ଏପରି କଠୋରତା ପିତାମାତାଙ୍କର କେତେଦୂର ସ୍ପୃହଣୀୟ କହିହେବ ନାହିଁ । ତେବେ ଭୟ ନଥିଲା କାରଣ ଠାକୁର ଅଛନ୍ତି । ସମସ୍ତେ ରୂପଭରି ପଦ୍ମାକୁ ଦେଖୁଥାନ୍ତି କିନ୍ତୁ ଛୁଇଁବାକୁ ସାହସ କରୁନଥାନ୍ତି । ସେ ମଧ୍ୟ ଅବଳା ନାରୀ, କିଂକର୍ତ୍ତବ୍ୟ ବିମୂଢ଼ା ହୋଇ ଠିଆ ହୋଇଥାନ୍ତି ।

ପ୍ରତିଦିନ ସମ୍ବାଦ ସରବରାହରେ ଦେଖିଲେ ଜଣାପଡ଼େ ବଳାତ୍କାର ପାଇଁ ଆଇନ୍ କାନୁନ୍ ଅଛି କିନ୍ତୁ ଲୋକମାନଙ୍କର ନୈତିକତା ନାହିଁ । ସେ ସମୟରେ ନାରୀର ଅଧିକାର ପ୍ରତି ଲୋକେ ସଚେତନ ଥିଲେ । ନାରୀର ଅଧିକାର ଥିଲା ନିରାପତ୍ତା ଓ ସମ୍ମାନର ସହିତ ବଂଚି ରହିବା । ସେ ଯାହାହେଉ, ଜୟଦେବ (ଜୟ)ଙ୍କର ସେହି ମନ୍ଦିରରେ ପଦ୍ମାଙ୍କ ସହିତ ଦେଖାହେଲା । ସେଠିକାର ପୂଜାପଣ୍ଡା ଜୟଙ୍କୁ ପଦ୍ମାବତୀଙ୍କ ସହିତ ବିବାହ କରିବା ପାଇଁ ନିର୍ଦ୍ଦେଶ

ଦେଲେ । ଜୟଦେବ ପ୍ରସ୍ତୁତ ନଥିଲେ । ତେବେ ପଦ୍ମାବତୀ ଜାଣିପାରିଲେ ଯେ ତାଙ୍କ ପିତାଙ୍କୁ ହୋଇଥିବା ସ୍ୱପ୍ନରେ ଏହି ଜୟ ହିଁ ତାଙ୍କର ସ୍ୱାମୀ ହେବେ ବୋଲି ସୂଚନା ମିଳିଥିଲା । ତେଣୁ ସେ ଦେବଦାସୀ ନହୋଇ ଜୟଦେବଙ୍କୁ ଗ୍ରହଣ କରିବାକୁ ଇଚ୍ଛା ପ୍ରକଟ କଲେ । ବୃଷ୍ଟିପାତ ଲାଗି ରହିଥାଏ । ଜୟଦେବ ଲାଜରେ ମୁହଁପୋତି ଚାଲିଗଲେ, କିନ୍ତୁ ପଦ୍ମାବତୀ ତାଙ୍କୁ ଅନୁସରଣ କରି ଜୟଙ୍କ ଘରକୁ ଗଲେ । ପଦ୍ମାବତୀଙ୍କ ଭିଜାଭିଜା ଅବୟବ ତାଙ୍କ ସୌନ୍ଦର୍ଯ୍ୟକୁ ଦ୍ୱିଗୁଣିତ କରିଥାଏ । ଜୟ ସ୍ଥିର ହୋଇ ଆଖିବୁଜି କଣ ସବୁ ଭାବି ଚାଲିଥାନ୍ତି, ଭାବନାର ଅନ୍ତ ନଥାଏ । ଅସୀମ ବ୍ରହ୍ମାଣ୍ଡ ସ୍ତର ସ୍ତର ହୋଇ ଚକ୍ଷୁର ଅନ୍ତରାଳ ଅନ୍ଧାରରେ ଘୂରି ଚାଲିଥାଏ । ସେ କ'ଣ କରିବେ ? କିନ୍ତୁ ଆଜିକାଲିର ଯୁବକ ହୁଏତ ଗୋଟିଏ ଯୁବତୀକୁ ଏକାକୀ ପାଇ ବିଭିନ୍ନ ଦୁଶ୍ଚିନ୍ତାରେ ବୁଡ଼ି ଯାଇଥାନ୍ତା ଓ ନିଜର ଶାଳୀନତା ହଜାଇ ଦେଇ ଉପଭୋଗ କରିବାକୁ ପଛାଇ ନଥାନ୍ତା । ଜୟଦେବ ଜଣେ ଶୃଙ୍ଖଳିତ ପୁରୁଷ ହୋଇ ନାରୀର ଅଧିକାରପ୍ରତି ସମ୍ମାନ ଜଣାଇ ଚୁପ୍ ରହିଲେ । ଏହା ନାରୀ ଶକ୍ତି ପ୍ରତି ସମ୍ମାନ ଦେବାର ଜ୍ୱଳନ୍ତ ଉଦାହରଣ ନୁହେଁ କି ?

ଜୟଦେବଙ୍କର ଭାଣିଜୀ ଚନ୍ଦ୍ରା ପିଲାଦିନୁ ମାମୁଁଙ୍କ ପାଖରେ ବଢ଼ିଛି । ସେ ଆସି ହଠାତ୍ ପହଞ୍ଚିଗଲା ଓ ପଦ୍ମାବତୀଙ୍କୁ ଦେଖି ମାଈଁ ବୋଲି ସମ୍ବୋଧନ କଲା । ବିବାହ ପୂର୍ବରୁ ସେ ଭାବି ନେଲା ମାମୁଁ ପଦ୍ମାବତୀଙ୍କୁ ବିବାହ କଲେ । ତେଣୁ ସେ ପଦ୍ମାବତୀ ଓ ଜୟଦେବଙ୍କୁ ଗାଁକୁ ନେଇଗଲା । ସମସ୍ତେ ଭାବିଲେ ପଦ୍ମାବତୀ ଜଣେ ଦେବଦାସୀ ହୋଇ କିପରି ଜୟଦେବଙ୍କୁ ବିବାହ କଲେ କିନ୍ତୁ ଇନ୍ଦ୍ର ଖୁଣ୍ଟିଆ ନାମକ ଜଣେ ଶ୍ରୀମନ୍ଦିରର ସେବାଦାସୀ ସାକ୍ଷ୍ୟ ଦେଲେ ଯେ ପଦ୍ମା ଜଣେ ଅତି ସରଳ ଓ ନିଷ୍କଳଙ୍କ ଚରିତ୍ରର ନମୂନା । ତା'ପରେ ଜୟ ଓ ପଦ୍ମାବତୀଙ୍କର ବିବାହ ସମ୍ପନ୍ନ ହେଲା । ଆଜିକାଲି ଦେଖିଲେ ଜଣାପଡ଼େ ଯେ କନ୍ୟାମାନେ ବିବାହ ପୂର୍ବରୁ ପୁରୁଷମାନଙ୍କ ସହିତ ଏକାଧିକବାର ସମ୍ଭୋଗ କରିବାକୁ ଇଚ୍ଛାପ୍ରକାଶ କରୁଛନ୍ତି ଓ ଏକତ୍ର ସହବାସ କରିବାକୁ ଉଚିତ୍ ମଣୁଛନ୍ତି । ଏହା ଆଇନସମ୍ମତ ନୁହେଁ । ବରଂ ପବିତ୍ର ଓ ଶୃଙ୍ଖଳିତ ବୈବାହିକ ଜୀବନଯାପନ ଶୈଳୀ ଜୟଦେବଙ୍କ ପାଖରୁ ଶିଖିବାର କଥା ।

ବିବାହ ଉତ୍ତାରୁ ଜୟଦେବ ଓ ପଦ୍ମାବତୀ ଏକାନ୍ତ ପବିତ୍ର ଦାମ୍ପତ୍ୟ ଜୀବନଯାପନ କଲେ । ଦୁହିଁଙ୍କ ଜୀବନ ଏତେ ସୁଖମୟ ହୋଇ ଚାଲିଲା ଯେ ତାହା କେବଳ ସ୍ୱର୍ଗର ମାଧବ ଗନ୍ଧର୍ବ ଓ ଗାନ୍ଧର୍ବୀଙ୍କ ପକ୍ଷରେ ସମ୍ଭବ ହୋଇପାରେ । ମୁହୂର୍ତ୍ତ ମାତ୍ର କେହି କାହାରିକୁ ନ ଦେଖିଲେ ଝୁରି ହେଉଥାନ୍ତି । ନିରନ୍ତର ସଂଗୀତ, ସାହିତ୍ୟ ଚର୍ଚ୍ଚାରେ ଦିନ କଟୁଥାଏ । ଜୟ ଥିଲେ ସୁପୁରୁଷ ଓ ପଦ୍ମା ଥିଲେ ପଦ୍ମିନୀ ଜାତୀୟ ମନସ୍ୱିନୀ । ଜୟ ନିଜ ଗାଁରେ ଅତ୍ୟନ୍ତ ପରିଚିତ । ନିଜର ସୁଗଠିତ ସୁନ୍ଦର କୋମଳ ଅବୟବ, ଏମନ୍ତକି ତାଙ୍କର ଅସୀମ ଶୋଭା ଓ ମଧୁର ଭାଷା ଓ ବ୍ୟବହାର ବରାବର ଜଗତକୁ ମୋହିତ କରିଥାଏ । ଗାଁରେ ଲେଖାରେ ଭାଉଜ କଳାବତୀ ଓ ଅନ୍ୟ ଯୁବତୀମାନେ ମଦରସା, ମନୋରମା, ଜୟକୁ ଭଲ ପାଇଲେ । ସେଥିରେ ପଦ୍ମାବତୀ ଈର୍ଷାନ୍ୱିତା ହେଲେ । ଏହା ସ୍ୱାଭାବିକ । କୌଣସି ସ୍ତ୍ରୀ ନିଜର ସ୍ୱାମୀର ସ୍ୱତନ୍ତ୍ରତାକୁ ବଜାୟ ରଖିବାକୁ ଚାହେଁ, ସ୍ତ୍ରୀ ଚାହେଁ ତା'ର ସ୍ୱାମୀକୁ କେହି ଆଡ଼ ଆଖିରେ ବି ଚାହିଁବେ ନାହିଁ । କାରଣ ତା'ର ସ୍ୱାମୀ ସର୍ବସ୍ୱ । ସେ ଯାହା ଚାହିଁବ ସେ ସ୍ୱାମୀ ପାଖରେ ହିଁ ଅଳି କରିପାରିବ । କିନ୍ତୁ ପଦ୍ମାବତୀ ବ୍ୟର୍ଥ ହେଲେ । ସେ ବହୁତ ଦୁଃଖିତ ହେଲେ । ଯେଉଁ ଗୃହ ବୈକୁଣ୍ଠ ସମାନ ଶୋଭନୀୟ ଥିଲା, ତାହା କ୍ରମେ କ୍ରମେ ପଦ୍ମାର ବିମର୍ଷତାରେ ଶ୍ମଶାନ ପାଲଟିଗଲା । ଜୟ ଏକ ସରଳ ପୁରୁଷ ହୋଇ ତୃଟିକୁ ତୃଟି ବୋଲି ମନେ କରୁନଥାନ୍ତି । ତେଣୁ ପଦ୍ମାବତୀ ଜୟଙ୍କୁ ଧିକ୍ କରି ପାଖରୁ ତଡ଼ି ଦେଲେ । ଜୟ ଏହି ସୁକୁମାରୀ ଲାବଣ୍ୟବତୀର ପ୍ରେମ ନପାଇ ବ୍ୟଥାରେ କାତର ହେଲେ । ଆଜିକାଲିର ପୁରୁଷ ଓ ସ୍ତ୍ରୀଙ୍କ କଥା ଭିନ୍ନ । ପୁରୁଷମାନେ ଅନ୍ୟ ସ୍ତ୍ରୀର ମିଥ୍ୟାପ୍ରେମରେ ପଡ଼ି ନିଜର ଘର ଉଜାଡୁଛନ୍ତି ଓ ଶେଷରେ ଛାଡ଼ପତ୍ର ଦିଆଯାଉଛି । ଏହାକୁ ବିଧି ଅନୁସାରେ ନିର୍ଯ୍ୟାତନା ବୋଲି କୁହାଯାଏ । ଏହି ନିର୍ଯ୍ୟାତନାର କାରଣ ଉଭୟ ସ୍ତ୍ରୀ ପୁରୁଷଙ୍କ ପାଇଁ ଛାଡ଼ପତ୍ର ପ୍ରଦାନ କରିବାର ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ଛାଡ଼ପତ୍ର ଜୀବନ ଗଢ଼େ ନାହିଁ ବରଂ ଜୀବନର ଭଗ୍ନାବଶେଷ ଦେଖାଇଦିଏ । ଯଦିଓ ପଦ୍ମାବତୀ ଈର୍ଷାନ୍ୱିତା ହୋଇଥିଲେ ଓ ଧିକ୍କାର କରିଥିଲେ, କିନ୍ତୁ ସେ ଜୟଙ୍କୁ ଛାଡ଼ି ନଥିଲେ । ସେ ଯେଉଁ ମନସ୍ତାତ୍ତ୍ୱିକ ଯନ୍ତ୍ରଣା ଦେଇଥିଲେ, ସେଥିରେ ତାଙ୍କର ଉଦ୍ଦେଶ୍ୟ ଥିଲା ସରଳ ଜୟଙ୍କୁ ଅନ୍ୟମାନଙ୍କ କବଳରୁ ଉଦ୍ଧାର କରିବା । ଏହାଦ୍ୱାରା ନାରୀର ଅଧିକାର ସାବ୍ୟସ୍ତ କରାଯିବ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଜୟ ମନଦୁଃଖରେ ଭାଣିଜୀ ଚନ୍ଦ୍ରାକୁ ଯେ ସବୁ ବର୍ଣ୍ଣନା କଲେ । ଶେଷରେ ଦିନେ ଜୟ ପଦ୍ମାବତୀଙ୍କ ଚରଣ ତଳେ ସାଷ୍ଟାଙ୍ଗ ପ୍ରଣିପାତ କରି ତାଙ୍କର ସୁନ୍ଦର ପାଦ ପଦ୍ମଯୁଗଳକୁ ମୁଣ୍ଡରେ ଧରି କ୍ରୀତଦାସତ୍ୱ ବରଣ କଲେ । ସେଥିପାଇଁ ଗୀତଗୋବିନ୍ଦରେ ଲେଖା ହେଲା -

'କ୍ରୀତଦାସ ରବୋସସେବିତଂ ପଦାବୋଂଦେ କୁତଃ ସଂଭ୍ରମହଃ ।'

ପଦ୍ମା ଦୟା କଲେ । ଜୟ ସେତେବେଳେ ନିଜ ମଧ୍ୟରେ ଶ୍ରୀ ରାଧାକୃଷ୍ଣଙ୍କ ଅପୂର୍ବ ମିଳନ ପରିଲକ୍ଷିତ କରିଥିଲେ । ପୁରୁଷ ନିଜର ଭୁଲ୍ ବୁଝିପାରି ସ୍ତ୍ରୀର କ୍ରୀତଦାସତ୍ୱ ଗ୍ରହଣ କଲେ ପ୍ରେମର ସୀମା ବଢ଼ିଯାଏ । ଆଜିକାଲିର ଯୁବକ ଯୁବତୀମାନଙ୍କ ଅସହିଷ୍ଣୁତା ବଢ଼ିଯାଇଛି । ସାମାନ୍ୟ ମନୋମାଳିନ୍ୟରେ ବିବାହ ବିଚ୍ଛିନ୍ନ । ବରଂ ନିଜକୁ ଅନ୍ୟର ଦାସତ୍ୱ ବା ଦାସୀତ୍ୱ କରାଇ ଆଧ୍ୟାତ୍ମିକ ଚେତନାରେ ଉଦ୍‌ବୁଦ୍ଧ ହେଲେ ସଂସାର ହସି ଉଠିବ । ଯେଉଁ ବିଚ୍ଛେଦ ତାହା କ୍ଷଣିକ । ସଂସାର ଗ୍ରହଣ କଲେ ଜୀବନରେ କଷ୍ଟ ନିଶ୍ଚୟ ଆସିବ । ଯଦି ନିଜର ସାଂସାରିକ ଜୀବନକୁ ଜଳାଞ୍ଜଳି ଦିଆଯାଏ, ତାହା ସମସ୍ତ ବିବାଦର ସୂତ୍ରପାତ କରିଥାଏ । ଏଣୁ ଜୟଙ୍କ ପରି ପୁରୁଷୋତ୍ତମ ଓ ପଦ୍ମାବତୀଙ୍କ ଭଳି ମହାନ୍ ନାରୀ ହେଲେ ଦାମ୍ପତ୍ୟ ଜୀବନ କେବେ ହେଲେ ଭ୍ରଷ୍ଟ ହେବ ନାହିଁ ।

ଜୟଦେବ ମୁଗ୍ଧ ରୂପ ଗୀତଗୋବିନ୍ଦ ରଚନା କରିଥିଲେ । ପଦ୍ମାବତୀ ବରାବର ପାଖରେ ରହି ପ୍ରତ୍ୟକ୍ଷ ଭାବରେ ସାହାଯ୍ୟ କରୁଥିଲେ । ଲେଖୁ ଲେଖୁ ପଦ୍ମାବତୀ ଏକଦା ଜୟଦେବଙ୍କୁ କହିଲେ ଗୀତଗୋବିନ୍ଦରେ କଳାବତୀ ବିଷୟରେ ବିଷୟବସ୍ତୁ ରହୁ । କାରଣ କଳାବତୀ ଭଳି ନାରୀ ତାଙ୍କର ଜୟକୁ ଏକଦା ଭଲ ପାଉଥିଲେ । କିନ୍ତୁ ଜୟଦେବ ରାଜି ହେଲେ ନାହିଁ । ପଦ୍ମାବତୀ କହିଲେ ଯେତେବେଳେ ତାଙ୍କର ପରମ ପ୍ରେମିକ ଜୟ କଳାବତୀକୁ ଭଲ ପାଉଥିଲେ ତାଙ୍କର ସ୍ମୃତି ନିଶ୍ଚୟ ରହିବ । ଜୟ ପଦ୍ମାବତୀଙ୍କୁ ଅତ୍ୟନ୍ତ ଭଲ ପାଉଥିବାରୁ କଳାବତୀଙ୍କ କଥା ଗ୍ରନ୍ଥରେ ସ୍ଥାନ ଦେଲେ । ତେଣୁ ମନେହେଲା ଯେ ପଦ୍ମାବତୀ ଜଣେ ମହାନ୍ ଅସାଧାରଣ ଉଦାରମୟୀ ନାରୀ ଓ ନାରୀର ମନୋଭାବ ବୁଝିପାରିଥିଲେ । ସେହିଭଳି ଆଜିକାଲି ଯଦି ନାରୀମାନେ ପଦ୍ମାବତୀଙ୍କ ଉଦାର ମନୋଭାବ ଅନୁସରଣ କରନ୍ତେ ତେବେ ସ୍ୱାମୀମାନଙ୍କୁ ଭୁଲ ବୁଝନ୍ତେ ନାହିଁ । ଆଜିକାଲି ନାରୀର ସ୍ୱତନ୍ତ୍ରତା ଯଦିଓ ସ୍ୱାଗତଯୋଗ୍ୟ, କିନ୍ତୁ ନିଜର ମହନୀୟତା ପ୍ରକାଶ କରିବା ପାଇଁ କୁଣ୍ଠାବୋଧ ପ୍ରକାଶ କରୁଛନ୍ତି । ଯଦି ନାରୀମାନେ ନିଜର ଉଦାର ମହନୀୟତା ଗୁଣ ପରିପ୍ରକାଶ କରନ୍ତେ, ପୁରୁଷ ନିଜର ଭୁଲ୍ ବୁଝିପାରି ଦାମ୍ପତ୍ୟ ଜୀବନ ସୁଖମୟ କରିବାରେ ଆଗେଇ ଆସନ୍ତା । ଗୀତଗୋବିନ୍ଦରେ ଜୟ ଲେଖିଥିଲେ ବିଭିନ୍ନ ନାରୀମାନଙ୍କ ସମ୍ପର୍କରେ କାରଣ ସେମାନଙ୍କ ରୂପରେ ପୁରୁଷମାନେ ମୁଗ୍ଧ ହେଉଥିଲେ । ପଦ୍ମାବତୀ ତାକୁ ପଠନ କରି ଅତ୍ୟନ୍ତ ଖୁସି ହେଉଥିଲେ । ସେ କହିଥିଲେ ଯେ ତାଙ୍କ ସ୍ୱାମୀ ଅନ୍ୟ ସ୍ତ୍ରୀଙ୍କ ସହିତ ସମ୍ପର୍କକୁ ଉନ୍ମୋଚିତ କରି ସତ୍ୟର ପ୍ରତୀକ ପାଲଟିଛନ୍ତି । ପଦ୍ମାବତୀଙ୍କ ଏହି ଉଦାରତା ନାରୀ ଶକ୍ତିର ଏକ ମାପକାଠି । ପ୍ରକୃତରେ ଯଦି ନାରୀ ପୁରୁଷ ମଧ୍ୟରେ ଏପରି ଠିକ୍ ବୁଝାମଣା ଚାଲେ, ତାହାହେଲେ ସମାଜରେ ପାରିବାରିକ ବିବାଦର ମୂଳୋତ୍ପାଟନ ଘଟିବ ଓ ନ୍ୟାୟାଳୟରେ ବର୍ଷ ବର୍ଷ ଧରି ପଡ଼ି ରହିଥିବା ମାମଲାର ବିଚାର କରାଯାଇପାରିବ ।

ଗୀତଗୋବିନ୍ଦ ଲେଖା ସରିବା ପରେ ଜୟଦେବ ଓ ପଦ୍ମାବତୀ ଆସି ଶ୍ରୀମନ୍ଦିରରେ ଗୀତଗୋବିନ୍ଦ ପାଠ କରିଥିଲେ ଓ ସ୍ୱୟଂ ଭଗବାନ ତାହାକୁ ଶୁଣିଥିଲେ । ପଦ୍ମାବତୀ ବଞ୍ଚିଥିଲା ପର୍ଯ୍ୟନ୍ତ ଜୟଦେବଙ୍କ ପାଖେ ପାଖେ ଥିଲେ । ଜୟଦେବ ଓ ପଦ୍ମାବତୀଙ୍କ ଜୀବନ କାହାଣୀରୁ ଏହା ଅତି ସହଜରେ ଅନୁମେୟ ଯେ ସାଂସାରିକ ଜୀବନଯାପନ ଏକ ନୈସର୍ଗିକ ପ୍ରେମ ଉପରେ ପର୍ଯ୍ୟବସିତ । ନାରୀର ସମ୍ମାନ, ସ୍ୱାଧୀନତା ଓ ପ୍ରେମ ଜୟଦେବଙ୍କ ଗୀତଗୋବିନ୍ଦରେ ବିସ୍ତୃତ ଭାବରେ ସ୍ଥାନ ପାଇଛି । ନାରୀ ଶକ୍ତିର ପ୍ରେରଣା ଓ ସଶକ୍ତିକରଣ ଜୟଦେବଙ୍କ ଜୀବନୀରେ ବେଶ୍ ପ୍ରସ୍ଫୁଟିତ ହୋଇଛି । ଆଜିର ପାରିବାରିକ ବିବାଦ ପାଇଁ ଜୟଦେବ ଓ ପଦ୍ମାବତୀଙ୍କ ଜୀବନୀ ଏକାନ୍ତ ଅନୁଧ୍ୟାନଯୋଗ୍ୟ ।

ଅତିରିକ୍ତ ଶାସନ ସଚିବ
ବିଧି ବିଭାଗ, ଭୁବନେଶ୍ୱର



# ଭକ୍ତକବି ଜୟଦେବ ଓ ତାଙ୍କ ଗୀତଗୋବିନ୍ଦ

କିଶୋର କୁମାର ମହାନ୍ତି

**ବି**ଶ୍ୱପ୍ରସିଦ୍ଧ ସଂସ୍କୃତ ଗୀତିକାବ୍ୟ 'ଶ୍ରୀଗୀତଗୋବିନ୍ଦ'ର ରଚୟିତା ଶ୍ରୀ ଜୟଦେବ ହେଉଛନ୍ତି ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀର କବି । ଐତିହାସିକ ବିବରଣୀରୁ ଜଣାଯାଏ ଯେ, ଭକ୍ତକବି ଶ୍ରୀ ଜୟଦେବ ସମସାମୟିକ ଗଙ୍ଗବଂଶୀ ସମ୍ରାଟ ସମ୍ଭବତଃ ରାଘବ (୧୧୫୭-୧୧୭୦ ଖ୍ରୀ:ଅ:)ଙ୍କ ରାଜସଭାର ଶ୍ରେଷ୍ଠ ପଣ୍ଡିତ ଥିଲେ । ଅନ୍ୟ କେତେକ ଗବେଷକଙ୍କ ମତରେ ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ (ଖ୍ରୀ:ଅ: ୧୧୭୯-୧୧୮୬) ମଧ୍ୟରେ ବଙ୍ଗଳାରେ ଲକ୍ଷ୍ମଣ ସେନ୍‌ଙ୍କ ରାଜତ୍ୱ ଥିଲା । ଜୟଦେବ ତାଙ୍କର ସଭାକବି ଥିଲେ । ତେବେ ବାସ୍ତବତା ଯାହା ହେଉ ନା କାହିଁକି, ଭକ୍ତକବି ଜୟଦେବ ଯେ ଦ୍ୱାଦଶ ଶତାବ୍ଦୀରେ ଓଡ଼ିଶାରେ ଜନ୍ମଗ୍ରହଣ କରିଥିଲେ ଏଥିରେ ଦ୍ୱିମତ ହେବାର ନାହିଁ ।



ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ଓଡ଼ିଶାର ସାମାଜିକ ଓ ଧର୍ମୀୟ ଜୀବନରେ ଯେଉଁ ଚାରିଗୋଟି ପ୍ରମୁଖ ଘଟଣା ଭକ୍ତକବି ଜୟଦେବଙ୍କ ସମୟରେ ଦେଖିବାକୁ ମିଳିଥିଲା ତାହା ହେଉଛି- ୧) ସମସାମୟିକ ଉତ୍କଳ ପ୍ରାନ୍ତରେ ବିଶେଷତଃ ପ୍ରାଚୀ ଉପତ୍ୟକାରେ ମାଧବ ଉପାସନା ପରମ୍ପରାର ପ୍ରସାର ଯେଉଁଠି କବି ଜୟଦେବ ଜନ୍ମଗ୍ରହଣ କରିଥିଲେ, ୨) ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରଚାର-ପ୍ରସାର ଫଳରେ ସର୍ବତ୍ର ବିଶେଷତଃ ପୁରୁଷୋତ୍ତମ କ୍ଷେତ୍ର ପୁରୀରେ ଏବଂ ଓଡ଼ିଶାର ଅନ୍ୟସବୁ ଅନ୍ୟ ବହୁ ମନ୍ଦିରରେ ଶ୍ରୀକୃଷ୍ଣ ଓ ଶ୍ରୀବିଷ୍ଣୁ ବିଗ୍ରହ ନିର୍ମାଣର ପ୍ରସାର ତଥା ଦଶାବତାର ତତ୍ତ୍ୱର ଲୋକପ୍ରିୟତା ବୃଦ୍ଧି, ୩) ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ପୁରୁଷୋତ୍ତମ ଧାମ ଶ୍ରୀକ୍ଷେତ୍ର ପୁରୀର ପ୍ରାଧାନ୍ୟ ବୃଦ୍ଧି, ୪) ଓଡ଼ିଶାକୁ ଦାକ୍ଷିଣାତ୍ୟରୁ ପ୍ରସିଦ୍ଧ ବୈଷ୍ଣବ ସନ୍ଥ ମାଧବାଚାର୍ଯ୍ୟ, ବିଷ୍ଣୁସ୍ୱାମୀ, ନିମ୍ବାର୍କ ଆଚାର୍ଯ୍ୟ ଓ ରାମାନୁଜ ପ୍ରଭୃତିଙ୍କ ଆଗମନ ଫଳରେ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରସାର । ଏହି ସାଧୁସନ୍ଥମାନଙ୍କ ଆଗମନ ଫଳରେ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରସାର ହେଲା ଏବଂ ଏହା ସହିତ ଭକ୍ତି ଆନ୍ଦୋଳନର ସୂତ୍ରପାତ ମଧ ଘଟିଲା । ଗଙ୍ଗବଂଶୀୟ ସମ୍ରାଟମାନଙ୍କ ପୃଷ୍ଠପୋଷକତାରେ ସେହି ଭକ୍ତି ଆନ୍ଦୋଳନ ଅଧିକ ପରିପୁଷ୍ଟ ହେଲା । ଗଙ୍ଗବଂଶୀୟ ସମ୍ରାଟମାନେ ଓଡ଼ିଶାରେ ୩୨୫ ବର୍ଷକାଳ ରାଜତ୍ୱ କରିଥିଲେ ଏବଂ ଓଡ଼ିଶାରେ ଭକ୍ତି ଆନ୍ଦୋଳନ ପ୍ରସାରରେ ମୁଖ୍ୟ ଭୂମିକା ନିର୍ବାହ କରିଥିଲେ । ଅନନ୍ତବର୍ମନ ଚୋଡ଼ଗଙ୍ଗ ଦେବ, ଯିଏ କି ଗଙ୍ଗବଂଶର ପ୍ରତିଷ୍ଠାତା ଥିଲେ ସେ ଦୀର୍ଘ ୭୨ ବର୍ଷ କାଳ ଓଡ଼ିଶାରେ ଶାସନ କରିଥିଲେ । ତାଙ୍କର ରାଜତ୍ୱକାଳ ଥିଲା ଖ୍ରୀ:ଅ:୧୦୭୮ରୁ ଖ୍ରୀ:ଅ:୧୧୫୦ । ବିଶ୍ୱବିଖ୍ୟାତ ପୁରୀ ମନ୍ଦିର ତାଙ୍କଦ୍ୱାରା ନିର୍ମିତ ହୋଇଥିଲା । ସେ ଭକ୍ତି ଆନ୍ଦୋଳନର ମୁଖ୍ୟ ପୃଷ୍ଠପୋଷକ ଥିଲେ ।

ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀ ପରେ ଶ୍ରୀଗୀତଗୋବିନ୍ଦ ମହାକାବ୍ୟର ଲୋକପ୍ରିୟତା ଓଡ଼ିଶାର କଳା, ସ୍ଥାପତ୍ୟ, ଭାସ୍କର୍ଯ୍ୟ, ଶିଳ୍ପ, ସଙ୍ଗୀତ ଏବଂ ଆଧ୍ୟାତ୍ମିକତା ତଥା ସାହିତ୍ୟ କ୍ଷେତ୍ରକୁ ଯେତେ ମାତ୍ରାରେ ପ୍ରଭାବିତ କରିଛି, ତାହା ସମ୍ଭବତଃ ଅନ୍ୟ କୌଣସି ସଂସ୍କୃତ ଗୀତିକାବ୍ୟଦ୍ୱାରା ସମ୍ଭବ ହୋଇନାହିଁ । ତତ୍କାଳୀନ ସମାଜରେ ଏହାକୁ ଅତ୍ୟନ୍ତ ସମ୍ମାନ ଓ ଭକ୍ତି ଭାବାବେଗ ସହିତ ମନ୍ଦିରମାନଙ୍କରେ ଗାନ କରାଯାଉଥିଲା । ଭକ୍ତି ରସାତ୍ମକ ଗୀତିକାବ୍ୟ ଶ୍ରୀଗୀତଗୋବିନ୍ଦ ମହାକାବ୍ୟ ଶ୍ରୀପୁରୁଷୋତ୍ତମ (ଜଗନ୍ନାଥଙ୍କ) ପ୍ରୀତିବିଧାନ ନିମିତ୍ତ ପଣ୍ଡିତ ପ୍ରବର ଶ୍ରୀଜୟଦେବଙ୍କ ଅମର କୃତି ଅଟେ । ଉତ୍କଳର

ତତ୍କାଳୀନ ରକ୍ଷଣଶୀଳ ପଣ୍ଡିତମଣ୍ଡଳୀ ଶ୍ରୀଗୀତଗୋବିନ୍ଦ ମହାକାବ୍ୟର ମାଧୁର୍ଯ୍ୟ, ଶବ୍ଦ ବୈଭବ ଓ ଅର୍ଥଗୌରବରେ ମୁଗ୍ଧ ହୋଇ ତାହାକୁ ଏକ ଉତ୍କୃଷ୍ଟ ରଚନା ରୂପେ ଗ୍ରହଣ କରିଥିଲେ ମଧ୍ୟ ତାହାକୁ ଶ୍ରୀଜଗନ୍ନାଥ ସେବାରେ ନିତ୍ୟପାଠ ଧର୍ମଗ୍ରନ୍ଥ ରୂପେ ଗ୍ରହଣ କରିବା ପାଇଁ କୁଣ୍ଠିତ ହୋଇଥିଲେ । ବ୍ୟକ୍ତିଗତ ଭାବରେ ତାହାକୁ ଶ୍ରୀଛାମୁରେ ଗାନ କରିବା ପାଇଁ କୌଣସି ନିଷେଧ ନଥିଲା । ତେବେ ଶ୍ରୀକ୍ଷେତ୍ର ତଥା ସମଗ୍ର ଉତ୍କଳରେ ଶ୍ରୀଗୀତଗୋବିନ୍ଦର କ୍ରମବର୍ଦ୍ଧିଷ୍ଣୁ ଲୋକପ୍ରିୟତାକୁ ଦୃଷ୍ଟିରେ ରଖି ଗଙ୍ଗବଂଶୀୟ ସମ୍ରାଟ କବି ନରସିଂହ ଦେବ (ଖ୍ରୀ:ଅ:୧୨୭୮-୧୩୦୭) ଶ୍ରୀଜଗନ୍ନାଥଙ୍କ ନିକଟରେ ନିତ୍ୟ ଗୀତଗୋବିନ୍ଦ ଗାନକୁ ଏକ ସେବା ଓ ପରମ୍ପରା ରୂପେ ପ୍ରଚଳନ କରିଥିବା ବିଷୟ ମାଦଳାପାଞ୍ଜିରୁ ଜଣାଯାଏ ।

ଜୟଦେବ ଗୋସ୍ୱାମୀଙ୍କ ଶ୍ରୀଗୀତଗୋବିନ୍ଦ ଗୀତିକାବ୍ୟର ମୁଖ୍ୟ ନାୟକ ହେଉଛନ୍ତି ଶ୍ରୀକୃଷ୍ଣ ଓ ନାୟିକା ହେଉଛନ୍ତି ଶ୍ରୀରାଧା ଯାହାଙ୍କୁ ଶ୍ରୀରାଧାମାଧବ ନାମରେ କବି ସମ୍ବୋଧନ କରିଛନ୍ତି ।

ପୁରୁଷୋତ୍ତମ କ୍ଷେତ୍ରରେ ଗୀତଗୋବିନ୍ଦ ଗାନକୁ ଏକ ନିତ୍ୟ ସେବା ରୂପେ ଗ୍ରହଣ କରାଯିବା ପରେ ତତ୍କାଳୀନ ସମାଜରେ ଏହାର ଲୋକପ୍ରିୟତା ଦିନକୁ ଦିନ ବଢ଼ିବାକୁ ଲାଗିଥିଲା । ସମାଜ ମଧ୍ୟରେ ଧାର୍ମିକ ଭାବନା ଜାଗ୍ରତ କରାଇବାରେ ତାହାର ଭୂମିକା ପ୍ରଶଂସନୀୟ ଥିଲା । ସେହି ସମୟରୁ ଗଢ଼ି ଉଠିଥିବା ଅସଂଖ୍ୟ ମନ୍ଦିର, ମଠ, ଭାଗବତ ଟୁଙ୍ଗୀରେ ନିତ୍ୟ ଗୀତଗୋବିନ୍ଦ ଗାନର ପରମ୍ପରା ଚଳିଆସୁଛି । ଅନେକ ମନ୍ଦିର ଗାତ୍ରରେ ଦଶାବତାର ମୂର୍ତ୍ତି ଖୋଦେଇ ହେଲା । କଳା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ କ୍ଷେତ୍ରରେ ଗୀତଗୋବିନ୍ଦରେ ବର୍ଣ୍ଣିତ ଦଶାବତାର କଥାର ପ୍ରତିଫଳନ ଦେଖିବାକୁ ମିଳିଲା । ସେହି ପରମ୍ପରାର ଝଲକ ଏବେ ମଧ୍ୟ ଦେଖିବାକୁ ମିଳେ ।

ଭକ୍ତକବି ଜୟଦେବଙ୍କର ଆବିର୍ଭାବ କାଳ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ଓଡ଼ିଶାରେ ବୈଷ୍ଣବ ଧର୍ମର ପରିପ୍ରସାର ଘଟିଥିଲା । ସାଧାରଣ ଲୋକେ ରାଧାକୃଷ୍ଣଙ୍କର ଅପ୍ରାକୃତ ପ୍ରେମଲୀଳାରୁ ଅପୂର୍ବ ଆନନ୍ଦ ଆହରଣ କରୁଥିଲେ । ସାଧାରଣ ଲୋକଙ୍କର ଚଳଣିରେ ଉଚ୍ଚ ଆଦର୍ଶ ଓ ଅନନ୍ୟ ଭକ୍ତିଭାବ ପ୍ରକଟ ହୋଇଥିଲା । କର୍ମମୟ ଜୀବନର ବ୍ୟସ୍ତ ଜଞ୍ଜାଳରୁ ବାହାରି ସରଳ ଓଡ଼ିଆ ଲୋକେ ସନ୍ଧ୍ୟାରେ କିଛି ସମୟ ପାଇଁ ଗୀତଗୋବିନ୍ଦ ଗାନ ସଂକୀର୍ତ୍ତନରେ ମଜ୍ଜି ଯାଉଥିଲେ । ତାହା ସେମାନଙ୍କୁ କର୍ମଭାର ଜନିତ ଚାପ ଓ କ୍ଳାନ୍ତିରୁ ମୁକ୍ତି ଦେବା ସହ ଆଧ୍ୟାତ୍ମିକ ଆନନ୍ଦରେ ବିଭୋର କରୁଥିଲା ।

ଭକ୍ତପ୍ରବର ଜୟଦେବଙ୍କ ସମୟରେ ଉତ୍କଳର ବୈଷ୍ଣବ ଧର୍ମର ପ୍ରାଧାନ୍ୟ ବିସ୍ତାରିତ ହୋଇଥିଲା । ଶ୍ରୀଚୈତନ୍ୟ, ରାମାନୁଜ, ନିମ୍ବାର୍କ ପ୍ରଭୃତି ପ୍ରମୁଖ ବୈଷ୍ଣବାଚାରୀମାନେ ସେହି ଧର୍ମର ମୁଖ୍ୟପୁରୋଧା ସାଜି ତାହାର ପ୍ରଚାର କରିଥିଲେ । ତେଣୁ ରାଧାକୃଷ୍ଣ ପ୍ରେମ ଓ ଭକ୍ତିରସରେ ନିଜକୁ ନିମଜ୍ଜିତ କରି ମୋକ୍ଷମାର୍ଗ ଅନୁସରଣ କରିବାକୁ ସେହି ବୈଷ୍ଣବାଚାର୍ଯ୍ୟଗଣ ସମଗ୍ର ଜନସମାଜକୁ ବାର୍ତ୍ତା ଦେଉଥିଲେ । ଜୟଦେବଙ୍କ 'ଗୀତଗୋବିନ୍ଦ' ରଚନାରେ ଏହି ରାଧାକୃଷ୍ଣ ଶାଶ୍ୱତ ପ୍ରେମ ଓ ଭକ୍ତିରସର ଛାପ ଦେଖିବାକୁ ମିଳେ । ଜୟଦେବ ଗୋସ୍ୱାମୀଙ୍କ ଶ୍ରୀଗୀତଗୋବିନ୍ଦ ଗୀତିକାବ୍ୟର ମୁଖ୍ୟ ନାୟକ ହେଉଛନ୍ତି ଶ୍ରୀକୃଷ୍ଣ ଓ ନାୟିକା ହେଉଛନ୍ତି ଶ୍ରୀରାଧା ଯାହାଙ୍କୁ ଶ୍ରୀରାଧାମାଧବ ନାମରେ କବି ସମ୍ବୋଧନ କରିଛନ୍ତି । ତେବେ ସମସାମୟିକ ସମାଜରେ ଜୟଦେବ ଓ ତାଙ୍କ ରଚିତ ଗୀତଗୋବିନ୍ଦର ସ୍ଥାନ ଏକ ଉଚ୍ଚ ଆଦର୍ଶ ଉପରେ ପ୍ରତିଷ୍ଠିତ ଥିଲା ଏବଂ ଶ୍ରୀଜଗନ୍ନାଥ ସଂସ୍କୃତିରେ ଏହା ଅନନ୍ୟ ଲୋକପ୍ରିୟତା ହାସଲ କରିଥିଲା ଏହା ନିଃସନ୍ଦେହରେ କୁହାଯାଇପାରେ ।

ଜିଲ୍ଲାପାଳ
କଟକ



# ଶ୍ରୀଜଗନ୍ନାଥଙ୍କ ସେବାରେ 'ଗୀତଗୋବିନ୍ଦ'

ଡଃ ଅଲେଖ ଚନ୍ଦ୍ର ପଡ଼ିହାରୀ

**ଭ**କ୍ତପ୍ରବର ଜୟଦେବଙ୍କ ସ୍ୱରଚିତ ଭକ୍ତି ରସାତ୍ମକ ଗୀତିକାବ୍ୟ 'ଶ୍ରୀଗୀତଗୋବିନ୍ଦ' ଭଗବାନ ଶ୍ରୀକୃଷ୍ଣ (ମାଧବ) ଓ ଶ୍ରୀରାଧାଙ୍କୁ ଉପଜୀବ୍ୟ କରି ରଚିତ ହୋଇଥିବାରୁ ଏହାର ପ୍ରତିଟି ପଦାବଳୀ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ସମର୍ପିତ । 'ଗୀତଗୋବିନ୍ଦ'ର ନାମକରଣରୁ ଜଣାଯାଏ ଯେ ଏହା ହେଉଛି ଗୋବିନ୍ଦଙ୍କର ଗୀତ । ଅର୍ଥାତ୍ 'ଗୋବିନ୍ଦସ୍ୟ ଗୀତଂ ଯତ୍ର ତତ୍ ଗୀତଗୋବିନ୍ଦମ୍ ।' ସ୍ୱର, ପଦ ଓ ତାଳର ଏକ ମଧୁର ସମନ୍ୱୟରେ ରଚିତ ଏହି ଗୀତିକାବ୍ୟ ରୂପକ ମହୋଦଧିରେ ସ୍ନାନକରି ହରିଭକ୍ତି ରୂପକ ଅମୃତପ୍ରାପ୍ତ କରିବାକୁ କବି ପରୋକ୍ଷରେ ନିଜ ପଦାବଳୀଦ୍ୱାରା ନିର୍ଦ୍ଦେଶ ଦେଇଛନ୍ତି । ଯଥା-



ଯଦି ହରି ସ୍ମରଣେ ସରସଂ ମନଃ, ଯଦି ବିଳାସକଳାସୁ କୁତୁହଳମ୍ ।
ମଧୁର କୋମଳକାନ୍ତ ପଦାବଳୀଂ, ଶୃଣୁ ତଦା ଜୟଦେବ ସରସ୍ୱତୀର ॥

ଜୟଦେବଙ୍କ ସମୟ ଦ୍ୱାଦଶ ଶତାବ୍ଦୀ । ଏହା ହେଉଛି ଓଡ଼ିଶାରେ ଗଙ୍ଗରାଜାମାନଙ୍କ ରାଜତ୍ୱ କାଳ । ଓଡ଼ିଶାରେ ଯେତେବେଳେ ଗଙ୍ଗରାଜାମାନଙ୍କର ନେତୃତ୍ୱରେ ଏକ ବିଶାଳ ସାମ୍ରାଜ୍ୟ ମୁଣ୍ଡ ଟେକିଥିଲା ଏବଂ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ପ୍ରମୁଖ ଉପାସ୍ୟ ଦେବତା ଭାବରେ କେନ୍ଦ୍ରକରି ସମଗ୍ର ଓଡ଼ିଶାରେ ବୈଷ୍ଣବ ଧର୍ମର ସ୍ରୋତ ପ୍ରବାହିତ ହୋଇଥିଲା, ସେତେବେଳେ ଜୟଦେବ ତାଙ୍କର ଅମରକୃତି ଗୀତଗୋବିନ୍ଦକୁ ଭଗବାନ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ହିଁ ରଚନା କରିଥିଲେ । ଜୟଦେବଙ୍କ ଦଶାବତାର ସଙ୍ଗୀତ ଏବଂ 'ଜୟ ଜଗଦୀଶ ହରେ' - ଏହି ସମ୍ବୋଧନ ଭଗବାନ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ହିଁ ସମର୍ପିତ । କାରଣ ସମଗ୍ର ଭାରତବର୍ଷରେ ଜଗନ୍ନାଥ ମହାପ୍ରଭୁ ଜଗଦୀଶ (ଜଗତ୍+ଈଶ ବା ଈଶ୍ୱର) ଅର୍ଥାତ୍ ଜଗତର ଠାକୁର ନାମରେ ଖ୍ୟାତ ।

ସପ୍ତଦଶ ଶତାବ୍ଦୀରେ ମୈଥିଳୀ ପଣ୍ଡିତ ଚନ୍ଦ୍ରଦତ୍ତଙ୍କ ରଚିତ ପୁସ୍ତକ 'ଭକ୍ତମାଳା'ରେ ବର୍ଣ୍ଣିତ ଶ୍ରୀ ଜୟଦେବ ଚରିତ ପ୍ରସଙ୍ଗରେ ଜୟଦେବ ପୁରୁଷୋତ୍ତମ କ୍ଷେତ୍ରରେ ହିଁ ଗୀତଗୋବିନ୍ଦ ରଚନା କରି ଭଗବାନ ଜଗନ୍ନାଥଙ୍କ ପ୍ରୀତ୍ୟର୍ଥେ ତାଙ୍କ ନିକଟରେ ସମର୍ପଣ କରିଥିଲେ ବୋଲି ଉଲ୍ଲେଖ ଅଛି । ଯଥା- 'ନିର୍ମାୟ ଗୀତଗୋବିନ୍ଦ' ପୁସ୍ତକଂ ପୁରୁଷୋତ୍ତମେ' ଅବଶ୍ୟ ଗୀତଗୋବିନ୍ଦର କୌଣସି ସ୍ଥାନରେ 'ଜଗନ୍ନାଥ'ଙ୍କ ନାମର ଉଲ୍ଲେଖ ନାହିଁ । ସବୁଠାରେ କେଶବ, ଜଗଦୀଶ, ମାଧବ, କୃଷ୍ଣ, ଶ୍ୟାମସୁନ୍ଦର ଇତ୍ୟାଦି ଶବ୍ଦଗୁଡ଼ିକର ଉଲ୍ଲେଖ ଅଛି । ଏହିସବୁ ଶବ୍ଦାବଳୀ ଭଗବାନ ବିଷ୍ଣୁରୂପୀ ଜଗନ୍ନାଥଙ୍କର ବିଭିନ୍ନ ନାମକରଣ ତାଙ୍କର ସହସ୍ରନାମ କରିଛି । ତେଣୁ ଗୀତଗୋବିନ୍ଦ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଲେଖାଯାଇ ନାହିଁ ବୋଲି କହିବା ଆଦୌ ଯୁକ୍ତିସଙ୍ଗତ ନୁହେଁ ।

ଜଗନ୍ନାଥ ହେଉଛନ୍ତି ଏକ ରହସ୍ୟମୟ ଦେବତା । ଯୁଗେ ଯୁଗେ ଏହାକୁ ବିଭିନ୍ନ ଧର୍ମ ଓ ସମ୍ପ୍ରଦାୟର ପ୍ରବକ୍ତାମାନେ ଭିନ୍ନ ଭିନ୍ନ ରୂପରେ ପୂଜା କରି ଆସିଛନ୍ତି । ତାଙ୍କୁ ଶୈବମାନେ ଶିବ, ବେଦାନ୍ତୀମାନେ ବ୍ରହ୍ମ, ବୌଦ୍ଧମାନେ ବୁଦ୍ଧ, ମୀମାଂସକମାନେ କର୍ମ, ଜୈନମାନେ ମହାବୀର ଓ ବୈଷ୍ଣବମାନେ କୃଷ୍ଣ ବା ସାକ୍ଷାତ୍ ବିଷ୍ଣୁ ରୂପେ ଉପାସନା କରିଛନ୍ତି । ଏହି ରୀତିରେ ପରମ ବୈଷ୍ଣବ ଭକ୍ତକବି ଜୟଦେବ ଜଗନ୍ନାଥଙ୍କୁ ମାଧବ ବା ଲୀଳାମୟ କୃଷ୍ଣ ଭାବରେ ଉପାସନା କରିଛନ୍ତି ଏବଂ ତାଙ୍କରି ଉଦ୍ଦେଶ୍ୟରେ ହିଁ ସେ

ଗୀତଗୋବିନ୍ଦ ରଚନା କରିଛନ୍ତି । ଗୀତଗୋବିନ୍ଦର ଆରମ୍ଭରେ ସେ ଭଗବାନ ଜଗନ୍ନାଥଙ୍କର ଦଶାବତାର ବିଷୟରେ ସୂଚନା ଦେଇ ଭଗବାନ ଜଗନ୍ନାଥଙ୍କୁ କଳ୍କୀ ଅବତାର ଭାବରେ ଚିତ୍ରଣ କରି ତାଙ୍କର ସ୍ତୁତି କରିଛନ୍ତି ।

**ଶ୍ରୀଜଗନ୍ନାଥ ମନ୍ଦିରରେ ଗୀତଗୋବିନ୍ଦ ସେବାର ପ୍ରଚଳନ :**

ଶ୍ରୀଗୀତଗୋବିନ୍ଦ ଜଗନ୍ନାଥଙ୍କର ଉଦ୍ଦେଶ୍ୟରେ ଲେଖା ହୋଇଥିବା ଦୃଷ୍ଟିରୁ ହିଁ ଜଗନ୍ନାଥ ମନ୍ଦିରରେ ପ୍ରତ୍ୟହ ଗୀତଗୋବିନ୍ଦ ପାଠର ବ୍ୟବସ୍ଥା ହୋଇଛି । ମାଦଳାପାଞ୍ଜି ଅନୁସାରେ ଏହି ବ୍ୟବସ୍ଥା ଗଙ୍ଗବଂଶର ରାଜା ନରସିଂହଦେବ (୧୨୭୮-୧୩୦୯ ଖ୍ରୀ:ଅ:) ରାଜତ୍ୱ ସମୟରୁ ହିଁ ଆରମ୍ଭ କରାଯାଇଥିଲା । ସେହି ସମୟଠାରୁ ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ଗୀତଗୋବିନ୍ଦ ନିତ୍ୟଗାନ ସେବା ଅଦ୍ୟାବଧି ଚାଲିଆସୁଛି । ଆଜି ମଧ ପ୍ରତ୍ୟୁଷରୁ ଭକ୍ତମାନେ ଜଗନ୍ନାଥଙ୍କ ନିକଟରେ 'ଶ୍ରିତକମଳା କୁଚମଣ୍ଡଳ' ଧୃତକୁଣ୍ଡଳ, କଳିତ ଲଳିତ ବନମାଳ, ଜୟଦେବ ହରେ, ତଥା ପ୍ରଳୟ ପ୍ରୟୋଧିଜଳେ ଧୃତବାନସି ବେଦଂ ବିହତି ବହିତ୍ର ଚରିତ୍ରମଖେଦଂ, କେଶବ ଧୃତ ମୀନଶରୀର ଜୟ ଜଗଦୀଶ ହରେ ଇତ୍ୟାଦି ପଦାବଳୀ ଗାନକରି ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ନିଜ ନିଜର ଭକ୍ତି ଅର୍ଘ୍ୟ ଅର୍ପଣ କରିଥାନ୍ତି । ବଡ଼ ବଡ଼ ପାଟଲୁଗାରେ ଗୀତଗୋବିନ୍ଦର ସଙ୍ଗୀତକୁ ବୁଣାଯାଇ ଜଗନ୍ନାଥଙ୍କୁ ଲାଗି କରାଯିବାର ବ୍ୟବସ୍ଥା କରାଯାଇଛି । ଏହାଦ୍ୱାରା ଜଗନ୍ନାଥଙ୍କୁ ତାଙ୍କର ପ୍ରିୟ ଅର୍ଘ୍ୟ ଅର୍ପଣ କରାଯାଏ ବୋଲି ସମସ୍ତଙ୍କର ଧାରଣା । ଏହାବ୍ୟତୀତ ଜଗନ୍ନାଥଙ୍କର ଯେଉଁ ଦଶାବତାର ବିଷୟରେ ଉଲ୍ଲେଖ ଗୀତଗୋବିନ୍ଦର ପ୍ରଥମ ସର୍ଗରେ ଅଛି ସେହି ବର୍ତ୍ତମାନ ପୂଜା ପାଉଛନ୍ତି । ଏହିପରି ଭାବରେ ଗୀତଗୋବିନ୍ଦର ସଙ୍ଗୀତ ତାଳେ ତାଳେ ଦେବଦାସୀ ନୃତ୍ୟ ଶ୍ରୀମନ୍ଦିରର ଶୋଭାବର୍ଦ୍ଧନ କରିଛି ।

**ଶ୍ରୀଜଗନ୍ନାଥଙ୍କର ଅତି ପ୍ରିୟ- ଗୀତଗୋବିନ୍ଦ :**

ଭକ୍ତକବି ଜୟଦେବଙ୍କର ଗୀତଗୋବିନ୍ଦ କାବ୍ୟ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଅତୀବ ପ୍ରିୟ ବୋଲି ଏକଦା ସ୍ୱୟଂ ଭଗବାନ ଜଗନ୍ନାଥ ପ୍ରମାଣ କରିଥିବା କଥା ଭକ୍ତମାଳା ଗ୍ରନ୍ଥରେ ଉଲ୍ଲେଖ ରହିଛି । ଥରେ ଗଙ୍ଗବଂଶର ରାଜା ଭାନୁଦେବ ଜୟଦେବଙ୍କର ଗୀତଗୋବିନ୍ଦକୁ ଶ୍ରୀମନ୍ଦିରରେ ଗାନ କରାଯାଇଥିବାର ଶୁଣି ଅତ୍ୟନ୍ତ ଖୁସି ହୋଇଗଲେ ଏବଂ ସେହି କାବ୍ୟକୁ ଅନୁସରଣକରି ଅଭିନବ ଗୀତଗୋବିନ୍ଦ ନାମକ ଏକ ସମତୁଲ୍ୟ କାବ୍ୟ (ଅନୁକୃତି) ରଚନା କଲେ । ପ୍ରତିଦିନ ଶ୍ରୀମନ୍ଦିରରେ ଜୟଦେବଙ୍କର ଗୀତଗୋବିନ୍ଦ ନ ପଢ଼ି ରାଜାଙ୍କର ଅଭିନବ ଗୀତଗୋବିନ୍ଦ ପାଠ କରିବା ପାଇଁ ରାଜା ନିର୍ଦ୍ଦେଶ ଦେଲେ । ଯେ ନପଢ଼ିବ ସେ ଦଣ୍ଡନୀୟ ହେବ ବୋଲି ମଧ ସୂଚାଇ ଦେଲେ । ଫଳରେ ଲୋକମାନେ ଭୟରେ ଜୟଦେବଙ୍କର ଗୀତଗୋବିନ୍ଦକୁ ନପଢ଼ି ରାଜାଙ୍କର ଗୀତଗୋବିନ୍ଦକୁ ଗାନ କଲେ । ଏକଦା ରାଜା ଶ୍ରୀମନ୍ଦିରରେ ଜଗନ୍ନାଥଙ୍କୁ ଦର୍ଶନ କରୁଥିବା ସମୟରେ ଭକ୍ତକବି ଜୟଦେବ ନିଜ ରଚିତ ଗୀତଗୋବିନ୍ଦ ଗାନ କରୁଥିବାର ଦେଖି ଜୟଦେବଙ୍କୁ ପଚାରିଲେ 'ଜୟଦେବ !' ତୁମେ ମୋର ଆଦେଶ ଲଙ୍ଘନ କରୁଛ ? ମୋର କାବ୍ୟକୁ ଶ୍ରୀମନ୍ଦିରରେ ଗାନ କରୁ ନାହଁ ? ଏହାର କାରଣ କ'ଣ ? ଜୟଦେବ ଅତୀବ ଭୀତତ୍ରସ୍ତ ହୋଇ ଉତ୍ତର ଦେଲେ, ହେ ରାଜନ୍ ! ମୁଁ ଆପଣଙ୍କ ଗୀତଗୋବିନ୍ଦକୁ ଗ୍ରହଣ କରିଛି । ହେଲେ ମୋ ରଚିତ ଗୀତଗୋବିନ୍ଦଦ୍ୱାରା ଭଗବାନ ଯେଉଳି ସନ୍ତୁଷ୍ଟ ହେବେ ସେଭଳି ସେ ତୁମ ଗୀତଗୋବିନ୍ଦଦ୍ୱାରା ହେବେ ନାହିଁ ଏ ବିଷୟରେ ଆପଣ ପରୀକ୍ଷା କରିପାରନ୍ତି । ଏହା ଶୁଣି ରାଜା ପରୀକ୍ଷା ପାଇଁ ରାଜି ହୋଇଗଲେ ଏବଂ ଦୁଇଟିଯାକ ଗୀତଗୋବିନ୍ଦ କାବ୍ୟକୁ ଜଗନ୍ନାଥଙ୍କ ନିକଟରେ ରଖି କହିଲେ ଯେ, ହେ ଭଗବାନ ! ମୁଁ ବର୍ତ୍ତମାନ କାବ୍ୟ ଦୁଇଟିକୁ ଆପଣଙ୍କ ନିକଟରେ ରଖିଲି । ଏହା ମଧ୍ୟରୁ ଯେଉଁଟା ଆପଣଙ୍କ ପ୍ରିୟ ତାହାକୁ ଅନ୍ୟ କାବ୍ୟ ଉପରେ ରଖନ୍ତୁ । ଆମେ ଏଠାରୁ ଯାଉଛୁଁ । ଏହାପରେ ରାଜା ଓ ଜୟଦେବ ସେଠାରୁ ବାହାରି ଆସିଲେ ଏବଂ କବାଟ ବନ୍ଦ କରାଗଲା । କିଛି ସମୟ ପରେ ଦେଖାଗଲା ଯେ ଜୟଦେବଙ୍କର ଗୀତଗୋବିନ୍ଦ ରାଜାଙ୍କର ଗୀତଗୋବିନ୍ଦ ଉପରେ ଅଛି । ଏକଥା ଦେଖି ରାଜା ବିସ୍ମିତ ହୋଇଗଲେ ଏବଂ ଜୟଦେବଙ୍କର ଗୀତଗୋବିନ୍ଦର ବାସ୍ତବ ବିଶେଷତ୍ୱ ବିଷୟରେ ଅବଗତି ହେଲେ । ସେହିଦିନଠାରୁ ରାଜା ସ୍ୱୟଂ ମଧ ନିଜ ରଚିତ ଗୀତଗୋବିନ୍ଦକୁ ଛାଡ଼ି କବି ଜୟଦେବଙ୍କର ରଚିତ ଗୀତଗୋବିନ୍ଦକୁ ପାଠ କରିବାକୁ ଲାଗିଲେ ।

ଗୀତଗୋବିନ୍ଦ ଜଗନ୍ନାଥଙ୍କର ଅତ୍ୟନ୍ତ ପ୍ରିୟ ଥିଲା ବୋଲି ଅନ୍ୟ ଉପାଖ୍ୟାନ ଏହି ଭକ୍ତିମାଳା ଗ୍ରନ୍ଥର ଜୟଦେବ ଚରିତରେ ଲେଖା ଅଛି । ପୁରୀ ନିକଟବର୍ତ୍ତୀ ଗୋଟିଏ ଗାଁରେ ଜଣୈକା ସ୍ତ୍ରୀ ରହୁଥିଲା । ସେ ପ୍ରତିଦିନ ଶାଗ ବିକି ଜୀବିକା ନିର୍ବାହ କରେ । ଏକଦା ଶରତକାଳୀନ ଶୁକ୍ଳପକ୍ଷ ରାତିରେ ସେ ଶାଗବିକାଳୀ ସ୍ତ୍ରୀ ଲୋକଟି ଆନନ୍ଦରେ ତନ୍ମୟ ହୋଇ ଗୀତଗୋବିନ୍ଦ ଗାନ କରି ଗୋଟିଏ ବାଇଗଣ କିଆରୀରେ ପହଞ୍ଚିଲା । ବାଇଗଣ ତୋଳିବା ସମୟରେ ସେ ଗୀତଗୋବିନ୍ଦ ଗାନ କରୁଥିଲା ।

ଶାଗ ବିକାଳୀର ଗୀତରେ ଆକୃଷ୍ଟ ହୋଇ ଭଗବାନ ଜଗନ୍ନାଥ ଶ୍ରୀମନ୍ଦିର ଛାଡ଼ି ସେଇ ବାଇଗଣ କିଆରୀରେ ପହଞ୍ଚି ଶାଗ ବିକାଳୀର ପଛେ ପଛେ ବାଇଗଣ କିଆରୀରେ ବୁଲିଲେ । ଫଳରେ ବାଇଗଣ କଣ୍ଟାରେ ତାଙ୍କ ଲୁଗା ଲାଗି ଚିରିଗଲା । ତା'ପରେ ଶାଗ ବିକାଳୀ ତା'ର ବାଇଗଣ ତୋଳି ଘରକୁ ଚାଲିଯାଆନ୍ତେ, ଭଗବାନ ଜଗନ୍ନାଥ ମଧ ଶ୍ରୀମନ୍ଦିରକୁ ଫେରିଆସିଲେ । ସକାଳୁ ପୂଜା କରିବାପାଇଁ ଆସିଥିବା ପୂଜକ ଜଗନ୍ନାଥଙ୍କ ପିନ୍ଧାଲୁଗା ଚିରିଥିବାର ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ତା'ପରେ ରାଜା ମଧ ଏ କଥା ଦେଖି ଅନୁରୂପ ଭାବରେ ବିସ୍ମିତ ହେଲେ । କିନ୍ତୁ କେହି ଏହାର କାରଣ ଜାଣିପାରୁନଥିଲେ । ସେହିଦିନ ରାତିରେ ରାଜା ଏବଂ ପୂଜକ ଏହାର କାରଣ ଜାଣିବା ପାଇଁ ଭଗବାନଙ୍କ ନିକଟରେ ଆକୁଳ ନିବେଦନ କଲେ । ରାତ୍ର ଶେଷରେ ଜଗନ୍ନାଥ ଉଭୟଙ୍କୁ ସ୍ୱପ୍ନରେ ଦେଖାଦେଲେ । ତାଙ୍କର ବସନ କିଭଳି ବାଇଗଣ କିଆରୀରେ ଚିରିଲା ସେ ବିଷୟରେ ସେ କହିଲେ । ତା'ପରେ ରାଜା ସେଇ ଶାଗବିକାଳୀକୁ ଆଣି ପୁରସ୍କୃତ କଲେ ଏବଂ ତା'ପାଇଁ ଶ୍ରୀକ୍ଷେତ୍ରରେ ସ୍ଥାୟୀ ଭାବରେ ବାସ କରିବାକୁ ସୁବନ୍ଦୋବସ୍ତ କରିଦେଲେ । ଏହାପରେ ରାଜା ଗୀତଗୋବିନ୍ଦର ଆକର୍ଷଣ ଶକ୍ତିକୁ ବୁଝି ପ୍ରତିଦିନ ଗୀତଗୋବିନ୍ଦର ପାଠ ବ୍ୟବସ୍ଥା ଶ୍ରୀମନ୍ଦିରରେ ପ୍ରବର୍ତ୍ତନ କଲେ ଏବଂ ଗୀତଗୋବିନ୍ଦର ସ୍ରଷ୍ଟା ଜୟଦେବଙ୍କୁ ଭକ୍ତରାଜ ଭାବରେ ସ୍ୱୀକୃତି ଦେଲେ ।

ଭକ୍ତମାଳା ଗ୍ରନ୍ଥରେ ବର୍ଣ୍ଣିତ ଉପରୋକ୍ତ ଦୁଇଟି ଉପାଖ୍ୟାନରୁ ଜଣାଯାଏ ଯେ **'ଗୀତଗୋବିନ୍ଦ' ଜଗନ୍ନାଥଙ୍କର ଅତି ପ୍ରିୟ ଥିଲା । ଏବେ ମଧ ଶ୍ରୀଜଗନ୍ନାଥ ସଂସ୍କୃତିରେ ଏହାର ଅସୀମ ଆଧାତ୍ମିକ ଓ ସାଂସ୍କୃତିକ ମହତ୍ୱ ରହିଛି ।** ଭକ୍ତକବି ଜୟଦେବଙ୍କର ଏହି ଅମରକୃତୀ ଚିରକାଳ ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥଙ୍କର ସେବାରେ ସମର୍ପିତ ହୋଇଆସୁଥିବ ।

ଜୟ ଜଗଦୀଶ ହରେ

ନିର୍ଦ୍ଦେଶକ
ଭାରତୀୟ ଭେଷଜ ଓ ହୋମିଓପାଥି
ନିର୍ଦ୍ଦେଶାଳୟ, ଭୁବନେଶ୍ୱର



# ଭାରତୀୟ ସାହିତ୍ୟ ଉପରେ ଶ୍ରୀଗୀତଗୋବିନ୍ଦର ପ୍ରଭାବ

ତପନ କୁମାର ଶତପଥୀ

**ସ**ରଳ ସାବଲୀଳ କାନ୍ତ କୋମଳ ପଦାବଳୀ ସହିତ ଶ୍ରୁତି ମଧୁର ପ୍ରାଣସ୍ପର୍ଶୀ ଛନ୍ଦମୟ ଓ ସଙ୍ଗୀତର ମୂର୍ଚ୍ଛନାରେ ଅଳଂକୃତ ଗୀତଗୋବିନ୍ଦ ଏକ ଅନନ୍ୟ କାବ୍ୟ ସୃଷ୍ଟି । କ୍ଷୁଦ୍ର ଅବୟବ ମଧ୍ୟରେ କେବଳ ବାରଟି ସର୍ଗ, ଚବିଶିଟି ପ୍ରବନ୍ଧ, ବାସ୍ତରଟି ଶ୍ଳୋକ ମଧ୍ୟରେ ସୀମିତ ଏହାର କଳେବର । ସ୍ୱରର ଲାଳିତ୍ୟ ସହିତ ନୃତ୍ୟର ପରିପାଟୀରେ ସମ୍ମୋହିତ ଲୋକପ୍ରିୟ ସର୍ବଜନାଦୃତ ସଂରଚନା । ଏପରି ଅନବଦ୍ୟ ସୃଷ୍ଟି ନା ଆଗରୁ ଥିଲା, ନା ପରେ ତତ୍ତୁଲ୍ୟ ଏକ ସୃଷ୍ଟି ସମ୍ଭବ ହୋଇପାରିଛି । ପୁଣି ଏହା ବିଶ୍ୱବିଦିତ ଶ୍ରୀକ୍ଷେତ୍ର ଶ୍ରୀଧାମ ପୁରୀ ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ପରମପାବନ କ୍ଷେତ୍ରରେ ରଚିତ, ଅଭିନିତ ଓ ଜଗନ୍ନାଥଙ୍କୁ ସମର୍ପିତ । ବିଗତ ସହସ୍ରାବ୍ଦୀଧରି ଏହି ନୀଳାଚଳଧାମ ଭାରତର ସମସ୍ତ ପ୍ରଦେଶରୁ ଓ ବିଦେଶର କୋଣ ଅନୁକୋଣରୁ ବିଭିନ୍ନ ଭାଷା, ବିଭିନ୍ନ ଧର୍ମ, ବିଭିନ୍ନ ମତବାଦର ସାଧୁ, ସନ୍ଥ, ମହାତ୍ମା, ବିଦ୍ୱାନ, ଭକ୍ତ, ପରିବ୍ରାଜକ ଓ ଲକ୍ଷ ଲକ୍ଷ ଶ୍ରଦ୍ଧାଳୁମାନଙ୍କୁ ଆକର୍ଷିତ କରି ଏକ ବିଶ୍ୱ ମାନବବାଦର ଧର୍ମକୁ ପ୍ରଚାର ଓ ପ୍ରସାର କରୁଅଛି । ଶ୍ରୀଜଗନ୍ନାଥଙ୍କ ଉପାସନା ସହିତ ସାଧୁମହାତ୍ମା ଶ୍ରୀ ଜୟଦେବକୃତ ଶ୍ରୀଗୀତଗୋବିନ୍ଦର ପ୍ରଚଳନ ଅଙ୍ଗାଙ୍ଗୀ ଭାବରେ ଜଡିତ । ଏହାର ଆବୃତ୍ତି ଓ ଗୀତାଭିନୟ ସତେ ଯେପରି ପ୍ରତ୍ୟକ୍ଷ ସେବାର ଏକ ବଳିଷ୍ଠ ସାଧନ ଓ ବିନମ୍ର ଭକ୍ତି ସାଧନର ଏକ ମନୋଜ୍ଞ ଅବଲମ୍ବନ । ତେଣୁ ଶ୍ରୀଗୀତଗୋବିନ୍ଦ ନୀଳାଚଳ ଧାମକୁ ସମାଗତ ଯେ କୌଣସି ଭାବୁକ, ଭକ୍ତ, ବିଦ୍ୱାନ, ପଣ୍ଡିତ, ସନ୍ଥ ଓ ମହାତ୍ମାଙ୍କର ଚିତ୍ତକୁ ଯୁଗପତ୍ ଆକର୍ଷଣ କରିବା ସ୍ୱାଭାବିକ ଏବଂ ସେମାନେ ଏହାର ସରଳ ସାବଲୀଳ, ଲଳିତ ମଧୁର, କାନ୍ତ କୋମଳ, ସ୍ନିଗ୍ଧ ଛନ୍ଦମୟ, ଶୃତିଗମ୍ୟ, ବୋଧଗମ୍ୟ ଆଳଙ୍କାରିକତାରେ ପ୍ରଲୁବ୍ଧ ହୋଇ ଏହାର ଏକ ପ୍ରତିଲିପି ପ୍ରସ୍ତୁତ କରି ନିଜ ସହିତ ପ୍ରତ୍ୟାବର୍ତ୍ତନ କାଳରେ ନିଜ ଦେଶକୁ ନେବା ଏକାନ୍ତ ଯୁକ୍ତି ସଙ୍ଗତ ଓ ସ୍ୱାଭାବିକ । ସଂସ୍କୃତ ଭାଷାରେ ଦେବନାଗରୀ ଲିପିରେ ଏହା ରଚିତ ହୋଇଥିବାରୁ ଏହାର ସାର୍ବଜନୀନ ବୋଧଗମ୍ୟତା ରହିଥିଲା । ରାଧାକୃଷ୍ଣ ପ୍ରେମଲୀଳା ସମ୍ପର୍କିତ ଏହାର ଶୃଙ୍ଗାରଧର୍ମୀ ବର୍ଣ୍ଣନା ଓ ସଂକ୍ଷିପ୍ତାକାରରେ ନିଖିଳ ନିର୍ଯ୍ୟାସର ପରିବେଷଣ ଏହି ଗ୍ରନ୍ଥର ଅନ୍ୟ ଏକ ମାହାତ୍ମ୍ୟ । ଭକ୍ତିଶାସ୍ତ୍ର ଶ୍ରୀମଦ୍ ଭାଗବତର ନିରୂପିତ ଗୋପୀଭାବର ଚରମ ନିଦର୍ଶନ ଏହି ଶାସ୍ତ୍ରର କଳେବରକୁ ରଶ୍ମିମନ୍ତ କରିଥିଲା । ଗ୍ରନ୍ଥ ପ୍ରାରମ୍ଭରେ ଦଶାବତାର ସ୍ତୁତିର ସଂଯୋଜନା ଏହାକୁ ମହତ୍ତର କରିଅଛି ଓ ଏହାର ସାର୍ବଜନୀନତାକୁ ଉତ୍ତରୋତ୍ତର ଅଭିବୃଦ୍ଧି କରାଇଛି । ଅତିବଡି ଜଗନ୍ନାଥ ଦାସଙ୍କ ନବାକ୍ଷରୀ 'ଶ୍ରୀମଦ୍ ଭାଗବତ' ଯେପରି ଘରେ ଘରେ ଲୋକପ୍ରିୟ ଠିକ୍ ସେହିପରି ଭାବରେ ଶ୍ରୀ ଜୟଦେବଙ୍କ ଗୀତଗୋବିନ୍ଦର ଏହି ଦଶାବତାର ସ୍ତୋତ୍ର ଘରେ ଘରେ ଲୋକପ୍ରିୟ ଓ ଏହା କ୍ଷୁଦ୍ର, ଭକ୍ତିରସାତ୍ମକ, ଭାବ ଓ ସାରଗର୍ଭକ ହୋଇଥିବାରୁ ଏହାର ଆଦର ସର୍ବାପେକ୍ଷା ଅଧିକ । ଅନ୍ୟାନ୍ୟ ପ୍ରାନ୍ତୀୟ ପରିବ୍ରାଜକମାନେ ଏହି ଗୀତଗୋବିନ୍ଦଦ୍ୱାରା ବହୁଭାବରେ ପ୍ରଭାବିତ ହୋଇ ଫେରନ୍ତା ବାଟରେ ଏହାର ପ୍ରତିଲିପି କରାଇ ଏହାର ଅନୁକରଣରେ ଉଚ୍ଚକୋଟୀର ଟୀକା, ଭାବାର୍ଥ, ଆଲୋଚନା, ସନ୍ଦର୍ଭ, ଅନୁକୃତି, ଚମ୍ପୁ, ବିରୁଦ, ରାସ, ପାଲା, ଛାନ୍ଦ, ଚଉତିଷା, କେଳି, ସୁଆଙ୍ଗ, ବିମର୍ଷ, ବାର୍ତ୍ତିକ ଓ ପୋଇ ପ୍ରଭୃତି ସାହିତ୍ୟ ସୃଷ୍ଟି କରିପାରିଛନ୍ତି । ସଂଶିତ ପ୍ରବନ୍ଧରେ ସେହି ପ୍ରାନ୍ତୀୟ ସାହିତ୍ୟ ସଙ୍ଗେ ସଙ୍ଗେ ଉତ୍ତର ଗୀତଗୋବିନ୍ଦ କାଳୀନ ଓଡିଆ ସାହିତ୍ୟ କିପରି ପ୍ରଭାବିତ ହୋଇ ଚରମୋତ୍କର୍ଷ ଲାଭ କରିଥିଲା ତାହାର ସମ୍ୟକ୍ ଆକଳନ କରିବାକୁ ପ୍ରୟାସ କରାଯାଇଅଛି ।

ଶ୍ରୀ ଜଗନ୍ନାଥଙ୍କ ରଥଯାତ୍ରା ଯୁଗେ ଯୁଗେ ଲକ୍ଷ ଲକ୍ଷ ଭକ୍ତ ଓ ଶ୍ରଦ୍ଧାଳୁମାନଙ୍କୁ ଆକୃଷ୍ଟ କରିଥାଏ । ବିଜ୍ଞ ପ୍ରାଜ୍ଞବୃନ୍ଦ ଗୀତଗୋବିନ୍ଦ ସଂସ୍ପର୍ଶରେ ଆସି ଏହାର ପ୍ରତିଲିପି କରିନେଉଥିଲେ । ତାଳପତ୍ର ଲେଖନୀ ସାହାଯ୍ୟରେ ନିଜେ ବା ପୋଥି ଲେଖକମାନଙ୍କ ସହାୟତାରେ ସେମାନେ ଏହି ବାସ୍ତରି ଶ୍ଳୋକ ଓ ଚବିଶ ଗୀତ ବିଶିଷ୍ଟ ଦ୍ୱାଦଶ ସର୍ଗାତ୍ମକ ପୋଥିକୁ ଶ୍ରୀଗୁଣ୍ଡିଚାରୁ ବାହୁଡା ଯାତ୍ରାକାଳୀନ ମଧ୍ୟବର୍ତ୍ତୀ ଆଠଦିନରେ ପ୍ରତିଲିପି କରାଇ ନେଉଥିଲେ । ଏପରିକି କେତେକ ଅଭିଜ୍ଞ ପୋଥିଲେଖକ ଏଗୁଡିକୁ

ଦିନେ ଦୁଇଦିନ ମଧ୍ୟରେ ଅନାୟସରେ ଉତାରି ଦେଇପାରୁଥିଲେ ଓ ପ୍ରତିଦାନରେ କିଛି ପାରିଶ୍ରମିକ ପାଉଥିଲେ । ଏହା ହିଁ ଗୀତଗୋବିନ୍ଦକୁ କ୍ଷିପ୍ରଗତିରେ ସର୍ବଭାରତୀୟସ୍ତରରେ ପ୍ରଚାର ଓ ପ୍ରସାରକରି ଲୋକପ୍ରିୟ କରାଇବାରେ ସହାୟକ ହୋଇପାରିଥିଲା ।

କେବଳ ସେତିକି ନୁହେଁ, **ଶ୍ରୀଗୀତଗୋବିନ୍ଦ ହେଉଛି ତତ୍କାଳୀନ ସମାଜରେ ଏକ ନବଜାଗରଣ ସୃଷ୍ଟିକାରୀ ବୈପ୍ଲବିକ ଧର୍ମଶାସ୍ତ୍ର ।** ମଧ୍ୟଯୁଗୀୟ ସମାଜରେ ଏହା ଧର୍ମଭାବର ଯଥାଯଥ ଉଦ୍ରେକ କରି ଜଗଦ୍‌ଜନଙ୍କ ହୃଦୟରେ ଏହି କାବ୍ୟରେ ସନ୍ନିବିଷ୍ଟ ୨୪ଟି ଗୀତ ପ୍ରବନ୍ଧ ମଧ୍ୟରୁ ଯେପରି ଦଶାବତାର ସ୍ତୋତ୍ର ଶେଷରେ, 'ଶୃଣୁ ଶୁଭଦଂ ସୁଖଦଂ ଭବସାରଂ' ଉଲ୍ଲେଖ କରାଯାଇଛି ସେହିପରି ଅନ୍ୟାନ୍ୟ ଗୀତ ପ୍ରବନ୍ଧ ଶେଷରେ ଭକ୍ତିଭାବ ଉଦ୍ରେକକାରୀ କେତେକ ପଂକ୍ତି ଯୋଗ କରାଯାଇ, ମହାତ୍ମା ଜୟଦେବ ତାଙ୍କର ସାମାଜିକ ଦାୟିତ୍ୱ ଓ କର୍ତ୍ତବ୍ୟକୁ ସଫଳ ସ୍ରଷ୍ଟା ହିସାବରେ ପାଳନ କରିଛନ୍ତି । ନିମ୍ନୋକ୍ତ ଅନ୍ତିମ ପଦଗୁଡ଼ିକୁ ପାଠକଲେ, ଏ ବିଷୟରେ ଦୃଢ଼ ଧାରଣା କରାଯାଇ ପାରିବ ।

| | | |
|---|---|---|
| ତୃତୀୟ ପ୍ରବନ୍ଧ | - | ଉଦୟତି ହରିଚରଣ ସ୍ମୃତି ସାରମ୍ |
| ଚତୁର୍ଥ ପ୍ରବନ୍ଧ | - | ଜିତନୋତୁ ଶୁଭାନି ଯଶସ୍ୟମ୍ |
| ପଞ୍ଚମ ପ୍ରବନ୍ଧ | - | ହରିଚରଣ ସ୍ମରଣଂ ପ୍ରତି ସଂପ୍ରତି ପୂଣ୍ୟବତାମନୁରୂପମ୍ |
| ନବମ ପ୍ରବନ୍ଧ | - | ସୁଖୟତୁ କେଶବ ପଦମୁପନୀତମ୍ |
| ଦଶମ ପ୍ରବନ୍ଧ | - | ହରିରଦୟତୁ ସୁକୃତେନ |
| ଏକାଦଶ ପ୍ରବନ୍ଧ | - | ହରିମତି ସଦୟଂ ନମତ ସୁକୃତ କମନୀୟମ୍ |
| ଚତୁର୍ଦ୍ଦଶ ପ୍ରବନ୍ଧ | - | କଳିକଲୁଷଂ ଜନୟତୁ ପରିସମୀସତମ୍ |
| ପଞ୍ଚଦଶ ପ୍ରବନ୍ଧ | - | କଲିଯୁଗଚରିତଂ ନ ବସତୁ ଦୁରିତମ୍ |
| ଷୋଡଶ ପ୍ରବନ୍ଧ | - | ପ୍ରବିଶତୁ ହରିରପି ହୃଦୟ ମନେନ |
| ଅଷ୍ଟାଦଶ ପ୍ରବନ୍ଧ | - | ସୁଖୟତୁ ରସିକଜନଂ ହରିଚରିତମ୍ |
| ବିଂଶତି ପ୍ରବନ୍ଧ | - | ହରିବିନିହିତ ମନସାମଧିତିଷ୍ଠତୁ କଣ୍ଠତଟ୍ୟମବିରାମମ୍ |
| ଏକବିଂଶ ପ୍ରବନ୍ଧ | - | କୁରୁ ମୁରାରେ ମଙ୍ଗଳ ଶତାନି |
| ଦ୍ୱାବିଂଶ ପ୍ରବନ୍ଧ | - | ସୁକୃତୋଦୟସାରମ୍ |
| ତ୍ରୟୋବିଂଶ ପ୍ରବନ୍ଧ | - | ମଧୁରିପୁମୋଦମ୍ |
| ଚତୁର୍ବିଂଶ ପ୍ରବନ୍ଧ | - | ହରିଚରଣସ୍ମରଣାମୃତ ନିର୍ମିତ କଳି କଲୁଷଜ୍ୱର ଖଣ୍ଡନେ |

କବି ଜୟଦେବଙ୍କର ବିନୟୋକ୍ତି ଏତିକିରେ ଶେଷ ହୋଇନାହିଁ, ସେ ପୁନଶ୍ଚ ନିଜକୁ ମଧୁରିପୁପଦସେବକ, ହରିଚରଣ ଶରଣ, କୃତହରିସେବ ପ୍ରଭୃତି ଦୈନ୍ୟସୂଚକ ବିଶେଷଣ ଲଗାଇ ହରିଚରଣରେ ନିଜକୁ ସମର୍ପିତ କରିଛନ୍ତି । ତେଣୁ ଏହା ପାଠକକୁ ଓ ଶ୍ରୋତାକୁ ଏପରିକି ଗୀତାଭିନୟ କରୁଥିବା ନର୍ତ୍ତକ ନର୍ତ୍ତକୀମାନଙ୍କୁ ଏହି ରସାଶ୍ରିତ କରି ହୃଦୟରେ ତନ୍ମୟତା ଭରିଦିଏ । ଏହି ପରିପ୍ରେକ୍ଷୀରେ ଗୀତଗୋବିନ୍ଦର ଆଳଙ୍କାରିକତା, ଶୃଙ୍ଗାରିକତା, ସାଙ୍ଗୀତିକତା, ନୃତ୍ୟଶୀଳତା, ସାରସ୍ୱତ ସୌଷ୍ଠବ, ଆଧ୍ୟାତ୍ମିକ ସୌରଭ, ସର୍ବଜନଗ୍ରାହ୍ୟ ଶବ୍ଦ ସଂଯୋଜନା, ଛନ୍ଦମାଧୁର୍ଯ୍ୟ, ପଦଲାଳିତ୍ୟ ଏହି ସମସ୍ତ ବୈଭବ ଏହାକୁ ଏକ ଅନୁପମ, ଅଦ୍ୱିତୀୟ, ଅଶ୍ରୁତପୂର୍ବ ଭକ୍ତି ଶାସ୍ତ୍ରର ମାନ୍ୟତା ଦେଇଅଛି । ପ୍ରାନ୍ତୀୟ ଭାଷାର ବିଭିନ୍ନତା ଓ ଉଚ୍ଚାରଣଗତ ଏବଂ ସୃଷ୍ଟିଗତ ବୈଷମ୍ୟ ଏହାର ବୋଧଗମ୍ୟତା ନିମିତ୍ତ ପ୍ରତିବନ୍ଧକ ହୋଇ ପାରିନାହିଁ । ଏହାର ପ୍ରଭାବରେ ଭାରତୀୟ ସାହିତ୍ୟ କିପରି ଭବ୍ୟ ରୂପ ଧାରଣକରି ଅନବଦ୍ୟ ପ୍ରାଚୁର୍ଯ୍ୟମୟ ସୃଷ୍ଟିରେ ମହିମାନ୍ୱିତ ହୋଇଅଛି - ତାହା ଚିନ୍ତାକଲେ ଆଶ୍ଚର୍ଯ୍ୟ ଚକିତ ହେବାକୁ ହୁଏ ।

ଶ୍ରୀ ଜୟଦେବ ଓ ଶ୍ରୀଗୀତଗୋବିନ୍ଦ ଉପରେ ଗବେଷଣାର ଅନ୍ତ ନାହିଁ । ସଂସ୍କୃତ ବ୍ୟତୀତ ଅନ୍ୟାନ୍ୟ ଭାରତୀୟ ଭାଷା ଯଥା- ହିନ୍ଦୀ, ମରାଠୀ, ଗୁଜୁରାଟୀ, ପଞ୍ଜାବୀ, ତେଲୁଗୁ, ତାମିଲ୍, କନ୍ନଡ, ମଲୟାଲାମ୍, ବଙ୍ଗଳା, ଅହମିୟା, ମଣିପୁରୀ, ମୈଥିଳୀ, ବ୍ରଜଭାଷା ଓ ଅନେକ ପ୍ରାନ୍ତୀୟ ଭାଷାରେ ମଧ୍ୟ ଶ୍ରୀଗୀତଗୋବିନ୍ଦ ପ୍ରଭାବରେ ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟିହୋଇ ଭାରତୀୟ ବାଣୀଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ଏହି ସବୁର ହିସାବ ସଠିକ୍ ଭାବରେ ନିରୂପଣ କରି ତନ୍ମଧ୍ୟରୁ ସାର ସଂଗ୍ରହ କରି ବିଭିନ୍ନ ଶତାବ୍ଦୀରେ ଏହା କିପରି ଭାବରେ ପରିବ୍ୟାପ୍ତ ହୋଇଛି ତାହାର ଏକ ସଂକ୍ଷିପ୍ତ ଆକଳନ କରିବା ଏକାନ୍ତ ଦୁଃସାଧ୍ୟ ବ୍ୟାପାର । ସଂଶିତ ପ୍ରବନ୍ଧ ଏ ଦିଗରେ ଏକ କ୍ଷୁଦ୍ରାତିକ୍ଷୁଦ୍ର ପ୍ରୟାସ ମାତ୍ର ।

**ଦ୍ୱାଦଶ ଶତାବ୍ଦୀ :**

ଶ୍ରୀ ଜୟ ଦେବଙ୍କର ଧର୍ମପତ୍ନୀ ପଦ୍ମାବତୀ ନୃତ୍ୟଗୀତରେ ଅତ୍ୟନ୍ତ ନିପୁଣା ଥିଲେ । ସ୍ୱାମୀ କବି ଶ୍ରୀ ଜୟଦେବଙ୍କଦ୍ୱାରା ରଚିତ ଗୀତ ପ୍ରବନ୍ଧଗୁଡ଼ିକୁ ସେ ପ୍ରତ୍ୟହ ଅପୂରୁପ ଶୈଳୀରେ ଗାନ ନର୍ତ୍ତନାଦି କରି ଶ୍ରୀଜଗନ୍ନାଥଙ୍କ ସମୀପରେ ଭକ୍ତି ଅର୍ଘ୍ୟ ନିବେଦନ କରୁଥିଲେ । ସମ୍ରାଟ ଚୋଡଗଙ୍ଗ ଦେବଙ୍କଦ୍ୱାରା ଶ୍ରୀଜଗନ୍ନାଥଙ୍କ ନିମନ୍ତେ ସୁଦୃଶ୍ୟ ସୁବିଶାଳ ମନ୍ଦିର ନିର୍ମିତ ହେବାପରେ ପରେ ସେହି ମନ୍ଦିର ଓ ଶ୍ରୀଜଗନ୍ନାଥଙ୍କ ମହିମା ଓ ଖ୍ୟାତି ସର୍ବଭାରତୀୟ ସ୍ତରରେ

ପ୍ରଖରଭାବେ ପରିବ୍ୟାପ୍ତ ହୋଇଥିଲା । ତାହା ସହିତ ଶ୍ରୀଗୀତଗୋବିନ୍ଦ ଗାନ ନର୍ତ୍ତନାଦି ଦୂରଦେଶ ଦେଶାନ୍ତରରୁ ସମାଗତ ଭକ୍ତ ମଣ୍ଡଳୀଙ୍କର ଆକର୍ଷଣର କେନ୍ଦ୍ରବିନ୍ଦୁ ହୋଇଥିଲା । ଶ୍ରୀ ଜୟଦେବଙ୍କର ଅନ୍ତରଙ୍ଗ ବନ୍ଧୁଥିଲେ କବି ଉଦୟନାଚାର୍ଯ୍ୟ । ସେ ନିଆଳୀର ଶୋଭନେଶ୍ୱର ମନ୍ଦିରର ଶିଳାଲେଖ ଓ ଭୁବନେଶ୍ୱରସ୍ଥ ମେଘେଶ୍ୱର ମନ୍ଦିର ଶିଳାଲେଖର ପ୍ରଣେତା ରୂପରେ ସୁବିଦିତ । କବି ଉଦୟନାଚାର୍ଯ୍ୟ ଏହି ଶ୍ରୀଗୀତଗୋବିନ୍ଦରେ ଆକୃଷ୍ଟ ହୋଇ ତାହା ଉପରେ ଏକହାଜର ଶ୍ଳୋକ ସମ୍ବଳିତ ଏକ ସୁଦୀର୍ଘ ଟୀକା ରଚନା କରିଥିଲେ । ସେହି ଟୀକା ଗ୍ରନ୍ଥର ନାମ ଭାବବିଭାବିନୀ ଟୀକା ଓ ତାହାର ପୋଥି ଡଃ ଏଫ୍. କିଲ୍‌ହର୍ଣ୍ଣ ଖ୍ରୀ:୧୮୭୪ରେ ମଧ୍ୟପ୍ରଦେଶରୁ ପାଇଥିଲେ । ଜନୈକ ଏସ୍. ଲକ୍ଷ୍ମଣ ସେହି ଏକଶତ ପୃଷ୍ଠା ସମ୍ବଳିତ ତାଳପତ୍ର ପୋଥିଟିକୁ ସ୍ୱଗୃହରେ ରଖିଥିଲେ । ପୋଥିଟିର ପ୍ରତି ପୃଷ୍ଠାରେ ଦଶଧାଡ଼ି ଲେଖାଏଁ ଲେଖା ହୋଇଛି । ସେତେବେଳେ ତାହା ୧୫୦ବର୍ଷର ପୁରୁଣା ବୋଲି କିଲହର୍ଣ୍ଣ ନିରୁପିତ କରିଥିଲେ । ଜୟଦେବଙ୍କର ସମସାମୟିକ ଅନ୍ୟଜଣେ ବିଦ୍ୱାନଙ୍କଦ୍ୱାରା ରଚିତ ସେହି ସୁବୃହତ୍ ଟୀକା ଅଦ୍ୟାପି ଅପ୍ରକାଶିତ । ତାହା ହେଉଛି ଶ୍ରୀଗୀତଗୋବିନ୍ଦର ପ୍ରଥମ ଟୀକା ଓ ତାହା ଆନୁମାନିକ ଖ୍ରୀ:୧୧୭୦ରୁ ଖ୍ରୀ:୧୧୯୦ ମଧ୍ୟରେ ରଚିତ ।

ସମ୍ରାଟ୍ ପୃଥ୍ୱୀରାଜଙ୍କ ରଜା କବି ଭାବେ ବିଦ୍ୱାନ ଚାନ୍ଦ ବରଦାଇ ଖ୍ରୀ:୧୯୯୨ ରୁ ୧୨୦୦ ମଧ୍ୟରେ 'ପୃଥ୍ୱୀରାଜ ରାସୋ' ନାମ କ ଏକ ପ୍ରସିଦ୍ଧ ଐତିହାସିକ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥ ରଚନା କରିଥିଲେ । ସେହି ଗ୍ରନ୍ଥର ପ୍ରାରମ୍ଭରେ ଶ୍ରୀଗୀତଗୋବିନ୍ଦ ଅନୁସରଣରେ ଦଶାବତାର ବନ୍ଦନା ସ୍ଥାନୀତ । ସେହି ଗ୍ରନ୍ଥରୁ କାନ୍ୟକୁବ୍ଜ ରାଜଙ୍କ ସହିତ ଉତ୍କଳ ରାଜଙ୍କର ଏକ ବୈବାହିକ ସମ୍ବନ୍ଧ ରହିଥିବା କଥା ବର୍ଣ୍ଣିତ । ସାଗରତୀରର ଶ୍ରୀଜଗନ୍ନାଥଙ୍କ ମନ୍ଦିର ଓ ତାଙ୍କର ସେବକ ମୁକୁନ୍ଦଦେବଙ୍କର ଐଶ୍ୱର୍ଯ୍ୟ ଓ ବିଭବ ସମ୍ବନ୍ଧରେ ଏକ ବିସ୍ତୃତ ବିବରଣୀ ସେ ଦେଇଛନ୍ତି । ତେଣୁ ବୈବାହିକ କାର୍ଯ୍ୟରେ ସେ ଶ୍ରୀକ୍ଷେତ୍ର ପରିଦର୍ଶନ କରି ପ୍ରତ୍ୟକ୍ଷ ଜ୍ଞାନାହରଣ ସହିତ ଶ୍ରୀଜଗନ୍ନାଥଙ୍କ ସମୀପରେ ଗୀତଗୋବିନ୍ଦର ନୃତ୍ୟାଭିନୟ ଦେଖିଥିବା ବିଶ୍ୱାସଯୋଗ୍ୟ ଓ ଏହାଦ୍ୱାରା ପ୍ରଭାବିତ ହୋଇ ସେ ଶ୍ରୀଜଗନ୍ନାଥଙ୍କ ଐଶ୍ୱର୍ଯ୍ୟ ବିଭବାଦି ବର୍ଣ୍ଣନା ସହ ଗୀତଗୋବିନ୍ଦଦ୍ୱାରା ପ୍ରଭାବିତ ହୋଇ 'ପୃଥ୍ୱୀରାଜ ରାସୋ'ର ମଙ୍ଗଳା ଚରଣରେ ଦଶାବତାର ସ୍ତୁତି ସନ୍ନିବିଷ୍ଟ କରିବା ସମୀଚିନ ମନେ ହୁଏ ।

**ତ୍ରୟୋଦଶ ଶତାବ୍ଦୀ :**

ଶ୍ରୀଗୀତଗୋବିନ୍ଦ ନୃତ୍ୟଗାନାଦିଦ୍ୱାରା ବିଶେଷ ଲୋକପ୍ରିୟତା ଅର୍ଜନ କରିବା ଫଳରେ ଏହାର ଖ୍ୟାତି ବିଦ୍ୟୁତ୍ ବେଗରେ ଦେଶ ବିଦେଶରେ ପ୍ରଚାର ଓ ପ୍ରସାର ହେବାକୁ ଲାଗିଲା । ଦ୍ୱାଦଶ ଶତାବ୍ଦୀର ସନ୍ଥ ରାମାନୁଜ ଓ ନିମ୍ବାର୍କ ଓ ପରବର୍ତ୍ତୀ ସାଧୁ ନରହରି ତୀର୍ଥ ପ୍ରଭୃତି ସର୍ବଭାରତୀୟସ୍ତରରୁ ଅନେକ ଭକ୍ତ ଓ ଶ୍ରଦ୍ଧାଳୁଙ୍କ ସମାଗମ ହେଲା । ଆଦି ଶଙ୍କରାଚାର୍ଯ୍ୟଙ୍କ ସମୟରୁ ଭାରତର ପ୍ରସିଦ୍ଧ ଚାରିଧାମ ମଧ୍ୟରେ ଶ୍ରୀନୀଳାଚଳ ଧାମ ପୁରୀ ଅନ୍ୟତମ ଧର୍ମୀୟ ପ୍ରାଣକେନ୍ଦ୍ରର ମର୍ଯ୍ୟାଦା ଲାଭ କରିସାରିଥିଲା । ତେଣୁ ଅଷ୍ଟମ ନବମ ଶତାବ୍ଦୀ ସମୟରୁ ହିଁ ଏହାର ରାଷ୍ଟ୍ରୀୟ ମାନ୍ୟତା ଅଧିକ ବୃଦ୍ଧି ପ୍ରାପ୍ତ ହୋଇଥିଲା । ଗୀତଗୋବିନ୍ଦ ଗାନାଭିନୟର ଲୋକପ୍ରିୟତା ଏହି ପ୍ରାଧାନ୍ୟ ସହିତ ସାଂସ୍କୃତିକ ମହତ୍ତ୍ୱ ଯୋଗ କରିବା ଦ୍ୱାରା ଶ୍ରୀଜଗନ୍ନାଥ ସଂସ୍କୃତି ଏକ ନୂତନ ରୂପରେ ଉଦ୍ଭାସିତ ହେଲା । ଫଳତଃ, ଗଙ୍ଗ ସମ୍ରାଟ୍ ଅନଙ୍ଗଭୀମଦେବ ଦ୍ୱିତୀୟ ଈର୍ଷାପରାୟଣ ହୋଇ ଆପଣାର କର୍ତ୍ତୃତ୍ୱ ଜାହିର୍ ଓ ସମ୍ମାନ ବୃଦ୍ଧି ନିମିତ୍ତ ନିଜେ ଗୀତଗୋବିନ୍ଦର ଏକ ଭବ୍ୟ ଅନୁକୃତି ରଚନା କରାଇ ତାହାର ପ୍ରଚଳନ ପାଇଁ ନିର୍ଦ୍ଦେଶ ଦେଲେ । ପରିଶେଷରେ ସ୍ୱୟଂ ଜଗନ୍ନାଥ ଏହାକୁ ଅଗ୍ରାହ୍ୟ କରି କେବଳ ରାଜାଙ୍କୁ ସାନ୍ତ୍ୱନା ଦେବା ପାଇଁ ଏହାର କେତୋଟି ଶ୍ଳୋକକୁ ଶ୍ରୀ ଜୟଦେବଙ୍କ ଗୀତଗୋବିନ୍ଦରେ ସାମିଲ କରାଇବା ପାଇଁ ସ୍ୱପ୍ନାଦେଶ ଦେଲେ । ଏହା ହିଁ ଗୀତଗୋବିନ୍ଦରେ ପ୍ରକ୍ଷିପ୍ତ ଶ୍ଳୋକର ଆଦ୍ୟ ଅନୁପ୍ରବେଶ ରୂପରେ ଗବେଷକ ଓ ସମାଲୋଚକମାନଙ୍କଦ୍ୱାରା ବିବେଚିତ ହେଲା ।

ମଧ୍ୱାଚାର୍ଯ୍ୟ ସଂପ୍ରଦାୟର ସନ୍ନ୍ୟାସୀ ନରହରି ତୀର୍ଥ ଉତ୍କଳୀୟ ଗଙ୍ଗବଂଶୀୟ ନରିପତିମାନଙ୍କ ଧର୍ମଗୁରୁ ଥିଲେ । ସେ ଶ୍ରୀକୁର୍ମ୍ମମ୍‌ରେ ଦୀର୍ଘ ଅବସ୍ଥାନ କରି ଅଧୁନାତନ ଶ୍ରୀକାକୁଲମ୍ ଜିଲ୍ଲାରେ ତାଙ୍କ ଧର୍ମ ବ୍ୟାପକ ପ୍ରଚାର କରିଥିଲେ । ଆନ୍ଧ୍ରପ୍ରଦେଶର ତେଲୁଗୁ ଭାଷାଭାଷୀ ମଠମନ୍ଦିରଗୁଡ଼ିକରେ ସେ ଗୀତଗୋବିନ୍ଦ ଗାନର ବ୍ୟବସ୍ଥା କରିଥିଲେ । ତାଙ୍କର ଜନୈକ ଶିଷ୍ୟ ଗୋପାଳକୃଷ୍ଣ ଭାରତୀ 'ଗୋପାଳକୃଷ୍ଣ ବୃତ୍ତି' ନାମକ ଗ୍ରନ୍ଥ ରଚନା କରି ତହିଁରେ ୧୦୮ ଟି ବିଭିନ୍ନ ଛନ୍ଦ ଓ ରାଗର ମିଶ୍ରଣରେ ରାଧାକୃଷ୍ଣଲୀଳାର ବିଷୟ ଆଧାରରେ ଏକ ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି କରିଥିଲେ । ଶ୍ରୀକାକୁଲମର ଅନତି ଦୂରରେ କୁଚିପୁଡ଼ି ଗ୍ରାମ ଅବସ୍ଥିତ । ଏହି ଗ୍ରାମରେ ଗୋପାଳକୃଷ୍ଣ ଭାରତୀ ସ୍ୱପ୍ରଣୀତ ଶାସ୍ତ୍ରର ପଦ୍ୟଗୁଡ଼ିକୁ ନୃତ୍ୟ ସଂଗୀତ ଶୈଳୀରେ ପରିବେଷଣ କରିବା ପାଇଁ ତାଙ୍କର ନୃତ୍ୟନିପୁଣା ଶିଷ୍ୟାମାନଙ୍କୁ ଶିକ୍ଷାଦାନ କରିଥିଲେ । ଗୀତ ଗୋବିନ୍ଦର

କାନ୍ତ କୋମଳ ପଦାବଳୀ ଓ ତା' ଅନୁକରଣରେ ଲିଖିତ 'ଗୋପାଳକୃଷ୍ଣବୃତ୍ତି'ର ମନୋଜ୍ଞ ସଙ୍ଗୀତ କୁଚିପୁଡି ନୃତ୍ୟ ମାଧ୍ୟମରେ ସମାଜରେ ଆଦୃତିଲାଭ କଲା । ତ୍ରୟୋଦଶ ଶତକରେ କେରଳରେ ରାଜା ରବି ବର୍ମା ଗୁରୁବାୟୁର ମନ୍ଦିରରେ ଗୀତଗୋବିନ୍ଦର ପ୍ରଚଳନ କରିଥିବାର ପ୍ରମାଣ ମିଳିଅଛି । କୋଝିକୋଡ଼ର ଜାମୋରିନ୍ ରାଜାମାନେ ବିଷ୍ଣୁ ଉପାସନା ସମୟରେ ଗୀତଗୋବିନ୍ଦର ଅଷ୍ଟପଦୀଗାନ କରାଇବାର ବ୍ୟବସ୍ଥା କରିଥିଲେ । ଏଥିରୁ ଗୀତଗୋବିନ୍ଦର ଲୋକପ୍ରିୟତା ଭାଷା, ଦୂରତା ଓ ପରମ୍ପରାର ସୀମା ଅତିକ୍ରମ କରି କିପରି ସୁଦୂର କେରଳକୁ ସେତେବେଳେ ଯାଇପାରିଲା ଏହା ଚିନ୍ତାକଲେ ଆଶ୍ଚର୍ଯ୍ୟ ଲାଗେ ।

ଗୀତଗୋବିନ୍ଦର ଆଦୃତି ଓ ଲୋକପ୍ରିୟତାର ନିଦର୍ଶନ ଗୁଜୁରାଟ ରାଜ୍ୟର ଅନହିଲ୍ଲପତ୍ତନରେ ଉତ୍ତୀର୍ଣ୍ଣ ଏକ ଶିଳାଲେଖରେ ଦେଖିବାକୁ ମିଳେ । ବାଘେଲ ବଂଶୀୟ ରାଜା ସାରଙ୍ଗଦେବ ଖ୍ରୀ:୧୨୯୧ରେ ଗୀତଗୋବିନ୍ଦର ଦଶାବତାରସ୍ଥ 'ବେଦାନୁଦ୍ଧରତେ' ଶ୍ଳୋକଟିକୁ ଏହି ଶିଳାଲେଖର ମଙ୍ଗଳାଚରଣ ହିସାବରେ ଖୋଦିତ କରାଇଛନ୍ତି । ଏହି ଶ୍ଳୋକର ରାମବତାର ପ୍ରସଙ୍ଗକୁ 'ପୌଲସ୍ତ୍ୟ ଜୟତେ' ବୋଲି ଉଲ୍ଲେଖ କରାଯାଇଛି ଶିଳାଲେଖ ଓ ଅଭିଲେଖ ସାହିତ୍ୟରେ ଏହା ଗୀତଗୋବିନ୍ଦର ସର୍ବପ୍ରାଚୀନ ଉଦ୍ଧୃତି ରୂପରେ ବିବେଚିତ ହୋଇଥାଏ । ଗୀତଗୋବିନ୍ଦକୁ ଏହି ରାଜକୀୟ ସମ୍ମାନ ପ୍ରଦାନ କରାଯାଇ ପ୍ରଜାନୁରଞ୍ଜନ କରାଯାଇଥିବା ଅନୁମେୟ ।

ଚତୁର୍ଦ୍ଦଶ ଶତାବ୍ଦୀ :

ମିଥିଳା ନଗରୀ ଏକ ପ୍ରାଚୀନ ସାରସ୍ୱତ ପୀଠ । ମୈଥିଳୀ ସାହିତ୍ୟ ବିଭିନ୍ନ ଉତ୍ତୁଙ୍ଗ ପଣ୍ଡିତମଣ୍ଡଳୀଙ୍କର ଦକ୍ଷତାପୂର୍ଣ୍ଣ କାଳଜୟୀ ରଚନାରେ ସମୃଦ୍ଧ । ତେଣୁ ଏହି ବିଦ୍ୱାନମଣ୍ଡଳୀଙ୍କ ଉପରେ ଗୀତଗୋବିନ୍ଦର ସୁଦୂର ପ୍ରସାରୀ ପ୍ରଭାବ ପଡିବା ଏକାନ୍ତ ସମୀଚିନ । ମୈଥିଳୀ ପଣ୍ଡିତ ଜଗଦ୍ଧର ଗୀତଗୋବିନ୍ଦ ରଚନାର ଆନୁମାନିକ ଦେଢ଼ଶହ ବର୍ଷପରେ ଏହା ଉପରେ 'ସାର ଦୀପିକା' ନାମକ ଟୀକା ପ୍ରଣୟନ କରିଥିଲେ । ଏହି ଅନୁକୃତି ମୈଥିଳୀ ସାହିତ୍ୟ ସମାଜରେ ଆଦୃତ ହୋଇପାରିଲା । ଏଥିରେ ଉଦ୍‌ବୁଦ୍ଧ ହୋଇ ପ୍ରାତଃ ସ୍ମରଣୀୟ ମୈଥିଳୀ ପଣ୍ଡିତ ବିଦ୍ୟାପତି ଠାକୁର ଖ୍ରୀ:୧୩୬୮ରୁ ୧୪୭୬ ଅନେକ ସରସ ସୁନ୍ଦର ସାବଲୀଳ କାନ୍ତକୋମଳ ପଦାବଳୀ ରଚନା କରିଥିଲେ । ଏହି ରଚନାଗୁଡିକ କାନ୍ତାଭାବ ଆଧାରିତ ଭକ୍ତିରସାତ୍ମକ ରଚନା ହୋଇଥିବାରୁ ପରବର୍ତ୍ତୀକାଳରେ ବୈଷ୍ଣବ ଭକ୍ତ ସନ୍ନ୍ୟାସୀମାନଙ୍କର ଉପାଦେୟ ଅବଲମ୍ବନ ହୋଇପାରିଥିଲା । ତାଙ୍କର ପ୍ରଚଣ୍ଡ ପ୍ରତିଭାରେ ମୁଗ୍ଧ ହୋଇ ମୈଥିଳୀ ନରେଶ ଶିବସିଂହ ତାହାଙ୍କୁ 'ଅଭିନବ ଜୟଦେବ' ଉପାଧିରେ ଭୂଷିତ କରିଥିଲେ । ଏହା ସର୍ବଭାରତୀୟସ୍ତରର ଏକ ପ୍ରସିଦ୍ଧ ବାଣୀପୀଠରେ ଜୟଦେବଙ୍କର ପ୍ରତିଷ୍ଠା ଓ ସମ୍ମାନର ପ୍ରମାଣ । ଗୀତଗୋବିନ୍ଦଦ୍ୱାରା ବିଦ୍ୟାପତି କିପରି ପ୍ରଭାବିତ ହୋଇଥିଲେ, ଏହା ତାଙ୍କର ନିମ୍ନୋକ୍ତ ପଦାବଳୀରୁ ଜଣାପଡେ ଯାହା ଗୀତଗୋବିନ୍ଦର ବସନ୍ତ ବର୍ଣ୍ଣନା ପ୍ରସଙ୍ଗରେ ରଚିତ ତୃତୀୟ ପ୍ରବନ୍ଧର ଅନୁରୂପ ।

ଶିଖିକୁଳ ନାଚତ ଅଲିକୂଳ ଯନ୍ତ, ଦ୍ୱିଜକୂଲ ଆନପଢ଼ ଆସଖମନ୍ତ ।<br>
ଚନ୍ଦ୍ରାତପ ଉଡେ କୁସୁମ ପରାଗ, ମଲୟ ପବନ ସହ ଭେଲ ଅନୁରାଗ ।<br>
ଉଧାରହ ସରସିଜ ପାଓଲ ପ୍ରାନ, ନିଜ ନବଦଲକରୁ ଆସନ ଦାନ ।<br>
ନବ ବୃନ୍ଦାବନ ରାଜ ବିହାର, ବିଦ୍ୟାପତି ବହ ସମୟକ ସାର ।

ମୈଥିଳୀ ଭାନୁଦତ୍ତଙ୍କର 'ଗୀତଗୌରୀଶ' କିପରି ଶ୍ରୀ ଜୟଦେବ ଗୀତଗୋବିନ୍ଦଦ୍ୱାରା ପ୍ରଭାବିତ ହୋଇଥିଲା, ତାହାର ଏକ ଉଦାହରଣ ବିଶେଷ ଉପସ୍ଥାପନୀୟ ।

ଗୀତଗୋବିନ୍ଦ - ସଖୀହେ ! କେଶୀମଥନମୁଦାରମ୍<br>
ରମୟମୟାସହ ମଦନମନୋରଥ ଭାବିତୟା<br>
ସବିକାରମ୍ ।'

ଗୀତ ଗୌରୀଶ - 'ସଖିହେ ! ଶଙ୍କର ମୁଦିତ ବିଳାସମ୍ ।<br>
ସହସଂଗମୟମୟା ନଟୟ ରତିକୌତୁକ<br>
ଦର୍ଶିତହାସମ ।'

ମୈଥିଳୀ ପଣ୍ଡିତ ମହାମହୋପାଧ୍ୟାୟ ଶଙ୍କର ମିଶ୍ର ଗୀତଗୋବିନ୍ଦର ପ୍ରସିଦ୍ଧିରେ ମୁଗ୍ଧ ହୋଇ 'ରସମଞ୍ଜରୀ' ନାମକ ଏକ ଟୀକା ରଚନା କରିଥିଲେ । ଏହି ଟୀକା ଏତେ ପ୍ରାଞ୍ଜଳ ଓ ସୁବିସ୍ତୃତ ଥିଲେ ଯେ, ଏହା ପୂର୍ବରୁ ରଚିତ ସମସ୍ତ ଟୀକା ଅପେକ୍ଷା ଅଧିକ ସମାଦୃତ ହୋଇ ପାରିଥିଲା । ଏହି ଟୀକାରେ 'ବାଚଃ ପଲ୍ଲବୟିତୁ' ଶ୍ଳୋକଟିର ଏକ ମହତ୍ତ୍ୱପୂର୍ଣ୍ଣ ବ୍ୟାଖ୍ୟା ଦୃଷ୍ଟିଗୋଚର ହୋଇଥାଏ ଓ ଜୟଦେବ କବିତ୍ୱର ପ୍ରଶସ୍ତି ଏହିପରି ଦର୍ଶାଯାଇଛି -

'ଗିରାଂ ବଚସାଂ ସନ୍ଦର୍ଭଶୁଦ୍ଧିଃ । ଗୁଣାଳଙ୍କାର ସମ୍ପନ୍ନ ଗ୍ରନ୍ଥ ରଚନା ବିଶେଷଂ ଜୟଦେବ ଏବ ଜାନୀତେ ନାନ୍ୟଃ । ଅତଃ ଅନ୍ୟ କାବ୍ୟ ଶ୍ରବଣେ ତଥା ନ ସନ୍ତୋଷଃ ଯଥା ଜୟଦେବ କବିତା ଶ୍ରବଣେନ ଏତତ୍ୟେତଦେବ ଶ୍ରୋତବ୍ୟଂ ଇତି ଭାବଃ ।'

ଅର୍ଥାତ୍, କେବଳ ଜୟଦେବଙ୍କର ଗୁଣାଳଙ୍କାର ସମ୍ପନ୍ନ ସରସ ଓ ଶୁଦ୍ଧ ସନ୍ଦର୍ଭ ରଚନାରେ ଅଦ୍ୱିତୀୟ ପ୍ରତିଭା ଥିବାରୁ

ତାଙ୍କ କବିତା ଶ୍ରବଣରେ ଯେପରି ସନ୍ତୋଷ ଜାତ ହୁଏ, ଅନ୍ୟ କବିଙ୍କ ରଚନା ଶ୍ରବଣରେ ସେପରି ହୁଏ ନାହିଁ । ତେଣୁ ଜୟଦେବଙ୍କ କବିତା ସର୍ବଦା ଶ୍ରବଣୀୟ ।

ପରବର୍ତ୍ତୀକାଳରେ ମୈଥିଳୀ ପଣ୍ଡିତ ଧୃତିକର ବା ଧୃତିଦାସ ଗୀତଗୋବିନ୍ଦ ଉପରେ ଏକ 'ସନ୍ଦର୍ଭଦୀପିକା' ନାମକ ଟୀକା ରଚନା କରିଥିଲେ । ସେହି ଟୀକାରେ ଶ୍ରୀଗୀତଗୋବିନ୍ଦର ଆଳଙ୍କାରିକତା, ଶୃଙ୍ଗାରିକତା ଓ ସାଙ୍ଗୀତିକତା ଉପରେ ଏକ ବିଷଦ୍ ବିବରଣୀ ଦେଖିବାକୁ ମିଳେ ।

ମୋଟାମୋଟି ଭାବରେ ଚତୁର୍ବିଂଶ ଶତାବ୍ଦୀର ମୈଥିଳ ସାହିତ୍ୟ ଶ୍ରୀଗୀତଗୋବିନ୍ଦର ପ୍ରଭାବରେ ଚରମୋତ୍କର୍ଷ ଲାଭ କରିଥିଲା ଓ ପ୍ରାନ୍ତୀୟ ବିଦ୍ୱାନ ସମାଜ ଏହି ଅସାମାନ୍ୟ ରଚନାର ମାଧୂର୍ଯ୍ୟରେ ମୁଗ୍ଧ ହୋଇ ସ୍ୱକୀୟ ବିଚାରଧାରା ସହିତ କେତେକ ମୂଲ୍ୟବାନ ଟୀକା, ଆଲୋଚନା, ବିମର୍ଷ, ବ୍ୟକ୍ତିକ ଆଦି ରଚନା କରି ବାଣୀ ସେବାରେ ନିଜକୁ ନିୟୋଜିତ କରିଥିଲେ ସମାଲୋଚନା ମାଧ୍ୟମରେ ଉତ୍ତରୋତ୍ତର ଅଭିବୃଦ୍ଧି ଓ ସାରସ୍ୱତ ମୂଲ୍ୟାୟନ ଏହି ରଚନାଗୁଡିକର ମୁଖ୍ୟ ଉଦ୍ଦେଶ୍ୟ, ମଧ୍ୟଯୁଗୀୟ ଧର୍ମଚେତନାର ଅବତାରଣା ଏହାର ଗୌଣ ଉଦ୍ଦେଶ୍ୟ ଅଟେ ।

ଚତୁର୍ଦ୍ଦଶ ଶତାବ୍ଦୀରେ ଓଡିଶାର ବାଗ୍ମୀ ପଣ୍ଡିତ କବିରାଜ ନାରାୟଣ ଦାସ କର୍ତ୍ତୃକ 'ସର୍ବାଙ୍ଗ ସୁନ୍ଦରୀ' ନାମକ ଏକ ସୁବିଖ୍ୟାତ ଟୀକା ପ୍ରଣୀତ ହୋଇଥିଲା । ସେ ଶ୍ରେଷ୍ଠ ଅଳଙ୍କାରିକ ବିଶ୍ୱନାଥ କବିରାଜଙ୍କର ବୃଦ୍ଧ ପ୍ରପିତାମହ ଥିଲେ ବୋଲି ସେ ତାଙ୍କର 'ସାହିତ୍ୟ ଦର୍ପଣରେ' ତୃତୀୟ ପରିଚ୍ଛେଦରେ ଉଲ୍ଲେଖ କରିଛନ୍ତି । ସର୍ବାଙ୍ଗ ସୁନ୍ଦରୀ ଟୀକାର ରଚନାକାଳ ଖ୍ରୀ: ୧୩୫୦ ହିସାବରେ ନିରୁପିତ ହୋଇଅଛି । ଏହାର ମଙ୍ଗଳାଚରଣରେ କବିରାଜ ନାରାୟଣ ଦାସ ଲେଖିଛନ୍ତି -

'ଶ୍ରୀ କୃଷ୍ଣାୟ ନମଃ
ସର୍ବାଙ୍ଗ ସୁନ୍ଦରୀ ରାଧା କୃଷ୍ଣ ସର୍ବାଙ୍ଗ ସୁନ୍ଦରଃ,
ତୟୋରାନନ୍ଦଜନନୀ ଟିକା ସର୍ବାଙ୍ଗ ସୁନ୍ଦରୀ ।
ନତ୍ୱା ଶ୍ରୀ ହରି ଚରଣଂ କୁରୁତେ ସର୍ବାଙ୍ଗସୁନ୍ଦରୀ ଟୀକାମ୍,
ଶ୍ରୀ ନାରାୟଣ ଦାସଃ କବିରାଜୋ[illegible]ଂ ଗୀତଗୋବିନ୍ଦୋ
ଆସ୍ତେ ଯଦି ହୃଦିବାଞ୍ଛା ବୋଦ୍ଧୁଂ ତତ୍ତ୍ୱେନ ଗୀତଗୋବିନ୍ଦଂ
ଶ୍ରୀ ନାରାୟଣ ଦାସସ୍ୟ ଦତ୍ତମଭିପ୍ରାୟଂ ଜନାଃ ଶ୍ରଣୁତ ।'

ତେଣୁ, ଯେଉଁମାନେ ଗୀତଗୋବିନ୍ଦର ଉପାସ୍ୟଦେବତା ରାଧାକୃଷ୍ଣଙ୍କ ବିଷୟରେ ରତି ଉତ୍ପନ୍ନ ହେବାରୁ ତଦୀୟ ପାଦପଙ୍କଜରେ ଅଚଳା ଭକ୍ତି ରଖି ଶ୍ରୀଗୀତଗୋବିନ୍ଦ କାବ୍ୟର ତତ୍ତ୍ୱବୋଧ କରିବାକୁ ହୃଦୟରେ ବାଞ୍ଛା କରିଛନ୍ତି, ସେମାନେ ଶ୍ରୀ ନାରାୟଣ ଦାସଙ୍କ ରଚିତ ଏହି ଗୀତଗୋବିନ୍ଦର ସର୍ବାଙ୍ଗ ସୁନ୍ଦରୀ ଟୀକା ଶୁଣନ୍ତୁ । ଏହି ଟୀକାର ବିଶେଷ ତାତ୍ପର୍ଯ୍ୟ ହେଲା ଯେ ଶ୍ରୀ ନାରାୟଣ ଦାସଙ୍କ ଟୀକାରେ ସେ ଜୟଦେବଙ୍କର ଜନ୍ମସ୍ଥାନ 'କେନ୍ଦୁବିଲ୍ୱାଖ୍ୟଂ ଶାସନଂ', 'କେନ୍ଦୁବିଲ୍ୱ ଶାସନଂ ଜାତଂ' ପ୍ରଭୃତି ବିଶେଷଣଦ୍ୱାରା ପରିଚିହ୍ନିତ କରିଛନ୍ତି । ଓଡିଆ ପଣ୍ଡିତ କବିରାଜ ନାରାୟଣ ଦାସଙ୍କର ଏହି ଉକ୍ତି ପରବର୍ତ୍ତୀ କାଳରେ ବଙ୍ଗଦେଶର ଅଜୟନଦୀ ତଟସ୍ଥ 'କେନ୍ଦୁଲି' ନହୋଇ ଏହା ପ୍ରାଚୀ ନଦୀ ତଟସ୍ଥ 'କେନ୍ଦୁବିଲ୍ୱ ଶାସନ' ରୂପରେ ଜୟଦେବଙ୍କର ଜନ୍ମସ୍ଥାନ ସମ୍ବନ୍ଧୀୟ ବିଭ୍ରାନ୍ତି ଦୂର କରିବାକୁ ବଳିଷ୍ଠ ପ୍ରମାଣ ଯୋଗାଇଥିଲା । ଅନ୍ୟ ଏକ ମହତ୍ତ୍ୱପୂର୍ଣ୍ଣ କଥା ହେଉଛି ଯେ ଏହି ଟୀକାରେ ଅନଙ୍ଗଭୀମଦେବ କୃତ କେତେକ ପ୍ରକ୍ଷିପ୍ତ ଶ୍ଳୋକକୁ ବିଚାରକୁ ନିଆଯାଇନାହିଁ । ତେଣୁ ଏହି ଟୀକାର ମୂଳପାଠର ନିରପେକ୍ଷତା ଓ ଶୁଦ୍ଧ ସଂସ୍କରଣର ସୂଚନା ଦେଇଥାଏ ।

**ପଞ୍ଚଦଶ ଶତାବ୍ଦୀ :**

ଆଦିକବି ସାରଳା ଦାସ ଏହି ଯୁଗରେ ଓଡିଆ ମହାଭାରତ, ଚଣ୍ଡୀ ପୁରାଣ ପ୍ରଭୃତି ଶାସ୍ତ୍ର ରଚନା କରିଥିଲେ । ଡଃ ଆର୍ତ୍ତବଲ୍ଲଭ ମହାନ୍ତି ସମ୍ପାଦିତ ମହାଭାରତର ବନପର୍ବରେ ନିମ୍ନଲିଖିତ ଉଲ୍ଲେଖ ରହିଅଛି, ଯାହା ଗୀତଗୋବିନ୍ଦ ଅନୁରୂପ ।

'ଶ୍ରୀରାଧାମାଧବ ଯେ କୁଞ୍ଜଲତା ତଳେ,
ବିହରଇ ମଳୟାନିଳ ବସନ୍ତ ଶୟଳେ ।।
ରାଧାମାଧବ ଯେ ଶୃଙ୍ଗାର ଅବକାଶେ,
ଦହିଲା ଅନଙ୍ଗ ଯେ ପ୍ରେମରେସେ ରୋଷେ ।।
କୃଷ୍ଣର ପ୍ରତିଭାବେ ବଢିଲା ପ୍ରେମଚିନ୍ତା,
ସ୍ୱାମୀର ସୁଖ ଯେ ଛାଡିଲା ବନିତା ।।'

ଏହାବ୍ୟତୀତ ବିକ୍ଷିପ୍ତ ଭାବରେ କେତେକ ସ୍ଥାନରେ ରାଧାକୃଷ୍ଣଙ୍କର ଶୃଙ୍ଗାରଲୀଳା ପ୍ରସଙ୍ଗ ଆଦିକବି ସାରଳାଦାସ ତତ୍‌କୃତ ମହାଭାରତରେ ବର୍ଣ୍ଣନା କରିଛନ୍ତି । ମହାଭାରତର ମହାନାୟକ କୃଷ୍ଣ ହେଲେ ହେଁ ତାଙ୍କର ଆଦିରସଯୁକ୍ତ କେଳି ପ୍ରବନ୍ଧ ଓ ଚନ୍ଦ୍ରସେଣା ସହିତ ରାଧା ଓ କୃଷ୍ଣଙ୍କର ପରକୀୟ ମାଧୂର୍ଯ୍ୟଲୀଳା ପରିବେଷଣ ମଧ୍ୟ ମହାଭାରତର ସ୍ଥାନେ ସ୍ଥାନେ ଦେଖାଯାଏ ଗୋପବଧୂମାନଙ୍କ ସହିତ କୃଷ୍ଣଙ୍କର ନିଷିଦ୍ଧ ପ୍ରେମ ସଂପର୍କକୁ ଏଥିରେ ସାମାଜିକ ମୂଲ୍ୟବୋଧ ଦୃଷ୍ଟିକୋଣରୁ ଅଗ୍ରାହ୍ୟ କରାଯାଇଥିଲେ ମଧ୍ୟ ଏହାର ଧାର୍ମିକ ଓ ପରମାର୍ଥିକ ମୂଲ୍ୟବୋଧ ଅକ୍ଷୁଣ୍ଣ ରଖିବାକୁ କବି ସାରଳାଦାସ ଯତ୍ନଶୀଳ ହୋଇଛନ୍ତି ।

ସନ୍ଥ କବୀର ହିନ୍ଦୀ ସାହିତ୍ୟର ଜଣେ ପ୍ରତିଷ୍ଠିତ ଭକ୍ତକବି । ପ୍ରେମ ଭକ୍ତି ରସାତ୍ମକ କାବ୍ୟ କବିତା ଲେଖି ସେ ହିନ୍ଦୀ ସାହିତ୍ୟକୁ ପୁଷ୍କଳ କରିଯାଇଛନ୍ତି । ଏହି ରଚନାଗୁଡିକରେ ଭକ୍ତିରସର ଯେଉଁ ଧାରା ପ୍ରବାହିତ ତନ୍ମଧ୍ୟରୁ ଅନେକ ଗୀତଗୋବିନ୍ଦର ପ୍ରଭାବରେ ରଚିତ ହୋଇଥିବା ଲକ୍ଷ୍ୟ କରାଯାଇଥାଏ । ଏପରିକି ସେ କେତେକ ସ୍ଥାନରେ କବି ଜୟଦେବଙ୍କ ପ୍ରତି ନିଜର ଭକ୍ତି ନିବେଦନ କରି, ତାଙ୍କୁ ବିଶିଷ୍ଟ ପ୍ରେମୀ ଭକ୍ତରୂପେ ପ୍ରଣତି ଜଣାଇ ଥିବା ଲକ୍ଷ୍ୟ କରାଯାଇଛି । ନିମ୍ନୋକ୍ତ ପର୍ଯ୍ୟାୟଟି ଏହାର ଏକ ପ୍ରକୃଷ୍ଟ ଉଦାହରଣ ।

'ଗୁରୁ ପ୍ରସାଦୀ ଜୈଦେଉ ଜୟଦେବ ନାମା,
ଭଗତିଙ୍କ ପ୍ରେମି ଇନହୀ ହୈଜାନା ।'

ସନ୍ଥ କବୀର ଦିଲ୍ଲୀ ସମ୍ରାଟ ସିକନ୍ଦର ଲୋଦୀଙ୍କ ରାଜସଭାରେ ସଭାକବି ଥିଲେ ।

ଗୀତଗୋବିନ୍ଦର ବସନ୍ତରାସର ସାବଲୀଳ ବର୍ଣ୍ଣନା ଗୁଜୁରାଟୀ କବି ନର୍ଷୀଙ୍କୁ ବହୁଧା ଆକୃଷ୍ଟ କରିଥିଲା । ରାଧାକୃଷ୍ଣ ପ୍ରେମଲୀଳା ସମ୍ବଳିତ ଗୁଜୁରାଟ ଓ ରାଜସ୍ଥାନର ହୋଲି ଖେଳ ଏବେ ମଧ୍ୟ ବିଶ୍ୱଦରବାରରେ ଖୁବ୍ ପ୍ରସିଦ୍ଧ । ମହାକବି ନର୍ଷୀଙ୍କଦ୍ୱାରା ଖ୍ରୀ:୧୪୩୯ରେ ରଚିତ ନିମ୍ନୋକ୍ତ ପର୍ଯ୍ୟାୟମାନ ଶ୍ରୀଗୀତଗୋବିନ୍ଦର ବସନ୍ତ ରାସ ବର୍ଣ୍ଣନାଦ୍ୱାରା ପୂର୍ଣ୍ଣମାତ୍ରାରେ ପ୍ରଭାବିତ ହୋଇଥିଲା ପରି ମନେହୁଏ । ଏହି ଗୀତଗୁଡିକର ଛନ୍ଦ ଲାଳିତ୍ୟ ବିଶେଷ ଭାବରେ ନୃତ୍ୟୋପଯୋଗୀ ହୋଇଥିବାରୁ ଦୀର୍ଘକାଳ ଧରି ଜନମାନସରେ ଉଜ୍ଜିବୀତ ।

'ଆବିୟ ମାସ ବସନ୍ତକ, ସଂତ କରଇ ଉସାହ ।
ମଳୟାନିଳ ଆଲିୟ ପ୍ରଭୁ ବୀନବିଉ, ନବି ଦିସଇ ଦିସାରୀରେ
ମାଧବ ମାଧବ ଭେଟଣ ଆବଇ, ଆବିତ ଦେବ ମୁରାରିରେ ।'

ବଙ୍ଗୀୟ ବୈଷ୍ଣବ କବି ଚଣ୍ଡୀଦାସଙ୍କର ସରଳ ସୁମଧୁର ପଦାବଳୀଗୁଡିକ ବୈଷ୍ଣବ ଜଗତରେ ବିଶେଷ ଭାବରେ ପ୍ରଚଳିତ । ଏହାର ଅନ୍ତର୍ନିହିତ ଭାବ ଓ ଭକ୍ତି ପରବର୍ତ୍ତୀ ଧର୍ମ ସଂସ୍କାରକ ଓ ପ୍ରଚାରକ ମାନଙ୍କୁ ଅଦମ୍ୟ ଉତ୍ସାହ ପ୍ରଦାନ କରିଥିଲା । ଏହି ପଦାବଳୀଗୁଡିକର ସାଙ୍ଗିତିକତା ଓ ସଂକୀର୍ତ୍ତନ ମାଧ୍ୟମରେ ପ୍ରୟୋଗର ଏପରି ଭାବ ଭରିରହିଥିଲା ଯେ ଶ୍ରୀଚୈତନ୍ୟ ଏହା ମାଧ୍ୟମରେ ନାମ ସଂକୀର୍ତ୍ତନ ଯୁଗଧର୍ମର ପ୍ରଚଳନ କରାଇପାରିଥିଲେ । ଚଣ୍ଡୀଦାସଙ୍କ ରଚନାଗୁଡିକର କଥାବସ୍ତୁ ରାଧାକୃଷ୍ଣ ପ୍ରେମଲୀଳା ସମ୍ପର୍କିତ ଓ ମଧୁର ରସାଶ୍ରିତ । ଏଗୁଡିକ ଗୀତଗୋବିନ୍ଦର ଛାୟାରେ ଲିଖିତ । ଏତଦ୍ ବ୍ୟତୀତ ଚଣ୍ଡୀଦାସଙ୍କ ସମସାମୟିକ ବୈଷ୍ଣବ ବଙ୍ଗୀୟ କବି - ଯଥା- ମୁରାରି ଗୁପ୍ତ, ଗୋବିନ୍ଦ ଘୋଷ, ବାସୁଦେବ ଘୋଷ, ରାମାନନ୍ଦ ବସୁ ରାମାଇ ପଣ୍ଡିତ, ଯଦୁନାଥ ସରକାର, ବଂଶୀ ଦାସ ପ୍ରଭୃତି ବିଭିନ୍ନ ରାଗ ରାଗିଣିରେ ବିଭିନ୍ନ ଭକ୍ତିରସାତ୍ମକ କୀର୍ତ୍ତନ ରଚନା କରି ଚିରସ୍ମରଣୀୟ ହୋଇପାରିଛନ୍ତି । ଏହି ସମସ୍ତ ରଚନାର ମୂଳାଧାର ରୂପରେ ଗୀତଗୋବିନ୍ଦର କଥାବସ୍ତୁ ବିବେଚିତ ହୋଇଥାଏ ।

ଉତ୍କଳୀୟ ରାଜକବି ରାୟ ଦିବାକର ମିଶ୍ର ତଦୀୟ ପୃଷ୍ଠପୋଷକ ଗଜପତି ପୁରୁଷୋତ୍ତମ ଦେବ ଖ୍ରୀ:୧୪୬୬ରୁ ୧୪୯୭ଙ୍କ ନିମିତ୍ତ 'ଅଭିନବ ଗୀତଗୋବିନ୍ଦ' ନାମକ ଏକ କାବ୍ୟ ପ୍ରଣୟନ କରିଥିଲେ । ଏହି ରଚନା ଖ୍ରୀ:୧୪୯୪ରେ ଶେଷ ହୋଇଥିଲା ବୋଲି ଭଣିତା ଅଛି । ଅଭିନବ ଗୀତଗୋବିନ୍ଦ ଏକ ଦଶ ସର୍ଗ ବିଶିଷ୍ଟ କାବ୍ୟ । ଏହାର ମଙ୍ଗଳାଚରଣରେ ଦଶାବତାର ସନ୍ନିବିଷ୍ଟ ଦଶାବତାର ଅନ୍ତିମଭାଗରେ ନିମ୍ନ ବର୍ଣ୍ଣନା ପରିଲକ୍ଷିତ ହୋଇଥାଏ ।

'ଦଶବିଧ ଭବଦବତାରଂ ଭବଜଭୟାଦବିତାରମ୍
ନୃପ ପୁରୁଷୋତ୍ତମଂ ଗୀତଂ ସୁଖୟତୁ ସଜ୍ଜନଚିତ୍ତମ୍ ।।'

ଏହି ଦଶାବତାର ସ୍ତବରେ ନବମ ଅବତାର ବୁଦ୍ଧଙ୍କ ସ୍ଥାନରେ ଶ୍ରୀକୃଷ୍ଣଙ୍କୁ ନିଆଯାଇଛି । ଏହି ଅନୁକୃତିରେ ସର୍ଗବିନ୍ୟାସରେ ଚମତ୍କାରିତା ମଧ୍ୟ ଗୀତ ଗୋବିନ୍ଦ ତୁଲ୍ୟ ଅତ୍ୟନ୍ତ ମର୍ମସ୍ପର୍ଶୀ । ନାୟିକା ପ୍ରକରଣରେ ବିରହିଣୀ ବିଧୁରା/ଅଭିଲାଷ/ଅଭିସାରିକା/ କଳହାନ୍ତରିତା/ବିପ୍ରଲବ୍ଧା/ ବାସବସଜ୍ଜା/ ଖଣ୍ଡିତା/ମାନିନୀ/ପ୍ରୋଷିତ ଭର୍ତୃକା/ସ୍ୱାଧୀନ ଭର୍ତୃକା ସ୍ତରଗୁଡିକର ଭାବ ବର୍ଣ୍ଣନା ଯେପରି ହୃଦୟଗ୍ରାହୀ ନାୟକ ପ୍ରକରଣରେ ସେହିପରି ସୌତ୍କଣ୍ଠ ବୈକୁଣ୍ଠ/ ବିଦଗ୍ଧ ମାଧବ/ ବିଲକ୍ଷ ପୁଣ୍ଡରୀକାକ୍ଷ/ନନ୍ଦ ମୁକୁନ୍ଦ ପ୍ରଭୃତି ସର୍ଗର ସଂଯୋଜନା ଓ ଅବତାରଣା ସେହିପରି ମନୋଜ୍ଞ । ଗୀତଗୋବିନ୍ଦରେ ଜୟଦେବ ସମୁଦାୟ ଦଶଟି ରାଗ ଅବଲମ୍ବନ କରିଥିବା ବେଳେ ଅଭିନବ ଗୀତଗୋବିନ୍ଦରେ ଏହି ସଂଖ୍ୟା ସର୍ବମୋଟ୍ ୫୮ଟି ରାଗର ପ୍ରୟୋଗକୁ ବୃଦ୍ଧି ପାଇଥିଲା । ଭାଷା ଲାଳିତ୍ୟ ଦୃଷ୍ଟିରୁ ଏହା ଗୀତଗୋବିନ୍ଦର ସମକକ୍ଷ ନହେଲେ ମଧ୍ୟ ଅନ୍ୟାନ୍ୟ ଆଳଙ୍କାରିକତା ଦୃଷ୍ଟିରୁ ଅଭିନବ ଗୀତଗୋବିନ୍ଦ ଏକ ସମୁଚିତ ସ୍ଥାନ ପାଇଁ ସର୍ବଥା ଯୋଗ୍ୟ ।

ଗୁଜୁରାଟୀ ସାହିତ୍ୟର ଅନନ୍ୟ ବାଣୀ ସାଧକ ମାନାଙ୍କ ନୃପତି ପଞ୍ଚଦଶ ଶତାବ୍ଦୀର ଆଦ୍ୟକାଳରେ ଗୀତଗୋବିନ୍ଦ ଉପରେ ଏକ ସାରଗର୍ଭକ 'ଟିପ୍ପଣୀକା' ନାମକ ଟୀକା ସଂକଳନ

କରିଥିଲେ । ଏହା ବ୍ୟତୀତ ସେ ରାଧାକୃଷ୍ଣ ଲୀଳା ସମ୍ବଳିତ 'ବୃନ୍ଦାବନ କାବ୍ୟ' ଓ 'ମେଘାଭ୍ୟୁଦୟ' ନାମକ ଅନ୍ୟ ଏକ ଶୃଙ୍ଗାରାତ୍ମକ କାବ୍ୟର ପ୍ରଣେତା । ଏହି ଟୀକାରେ ପ୍ରକ୍ଷିପ୍ତ ଶ୍ଳୋକମାନଙ୍କୁ ବାଦ ଦେଇ କେବଳ ମୂଳ ଗୀତଗୋବିନ୍ଦର ଟୀକାକୁ ସଂକଳିତ କରାଯାଇଛି । ତାଙ୍କ ଟୀକା ସଜ୍ଜନମାନଙ୍କ ସୁଖବୃଦ୍ଧି ନିମିତ୍ତ, ଭଗବଦ୍ ବାସୁଦେବଙ୍କ ପ୍ରୀତ୍ୟର୍ଥେ, ପାପ ହରଣ ନିମିତ୍ତ ରଚିତ ବୋଲି ସେ ନିମ୍ନୋକ୍ତ ଭାବରେ ଉଲ୍ଲେଖ କରିଛନ୍ତି ।

ଓଁ ନମଃ ବାସୁଦେବାୟ
କବିନାଂ ମତମାଲୋକ୍ୟ ସତାଂଚ ସୁଖ ବୃଦ୍ଧୟେ ।
କୃତା ଟିପ୍‌ପଣୀକା ମୁଖ୍ୟା ମାନାଙ୍କେନ ମହୀଭୁଜା ॥୨॥
ପ୍ରୀତୟେ ବାସୁଦେବସ୍ୟ ସଦ୍ୟଃ ପାପାପନୁତ୍ତୟେ ।
ଗୀତଗୋବିନ୍ଦକଂ କାବ୍ୟଂ ଜୟଦେବ ଚକାର ହ ॥୩॥

ବଙ୍ଗୀୟ ବିଦ୍ୱାନ ବୃହସ୍ପତି ମିଶ୍ର ସୁଲତାନ୍ ଜଲାଲୁଦ୍ଦିନ୍ ଖ୍ରୀ:୧୪୧୫ରୁ ୧୪୩୧ଙ୍କ ସଭାପଣ୍ଡିତ ଥିଲେ ଓ ରାଜ ଦରାବରରୁ ରାୟ ମୁକୁଟ ଉପାଧି ପ୍ରାପ୍ତ ହୋଇଥିଲେ । ତାଙ୍କ ସଂକଳିତ ଧର୍ମଶାସ୍ତ୍ର 'ସ୍ମୃତିରତ୍ନ ହାର' ପାଇଁ ସେ ଚିର ବନ୍ଦନୀୟ । ସେ ଶ୍ରୀଗୀତଗୋବିନ୍ଦ ଟୀକାର ପ୍ରଣେତା ଓ ଏଥିରେ ନାରାୟଣ ଦାସ କୃତ 'ସର୍ବାଙ୍ଗ ସୁନ୍ଦରୀ' ଟୀକାର ଦୁଇଟି ଶ୍ଳୋକ ଆକ୍ଷରିକ ଭାବେ ଉଦ୍ଧୃତ ହୋଇଅଛି ।

ବମ୍ବେର ନିର୍ଣ୍ଣୟ ସାଗର ପ୍ରେସ୍ ଖ୍ରୀ:୧୯୩୭ ସେ ରାଜସ୍ଥାନ ମେବାର ରାଜ୍ୟର ମହାରାଣା କୁମ୍ଭକର୍ଣ୍ଣଙ୍କ ଦ୍ୱାରା ଖ୍ରୀ:୧୪୫୦ରେ ଲିଖିତ 'ରସିକ ପ୍ରିୟା' ଟୀକାର ପ୍ରକାଶ କରିଛନ୍ତି । ଏହି ଗୀତଗୋବିନ୍ଦ ସଂକଳନରେ ମୂଳପାଠ ସହିତ, ରସିକପ୍ରିୟ । ଟୀକା ଏବଂ ଶଙ୍କର ମିଶ୍ର ପ୍ରଣୀତ 'ରସମଞ୍ଜରୀ' ଟୀକା ମଧ୍ୟ ଏକତ୍ର ପ୍ରକାଶିତ । ତେଣୁ ଏହାକୁ ଅନେକ ଗବେଷକ ପ୍ରକ୍ଷିପ୍ତ ଶ୍ଳୋକଗୁଡ଼ିକୁ ନିର୍ଦ୍ଧାରଣ କରିବା ନିମନ୍ତେ ଏକ ଉପାଦେୟ ପୁସ୍ତକ ରୂପେ ବିବେଚନା କରିଥାନ୍ତି । ଏହି ସଂସ୍କରଣରୁ ତତ୍‌କାଳୀନ ରାଜସ୍ଥାନ ଇତିହାସ ବିଷୟରେ ମଧ୍ୟ କେତେକ ଗୁରୁତ୍ୱପୂର୍ଣ୍ଣ ସୂଚନା ମିଳେ । ରାଣାକୁମ୍ଭ ତାଙ୍କ ରସିକ ପ୍ରିୟା ଟୀକାରେ ରାଜା ଅନଙ୍ଗଭୀମଦେବ ଦ୍ୱିତୀୟଙ୍କ ପ୍ରଣୀତ ଗୀତଗୋବିନ୍ଦର ପ୍ରକ୍ଷିପ୍ତ ଓ ସଂଯୋଜିତ ୨୪ଟି ଶ୍ଳୋକକୁ ଗୀତଗୋବିନ୍ଦ ମୂଳପାଠରେ ଅନ୍ତର୍ଭୁକ୍ତ କରି ତାହାର ଟୀକା ରଚନା କରିଥିବାରୁ ଏହା ଐତିହାସିକ ବିଶ୍ଳେଷଣ ଓ ଗବେଷଣା ଦୃଷ୍ଟିରୁ ଏକ ଉତ୍କୃଷ୍ଟ ଗ୍ରନ୍ଥ ରୂପରେ ବିବେଚିତ ହୁଏ ।

**ଷୋଡଶ ଶତାବ୍ଦୀ :**

ଭାରତୀୟ ବୈଷ୍ଣବ ଧର୍ମ ଓ ଭକ୍ତି ଆନ୍ଦୋଳନର ବ୍ୟାପକ ପୁନର୍ଜାଗରଣ ଏହି ଶତାବ୍ଦୀରେ ସଙ୍ଗଠିତ ହୋଇଥିଲା । ବଲ୍ଲଭାଚାର୍ଯ୍ୟ, ଚୈତନ୍ୟ, ସୁରଦାସ, ବିଠ୍‌ଠଲ ନାଥ, ଉତ୍କଳୀୟ ପଞ୍ଚସଖା, ବଙ୍ଗୀୟ ଷଡଗୋସ୍ୱାମୀ, ରାୟ ରାମାନନ୍ଦ ପ୍ରଭୃତି ଅନେକ ସନ୍ଥ, ଧର୍ମପ୍ରଚାରକ ଓ ବିଦ୍ୱାନ ଏହି ଶତାବ୍ଦୀରେ ସ୍ୱ ସ୍ୱ ବିଚାରଧାରା ଓ ମତବାଦ ପ୍ରଚାର କରି ସର୍ବ ଭାରତୀୟ ସ୍ତରରେ ଏକ ନବ ଯୁଗର ପ୍ରଚଳନ କରାଇଥିଲେ । ଏହି ସମସ୍ତ ସନ୍ଥ ସମାଜ ଶ୍ରୀ ଜୟଦେବଙ୍କର ଗୀତଗୋବିନ୍ଦଦ୍ୱାରା ପ୍ରଭାବିତ ହୋଇ ଓ ପ୍ରେରଣା ଲାଭକରି ଭକ୍ତି ଆନ୍ଦୋଳନରେ ନିହିତ ଗୁଢ଼ତମ ତତ୍ତ୍ୱଗୁଡ଼ିକୁ ସମାଜରେ ପ୍ରଚାର ପ୍ରସାର କରିଥିଲେ । ଏହି ସୁବିସ୍ତୃତ କାଳର ଏକ ସଂକ୍ଷିପ୍ତ ଆକଳନ ପାଇଁ ପ୍ରୟାସ କରାଯାଇଛି । ଓଡ଼ିଆ ଓ ବଙ୍ଗଳା ବିଦ୍ୱାନମାନଙ୍କ ବିଷୟରେ ବିସ୍ତୃତ ଆଲୋଚନା କରିବା ପୂର୍ବରୁ ଏହି ଶତାବ୍ଦୀରେ ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ଗୀତଗୋବିନ୍ଦର କିପରି ପ୍ରଭାବ ପଡ଼ିଥିଲା ତାହା ବିଷୟରେ ଆଲୋଚନା କରାଯାଇପାରେ ।

ଶୁଦ୍ଧାଦ୍ୱୈତ ମତାବାଦରେ ପ୍ରଚାରକ ବଲ୍ଲଭାଚାର୍ଯ୍ୟ ଗୁଜୁରାଟକୁ କେନ୍ଦ୍ରକରି ରାଧାକୃଷ୍ଣ ପ୍ରମଲୀଳାର ପ୍ରଚାର କରିଥିଲେ । ତାଙ୍କ ପୁତ୍ର ବିଠ୍‌ଠଲନାଥ ଗୀତଗୋବିନ୍ଦକୁ ଅନୁକରଣ କରି ଶୃଙ୍ଗାରରସ ମଣ୍ଡନ ନାମକ ଏକ ପ୍ରଣୟନ କରିଥିଲେ । ଏହି ଶୃଙ୍ଗାରରସ ମଣ୍ଡନ ଗ୍ରନ୍ଥରେ ରାୟ ରାମାନନ୍ଦଙ୍କ ପ୍ରଣୀତ ଜଗନ୍ନାଥ ବଲ୍ଲଭ ନାଟକର କେତେକ ସୁମଧୁର ଉଦ୍ଧୃତି ରହିଅଛି । ବୃନ୍ଦାବନୀୟ ରାଧାକୃଷ୍ଣ ଲୀଳାସ୍ଥଳୀରେ ପ୍ରଚଳିତ ବ୍ରଜଭାଷାରେ ସରଳ ସାବଲୀଳ କୀର୍ତ୍ତନ ଉପଯୋଗୀ ବାବରେ ସେ କେତେକ ପଦାବଳୀ ରଚନା କରିଥିଲେ । ନିଜ ପିତା ବଲ୍ଲଭାଚାର୍ଯ୍ୟଙ୍କର ଚାରିଜଣ ଶିଷ୍ୟ ଓ ନିଜର ଚାରିଜଣ ଶିଷ୍ୟଙ୍କୁ ନେଇ ସେ ଅଷ୍ଟଛାପ ନାମକ ଏକ ଭକ୍ତ ଗୋଷ୍ଠୀ ସ୍ଥାପନ କରିଥିଲେ । ବିଠ୍‌ଠଲ୍‌ନାଥଙ୍କ ରଚନା ମଧ୍ୟରେ 'କୃଷ୍ଣ ପ୍ରେମାମୃତ' ଓ 'କୃଷ୍ଣସ୍ତବ' ଗୀତଗୋବିନ୍ଦର ପ୍ରବନ୍ଧ ମାନଙ୍କର ଅନୁକରଣରେ ରଚିତ ହୋଇଅଛି । ବିଠ୍‌ଠଲନାଥଙ୍କର ଗୀତଗୋବିନ୍ଦର ଅନୁକୃତି ରଚନା, ତାଙ୍କ ଶିଷ୍ୟ ବନମାଳୀ ଭଟ୍ଟଙ୍କଦ୍ୱାରା ଏହାର ବିବୃତ୍ତି ପ୍ରଣୟନ ଏବଂ ସଂଜୀବନୀ ନାମକ ଟୀକା ଗ୍ରନ୍ଥ ରଚନା ଫଳରେ ଗୀତଗୋବିନ୍ଦ ସଂସ୍କୃତି ବ୍ରଜଭାଷାବାସୀ ଓ ହିନ୍ଦୀଭାଷୀ ଅଞ୍ଚଳରେ ବିଶେଷ ପ୍ରସାର ଲାଭ କଲା । ବିଠ୍‌ଠଲ ନାଥ ଖ୍ରୀ ୧୫୮୫ରେ ପରଲୋକ ଗମନ କରିଥିଲେ ।

ବଲ୍ଲଭାଚାର୍ଯ୍ୟଙ୍କର ଶିଷ୍ୟ ସୁରଦାସ ହିନ୍ଦୀ ସାହିତ୍ୟର ଜଣେ ପ୍ରତିଷ୍ଠିତ ଭକ୍ତକବି । ସୁରଦାସଙ୍କଦ୍ୱାରା ପ୍ରଣୀତ ବିଭିନ୍ନ ରାଗରାଗିଣୀର ଭଜନମାଳା ଭକ୍ତି ସାହିତ୍ୟର ଅମୂଲ୍ୟରତ୍ନ । ତାଙ୍କ ରଚିତ 'ସୁରସାଗର' ଗ୍ରନ୍ଥରୁ ସେ ରାଧାକୃଷ୍ଣ ପ୍ରେମରସର କିଭଳି ପ୍ରଚାର କରିଥିଲେ ତାହାର ପ୍ରମାଣ ମିଳେ । ଜୟଦେବ ଓ ବିଦ୍ୟାପତିଙ୍କର ନାମୋଲ୍ଲେଖ ତାଙ୍କ ରଚନାରେ ସେ ବିଶେଷ ଭାବରେ କରିଛନ୍ତି । ତେଣୁ ସେ ଉଭୟ ଜୟଦେବ ଓ ବିଦ୍ୟାପତିଙ୍କଦ୍ୱାରା ବହୁଭାବରେ ଅନୁପ୍ରାଣୀତ ହୋଇଥିଲେ । ଅନ୍ୟତମ ବଲ୍ଲଭପନ୍ଥୀ ନନ୍ଦଦାସ ସ୍ୱୀୟ ରାସ ପଞ୍ଚାଧ୍ୟାୟୀ ଗ୍ରନ୍ଥରେ ଗୀତଗୋବିନ୍ଦ ଆଧାରରେ ମୂଳ ଭାଗବତରେ ସ୍ଥାନ ପାଇନଥିବା ଗୀତଗୋବିନ୍ଦର ଶୃଙ୍ଗାରମଣ୍ଡିତ କଥାବସ୍ତୁକୁ ସ୍ଥାନିତ କରିଛନ୍ତି । ବିୟୋଗୀ ହରି ପ୍ରଭୃତି କେତେକ ବିଜ୍ଞ ଭକ୍ତ ଏହି ନନ୍ଦଦାସ ପ୍ରଣୀତ ରାସ ପଞ୍ଚାଧ୍ୟାୟୀକୁ ହିନ୍ଦୀକା ଗୀତଗୋବିନ୍ଦ କହିଥାନ୍ତି । ବଲ୍ଲଭ ସଂପ୍ରଦାୟର ସନ୍ଥ କୃଷ୍ଣଦାସ 'ଭ୍ରମର ଗୀତ' ଓ 'ପ୍ରେମତତ୍ତ୍ୱ ନିରୁପଣ' ନାମକ ଦୁଇଟି ପ୍ରସିଦ୍ଧ ଶୃଙ୍ଗାର ରାସଶ୍ରୟୀ ଗ୍ରନ୍ଥର ପ୍ରଣେତା । ଶ୍ରୀଗୀତଗୋବିନ୍ଦର ବିପ୍ରଲମ୍ଭ ଶୃଙ୍ଗାର ପ୍ରକରଣରେ ଭ୍ରମର ଗୀତ ପରିପୁଷ୍ଟ ହୋଇଥିଲାବେଳେ ପ୍ରେମତତ୍ତ୍ୱ ନିରୁପଣ ଗ୍ରନ୍ଥରେ ନାୟକ, ନାୟିକା ଓ ପ୍ରେମର ବିଭିନ୍ନ ସ୍ତରରେ ପ୍ରେମର ଆସ୍ୱାଦନୀୟତା ବିଷୟରେ ସୁବିସ୍ତୃତ ଆଲୋଚନା କରାଯାଇଛି ।

ଖ୍ରୀ:୧୫୪୨ରେ ଜନ୍ମିତ ହିତ ହରିବଂଶ ରାଧାବଲ୍ଲଭୀ ସଂପ୍ରଦାୟର ପ୍ରତିଷ୍ଠାତା ଆଚାର୍ଯ୍ୟ । ସେ ବଲ୍ଲଭାଚାର୍ଯ୍ୟଙ୍କ ଆଦର୍ଶରେ ନିଷ୍ଠାର ସହି ଅଗ୍ରସର ହୋଇ ରାଧାଭାବ ଆସ୍ୱାଦନ କରିବା ନିମିତ୍ତ ଗୀତଗୋବିନ୍ଦ ପ୍ରବର୍ତ୍ତିତ ରାଧାଭାବରେ ଚିତ୍ତ ନିବିଷ୍ଟ କରିଥିଲେ । ଶ୍ରୀରାଧା ଏହାଙ୍କ ଭକ୍ତିରେ ତନ୍ମୟ ହୋଇ ସ୍ୱପ୍ନାବସ୍ଥାରେ ମନ୍ତ୍ରଦାନ କରିଥିବା କଥା ରାଧାବଲ୍ଲଭୀ ସଂପ୍ରଦାୟର ଧର୍ମବିଶ୍ୱାସରେ ପ୍ରଚଳିତ କିମ୍ବଦନ୍ତୀ । ବ୍ରଜଭାଷାରେ ଚଉରାଅଶୀ ଅଧ୍ୟାୟ ବିଶିଷ୍ଟ ତାଙ୍କ 'ହିତ ଚୌରାଶୀ' ଗ୍ରନ୍ଥରେ ଗୀତଗୋବିନ୍ଦର ଛାପ ସ୍ପଷ୍ଟ ବାରି ହୋଇଥାଏ ।

ଶ୍ରୀକୃଷ୍ଣଙ୍କର ପରମ ଭକ୍ତ ମୀରାବାଇ ମାଧୂର୍ଯ୍ୟ ଭାବରେ ଆବିଷ୍ଟ ହୋଇ ରାଗାନୁଗା ମାର୍ଗରେ କୃଷ୍ଣୋପାସନା କରୁଥିଲେ। ଶହ ଶହ ଲାଳିତ୍ୟ ପୂର୍ଣ୍ଣ ଭାବାବେଗ ବିଜଡିତ ପଦାବଳୀ ସେ ରଚନା କରିଯାଇଛନ୍ତି । ରାଜସ୍ଥାନୀ ହିନ୍ଦୀ ଭାଷାରେ ରଚିତ ମୀରାବାଇଙ୍କର 'ଗୀତଗୋବିନ୍ଦକୀ ଟୀକା' ଗୀତଗୋବିନ୍ଦର ନର୍ମ୍ମ ପରିଭାଷାକୁ ମାର୍ଜିତ ଶୃଙ୍ଖଳିତ ରୂପରେ ପରିପ୍ରକାଶ କରିଥାଏ । ମୀରାବାଇଙ୍କର ଗୋପୀଭାବ ସମ୍ବଳିତ ପ୍ରେମଭକ୍ତି ଆଧାରିତ ଭକ୍ତି ନିବେଦନର କୌଣସି ତୁଳନା ନାହିଁ । ଗିରିଧର ନାଗରଙ୍କ ପ୍ରେମରେ ନିରନ୍ତର ନିମଜ୍ଜିତ ଏହି ସନ୍ଥ ନାରୀକବିଙ୍କର ଏହି ଟୀକା ଗ୍ରନ୍ଥରେ ଆତ୍ମନିବେଦନ ଧର୍ମୀ ମିଳନ ବିରହ ଯୁକ୍ତ ଶୃଙ୍ଗାରିକତା ବହୁଳ ଭାବରେ ଦେଖାଯାଏ ।

ଭକ୍ତକବି ନାଭାଦି ଖ୍ରୀ ୧୫୮୫ରେ 'ଭକ୍ତମାଳା' ନାମକ ଏକ ଗ୍ରନ୍ଥ ହିନ୍ଦୀ ଭାଷାରେ ରଚନା କରିଥିଲେ । ଏଥିରେ ମୋଟ ଦୁଇଶହ ଜଣ ପ୍ରସିଦ୍ଧ ଭକ୍ତ, ସନ୍ଥ, ସନ୍ନ୍ୟାସୀ ଓ ବାଗ୍ମୀଙ୍କ ବିଷୟରେ ଷଟ୍‌ପଦୀ ଶୈଳୀରେ ଗୀତ ଭଣିତା ହୋଇଛି । ଏଥିରେ 'ଜୟଦେବ କବି ଚକ୍‌କବେ, ଖଣ୍ଡମଣ୍ଡଳେଶ୍ୱର ଆନକବି' ନାମକ ଏକ ପୟାର ସଂଯୋଗ କରାଯାଇଛି । ଏଥିରୁ ଶ୍ରୀ ଜୟଦେବଙ୍କର ପାଣ୍ଡିତ୍ୟ ଓ କବିତ୍ୱ ବିଷୟରେ ଜଣାଯାଏ । ମୈଥିଳ ପଣ୍ଡିତ ଚନ୍ଦ୍ରଦତ୍ତ ସଂସ୍କୃତ ଭାଷାରେ 'ଭକ୍ତମାଳା', ପ୍ରିୟା ଦାସ ଭକ୍ତମାଳ ଉପରେ ଏକ ଟୀକା, ମହିପତିଙ୍କ ମରାଠୀ ଭାଷାରେ ରଚିତ 'ଭକ୍ତ ବିଜୟ' ଓ କୃଷ୍ଣଦାସ ବାବାଜୀଙ୍କ ବିରଚିତ ବଙ୍ଗଳା ଭାଷାରେ 'ଭକ୍ତମାଳ' ଗ୍ରନ୍ଥଗୁଡିକରେ ମଧ୍ୟ ଜୟଦେବ ଚରିତ ଓ ତଦୀୟ ଗୀତଗୋବନ୍ଦର ଉଲ୍ଲେଖ ମିଳେ । ଏଥିରୁ ସେ ପୌରାଣିକ ଭକ୍ତ ଚରିତମାନଙ୍କ ପରି ନିଜେ କେତେ ପ୍ରସିଦ୍ଧ ଥିଲେ ଏହାର ଏକ ସର୍ବଭାରତୀୟ ସ୍ତରରେ ସ୍ଥୂଳ ଆକଳନ କରାଯାଇ ପାରେ ।

ପ୍ରାଚୀନ ବିଜୟନଗର ରାଜ୍ୟର ସୁବିଖ୍ୟାତ କନ୍ନଡ ପଣ୍ଡିତ ଲକ୍ଷ୍ମଣ ସୁରି ଶ୍ରୀ ଜୟଦେବଙ୍କର ଗୀତଗୋବିନ୍ଦ ଉପରେ ଏକ ସାରଗର୍ଭକ ସମୀକ୍ଷା ଗ୍ରନ୍ଥ ଲେଖିଛନ୍ତି ଓ ଏହାର ନାମ 'ଶ୍ରୁତିରଞ୍ଜନୀ' ଦେଇଛନ୍ତି । ସେ ବିଜୟନଗର ସମ୍ରାଟ୍ ତିରୁମଲ୍ଲ ରାୟ ଖ୍ରୀ:୧୫୬୫- ଖ୍ରୀ ୧୫୮୦ଙ୍କର ସଭାପଣ୍ଡିତ ଥିଲେ । ଏହା ସେତେବେଳେ କର୍ଣ୍ଣାଟ, ଉତ୍କଳ, ଆନ୍ଧ୍ର ପ୍ରଭୃତି ରାଜ୍ୟଗୁଡିକରେ ଏହାର ସାରଗର୍ଭକ ବ୍ୟାଖ୍ୟା ପାଇଁ ବିଶେଷ ପାଠକୀୟ ଓ ଭାକ୍ତିକ ଆଦୃତି ଲାଭ କରିଥିଲା । ଏହାର ଏକ ଉଦ୍ଧୃତି ଏହିପରି

'ଶୃଣ୍ୱନ୍ ମୃଦ୍ୟୁପଦଂ ଗୀତଗୋବିନ୍ଦଂ ଧ୍ୱନିମଣ୍ଡିତମ୍,
ଅସ୍ୟାର୍ଥ ଦୀପିକା ଟୀକାଂ କରୋତି ଶ୍ରୁତି ରଞ୍ଜନୀମ୍ ।।'

ପୁନଶ୍ଚ ଏହି ଶ୍ରୁତିରଞ୍ଜନୀ ଟୀକାରେ 'ବାଚଃ ପଲ୍ଲବୟତୁ ....' ଶ୍ଳୋକର ଓ ବ୍ୟାଖ୍ୟାରୁ ମହାକବି ଲକ୍ଷ୍ମଣ ସୁରି ଜୟଦେବଙ୍କର ପ୍ରଚଣ୍ଡ ପ୍ରତିଭାରେ କିପରି ମନ୍ତ୍ରମୁଗ୍ଧ ହୋଇଥିଲେ ତାହା ତାଙ୍କ ଟୀକାର ନିମ୍ନୋକ୍ତ ଉକ୍ତିରୁ ଜଣାପଡିଥାଏ-

'ସନ୍ଦର୍ଭସ୍ୟ ରସଗୁଣାଳଙ୍କାର ବାକ୍ୟଧର୍ମ ସଂଘସ୍ୟ ଶୁଦ୍ଧିଂ ସମ୍ୟକ୍ କାବ୍ୟ ଘଟନା ସାମଗ୍ରୀଂ ଜୟଦେବଃ ଏବ ଜାନୀତେ ।

ନାନ୍ୟଃ ଇତ୍ୟଭିପ୍ରାୟଃ । ଅଥଶ୍ଚ ତସୌବ ବାଣୀ ଶ୍ରୋତବ୍ୟା, ନାନ୍ୟେଷମିତିଭାବଃ ।''

ଷୋଡଶ ଶତାବ୍ଦୀରେ ଆସାମ ରାଜ୍ୟର ପଣ୍ଡିତ ଶଙ୍କରଦେବ ଶ୍ରୀକ୍ଷେତ୍ରକୁ ଆଗମନ କରି ଉତ୍କଳୀୟ ବିଦ୍ୱାନ ଜଗନ୍ନାଥ ଦାସଙ୍କ ନବାକ୍ଷରୀ ଓଡିଆ ଶ୍ରୀମଦ୍‌ଭାଗବତଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ । ସମୁଦ୍ର କୂଳସ୍ଥ ଶ୍ରୀମତ୍ ଶଙ୍କରଦେବଙ୍କ ଆଶ୍ରମଟି ଅତିବଡି ଜଗନ୍ନାଥ ଦାସଙ୍କ ସାତଲହଡି ମଠର ସମୀପବର୍ତ୍ତୀ । ଶଙ୍କରଦେବ ଗୀତଗୋବିନ୍ଦ ବିଷୟରେ ସମଧୀକ୍ୟ ଜାଣି ଏହାର ଏକ ପ୍ରତିକୃତି କରାଇ ତାଙ୍କର ଘନିଷ୍ଠ ବନ୍ଧୁ କାମରୂପ ନରେଶ ନରନାରାୟଣଙ୍କ ସଭାପଣ୍ଡିତ ଶୁକ୍ଳଧ୍ୱଜଙ୍କୁ ଦେଇଥିଲେ । ଶୁକ୍ଳଧ୍ୱଜ ଏହି ଗ୍ରନ୍ଥ ଉପରେ ପରବର୍ତ୍ତୀକାଳରେ ଏକ ମହତ୍ୱପୂର୍ଣ୍ଣ ଟୀକା ରଚନା କରିଥିଲେ । ଶଙ୍କରଦେବଙ୍କ ଅହମିଆ ଭାଷାରେ ରଚିତ ଶ୍ରୀମଦ୍ ଭାଗବତ ପରି ଏହି ସରସ୍ୱତୀ ନାମକ ଟୀକା ମଧ୍ୟ ଆସାମ ରାଜ୍ୟରେ ରାଗାନୁଗା ବୈଷ୍ଣବ ଧର୍ମ ପ୍ରଚାରରେ ବିଶେଷ ସହାୟକ ହୋଇଥିଲା । ଏହି ଟୀକାରେ ନିମ୍ନୋକ୍ତ ବର୍ଣ୍ଣନା ଦେଖିବାକୁ ମିଳେ ।

ସଦ୍‌ବର୍ଣ୍ଣା ଜୟଦେବ ପଣ୍ଡିତ କବେର୍ବାଣୀ ନିଗୂଢ଼ାଶୟାଂ ।
ନାନାଳଂକୃତି ଭୂଷିତାଂ ଗୁଣମତୀଂ ହୃଦ୍ୟାଞ୍ଜମାତ୍ର ପରାମ୍ ॥
କ୍ଷିତିପାଳମୌଳିମୁକୁଟ ପ୍ରଶ୍ଳିଷ୍ଟ ପାଦଦ୍ୟୁତେଃ ।
ଶ୍ରୀ ଶୁକ୍ଳଧ୍ୱଜ ଭୂଭୁଜୋ ବିଜୟତା ମାକଳ୍ପମେଷା କୃତିଃ ॥

ଷୋଡଷ ଶତାବ୍ଦୀର ଉତ୍ତର ସାରଳା ଯୁଗ ଓଡିଆ ସାହିତ୍ୟର ଭିତ୍ତି ନିର୍ମାଣକାଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ସାରଳା ଦାସ ଯେପରି ଭାବରେ ସର୍ବବୃହତ୍ ମହାଭାରତ କାବ୍ୟ ରଚନା କରି ଓଡିଆ ଭାଷା ସାହିତ୍ୟରେ ଗଙ୍ଗୋତ୍ରୀର ସର୍ଜନା କଲେ ତାହା ପରବର୍ତ୍ତୀକାଳରେ ପ୍ରସିଦ୍ଧ ଉତ୍କଳୀୟ ପଞ୍ଚସଖା ଯଥା- ବଳରାମ ଦାସଙ୍କ ଦାଣ୍ଡୀ ରାମାୟଣ, ଅତିବଡି ଜଗନ୍ନାଥ ଦାସଙ୍କ ଓଡିଆ ନବାକ୍ଷରୀ ବୃତ୍ତରେ ରଚିତ ଶ୍ରୀମଦ୍ ଭାଗବତ, ଅଚ୍ୟୁତାନନ୍ଦ, ଯଶୋବନ୍ତ ଓ ଅନନ୍ତଙ୍କ ପରି ପ୍ରତିଭାବାନ ଭକ୍ତକବିମାନଙ୍କର ବହୁବିଧ ରଚନା ସମୁହରେ ପୁଷ୍କଳ ହେବାକୁ ଲାଗିଲା । ଏହି ଶତାବ୍ଦୀରେ ନାରାୟଣ ଅବଧୂତ ସ୍ୱାମୀଙ୍କ ରୁଦ୍ରାସୁଧାନିଧି ନରସିଂହ ସେଣଙ୍କ ଗୋପକେଳି, ଧରଣୀଧରଙ୍କ ଗୀତଗୋବିନ୍ଦ ପଦ୍ୟାନୁବାଦ, ଅର୍ଜୁନ ଦାସଙ୍କ ରାମବିଭା ଓ କଳ୍ପଲତା, ବ୍ରନ୍ଦାବନ ଦାସଙ୍କ ରସବାରିଧି, ଚାନ୍ଦଦାସଙ୍କର ଗୋପୀ ଚନ୍ଦନ ଚଉତିସା, ଶିଶୁ ଶଙ୍କରଙ୍କ ଉଷାଭିଳାଷ, ଦେବଦୁର୍ଲ୍ଲଭଙ୍କ ରହସ୍ୟ ମଞ୍ଜରୀ, ରାୟ ରାମାନନ୍ଦଙ୍କର ଜଗନ୍ନାଥବଲ୍ଲଭନାଟକମ୍, ଜୟଦେବ ଆଚାର୍ଯ୍ୟଙ୍କ ପୀୟୂଷ ଲହରୀ ଓ ବୈଷ୍ଣବାମୃତମ୍, ପୁରୁଷୋତ୍ତମ ଭଞ୍ଜଙ୍କର ଛନ୍ଦୋମଖାନ୍ତ ଓ କୃଷ୍ଣଦାସଙ୍କର ଗୀତ ପ୍ରକାଶ, ପ୍ରଭୃତି କେତେକ ଉତ୍କୃଷ୍ଟ କାଳଜୟୀ ସାହିତ୍ୟ ସୃଷ୍ଟି ହୋଇଥିଲା । ଏହି ସାହିତ୍ୟମାନଙ୍କରେ ଯେପରି ଭାବରେ ଗୀତଗୋବିନ୍ଦର ପ୍ରଭାବ ପ୍ରତିଫଳିତ ହୋଇଛି, ତାହା ଯଥାର୍ଥରେ ଗବେଷଣାର ବିଷୟ । ଏହାର କାରଣ ସ୍ୱରୂପ ଏତିକି କୁହାଯାଇପାରେ ଯେ, ଏହି ଉତ୍କଳୀୟ ପଞ୍ଚସଖା ଯୁଗରେ ନବଦ୍ୱୀପ ସମାଗତ ଶ୍ରୀ ଚୈତନ୍ୟ ତଦୀୟ ଅନୁଗାମୀ ସନ୍ଥ ବୈଷ୍ଣବ ଓ ଷଡ଼ଗୋସ୍ୱାମୀ ପ୍ରଭୃତି ବିଦ୍ୱାନଙ୍କ ଗହଣରେ ରାଜା ପ୍ରତାପରୁଦ୍ର ଦେବଙ୍କର ପ୍ରଷ୍ଠପୋଷକତା ଓ ସାନ୍ନିଧ୍ୟ ଲାଭକରି ଭକ୍ତି ଆନ୍ଦୋଳନ ଚରମ ଉତ୍କର୍ଷ ଲାଭ କରିଥିଲା । ଏହାର ମୂଳବୀଜ ଯେ ଜୟଦେବଙ୍କ ଗୀତଗୋବିନ୍ଦ ରଚନାକାଳରୁ ରାଧାମାଧବ ଉପାସନାରେ ପ୍ରତିଫଳିତ ହୋଇ, ଜଗନ୍ନାଥଧର୍ମରେ ଏକୀଭୂତ ହୋଇ, ଯୋଗଜନ୍ମା ଟୀକାକାର ଶ୍ରୀଧର ସ୍ୱାମୀ ପ୍ରଭୃତି ବିଦ୍ୱାନମାନଙ୍କ ପ୍ରତିଭାରେ ଦୀପ୍ତିମାନ ହୋଇ ଓଡିଆ ଜାତି ପ୍ରାଣରେ ଝଂକୃତ ହେଉଥିଲା, ଏହା ନିଃସନ୍ଦେହରେ କୁହାଯାଇପାରେ ।

ନାରାୟଣ ଅବଧୂତ ସ୍ୱାମୀଙ୍କ ରଚିତ ରୁଦ୍ରସୁଧାନିଧି ଏକ ପଦ୍ୟ ମିଶ୍ରିତ ଗଦ୍ୟ ହେଲେ ହେଁ ଏହା ଓଡିଆ ସାହିତ୍ୟର ପ୍ରଥମ ଗଦ୍ୟ ରଚନାର ମାନ୍ୟତା ଲାଭ କରିଅଛି । ଗୀତଗୋବିନ୍ଦର 'ଜୟ ଜୟ ଦେବ ହରେ' ଅନୁକରଣରେ ରୁଦ୍ରସୁଧାନିଧିରେ ଜୟ ଜୟ ଶିବଶମ୍ଭୋ, ଜୟ ଜୟ ତ୍ରିଲୋଚନ, ଜୟ ଜୟ ନରକଉଦ୍ଧାରଣ ପ୍ରଭୃତି ଘୋଷା ସନ୍ନିବିଷ୍ଟ ହୋଇଛି । ଏହା ବ୍ୟତୀତ ମୁନି-ମନ-ମାନସ-ହଂସ, ରସ-ଜଳ-କମଳ-ନିଧାନ, କୁଚ-କୁମ୍ଭ-କୁଙ୍କୁମ-ଲେପନ ପ୍ରଭୃତି ବର୍ଣ୍ଣନା ରହିଛି ଓ ଏହାର ଆଳଙ୍କାରିକତା, ଶୃଙ୍ଗାରିକତା ଓ ଲାଳିତ୍ୟପୂର୍ଣ୍ଣ ପଦସଂଯୋଜନା ଏହାକୁ ଗୀତଗୋବିନ୍ଦର ଏକ ପ୍ରଭାବିତ ସାହିତ୍ୟ ହିସାବରେ ପରିଗଣିତ କରିବାକୁ ଉପାଦାନ ଯୋଗାଇଛି । ଗଜପତି ପ୍ରତାପରୁଦ୍ରଙ୍କର ସଭାପଣ୍ଡିତ ନରସିଂହ ସେଣ 'ଗୋପକେଳି' ଶାସ୍ତ୍ରର ପ୍ରଣେତା । ଏହା ରାଧାକୃଷ୍ଣଙ୍କର ବସନ୍ତରାସ କଥାବସ୍ତୁକୁ ନେଇ ଗୀତଗୋବିନ୍ଦ ଶୈଳୀରେ ରଚିତ ଓ ଏହା ଯୋଗୀମାନଙ୍କ ସହିତ ଶ୍ରୀକୃଷ୍ଣଙ୍କ କାମକ୍ରୀଡାର ଏକ ନିଛକ ପରିପ୍ରକାଶ । ଗୀତଗୋବିନ୍ଦର ଦ୍ୱାଦଶ ସର୍ଗର ଅନୁବାଦ ଷୋଡଶ ସର୍ଗାତ୍ମିକା ଲାଳିତ୍ୟପୂର୍ଣ୍ଣ ପଦବିନ୍ୟାସ ମାଧ୍ୟମରେ ପ୍ରାଚୀନ କବି ଧରଣୀଧର କରିଯାଇଛନ୍ତି । ଏହି ଓଡିଆ ଅନୁବାଦ ଅତୀବ ରମଣୀୟ, ହୃଦୟଗ୍ରାହୀ ଓ ପ୍ରାଞ୍ଜଳ ହୋଇଥିବାରୁ ଓଡିଆ ଜନସମାଜରେ ଏହାର ଆଦୃତି ସର୍ବାଧିକ, ଯାହାକି ପୋଥି ରଚନା ସମୟରୁ ପୁସ୍ତକ ପ୍ରଚଳନ ପର୍ଯ୍ୟନ୍ତ ସବୁକ୍ଷେତ୍ରରେ ଏହା ସର୍ବାପେକ୍ଷା ବହୁଳ ପ୍ରସାରିତ ପୁସ୍ତକ ।

ଗୋପୀଚନ୍ଦନ ଚଉତିଶାର ପ୍ରଣେତା ଚାନ୍ଦଦାସ 'ଗୋପୀଚନ୍ଦନ' ନାମକ ଏକ ଦୁର୍ମୁଲ୍ୟ ଗ୍ରନ୍ଥ ପ୍ରଣୟନ କରିଥିଲେ । ଗୋପୀ କୃଷ୍ଣକେଳୀ ପ୍ରସଙ୍ଗର ବର୍ଣ୍ଣନାରେ ଏହା ଶତମୁଖ ଏହାର କଥାବସ୍ତୁ ଗୀତଗୋବିନ୍ଦ ଅନୁକରଣରେ ରଚିତ । କବି ବୃନ୍ଦାବନ ଦାସ ଗୀତଗୋବିନ୍ଦର ଏକ ଓଡିଆପଦ୍ୟ ଅନୁବାଦ କରି ଯାଇଛନ୍ତି । ଏହାର ନାମ 'ରସବାରିଧି' । ଏହି 'ରସବାରିଧି'ର ବିଶେଷତ୍ୱ ହେଉଛି ଯେ ଏଥିରେ କେବଳ ଗୀତଗୋବିନ୍ଦର ମୂଳପାଠଗୁଡିକରର ଅନୁବାଦ ସନ୍ନିବେଶିତ ହୋଇଅଛି ଓ ପ୍ରକ୍ଷିପ୍ତ ଶ୍ଳୋକଗୁଡିକୁ ବାଦ୍ ଦିଆଯାଇଛି । କବି ବୃନ୍ଦାବନ ଦାସ ଲେଖିଛନ୍ତି -

'ଗାଥା ଚବିଶ ଶ୍ଳୋକ ବାଆସ୍ତରୀ
ସର୍ଗ ଦ୍ୱାଦଶ ବର୍ଣ୍ଣ ଆଦି କରି ।'

ଦେବ ଦୁର୍ଲ୍ଲଭ ଦାସଙ୍କ 'ରହସ୍ୟମଞ୍ଜରୀ' ଏକ କୃଷ୍ଣରସାପ୍ଲୁତ ମନୋଜ୍ଞ କାବ୍ୟ । ଉଭୟ ଭାଷା ବିନ୍ୟାସ, ଭାବଗର୍ଭକ ହୋଇଥିବାରୁ ଏବଂ ସରଳ ସାବଲୀଳ କଥିତ ଭାଷାରେ ରଚିତ ହୋଇଥିବାରୁ ଓଡିଶାରେ ଏହାର ବହୁଳ ପ୍ରଚଳନ ଦୃଷ୍ଟିଗୋଚର ହୋଇଥାଏ । ସେହିପରି 'ପ୍ରେମ ପଞ୍ଚାମୃତ' ଭୂପତି ପଣ୍ଡିତଙ୍କ ରଚିତ ଏକ ପୂର୍ଣ୍ଣ ଶୃଙ୍ଗାର ଆଧାରିତ କାବ୍ୟ ଉଭୟ ନାୟକ ଓ ନାୟିକା ପ୍ରକରଣ, ପ୍ରେମର ଉନ୍ମେଷ, ବକାଶ, ବିପ୍ରଲୟମ୍ଭ ଓ ସମ୍ଭୋଗ ପରିପାଟୀ ଏଥିରେ ଚମତ୍କାର ଭାବରେ ବର୍ଣ୍ଣିତ । ଗୀତଗୋବିନ୍ଦର ନୃତ୍ୟାବିନୟ କିପରି ଷୋଡଷ ଶତାବ୍ଦୀରେ ପ୍ରଚଳିତ ଥିଲା ତାହାର ଏକ ବିବରଣ ମଧ୍ୟ ଏହି 'ପ୍ରେମ ପଞ୍ଚାମୃତ'ରୁ ମିଳିଥାଏ ।

'ଶ୍ରୀ ଜୟଦେବ କବି କୃତ । ଗାୟଣୀ ଗାଇଲେ ବସନ୍ତ ॥
ବୀଣା ମୃଦଙ୍ଗ ତାଳ ନାଦେ । ନାଚୁଣୀ ନାଚନ୍ତି ଆନନ୍ଦେ ॥

ଗଜପତି ପ୍ରତାପରୁଦ୍ରଙ୍କର ଏକାନ୍ତ ପ୍ରିୟ ରାୟ ରାମାନନ୍ଦ ସଂସ୍କୃତ ସାହିତ୍ୟରେ ଜଣେ ଅସାଧାରଣ ବିଦ୍ୱାନ ଓ ରାଧାକୃଷ୍ଣ ପ୍ରେମଲୀଳାର ନିଷ୍ଠାପର ଉପାସକ ଥିଲେ । ଅଚିନ୍ତ୍ୟ ଭେଦାଭେଦ ଦର୍ଶନକୁ ଉତ୍ତମ ରୂପରେ ଅବଗାହନ କରି ଏହାର ତତ୍ତ୍ୱକୁ ସେ ଯେପରି ପ୍ରାଞ୍ଜଳ ଭାବରେ ବୁଝାଇଥିଲେ ତା ଦ୍ୱାରା ଚୈତନ୍ୟ ମହାପ୍ରଭୁ ବିଶେଷ ଚମତ୍କୃତ ହୋଇଥିଲେ । ଏହାର ସୁବିସ୍ତୃତ ବର୍ଣ୍ଣନା କୃଷ୍ଣଦାସ କବିରାଜ ଗୋସ୍ୱାମୀଙ୍କ ଶ୍ରୀ ଚୈତନ୍ୟ ଚରିତାମୃତରେ ଦେଖିବାକୁ ମିଳେ । ସେହି ଅସାଧାରଣ ପାଣ୍ଡିତ୍ୟର ପରିପ୍ରକାଶ ହେଉଛି ଶ୍ରୀ ଜଗନ୍ନାଥ ବଲ୍ଲଭ ନାଟକ । ଏହି ସଂସ୍କୃତ ନାଟକରେ ପାଞ୍ଚଟି ଅଙ୍କ ରହିଛି ଓ ଏହି ଅଙ୍କଗୁଡିକ ହେଲା- ପୂର୍ବରାଗ, ଭାବାଙ୍କୁର, ଭାବପ୍ରକାଶ, ରାଧାଭିସାର ଓ ରାଧା ସଙ୍ଗମ । ସେହିପରି ଏହି ନାଟକରେ ଏକୋଇଶିଟି ପ୍ରବନ୍ଧ ରହିଛି ଓ ଏଗୁଡିକର ରଚନା ଶୈଳୀ ଗୀତଗୋବିନ୍ଦ ତୁଲ୍ୟ ପ୍ରତୀୟମାନ ହୋଇଥାଏ । ଉଦାହରଣ ସ୍ୱରୂପ -

କେଳି ବିପିନଂ ପ୍ରବଶତି ରାଧା । ପ୍ରତିପଦ ସମୁଦିତ ମନସିଜ ବାଧା ॥
ବିନିଦଧତି ମୃଦ୍ୟୁ ମନ୍ଥର ପାଦଂ । ରଚୟତି କୁଞ୍ଜର ଗତିମନୁବାଦମ୍ ॥
ଜନୟତୁ ରୁଦ୍ରଗଜାଧିପ ମୁଦିତଂ । ରାମାନନ୍ଦ ରାୟ କବି ଗଦିତମ୍ ॥(୧୭)

ଜଗନ୍ନାଥ ବଲ୍ଲଭ ନାଟକରେ ମୋଟ ୨୦ଟି ଛନ୍ଦ ପ୍ରୟୋଗ କରାଯାଇଛି । ବିଭିନ୍ନ ରାଗ ରାଗିଣୀର ପରିପାଟୀରେ ଏଗୁଡିକ ସମୃଦ୍ଧ । ଏହାର ଗାୟନ ଶୈଳୀ ମଧ୍ୟ ଚମତ୍କାର । ରାୟ ରାମାନନ୍ଦ ଏହି ନାଟକଟିକୁ ଦେବଦାସୀମାନଙ୍କୁ ଶିକ୍ଷା ଦେଇ ନିଜେ ନୃତ୍ୟ ନିର୍ଦ୍ଦେଶନା କରାଇ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସମୀପରେ ନୃତ୍ୟାଭିନୟ କରାଉଥିଲେ । ଶ୍ରୀ ଜୟଦେବଙ୍କ ଗୀତଗୋବିନ୍ଦର ଅନୁକରଣରେ ଲିଖିତ ଏହି ନାଟକକୁ ଦ୍ୱିତୀୟ ଗୀତଗୋବିନ୍ଦ ଆଖ୍ୟା ଦିଆଯାଇଥାଏ । ସମକାଳୀନ ଜୀବଦେବାଚାର୍ଯ୍ୟଙ୍କର ଭକ୍ତି ବୈଭବ, ତାଙ୍କ ପୁତ୍ର ଜୟଦେବ ଆଚାର୍ଯ୍ୟଙ୍କର ପୀୟୁଷ ଲହରୀ ଓ ବୈଷ୍ଣବାମୃତମ୍ ପ୍ରଭୃତି ଗ୍ରନ୍ଥଗୁଡିକର ରାଧାମାଧବ କେଳି କଥା ପ୍ରବନ୍ଧର ଗୁରୁତ୍ୱ ପୂର୍ଣ୍ଣ ଅବତାରଣା ଦୃଷ୍ଟିଗୋଚର ହୋଇଥାଏ । ସେହିପରି ମୁକୁନ୍ଦଦେବଙ୍କର ରାଜକବି କୃଷ୍ଣଦାସ ବଡଜେନା ମହାପାତ୍ର ଗୀତଗୋବିନ୍ଦର ଅନୁକରଣରେ 'ଗୀତପ୍ରକାଶ' ଗ୍ରନ୍ଥ ରଚନା କରିଥିଲେ ଓ ଏହା ରାଧମାଧବଙ୍କର କେଳି କଥା ରସ ଖଚିତ କାବ୍ୟ ବୋଲି ସେ ଉଲ୍ଲେଖ କରିଯାଇଛନ୍ତି ।

'ରାଧାମାଧବ କେଳି କଥାରସଚ୍ୟୟିତଂ ନବମବିଧି ଗୀତଂ ।
ସୁଖୟତୁ ସଜ୍ଜନ ଚିତ୍ତସନ୍ତତଂ କୃଷ୍ଣଦାସ କବିଗୀତଂ ॥'

ମହାପ୍ରଭୁ ଶ୍ରୀଚୈତନ୍ୟ ଓ ତଦୀୟ ଅନୁଗାମୀ ବଙ୍ଗୀୟ ବୈଷ୍ଣବ ସମାଜଙ୍କ ଉପରେ ଗୀତଗୋବିନ୍ଦର ଅଖଣ୍ଡ ପ୍ରଭାବ ପଡିଥିଲା । ଶ୍ରୀ ଚୈତନ୍ୟ ଚରିତାମୃତ ମଧ୍ୟଲୀଳା ଦ୍ୱିତୀୟ ଅଧ୍ୟାୟର ବର୍ଣ୍ଣନାନୁସାରେ -

'ଚଣ୍ଡୀଦାସ ବିଦ୍ୟାପତି ରାୟେର ନାଟକ ଗୀତି
କର୍ଣ୍ଣାମୃତ ଶ୍ରୀ ଗୀତ ଗୋବିନ୍ଦ,
ସ୍ୱରୂପ ରାମାନନ୍ଦ ସନେ ମହାପ୍ରଭୁ ରାତ୍ରଦିନେ
ଗାୟ ଶୁନେ ପରମ ଆନନ୍ଦ ।

ଏଥିରୁ ସ୍ପଷ୍ଟ ରୂପରେ ପ୍ରମାଣିତ ହୁଏ ଯେ ଗୀତଗୋବିନ୍ଦ, ଗୀତଗୋବିନ୍ଦ ପ୍ରଭାବିତ ଚଣ୍ଡୀଦାସ ଓ ବିଦ୍ୟାପତିଙ୍କ ରଚନାବଳୀ,

ରାୟ ରାମାନନ୍ଦଙ୍କର ଜଗନ୍ନାଥ ବଲ୍ଲଭ ନାଟକ, ଓ ଲୀଳାଶୁକ ବଲ୍ଵମଙ୍ଗଳ ବିରଚିତ ଶ୍ରୀକୃଷ୍ଣକର୍ଣ୍ଣାମୃତାଦି ରାଧାକୃଷ୍ଣ ଶୃଙ୍ଗାର ରସ ବିମଣ୍ଡିତ ମନମୁଗ୍ଧକର ଗୋପୀଭାବ ସମ୍ବଳିତ ରଚନାଗୁଡିକରେ ଶ୍ରୀଚୈତନ୍ୟ ମହାପ୍ରଭୁ ସ୍ୱରୂପ ଦାମୋଦର ଗୋସ୍ୱାମୀଙ୍କର ରସାପ୍ଲୁତ ବ୍ୟାଖ୍ୟା ଓ ରାୟ ରାମାନନ୍ଦଙ୍କର ସାନ୍ନିଧ୍ୟ ଲାଭକରି ନିରନ୍ତର ଏହି ରସରେ ଭାବିତ ହୋଇ ନିମଗ୍ନ ରହୁଥିଲେ । ଏହି ସୁମଧୁର ସାଙ୍ଗୀତିକତା ହିଁ ଶ୍ରୀ ଚୈତନ୍ୟଙ୍କ ହୃଦୟ ବିଗଳିତ କରି ଯୁଗଧର୍ମ ହରିନାମ ସଂକୀର୍ତ୍ତନ ପ୍ରବର୍ତ୍ତନ କରିବାରେ ନିର୍ଭରଯୋଗ୍ୟ ସହାୟତା ଦେଇଥିଲା ।

ଶ୍ରୀ ଜୟଦେବଙ୍କ ଶ୍ରୀଗୀତଗୋବିନ୍ଦର ଆସ୍ୱାଦନୀୟତାରେ ଶ୍ରୀ ଚୈତନ୍ୟ ମୁଗ୍ଧ ହେବାରୁ ଏହା ତଦନୁଗ ବଙ୍ଗୀୟ ଷଡ ଗୋସ୍ୱାମୀମାନଙ୍କର ଏକାନ୍ତ ପ୍ରିୟ ଗ୍ରନ୍ଥ ରୂପେ ବିବେଚିତ ହେଲା ଓ ଏହାର କଥାବସ୍ତୁ, ପ୍ରେମ ମାଧୁର୍ଯ୍ୟ, ଭାଷା ଲାଳିତ୍ୟ ପ୍ରଭୃତିର ପ୍ରଭାବରେ ସେମାନଙ୍କଦ୍ୱାରା ସୃଷ୍ଟ ସାହିତ୍ୟ ପରିପୁଷ୍ଟ ହେଲା । ଶ୍ରୀ ରୂପ ଗୋସ୍ୱାମୀଙ୍କର ବିଦଗ୍ଧ ମାଧବ ନାଟକ, ଲଳିତ ମାଧବ ନାଟକ, ହଂସଦୂତ, ସ୍ତବମାଳା, ପଦ୍ୟାବଳୀ, ଦାନକେଳି କୌମୁଦି, ଉଜ୍ଜଳ ନୀଳମଣୀ, ଉଦ୍ଧବ ସନ୍ଦେଶ ଓ ଗୋବିନ୍ଦ ବିରୁଦାବଳୀ ପ୍ରଭୃତି ଏହି ଶୃଙ୍ଗାରଧର୍ମୀ ରାଧାକୃଷ୍ଣ ପ୍ରେମଲୀଳା ସମ୍ବଳିତ ରଚନାରେ ସମୃଦ୍ଧ । ତାଙ୍କର ଜ୍ୟେଷ୍ଠ ଭ୍ରାତ ସନାତନ ଗୋସ୍ୱାମୀ ମଧ୍ୟ ଶ୍ରୀକୃଷ୍ଣ ଲୀଳାସ୍ତବ ମାଧ୍ୟମରେ ରାଗାନୁଗା ଭଜନ ପଦ୍ଧତିର ଶିକ୍ଷାଦାନ କରିଛନ୍ତି । ରୂପ ଗୋସ୍ୱାମୀଙ୍କର ଭ୍ରାତୃଷ୍ପୁତ୍ର ଜୀବ ଗୋସ୍ୱାମୀ ଜଣେ ବିଶିଷ୍ଟ ସର୍ବକାଳୀୟ ଶ୍ରେଷ୍ଠ ସଂସ୍କୃତ ବିଦ୍ୱାନ । ଶ୍ରୀକୃଷ୍ଣ ଭକ୍ତିରସରେ ଦ୍ରବୀଭୁତ ତାହାଙ୍କ ଲେଖନୀରୁ ଅନେକ ରଚନା ନିଃସୃତ ହୋଇଅଛି । ଜୀବଗୋସ୍ୱାମୀଙ୍କ ଷଟ୍ ସନ୍ଦର୍ଭ ଯଥା - ତତ୍ତ୍ୱ ସନ୍ଦର୍ଭ, ଭାଗବତ ସନ୍ଦର୍ଭ, ପରମାତ୍ମ ସନ୍ଦର୍ଭ, କୃଷ୍ଣ ସନ୍ଦର୍ଭ, ଭକ୍ତି ସନ୍ଦର୍ଭ ଓ ପ୍ରୀତି ସନ୍ଦର୍ଭଗୁଡିକ ରାଧାକୃଷ୍ଣ ଭକ୍ତିଭାବର ମାଧୂର୍ଯ୍ୟ ରସାଶ୍ରୟୀ ବିଚାରଧାରାକୁ ନେଇ ଗୋଟିଏ ଗୋଟିଏ ସୁବିଖ୍ୟାତ ଦର୍ଶନ ଶାସ୍ତ୍ର । ଏହା ବ୍ୟତୀତ ତାଙ୍କର ଗୋପାଳ ବିରୁଦାବଳୀ, ମାଧବ ମହୋତ୍ସବ ଓ ଗୋପାଳଚମ୍ପୁ ପ୍ରସିଦ୍ଧ । ଗୋପାଳ ଚମ୍ପୁ ପୂର୍ବ ଚମ୍ପୁ ଓ ଉତ୍ତର ଚମ୍ପୁ ଏହିପରି ଦୁଇ ଭାଗରେ ବିଭକ୍ତ । ପୂର୍ବ ଚମ୍ପୁରେ ବୃନ୍ଦାବନୀୟ ଲୀଳ ଏବଂ ଉତ୍ତର ଚମ୍ପୁରେ ହାରିକା ଲୀଳା ବର୍ଣ୍ଣନା କରାଯାଇଛି । ଗୋପାଳ ଚମ୍ପୁରେ ଗୀତଗୋବିନ୍ଦର ପ୍ରଭାବ ନିମ୍ନୋକ୍ତ ମତେ ଲକ୍ଷ୍ୟ କରାଯାଇପାରେ -

'ରାଧା-ଜୀବନ-ଜୀବନ ଗୋବ୍ରଜ ଧନ ଗୋକୁଳ
ସରସୀମରାଳ, ଜୟ ଜୟ କୃଷ୍ଣହରେ
ରାଧା ମୋଦ ରସାକର ସରସୀଜବର ଗୋକୁଳ
ମଣ୍ଡଳ ନାଳ, ଜୟ ଜୟ କୃଷ୍ଣହରେ
ରାଧା ଭୂଷଣ ଭୂଷଣ ଗତ ଦୂଷଣ ଗୋକୁଳ
ହୃଦିଳ ଭୁପାଳ, ଜୟ ଜୟ କୃଷ୍ଣହରେ
ରାଧା ବାଧା ମୋଚନ ସୁଖ ରୋଚନ ବିଦଳିତ
ଗୋକୁଳ କାଳ, ଜୟ ଜୟ କୃଷ୍ଣହରେ

ଜୟ ଜୟ କୃଷ୍ଣହରେ ଘୋଷାଟି ଏଠାରେ ବିଶେଷ ଭାବରେ ଲକ୍ଷ୍ୟ କରିବାର କଥା ।

ମହାପ୍ରଭୁ ଶ୍ରୀଚୈତନ୍ୟଙ୍କ ଅନୁଗାମୀ ଅନ୍ୟ ଏକ ବିଖ୍ୟାତ ଟୀକାକାର ହେଉଛନ୍ତି ଚୈତନ୍ୟ ଦାସ । ସେ ବୃନ୍ଦାବନ ଧାମରେ ରୂପ ଗୋସ୍ୱାମୀଙ୍କ ଦ୍ୱାରା ସ୍ଥାପିତ ଗୋବିନ୍ଦଙ୍କୁ ସେବାପୂଜା କରିବା ପାଇଁ ନିୟୋଜିତ ହୋଇଥିଲେ । ତେଣୁ ତାଙ୍କୁ ପୂଜାରୀ ଗୋସ୍ୱାମୀ ନାମରେ ମଧ୍ୟ ବଙ୍ଗୀୟ ବୈଷ୍ଣବମାନେ ସମ୍ବୋଧନ କରୁଥିଲେ । ସେ ଗୀତଗୋବିନ୍ଦର 'ବାଳବୋଧିନୀ' ଟୀକା ରଚନା କରିଥିଲେ । ପ୍ରମାଣ ସ୍ୱରୂପ ଏହାର ନିମ୍ନୋକ୍ତ ଉଦ୍ଧୃତି ଦିଆଯାଇପାରେ ।

'ଶ୍ରୀ ଚୈତନ୍ୟ କୃପାସିନ୍ଧୁ କଣୋନ୍ମତ୍ତେନ କେନଚିତ୍,
ଟୀକା ସଂଗ୍ରହୀତେ ଗୀତଗୋବିନ୍ଦସ୍ୟ ସମାସତଃ
ସ୍ୱୟଂ ବୋଦ୍ଧୁମଭିପ୍ରାୟଂ ଜୟଦେବ ମହାମତେଃ
ଟୀକା ଚୈତନ୍ୟ ଦାସେନ ପ୍ରଥ୍ୟତେ ବାଳବୋଧିନୀ ॥'(୧୮)

**ସପ୍ତଦଶ ଶତାବ୍ଦୀ :**

ଷୋଡଶ ଶତାବ୍ଦୀରୁ ପ୍ରବାହିତ ଭକ୍ତି ମନ୍ଦାକିନୀ ଧାରା ଏହି ସପ୍ତଦଶ ଶତାବ୍ଦୀରେ ପୌନଃପୌନିକ ଭାବରେ ବୃଦ୍ଧିପ୍ରାପ୍ତ ହେଲା । କବି ଓ ବିଦ୍ୱାନଗଣ ନିଜ ନିଜର ସୃଜନଶୀଳତା ବଳରେ ଏହି କାବ୍ୟ ମୁକୁଟମଣି ଗୀତଗୋବିନ୍ଦର ଆଧାରରେ ସ୍ୱକୀୟ ପ୍ରତିଭା ବଳରେ ନବନବାୟମାନ ସାହିତ୍ୟ କୃତି ସୃଷ୍ଟି କରି ଚାଲିଲେ । ରାଜନୈତିକ ପରିବର୍ତ୍ତନ ସହିତ ସାମାଜିକ ପରିବର୍ତ୍ତନ ଅଙ୍ଗାଙ୍ଗୀ ଭାବରେ ଜଡିତ । ସନାତନ ହିନ୍ଦୁ ଧର୍ମାଶ୍ରିତ ସମାଜରେ ଏହି ଶତକ ବେଳକୁ ବର୍ହିଃଶତ୍ରୁ ଓ ବିଦେଶାଗତମାନଙ୍କର ଉପସ୍ଥିତି ଆସ୍ତେ ଆସ୍ତେ ଅନୁଭୂତ ହେବାକୁ ଲାଗିଲା । ହେଲେ ହିଁ, ସାହିତ୍ୟ ଓ ଧର୍ମର ମୁଖ୍ୟସ୍ରୋତ ଯାହାକି ଉତ୍କଳୀୟ ଧର୍ମଧାରାରେ ଶ୍ରୀଜଗନ୍ନାଥଙ୍କୁ ଆଶ୍ରିତ କରି ଓ କେନ୍ଦ୍ର କରି ବିକଶିତ ହୋଇଥିଲା, ସେଥିରେ ବିଶେଷ ପରିବର୍ତ୍ତନ ହେଲା ନାହିଁ । ଶ୍ରୀକୃଷ୍ଣ ଓ ଜଗନ୍ନାଥଙ୍କୁ ଏକ ଓ ଅଭିନ୍ନ ଭାବରେ ଦେଖୁଥିବା ଓଡିଆ ଜାତି ପକ୍ଷରେ ଶ୍ରୀ ଜୟଦେବକୃତ ଗୀତଗୋବିନ୍ଦ ଓ ଦଶାବତାର ସ୍ତୋତ୍ର ଏକ

ବିଶେଷ ସ୍ଥାନ ଅଧିକାର କରିନେଇ ସାରିଥିଲା । ଯେପରି ଶ୍ରୀଜଗନ୍ନାଥ କୋଟି କୋଟି ଉତ୍କଳୀୟ ପ୍ରାଣର ଅଘୋଷିତ ଅଥଚ ନିର୍ଣ୍ଣାୟକ ଭାବରେ ସାବ୍ୟସ୍ତ ହୋଇପାରିଥିବା ରାଷ୍ଟ୍ରଦେବତା, ସେହିପରି ଦଶାବତାର ଓ ଗୀତଗୋବିନ୍ଦ ଏଜାତିର ଜାତୀୟ ସଙ୍ଗୀତ ଏବଂ ଶ୍ରୀ ଜୟଦେବ ଏହି ଜାତିର ଜାତୀୟ କବି । ଏହି ପ୍ରେକ୍ଷାପଟରେ ସପ୍ତଦଶ ଶତାବ୍ଦୀରେ ସାହିତ୍ୟ କିପରି ଭାବରେ ଶ୍ରୀଗୀତଗୋବିନ୍ଦଦ୍ୱାରା ପ୍ରଭାବିତ ହୋଇ ସର୍ବଭାରତୀୟ ସ୍ତରରେ ଏହାର ସୌରଭ ବିଚ୍ଛୁରିତ କରିଥିଲା, ଏହା ଏକାନ୍ତ ବିଚାର୍ଯ୍ୟ ।

ଏହି ଶତାବ୍ଦୀରେ ଭକ୍ତକବି ଦୀନକୃଷ୍ଣ ଜଳେଶ୍ୱରରେ ଜନ୍ମଲାଭକରି ତଦୁତ୍ତାରୁ ଶ୍ରୀକ୍ଷେତ୍ର ବାସ ଓ ଢେଙ୍କାନାଳ ବ୍ରାହ୍ମଣୀ ନଦୀ ତଟସ୍ଥ ଏକଘରିଆ ଗ୍ରାମରେ ଶ୍ରୀକନକେଶ୍ୱର ଲିଙ୍ଗ ନିକଟରେ ଅବସ୍ଥାନ କରି ବାଣୀ ସାଧନା କରିଥିଲେ । ତାଙ୍କ ରଚିତ ଅନେକାନେକ ଗ୍ରନ୍ଥ ମଧ୍ୟରୁ ରସକଲ୍ଲୋଳ, ରସବିନୋଦ ପ୍ରଭୃତି ତାହାଙ୍କୁ ଅମରତ୍ୱ ପ୍ରଦାନ କରିଛି। ମହାତ୍ମା ଜନ୍ ବିମ୍ସ୍ ଏହି ରସ କଲ୍ଲୋଳକୁ ଇଂରାଜୀରେ ଅନୁବାଦ କରି ଏହାର ଏକ ଟୀକା ରଚନା କରିବା ଦ୍ୱାରା ବିଶ୍ୱବାସୀ ଏହି ମହାନ କାବ୍ୟ ବିଷୟରେ ଅବଗତ ହୋଇପାରିଲେ । ଏହି ଦୀନକୃଷ୍ଣ ଢେଙ୍କାନାଳ ହଦଗଡର ଶାସକ ବଳରାମ ସାମନ୍ତସିହାଂରଙ୍କର ପୃଷ୍ଠପୋଷକତା ଲାଭ କରିଥିଲେ ସେ ଶ୍ରୀମଦଭାଗବତ ଦଶମସ୍କନ୍ଧର ଗୋପଲୀଳା ଓ ଏହାର ରାଧାକୃଷ୍ଣଙ୍କର ବସନ୍ତ କାଳୀନ ରାସଲୀଳାର ସମ୍ମିଶ୍ରଣରେ 'ଅମୃତ ସାଗର ବୋଲି' ନାମକ ଏକ ଅନବଦ୍ୟ କାବ୍ୟ ସୃଷ୍ଟି କରିଥିଲେ । ସର୍ବମୋଟ ୪୫ ଅଧ୍ୟାୟ ବିଶିଷ୍ଟ ଏହି ଗ୍ରନ୍ଥରେ କେବଳ କୃଷ୍ଣଚରିତ ଦେଖିବାକୁ ମିଳେ । ତନ୍ମଧ୍ୟରୁ ତ୍ରୟୋଦଶ ଅଧ୍ୟାୟରୁ ଦ୍ୱାତ୍ରିଂଶ ଅଧ୍ୟାୟ ମଧ୍ୟରେ ଗୀତଗୋବିନ୍ଦର ପଦ୍ୟାନୁବାଦ ସନ୍ନିହିତ । ଏହାର ଅନ୍ତିମ ଛାନ୍ଦର ବର୍ଣ୍ଣନା ନିମ୍ନମତେ ହୋଇଅଛି -

'ମହାକାବ୍ୟ ଗୀତଗୋବିନ୍ଦ ଯେହୁ । ଏହିଠାରୁ ଅର୍ଥ ବଢ଼ିଲା ସେହୁ ।
ବାସ୍ତରି ଶୋଳକ୍ଷ୍ୟ ଚବିଶ ଗାଥା । ଏହି ବୋଲିରେ ଅଛି ସବୁ କଥା ॥
ଶ୍ରୀ ଗୀତଗୋବିନ୍ଦ ଅର୍ଥର ବାଣୀ । ସାନ୍ନିଧ୍ୟ କରି ଭେଟାଇଲି ଆଣି ॥
ଆଜ୍ଞା ଦେଲେ ଯହୁଁ ଶ୍ରୀଜଗନ୍ନାଥ । ତେଣୁ ସେ କହିଲି ଏଥିର ଅର୍ଥ ॥'

(ଅମୃତ ସାଗର ବୋଲି, ୩୩ ଅଧ୍ୟାୟ, ୧ରୁ ୪ ପଦ)

ବଜରୀ ଦାସକୃତ 'ଅର୍ଥ ଗୋବିନ୍ଦ' ୨୭ଟି ଅଧ୍ୟାୟ ବିଶିଷ୍ଟ ଓ ଗୀତଗୋବିନ୍ଦର ଏକ ଅନୁବାଦ । ବଜରୀ ଦାସ ଢେଙ୍କାନାଳ ଅଶୋକ ଖୋଲ ନିବାସୀ ଜଣେ ବିଦେଶୀ ସାଧୁ । ଏହି ଅର୍ଥଗୋବିନ୍ଦ ଅନୁବାଦଟିକୁ ସେ ୧୬୭୩ ଖ୍ରୀଷ୍ଟାବ୍ଦ ରେ ସମାପନ କରିଥିବାର ଉଲ୍ଲେଖ କରିଛନ୍ତି । ଏହି ଅର୍ଥଗୋବିନ୍ଦରେ ସେ ଗୀତଗୋବିନ୍ଦ କାବ୍ୟଟିକୁ -

ସକଳ ଶାସ୍ତ୍ର ଏହୁ ବେଦ ପୁରାଣ। ।
ସର୍ବ ସଙ୍ଗୀତା ଗୀତ ଗୋବିନ୍ଦ ନାମା ॥ ଓ
ଚଉବିଂଶ ଗାଥା ଗୀତମତେ । ବାଆସ୍ତରି ଶ୍ଳୋକ ସହିତେ ॥
ଦ୍ୱାଦଶ ସର୍ଗ ଏହୁ ଭାବ । କାବ୍ୟ ଉପରେ ମହାକାବ୍ୟ ॥
ସକଳ ଶାସ୍ତ୍ର ପରେ ସାର । ବ୍ରହ୍ମଜ୍ଞାନକୁ ଏ ବିଚାର ॥
ସର୍ବ ସଂଶିତ ଗୀତ ଯେଟି । ଗୀତଗୋବିନ୍ଦ ନାମ ସେଟି ॥(୧୯)

ଏହି ବର୍ଣ୍ଣନାରୁ କବିଙ୍କର ଦୃଷ୍ଟିଭଙ୍ଗୀ ସୁସ୍ପଷ୍ଟ । ତାଙ୍କ ଦୃଷ୍ଟିରେ ଗୀତଗୋବିନ୍ଦ ହେଉଛି, ସକଳ ଶାସ୍ତ୍ର ବେଦପୁରାଣାଦିର ସାର, ଏହା ସର୍ବ ସଙ୍ଗୀତମୟ ଅର୍ଥାତ୍ ସମସ୍ତ ପ୍ରକାର ସାଙ୍ଗୀତିକତା ଏଥିରେ ସନ୍ନିବିଷ୍ଟ, ଏହା ଖାଲି ଏକ କାବ୍ୟ ନୁହେଁ ବରଂ ଏହା ଏକ ମହାକାବ୍ୟ, ଏଥିରେ ବ୍ରହ୍ମଜ୍ଞାନର ବିଚାର ନିରୁପିତ ହୋଇଛି, ଏହା ଏକ ସର୍ବସଂଶିତ ଗୀତ - ସେହି ସବୁ ଦୃଷ୍ଟିରୁ ଏହି ଗ୍ରନ୍ଥଟିର ନାମ ହେଉଛି ଗୀତଗୋବିନ୍ଦ । ବାସ୍ତବିକ୍ ଅର୍ଥଗୋବିନ୍ଦ ଗ୍ରନ୍ଥର ପ୍ରଣେତା ବଜରୀ ଦାସଙ୍କର ଏହି ମତ ପରବର୍ତ୍ତୀ ଓ ପୂର୍ବବର୍ତ୍ତୀକାଳର ଗୀତଗୋବିନ୍ଦ ଉପରେ ଏକ ସୁଚିନ୍ତିତ, ସର୍ବଜନାଦୃତ ଓ ସର୍ବସମ୍ମତ ମତ । ଏହି ଗ୍ରନ୍ଥର ଏହି ମୂଲ୍ୟବାନ ଆକଳନ ସହିତ ଏହାର ପ୍ରକ୍ଷିପ୍ତ ଶ୍ଳୋକଗୁଡ଼ିକୁ ଗ୍ରହଣ ନକରିବା ଏହି ଅର୍ଥ ଗୋବିନ୍ଦ ଶାସ୍ତ୍ରର ମହତ୍ତ୍ୱ ।

ଶ୍ରୀ ଜଗନ୍ନାଥ ମିଶ୍ର ନାମକ ଜନୈକ ଓଡ଼ିଆ ପଣ୍ଡିତ ଗୀତଗୋବିନ୍ଦର ପ୍ରଥମ ଓଡ଼ିଆ ଗଦ୍ୟାନୁବାଦ ସପ୍ତଦଶ ଶତାବ୍ଦୀର ଆଦ୍ୟକାଳରେ କରିଥିବା ବିଷୟ ଅନେକ ବର୍ଷପରେ ଲୋକଲୋଚନକୁ ଆସିଲା । ଏହି ସମୟବେଳକୁ ଅତିବଡି ଜଗନ୍ନାଥ ଦାସଙ୍କ ନବାକ୍ଷରୀ ବୃତ୍ତରେ ରଚିତ ଶ୍ରୀମଦ୍ ଭାଗବତ ଏକ ଭକ୍ତି ଭାବପୂର୍ଣ୍ଣ ଧର୍ମଶାସ୍ତ୍ର ରୂପେ ଅସାଧାରଣ ଲୋକପ୍ରିୟତା ଅର୍ଜନ କରିସାରି ଗାଁ ଗାଁରେ ଭାଗବତ ଟୁଙ୍ଗୀର ପ୍ରତିଷ୍ଠା ହୋଇ ସାରିଲାଣି । ଏଥିରେ ଉଦ୍‌ବୁଦ୍ଧ ହୋଇ ଜନୈକ କବି ଉଦ୍ଧବ ଦାସ ତାଙ୍କ ଗୁରୁ ଜଗନ୍ନାଥ ମିଶ୍ରଙ୍କ ଦ୍ୱାରା ସ୍ୱପ୍ନାଦିଷ୍ଟ ହୋଇ ଧରଣୀଧରଙ୍କ ଗୀତଗୋବିନ୍ଦ ପଦ୍ୟାନୁବାଦକୁ ଆଧାରକରି, ସେହି ସପ୍ତଦଶ ଶତାବ୍ଦୀରେ ନବାକ୍ଷରୀ ବୃତ୍ତରେ କଥିତ ଗାଉଁଲୀ ଭାଷାରେ ଏକ ଗୀତଗୋବିନ୍ଦର ଅନୁବାଦ ଲେଖିଥିଲେ । ସେହିପରି ଅନ୍ୟ ଜଣେ ସମସାମୟିକ କବି ତ୍ରିଲୋଚନ ଦାସ ଲଳିତ ମଧୁର ପଦାବଳୀରେ ଗୀତଗୋବିନ୍ଦର ଏକ ଅନୁବାଦ ପ୍ରସ୍ତୁତ କରିଥିଲେ । ଏହାର ବର୍ଣ୍ଣନାନୁସାରେ -

'ପୂର୍ଣ୍ଣ ଦ୍ୱାଦଶ ସର୍ଗ ଏ ମହାକାବ୍ୟ । ଅଷ୍ଟାଦଶ ପୁରାଣାଦି ଏ ବେଦଭାବ ॥
ବେଦ ନିଧାନ ଯେତେ ପୁରାଣାନ । ସର୍ବଶାସ୍ତ୍ରେ ଗୀତଗୋବିନ୍ଦ ନାମ ॥
ଭଣେ ଶ୍ରୀ ଜୟଦେବ ଭାବନା ଭାବୋ ଧନ ଜନସମ୍ପଦ ମଙ୍ଗଳ ଲାଭେ ॥'

ଶ୍ରୀ ଜଗନ୍ନାଥ ମିଶ୍ରଙ୍କ ପ୍ରଥମ ଗଦ୍ୟାନୁବାଦରେ ବିଶେଷ ଭାବରେ ଅନୁପ୍ରାଣୀତ ହୋଇ ଅନନ୍ତ ରଥ ବାଣୀଭୂଷଣ ଏକ ଓଡିଆ ଗଦ୍ୟାନୁବାଦ କରିଥିଲେ । ସେହିପରି ଗଦ୍ୟାନୁବାଦଗୁଡିକର ଆଦୃତିକୁ ଲକ୍ଷ୍ୟକରି ବାସୁଦେବ ମିଶ୍ର ନାମକ ଜନୈକ ପଣ୍ଡିତ ଗୀତଗୋବିନ୍ଦର 'ବାଳବୋଧିନୀ' ନାମକ ଗଦ୍ୟାନୁବାଦ କରିଥିବାର ପ୍ରମାଣ ମିଳିଅଛି ।

ଭୂପତି ପଣ୍ଡିତ ବିରଚିତ 'ପ୍ରେମ ପଞ୍ଚାମୃତ' ଏକ ନବାକ୍ଷରୀ କୃଷ୍ଣକାବ୍ୟ । ଏଥିରେ କୃଷ୍ଣ କିପରି ତାଙ୍କର ମାଧୂର୍ଯ୍ୟମୟ ଚମତ୍କାରିତା ଦ୍ୱାରା ମାନବର ପଞ୍ଚେନ୍ଦ୍ରିୟକୁ ଆକୃଷ୍ଟ କରିଥାନ୍ତି ଓ ଏହି ପଞ୍ଚେନ୍ଦ୍ରିୟ କିପରି ଏହି କୃଷ୍ଣରସ ଆସ୍ୱାଦନକରି ପଞ୍ଚାମୃତ ତୁଲ୍ୟ କୈବଲ୍ୟ ଲାଭ କରିଥାନ୍ତି - ତାହାର ନିଖୁଣ ଜୀବନ୍ତ ବର୍ଣ୍ଣନା କରାଯାଇଛି । ଏହାର ବିଷୟ ବସ୍ତୁ ମୂଳତଃ ଗୀତଗୋବିନ୍ଦରୁ ଗୃହୀତ । ଏହାଛଡା ଦେବଦାସୀ ଗାୟଣିମାନେ କିପରି ଗୀତଗୋବିନ୍ଦ ଗାନ କରନ୍ତି, ତାହାର ଏକ ପ୍ରମାଣ ମିଳିଥାଏ -

'ଶ୍ରୀ ଜୟଦେବ କବିକୃତ । ଗାୟଣି ଗାଇଲେ ବସନ୍ତ ॥
ବୀଣା ମୃଦଙ୍ଗ ତାଳ ନାଦେ । ନାଚୁଣି ନାଚନ୍ତି ଆନନ୍ଦେ ॥''
ପ୍ରେମ ପଞ୍ଚାମୃତ - ପ୍ର ୯୪, ପ୍ରକାଶକ - ପ୍ରାଚୀ ସମିତି

ବାଣପୁରର ପ୍ରସିଦ୍ଧ ରାଜକବି ରଘୁନାଥ ହରିଚନ୍ଦନ ଗୀତଗୋବିନ୍ଦର ଅନୁକରଣରେ ଏକ କାବ୍ୟ ରଚନା କରିବା କଥା ଖୋର୍ଦ୍ଧା ଗଜପତିଙ୍କ ସଭାକବି ହଳଧର ମିଶ୍ରଙ୍କ ସଙ୍ଗୀତ କଳ୍ପଲତାରୁ ଜଣାଯାଏ । ରଘୁନାଥ ହରିଚନ୍ଦନଙ୍କର ବର୍ଣ୍ଣନା ଶୈଳୀ ମଧ୍ୟ ଅତ୍ୟନ୍ତ ମନୋମୁଗ୍ଧକର ।

'କୁଚ ଯୁଗଳ କୁରୁ ଚନ୍ଦନ ସଙ୍ଗମ୍ । ବର୍ଦ୍ଧୟ ଯଦୁପତି ମନସିଜ ରଙ୍ଗମ୍ ॥
କଜ୍ଜଳ କୋମଳ କୁନ୍ତଳ ଭାରମ୍ । ଗୋପୟ କୁସୁମ ଚୟୈ ରତିସାରମ୍ ॥
ରତିପତି ରିହକିମୁ ବାଣବଦୟମ୍ । ସଞ୍ଚୟତି ପ୍ରତିରମଣ ବିଳମ୍ବମ୍ ॥
ଇହ ହରିରାଧା ସଙ୍ଗମରଚନମ୍ । ବାଣନଗର ହରିଚନ୍ଦନ ବନ୍ଦନମ୍ ॥

ଉକ୍ତ ପଂକ୍ତିଗୁଡିକ ଦୃଷ୍ଟିପାତ କଲେ ଏଗୁଡିକ ଗୀତଗୋବିନ୍ଦ ପ୍ରଭାବରେ କିପରି ଓ କେତେ ପର୍ଯ୍ୟନ୍ତ ପ୍ରଭାବିତ ତାହାର ଏକ ମାର୍ମିକ ଚିତ୍ରମିଳେ । କବିରତ୍ନ ପୁରୁଷୋତ୍ତମ ମିଶ୍ର 'ଗୋପ ଗୋବିନ୍ଦ' ନାମକ ଏକ ଟୀକା ଲେଖିଛନ୍ତି । ବାଣପୁର ଅଚ୍ୟୁତରାଜପୁର ଶାସନର ବିଖ୍ୟାତ ପଣ୍ଡିତ ଯତୀନ୍ଦ୍ର ରଘୁତ୍ତମ ତୀର୍ଥ କ୍ଷେତ୍ର ସନ୍ୟାସ ନେଇ ଶ୍ରୀକ୍ଷେତ୍ରରେ ମଠଧୀଶ ରୂପରେ ଅବସ୍ଥାନ କାଳରେ ଗୀତଗୋବିନ୍ଦର ଏକ ଅନୁକୃତି 'ମୁକୁନ୍ଦ ବିଳାସ ମହାକାବ୍ୟ' ଖ୍ରୀ:୧୬୬୭ରେ ରଚନା କରିଥିଲେ । ଏହି ଅନୁକୃତି ମଧ୍ୟ ଦ୍ୱାଦଶ ସର୍ଗ ବିଶିଷ୍ଟ ଓ ଏହାର ମଙ୍ଗଳାଚରଣରେ ଦଶାବତାର ସ୍ତୁତି ସ୍ଥାନୀତ । ଏହାର ଲାଳିତ୍ୟ ଏହିପରି -

ବିକଚ କୁନ୍ଦ କୁସୁମବୃନ୍ଦ ମଲ୍ଲି ଲସତି କାନନେ ।
କୈରବ ବନ ସୁରଭି ପବନ ମୃତ୍ୟୁ ନବ ଦଳ ଚାଳନେ ।
ପଶ୍ୟତ ବନମାଳିନଂ, ରାସ ରଟନ ଶାଳିନଂ ॥'

ଗଜପତି ମୁକୁନ୍ଦଦେବଙ୍କ ସଭାପଣ୍ଡିତ ଧନଞ୍ଜୟ ଦ୍ୱିଜ ଖ୍ରୀ:୧୬୮୮ରେ କବିରାଜ ନାରାୟଣ ଦାସଙ୍କ ରଚିତ ସର୍ବାଙ୍ଗ ସୁନ୍ଦରୀ ଟୀକା ଅନୁକରଣରେ ପୁନଶ୍ଚ ଏକ ସୁଦୀର୍ଘ 'ସର୍ବାଙ୍ଗ ସୁନ୍ଦରୀ ଟୀକା' ପ୍ରଣୟନ କରିଥିଲେ । ଏଥିରେ ପ୍ରକ୍ଷିପ୍ତ ଶ୍ଳୋକଗୁଡିକୁ ବର୍ଜନ କରାଯାଇଛି ଓ ଏଥିରେ ଅନେକ ଶାସ୍ତ୍ରରୁ ଉଦ୍ଧୃତ ଦିଆଯାଇଛି । ଏହା ଏକ ବିରଳ ପାଣ୍ଡିତ୍ୟପୂର୍ଣ୍ଣ ଗ୍ରନ୍ଥ ରୂପରେ ବିବେଚିତ ହୋଇଅଛି ।

ସପ୍ତଦଶ ଶତାବ୍ଦୀର ବିଶିଷ୍ଟ ବଙ୍ଗୀୟ ବୈଷ୍ଣବ କବିରାଜ କୃଷ୍ଣଦାସ ଗୋସ୍ୱାମୀ ଶ୍ରୀ ଚୈତନ୍ୟ ଚରିତାମୃତ ନାମକ ଏକ ରାଧାକୃଷ୍ଣ ତତ୍ତ୍ୱପୂର୍ଣ୍ଣ ପ୍ରାମାଣିକ ଭକ୍ତିଶାସ୍ତ୍ର ରଚନା କରିଯାଇଛନ୍ତି । ସେ ମଧ୍ୟ 'ଗୋବିନ୍ଦ ଲୀଳାମୃତ' ନାମକ ଏକ ଶୃଙ୍ଗାରଧର୍ମୀ ଶାସ୍ତ୍ର ରଚନା କରିଛନ୍ତି ଯାହାକି ଅଷ୍ଟକାଳୀୟ ମାଧୂର୍ଯ୍ୟ ଲୀଳାକୁ ସଫଳ ଭାବରେ ବ୍ୟାଖ୍ୟା କରି ରାଗନୁଗା ମାର୍ଗୀୟ ଭକ୍ତମାନଙ୍କର ଅଭୀଷ୍ଟ ପୂରଣ କରିପାରିଛି । ଏହି ଗ୍ରନ୍ଥର ଅନେକ ଶ୍ଳୋକ ଗୀତଗୋବିନ୍ଦର କଥାବସ୍ତୁ, ନିର୍ମାଣ ଶୈଳୀ, ଓ ଶବ୍ଦ ଲାଳିତ୍ୟର ଅନୁରୂପ । ସେହିପରି ଏହି ସମୟର ଅନ୍ୟତମ ଶ୍ରେଷ୍ଠ ବଙ୍ଗୀୟ ବୈଷ୍ଣବ ବିଦ୍ୱାନ୍‌ମାନଙ୍କ ମଧ୍ୟରେ ବିଶ୍ୱନାଥ ଚକ୍ରବର୍ତ୍ତୀ ଅନ୍ୟତମ । ତାଙ୍କର ପର୍ଯ୍ୟାପ୍ତ ସାହିତ୍ୟ ଉପଲବ୍ଧୀ ତନ୍ମଧ୍ୟରୁ 'ମାଧୁର୍ଯ୍ୟ କାଦମ୍ବିନୀ' ନାମକ ଗ୍ରନ୍ଥଟିରେ କେତେକ ନିର୍ଦ୍ଦିଷ୍ଟ ଉଲ୍ଲେଖ ଦେଖାଯାଏ ଯାହା ଗୀତଗୋବିନ୍ଦ ଛାୟାରେ ଲିଖିତ । ଗୀତଗୋବିନ୍ଦର ପ୍ରଭାବ ଏଥିରୁ ତାଙ୍କ ଉପରେ ପଡିଥିବା ଅନୁମେୟ । ଅନ୍ୟତମ ବଙ୍ଗୀୟ ବିଦ୍ୱାନ୍ ଗୋପାଳ ଚକ୍ରବର୍ତ୍ତୀ 'ଅର୍ଥରତ୍ନାବଳୀ' ନାମକ ଏକ ଟୀକା ଗ୍ରନ୍ଥ ଖ୍ରୀ:୧୬୬୭ରେ ରଚନା କରିଥିବା ମଧ୍ୟ ଜଣାଯାଏ ।

ଶିଖ ଧର୍ମର ପ୍ରତିଷ୍ଠାତା ସନ୍ଥ ନାନକଙ୍କର ଏକଶତ ବର୍ଷ ପରେ ଶିଖ ଧର୍ମର ପ୍ରଧାନ ଧର୍ମଗ୍ରନ୍ଥ 'ଗୁରୁ ଗ୍ରନ୍ଥ ସାହେବ' ପଞ୍ଚମ ଗୁରୁ ଅର୍ଜୁନ ସିଂହଙ୍କଦ୍ୱାରା ସଂକଳିତ ହୋଇଥିଲା । ଏହି ପ୍ରସିଦ୍ଧ ଧର୍ମଗ୍ରନ୍ଥରେ ନାନକଙ୍କ ସମେତ କେତେକ ପ୍ରାଚୀନ ସନ୍ଥକବିମାନଙ୍କର ଉଲ୍ଲେଖ ଦୃଷ୍ଟିଗୋଚର ହୁଏ । ତନ୍ମଧ୍ୟରୁ ସନ୍ଥ ଶ୍ରୀ ଜୟଦେବ, ନାମଦେବ, ରାମାନନ୍ଦ, କବୀର, ସୁରଦାସ ଓ

ମୀରାବାଇ ପ୍ରଭୃତି ପ୍ରଧାନ । ଶ୍ରୀ ଗୁରୁଗ୍ରନ୍ଥ ସାହେବଙ୍କର ବର୍ଣ୍ଣନା ଏହିପରି -

'ନାମା ଜୈଦେବ କବୀରୁ ତ୍ରିଲୋଚନୁ
ଗୁଣ ଗାବୈ ରବିଦାସୁ ଭଗତୁ ଜୈଦେବ ତ୍ରିଲୋଚନ ।
ବଦିତ ଜୈଦେବ ଜୟଦେବ କୌ ରଂମିୟା
ବ୍ରହ୍ମ ନିର୍ବାଣ ଲବଲୀନ ପାଇୟା ।''

'ଗୋବିନ୍ଦ ଗୋବିନ୍ଦେତି ଜପି ନର ସକଳ- ସିଦ୍ଧି- ପଦଂ,
ଜୈଦେବ ଆଇଉ ସସପୁଟଂ ଭବ-ଭୂତ-ସରଜଗତଂ ।।'

ଗ୍ରନ୍ଥ ସାହେବ ଖ୍ରୀ:୧୬୦୪ରେ ରଚିତ ହୋଇଥିଲା । ଏହାର ୪୫୦ ବର୍ଷ ପୂର୍ବରୁ ଜୟଦେବଙ୍କର ଗୀତଗୋବିନ୍ଦ ରଚିତ ହୋଇଥିଲା । ଜୟଦେବ ଶୃଙ୍ଗାର ଧର୍ମୀ ସଙ୍ଗୀତମୟ ଭକ୍ତିରସାତ୍ମକ କାବ୍ୟ ଗୀତଗୋବିନ୍ଦ ରଚନା କରିବା ସହିତ ଯୋଗମାର୍ଗୀୟ କେତେକ ପଦ୍ୟ ଯେ ଲେଖି ନଥିବେ - ଏହା କୁହାଯାଇନପାରେ ତେଣୁ ଏହି ସତ୍ ସାହିତ୍ୟର ପ୍ରଭାବ ଯେ ସୀମା ସରହଦ ଡେଇଁ ସୁଦୂର ପଞ୍ଜାବରେ ପ୍ରତିଧ୍ୱନିତ ହୋଇଥିଲା ଏହା ସର୍ବଥା ସମ୍ଭବ ଓ ସ୍ୱୀକାଯର୍ୟ ।

କାମରୂପ ନରେଶ ଚକ୍ରଧ୍ୱଜ ଖ୍ରୀ - ୧୬୪୨ ରୁ ୧୬୬୯ଙ୍କ ସଭାକବି ରାମାନନ୍ଦ ଦ୍ୱିଜ ରାଧାକୃଷ୍ଣ ଲୀଳା ସମ୍ବଳିତ କେତେକ ପଦାବଳୀ ଲଳିତ ମଧୁର ଶୈଳୀରେ ରଚନା କରିଥିଲେ । ଶ୍ରୀମଦ୍ ଭାଗବତ ବର୍ଣ୍ଣିତ ଶରତ୍ ରାସ ଓ ଗୀତଗୋବିନ୍ଦ ବର୍ଣ୍ଣିତ ବସନ୍ତ ରାସର ସମ୍ମିଶ୍ରଣରେ ଆସାମର ବିଶିଷ୍ଟ କବି ରାମନାରାୟଣ କବିରାଜ ସରସ୍ୱତୀ ଗୀତଗୋବିନ୍ଦର ଏକ ଅନୁବାଦ ଓ ବିସ୍ତାର ରଚନା କରିଥିଲେ । ଏହାର ପୟାରମାନ ଏହିପରି -

ହେନ କୃଷ୍ଣ ପଦପଙ୍କଜର ମଧୁକର ।
ପୃଥିବୀ ପାଳିଲା ରୁଦ୍ରସିଂହ ନରେଶ୍ୱର ।।
ନିଦଗତ ଦ୍ୱିଜବର ଶୁନ ସବାସଦ ।
ନିବନ୍ଧ କରିବା ଗୀତଗୋବିନ୍ଦର ପଦ ।।

ଧର୍ମଦେବ ଭଟ୍ଟ ନାମକ ଜନୈକ ଆସାମ ପଣ୍ଡିତ ପୂର୍ବବର୍ତ୍ତୀ ଶଙ୍କରଦେବଙ୍କ ଭାଗବତ ଓ ରାମ ସରସ୍ୱତୀଙ୍କ ଗୀତଗୋବିନ୍ଦ ଅନୁବାଦକୁ ଆଧାର କରି ଏକ ଗୀତଗୋବିନ୍ଦର ପଦ୍ୟାନୁବାଦ ପ୍ରସ୍ତୁତ କରିଥିଲେ । ତାଙ୍କ ବିରଚିତ ଧର୍ମୋଦୟ ନାଟକରେ ମଧ୍ୟ କେତେକ ସଂଳାପର ସଂଯୋଜନା ଓ ଭାବ ଗୀତଗୋବିନ୍ଦର ଅନୁରୂପ ।(୨୦)

ସପ୍ତଦଶ ଶତାବ୍ଦୀରେ ତାମିଲ୍ ସାହିତ୍ୟରେ ମଧ୍ୟ ଗୀତଗୋବିନ୍ଦର ସମଧିକ ଆଦୃତି ବିଶେଷ ପ୍ରଣିଧାନ ଯୋଗ୍ୟ । ଏହି ଶତାବ୍ଦୀରେ ମାରିମୁଟ୍ଟ ପିଲାଇ, ଅରୁଣାଚଳ କବି, କବି କୁଞ୍ଜର ଭାରତୀ, ଗୋପାଳକୃଷ୍ଣ ଭାରତୀ ଓ ସ୍ୱାମୀ ତିରୁନଲ ମହାରାଜଙ୍କ ପରି ବିଶିଷ୍ଟ କବିମାନେ ନିଜ ନିଜର ସମୃଦ୍ଧ ଉପାଦେୟ ରଚନାବଳୀରେ ରାଧାରସ ପ୍ରଧାନ ଶୃଙ୍ଗାରଲୀଳା ପରିପୂର୍ଣ୍ଣ ଗୀତଗୋବିନ୍ଦର କଥାବସ୍ତୁ ଆଧାରିତ ସାହିତ୍ୟ ସୃଷ୍ଟିକରି ଯାଇଛନ୍ତି । କାଞ୍ଚି କାମକୋଟି ପୀଠ ଅଧ୍ୟକ୍ଷ ଶ୍ରୀ ଚନ୍ଦ୍ରଶେଖର ସରସ୍ୱତୀ ମହାରାଜ ଗୀତଗୋବିନ୍ଦ ଧାରାରେ ଶିବାଷ୍ଟପଦୀ 'ଶିବଗୀତମାଳା' ଗ୍ରନ୍ଥ ରଚନା କରିଥିଲେ । ଏହି ଦ୍ୱାଦଶ ସର୍ଗାତ୍ମିକା କାବ୍ୟରେ ଶିପୋର୍ବତୀ ବିହାରାଦି ଚମତ୍କାର ଭାବରେ ବର୍ଣ୍ଣିତ । ସେହିପରି ତାଞ୍ଜୋର ରାଜ୍ୟ ନିବାସୀ ଶିବାଷ୍ଟପଦୀ ଅନୁକରଣରେ ରାମାଷ୍ଟପଦୀ ରଚନା କରିଥିଲେ । ଏହି ଅଷ୍ଟପଦୀ କାବ୍ୟଗୁଡ଼ିକ ଗୀତଗୋବିନ୍ଦର ଛନ୍ଦ ରାଗ ଓ ତାଳର ଅନୁକରଣରେ ଲଳିତ ମଧୁର ଶୈଳୀରେ ରଚିତ ।

କେରଳର ପ୍ରସିଦ୍ଧ କୃଷ୍ଣମନ୍ଦିର ମାନଙ୍କ ମଧ୍ୟରେ ଗୁରୁଭାୟୁରର ମନ୍ଦିରଟି ପ୍ରଧାନ । ଏହି ମନ୍ଦିରରେ ଶ୍ରୀଜଗନ୍ନାଥ ମନ୍ଦିରରେ ଗୀତଗୋବିନ୍ଦ ଅନୁରୂପ ଖ୍ରୀ ୧୬୫୨ରୁ କୋଝିକୋଡ୍ ନରେଶ ମାନବେଦନ୍ ରଚିତ କୃଷ୍ଣଲୀଳା ନୃତ୍ୟନାଟିକା କୃଷ୍ଣଆଟମ୍ ଅଭିନୀତ ହୋଇ ଆସୁଛି । ଏଥିରେ ମାଲୟାଲାମ କଥିତ ବାଷାରେ ଗୀତ ଓ ସଂଳାପର ଏକ ସୁମଧୁର ମିଶ୍ରଣ ଦୃଷ୍ଟିଗୋଚର ହୁଏ । ସେହି ସମୟବେଳକୁ ଅନୁଷ୍ଟୁପ୍ ଛନ୍ଦାଶ୍ରିତ ଅଷ୍ଟପଦୀଗୁଡ଼ିକ ସଂସ୍କୃତ ବିଦ୍ୱାନ - ମାନଙ୍କ ମଧ୍ୟରେ ସମାଦୃତ ହୋଇ ପାରିଥିଲା । ପରବର୍ତ୍ତୀ ସମୟରେ କେରଳର ସମସ୍ତ ବିଷ୍ଣୁମନ୍ଦିରଗୁଡ଼ିକରେ ଏହି କୃଷ୍ଣ ଆଟମ୍‌ଟି ଅତ୍ୟନ୍ତ ଲୋକପ୍ରିୟତା ଅର୍ଜନ କରି ଅନୁସୃତ ହେଲା । ଏହି ପ୍ରଥା ପ୍ରଚଳନରେ ଗୀତଗୋବିନ୍ଦର ଯେ ସୁଦୂର ପ୍ରସାରୀ ପ୍ରଭାବ ରହିଛି - ଏହା ନିଃସନ୍ଦେହ । ଏହି ଶତକରେ କୋଟ୍ଟରକର ସାମନ୍ତରାଜା କେରଳ ବର୍ମନ୍ କେରଳରେ କଥକଳୀ ନୃତ୍ୟର ପ୍ରଚଳନ କରିଥିଲେ । ଏହା ବ୍ୟତୀତ କାର୍ତ୍ତିକ ତିରୁନଲ୍, ଅଶ୍ୱତ ତିରୁନଲ୍, ଉନାୟି ଭାରିୟର୍, ଇରୟିମନ୍ ତାଂପି ପ୍ରଭୃତି ପ୍ରସିଦ୍ଧ ମାଲୟାଲମ୍ ପଣ୍ଡିତ ମଣ୍ଡଳୀ ଏହି ସାଙ୍ଗୀତିକ ନୃତ୍ୟଧାରାରେ ଅନୁପ୍ରାଣୀତ ହୋଇ କୃଷ୍ଣଆଟମ୍ ଶୈଳୀରେ ନୃତ୍ୟ ସଙ୍ଗୀତ ଭରା କଥାକଳୀ ଆଧାରିତ କେତେକ କାଳଜୟୀ କୃତି ସୃଷ୍ଟିକରି ଯାଇଛନ୍ତି ।(୨୧)

ରାଜସ୍ଥାନ ବିକାନୀର ରାଜ୍ୟର ରାଠୋର ବଂଶୀୟ ରାଜା ଅନୁପସିଂହ ନିଃସନ୍ଦେହରେ ଜଣେ ସଙ୍ଗୀତ ବିଶାରଦ୍ । ତାଙ୍କର

ସଙ୍ଗୀତ ସହିତ ନୃତ୍ୟ ଓ ସୁମଧୁର ସ୍ୱରରେ ଆବୃତ୍ତି କରିବାରେ ମଧ୍ୟ ବ୍ୟୁପତ୍ତି ଥିଲା । ସେ ଅନୁପସଙ୍ଗୀତ ରତ୍ନାକର, ଅନୁପସଙ୍ଗୀତ ବର୍ତ୍ତମାନ, ଅନୁପସଙ୍ଗୀତ ବିଳାସ, ଅନୁପସଙ୍ଗୀତ ଅଙ୍କୁର, ଅନୁପରାଗ ସାଗର ପ୍ରଭୃତି ଯୁଗାନ୍ତକାରୀ ସଙ୍ଗୀତ ଶାସ୍ତ୍ରର ପ୍ରଣେତା ଓ ସଙ୍ଗୀତ ଜଗତରେ ଜଣେ ଚିର ଜାଜ୍ୱଲ୍ୟମାନ ଭାସ୍କର ।

ସେହି ବିକାନୀର ରାଣା ଅନୁପ୍ ସିଂହ ଖ୍ରୀ:୧୬୭୪ରେ ଗୀତଗୋବିନ୍ଦର ଏକ ପାଣ୍ଡିତ୍ୟପୂର୍ଣ୍ଣ ଭାବାର୍ଥବୋଧକ ବାର୍ତ୍ତିକ ପ୍ରଣୟନ କରିଥିଲେ ଓ ଜୟଦେବଙ୍କ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିବା କଥା ସ୍ୱୀକାର କରିଛନ୍ତି -

'ଅଥ ଶ୍ରୀଜୟଦେବୀୟ ପଦଭାବାର୍ଥବୋଧକମ୍
ଭୂପାନୃପା ବିନୋଦାର୍ଥଂ ଅନୁପୋଦୟ ମାରଭେ ।।'(୨୨)

**ଅଷ୍ଟାଦଶ ଶତାବ୍ଦୀ :**

ନୃତ୍ୟ ସଙ୍ଗୀତ ଓ ଭକ୍ତିରସର ପରିବ୍ୟାପ୍ତି ସହିତ ବିଭିନ୍ନ ଭାଷାବାସୀ ଭାରତୀୟ କବି ଓ ବିଦ୍ୱାନମାନେ କ୍ରମଶଃ ଗୀତଗୋବିନ୍ଦ ଯେ ଏକ ପରିପୂର୍ଣ୍ଣ ତଥା ସକଳ ଦୃଷ୍ଟିକୋଣରୁ ଏକ ମହତ୍ତ୍ୱପୂର୍ଣ୍ଣ କାବ୍ୟ, ଏହା ଅନୁଭବ କରିବାକୁ ଲାଗିଲେ । ତଦନୁସାରେ ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟରେ ଏହି ଶତାବ୍ଦୀରେ ମଧ୍ୟ ପ୍ରଭୁତ ସାହିତ୍ୟ ରଚନା ଗୀତଗୋବିନ୍ଦ ପ୍ରଭାବରେ ହୋଇଥିବା ଜଣାଯାଏ ।

ପୁରୀ ଜିଲ୍ଲାର ପିଣ୍ଡିକ ଶ୍ରୀଚନ୍ଦନ ବଙ୍ଗଳା ମିଶା ଓଡିଆ ଭାଷାରେ କତିପୟ ସଂସ୍କୃତ ଶ୍ଳୋକ ସହିତ ''ବସନ୍ତରାସ'' ନାମକ ଏକ ନୃତ୍ୟ ସଙ୍ଗୀତମୟ ଗ୍ରନ୍ଥ ରଚନା କରିଥିଲେ । ଏହା ଅଭିନୟ ଉଦ୍ଦେଶ୍ୟରେ ରଚିତ ହୋଇଥିବାରୁ ଏବଂ ସରଳ ସାବଳୀଳ ଶୈଳୀରେ ବିଭିନ୍ନ ରାଗ ଓ ରାଗିଣୀରେ ଗାନ କରାଯାଇ ପାରୁଥିବାରୁ ଏହାର ଲୋକପ୍ରିୟତା ବଢିଗଲା ଓ କ୍ରମଶଃ ପୁରପଲ୍ଲୀରେ ଏହାର ନୃତ୍ୟନାଟିକା ଅଭିନୀତ ହେବାକୁ ଲାଗିଲା । ଏହା ତ୍ରୟୋଦଶ ସର୍ଗାତ୍ମିକା ଓ ଗୀତଗୋବିନ୍ଦର ଅବିକଳ ଅନୁକରଣରେ ଲିଖିତ । କଟକ ଜିଲ୍ଲାର ଗୋପୀନାଥ ଧୀର ଜଗଦେବ 'ସଙ୍ଗୀତ ଗୀତଗୋବିନ୍ଦ' ନାମକ ଗୀତ ଗୋବିନ୍ଦର ଏକ ଅନୁବାଦ କରିଥିଲେ । ସଙ୍ଗୀତ ପ୍ରଚଳିତ ନିୟମାନୁସାରେ ବିରଚିତ ଏହି ଗ୍ରନ୍ଥ ପ୍ରାଚୀନ ଓଡିଆ ସାହିତ୍ୟର ଏକ ଉଜ୍ଜଳ ନିଦର୍ଶନ ଓ ଏହାର ଛନ୍ଦ ପ୍ରୟୋଗ ଚମତ୍କାର ତଥା ହୃଦୟସ୍ପର୍ଶୀ । ପାରଳାଖେମୁଣ୍ଡିର କବି ଗୋପାଳକୃଷ୍ଣ କୃଷ୍ଣ ପ୍ରେମ ଭକ୍ତିରସ ପରିସ୍ଫୁଟନ କରିବାରେ ସିଦ୍ଧହସ୍ତ । ତାଙ୍କର ଅନେକ ରଚନାରେ ଗୀତଗୋବିନ୍ଦ ବର୍ଣ୍ଣିତ ପ୍ରବନ୍ଧଗୁଡିକର କଥାବସ୍ତୁ ଓ ଶବ୍ଦ ବିନ୍ୟାସର ପ୍ରତ୍ୟକ୍ଷ ଅନୁସରଣ ଦେଖାଯାଏ । ପାରଳାଖେମୁଣ୍ଡିର ଅନ୍ୟତମ ବିଦ୍ୱାନ୍ କବି ଗୌରହରି ପରିଚ୍ଛା ମଧ୍ୟ ଗୀତଗୋବିନ୍ଦର ଏକ ଅନୁବାଦ କରିଛନ୍ତି । ଏହି ଅନୁବାଦଟିରେ ପଡୋଶୀ ତେଲୁଗୁ ସାହିତ୍ୟର ପ୍ରଭାବ ମଧ୍ୟ ରହିଛି । ଏହି ଅନୁବାଦଟିରେ ଏକ ବିଲକ୍ଷଣ ଦେଖାଯାଏ, କାରଣ ଜୟଦେବଙ୍କ ଗୀତଗୋବିନ୍ଦର ପ୍ରତି ସର୍ଗର ଶେଷ ଶ୍ଳୋକଟିର ଅନୁବାଦ ଏଥିରେ କରାଯାଇନାହିଁ । ଖୋର୍ଦ୍ଧା ହଳଦିଆ ସାମନ୍ତ ଶ୍ୟାମସୁନ୍ଦର ଭଞ୍ଜ, ପିଣ୍ଡିତ ଶ୍ରୀଚନ୍ଦନଙ୍କ ବସନ୍ତ ରାସର ଲୋକପ୍ରିୟତାରେ ଆକୃଷ୍ଟ ହୋଇ ନିଜେ 'ବସନ୍ତ କ୍ରୀଡା ସମୁଜ୍ଜ୍ୱଳ ରସାବଳୀ ନାମକ ଗୀତଗୋବିନ୍ଦ ଛାୟାରେ ଏକ ବଙ୍ଗଳା ମିଶା ଓଡିଆ ଭାଷାରେ ନୃତ୍ୟ ସଙ୍ଗୀତ ନାଟିକା ପ୍ରସ୍ତୁତ କରିଥିଲେ । ବୈଷ୍ଣବ କବି ଦାଶରଥି ଦାଶ ଖ୍ରୀ:୧୭୩୧ରେ 'ବ୍ରଜବିହାର' ନାମକ ଏକ ବିଖ୍ୟାତ କୃଷ୍ଣକାବ୍ୟ ରଚନା କରିଥିଲେ । ଏହା ଗୀତଗୋବିନ୍ଦ କଥାବସ୍ତୁ ଉପରେ ଆଧାରିତ । କବି ଦାଶରଥି ଦାଶ ଲେଖିଛନ୍ତି -

'ଗୀତଗୋବିନ୍ଦେ ପ୍ରଥମ ଶ୍ଳୋକେ ଜୟଦେବ କହେ ।
ଏକ ଦିନ ରାଧାସଙ୍ଗେ କୃଷ୍ଣ ନନ୍ଦ ପେକ୍ଷେ ଗ୍ରହେ ।।
ଏହି ସୂତ୍ର ଅନୁକ୍ରମେ ଗୀତ ହୋଇବ ବିସ୍ତାର ।
ଯେ ଶୁଣିବ ଏହି ରସ, ସେ ହୋଇବ ନିସ୍ତାର ।।(୨୩)

ଖ୍ରୀ:୧୭୪୦ରେ ରାଜସ୍ଥାନର ଜୟପୁରଠାରେ ବୈଷ୍ଣବ ସମାଜର ଏକ ସଙ୍କଟ ଉପଗତ ହେଲା । ସେତେବେଳେ କଛି ବୈଷ୍ଣବ ସନ୍ଥ ନାଥଦ୍ୱାରଠାରେ ପୂଜିତ ଗୋବିନ୍ଦ ଦେବଙ୍କ ସହିତ ରାଧାଙ୍କର ଉପାସନାକୁ ପ୍ରବଳ ବିରୋଧ କରିଥିଲେ ଏବଂ ଏହାର ଶାସ୍ତ୍ରୀୟତା ଉପରେ ପ୍ରଶ୍ନବାଚୀ ଲଗାଇଥିଲେ । ସେତେବେଳେର ବୈଷ୍ଣବ ସମାଜର ଅନୁରୋଧକ୍ରମେ ଉତ୍କଳୀୟ ବିଦ୍ୱାନ ରେମୁଣାର ବଳଦେବ ବିଦ୍ୟାଭୂଷଣ ଅଚିନ୍ତ୍ୟଭେଦାଭେଦ ଦର୍ଶନ ଆଧାରିତ ବ୍ରହ୍ମସୂତ୍ରର ଏକ ଭାଷ୍ୟ ପ୍ରଣୟନ କରିଥିଲେ । ଏହି ଭାଷ୍ୟର ନାମ 'ଗୋବିନ୍ଦ ଭାଷ୍ୟ' । ଏହି ରାଧାତତ୍ତ୍ୱ ସମ୍ବଳିତ ଅଚିନ୍ତ୍ୟ ଭେଦାଭେଦ ଦର୍ଶନ ଯେ ଜୟଦେବ, ରାୟରାମାନନ୍ଦ ଓ ବଳଦେବ ବିଦ୍ୟାଭୂଷଣଙ୍କ ମାଧ୍ୟମରେ ବିଶ୍ୱପ୍ରସିଦ୍ଧ ହୋଇପାରିଥିଲା- ଏହା ନିଃସନ୍ଦେହ ଓ ଏହା ଉତ୍କଳୀୟ ବୈଷ୍ଣବ ମାନଙ୍କର ବିଶ୍ୱଦର୍ଶନକୁ ଏକ ମହତ୍ୱପୂର୍ଣ୍ଣ ଦାନ ।(୨୪) ରଧାକୃଷ୍ଣ ଉପାସନାର ଧାରାକୁ ଋଦ୍ଧିମନ୍ତ କରି ଏହାକୁ ସଦାନନ୍ଦ କିବସୂର୍ଯ୍ୟ ବ୍ରହ୍ମା ଆହୁରି ଲୋକପ୍ରିୟ କରାଇଲେ । ତାଙ୍କ ରଚିତ ଯୁଗଳ ରସାମୃତ ଲହରୀ, ଯୁଗଳ ରସାମୃତ ଭଉଁରୀ, ଯୁଗଳ ରସାମୃତ ସିନ୍ଧୁ, ପ୍ରେମ ଭଉଁରୀ, ପ୍ରେମ ଲହରୀ, ପ୍ରେମ କଳ୍ପଲତା ପ୍ରଭୃତି ଗ୍ରନ୍ଥ ଗୀତଗୋବନ୍ଦ ବର୍ଣ୍ଣିତ

ରାଧାକୃଷ୍ଣ ଲୀଳାକୁ ବହୁଭାବରେ ପରିପୁଷ୍ଟ କରୁଅଛି । ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କର ଦୁଇ ପ୍ରମୁଖ ଶିଷ୍ୟହେଲେ ଅଭିମନ୍ୟୁ ସାମନ୍ତ ସିଂହାର ଓ କବିସୂର୍ଯ୍ୟ ବଳଦେବ ରଥ । ଅଭିମନ୍ୟୁ ସାମନ୍ତ ସିଂହାରଙ୍କର 'ବିଦଗ୍ଧ ଚିନ୍ତାମଣୀ' ରାଧାକୃଷ୍ଣ ପ୍ରେମରସର ଏକ ନୈସର୍ଗିକ ଓ ବିଶ୍ୱସ୍ତ ବର୍ଣ୍ଣନା । ଏହିପରି ଅତୁଳନୀୟ ବୈଷ୍ଣବ ପ୍ରେମଭକ୍ତି ଶାସ୍ତ୍ର ବିରଳ । ଏହାର ଆଦ୍ୟ ପ୍ରାରମ୍ଭ ହିଁ ଏହାର ମୁଖଶାଳା -

'ଅପ୍ରାକୃତ ପ୍ରେମ ମୂର୍ତ୍ତି ଜୟ ରାଧା ହରି,
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତରି ।'

କବିସୂର୍ଯ୍ୟ ବଳଦେବରଥଙ୍କର 'କିଶୋର ଚନ୍ଦାନନ ଚମ୍ପୁରେ' ଗୀତଗୋବିନ୍ଦର ଉତ୍କଟ ଶୃଙ୍ଗାରିକତାର ଅଭାବ ଥିଲେ ହେଁ, ଏହା ଶ୍ରୀ ଜୟଦେବଙ୍କ ଜନ୍ମଭୂମିର କବି କବିସୂର୍ଯ୍ୟ ବଳଦେବ ରଥଙ୍କ ନିର୍ମିତ ଓଡ଼ିଆ ସାହିତ୍ୟରେ ଶ୍ରୀଗୀତଗୋବିନ୍ଦର ଶେଷ ଓ ଶ୍ରେଷ୍ଠ ଅନୁକୃତି ।(୨୫)

ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଖଣ୍ଡପଡ଼ା ରାଜା ବନମାଳୀ ଜଗଦେବଙ୍କ ରାଜପଣ୍ଡିତ ଅନାଦି ମିଶ୍ର ଗୀତଗୋବିନ୍ଦର ଦୁଇଗୋଟି ଅନୁପମ ଅନୁକୃତି ରଚନା କରିଥିଲେ । ସେହି ଦୁଇଟି ଅନୁକୃତି ହେଲା 'କେଳି କଲ୍ଲୋଳିନୀ' ଓ 'ରାସଗୋଷ୍ଠୀ ରୂପକମ୍' । ସେହିପରି କବିଭୂଷଣ ଗୋବିନ୍ଦ ସାମନ୍ତରାୟ 'ସମୃଦ୍ଧମାଧବ ନାଟକମ୍' ନାମକ ଏକ ସାତ ଅଙ୍କ ବିଶିଷ୍ଟ ଅନୁକୃତି ରଚନା କରିଥିଲେ । ଗୋବିନ୍ଦ ସାମନ୍ତରାୟଙ୍କର ନାତି କବିଚନ୍ଦ୍ର କମଳଲୋଚନ ଖଡ୍ଗରାୟ ମଧ୍ୟ ରାଧାକୃଷ୍ଣଙ୍କର ବୃନ୍ଦାବନୀୟ ଅଷ୍ଟକାଳୀୟ ଲୀଳା ସମ୍ବଳିତ 'ସଙ୍ଗୀତ ଚିନ୍ତାମଣି' ଏବଂ ଚତୁର୍ଦ୍ଦଶ ସର୍ଗ ବିମଣ୍ଡିତ 'ଗୀତମୁକୁନ୍ଦମ୍' ନାମକ ଅନ୍ୟ ଏକ ଗୀତଗୋବିନ୍ଦର ଅନୁକୃତି ରଚନା କରିଛନ୍ତି । ଗୀତମୁକୁନ୍ଦମ୍ ଗ୍ରନ୍ଥରେ ଗୀତଗୋବିନ୍ଦ ତୁଲ୍ୟ ସରଳ ସାବଲୀଳ ମନୋଜ୍ଞ ପଦ ସଂଯୋଜନା ରହିଛି ଯଥା-

'ରାଧେ ! ଭଜ ବ୍ରଜରାଜ କୁମାରମ୍ ।
ବର ମୂରଲୀକର ମୁରୁତର ହାରମ୍ ॥
ଗଞ୍ଜିତ କଞ୍ଜ ବିଲୋଚନ ମଞ୍ଜୁଳ ଗତିଜିତ ଖଞ୍ଜନ ପୁଞ୍ଜମ୍ ।
ସିତକରସୁନ୍ଦର ହସିତ ମଧୁର ରସବଧ ଦଧିଗତ କୁଞ୍ଜମ୍ ।
କଳଧୌଳାମଳ ଲୋଳାଳିତମଲ କାବଳିକବଳିତ ଭାବନମ୍।
ଗଣ୍ଡଲସିତ ମଣି କୁଣ୍ଡଳମଣ୍ଡଳ ଭଙ୍ଗିତ ରଙ୍ଗ ବିଶାଳମ୍ ॥'

ପ୍ରୋକ୍ତ କବି କମଳଲୋଚନ ଖଡଗରାୟଙ୍କର 'ବ୍ରଜସୁବବିଳାସମ୍' ନାମକ ଏକ ସପ୍ତଦଶ ସର୍ଗ ବିଶିଷ୍ଟ ମହାକାବ୍ୟ ରହିଛି । ରାଧାକୃଷ୍ଣ ରାସୋତ୍ସବର ଏକ ବିସ୍ତୃତ ବର୍ଣ୍ଣନା ଏଥିରୁ ମିଳେ ।

ଏତଦ୍ ବ୍ୟତୀତ ଶିତକଣ୍ଠ କବି 'ଗୀତ ସୀତାବଲ୍ଲଭମ୍' ନାମକ ଗୀତଗୋବିନ୍ଦର ରାମସୀତା ବିଳାସ ପ୍ରସଙ୍ଗ ଆଧାରିତ ଏକ ଅନୁକୃତି ରଚନା କରିଛନ୍ତି । ଏହାର ମଙ୍ଗଳାଚରଣରେ ଦଶାବତାର ବନ୍ଦନା ରହିଥିଲେ ମଧ୍ୟ ପରବର୍ତ୍ତୀ ପାଠଗୁଡ଼ିକ ରାମସୀତା ବିହାର ବିଳାସ ପ୍ରସଙ୍ଗର ବର୍ଣ୍ଣନାରେ ଶତମୁଖ । ଖୁରୁଧା ରାଜା ଦିବ୍ୟସିଂହ ଦେବଙ୍କ ଏକ ସର୍ବାଙ୍ଗସୁନ୍ଦରୀ ଟୀକା' ପ୍ରଣୟନ କରିଥିଲେ । ଏହାର ଆରମ୍ଭରେ -

'ନତ୍ୱା ଶ୍ରୀହରିଚରଣଂ କୁରୁତେ ସର୍ବାଙ୍ଗ ସୁନ୍ଦରୀ ଟୀକାଂ।
ଶ୍ରୀଯୁକ୍ତ କୃଷ୍ଣାଦାସ କବିରାଜୋ ଶ୍ରୀଗୀତଗୋବିନ୍ଦେ ।''

ଏହାର ଶେଷରେ -

'ଜ୍ୟୋଷ୍ଟମାସିମିତେ ବୁଧସ୍ୟ ଦିବସେ ପକ୍ଷେ ଚତୁର୍ଥୀ ତିଥା,
ଅଙ୍କେ ସପ୍ତଦଶେ ନୃପସ୍ୟ ସୁଧିୟା ଶ୍ରୀ ଦିବ୍ୟସିଂହସ୍ୟ ଚ ।''

ଏହାର ପୁଷ୍ପିକାରେ -

'ଇତି ଶ୍ରୀ କୃଷ୍ଣଦାସ ବରିଚିତାୟାଂ ଶ୍ରୀଗୀତଗୋବିନ୍ଦେ ସର୍ବାଙ୍ଗ ସୁନ୍ଦରୀଂ ଟୀକାୟାଂ ସ୍ୱାଧୀନ ଭର୍ତ୍ତୃକାବର୍ଣ୍ଣନେ ସୁପ୍ରୀତପୀତାମ୍ବରୋ ନାମ ଦ୍ୱାଦଶ ସର୍ଗଃ ।'

ଏହି ସାହିତ୍ୟରେ ଗୀତଗୋବିନ୍ଦର ବଳିଷ୍ଠ ପ୍ରଭାବ ଏଥିରୁ ସୁସ୍ପଷ୍ଟ ।

ଏହି ଶତାବ୍ଦୀରେ ବଙ୍ଗଳା ସାହିତ୍ୟରେ ମଧ୍ୟୟ୍ ଗୀତଗୋବିନ୍ଦର ସର୍ବପ୍ରଥମ ବଙ୍ଗୀୟ ଭାଷାରେ ଅନୁବାଦ କରାଯାଇଥିଲା । କବି ଗିରିଧର ଦାସଙ୍କର ଅନୁବାଦଟି ପ୍ରାଚୀନତମ । ଏହା ଖ୍ରୀ: ୧୭୩୬ରେ ରଚିତ ହୋଇଥିଲା । ଏଥିରେ ମୂଳ ଗୀତଗୋବିନ୍ଦର ବିଷୟବସ୍ତୁ ଓ ସଙ୍ଗୀତ ଏବଂ ରାଗରାଗିଣୀର ଏକ ବିଶ୍ୱସ୍ତ ଅନୁକରଣ ମିଳେ। ଏହାପରେ କବି ରସମୟ ଦାସ ଗୀତଗୋବିନ୍ଦର ଏକ କୀର୍ତ୍ତନ ଶୈଳୀରେ ଅନୁବାଦ କରିଥିଲେ । ଏହା ଅତ୍ୟନ୍ତ ଲୋକପ୍ରିୟ ହୋଇପାରିଥିଲା । ମୁର୍ଶିଦାବାଦର ଦ୍ୱିଜ ପ୍ରାଣକୃଷ୍ଣ 'ଜୟଦେବ ପ୍ରାସାଦାବଳୀ' ନାମକ ଏକ ପଦ୍ୟାନୁବାଦ କରିଥିଲେ । ବୈଦ୍ୟ କବିଚନ୍ଦ୍ର ନାମକ ଜନୈକ ବୈଷ୍ଣବ ପଣ୍ଡିତ ମଧ୍ୟ ଗୀତଗୋବିନ୍ଦର ବଙ୍ଗଳା ଅନୁବାଦ କରିଥିଲେ । ଜଗତ୍ ସିଂହ ନାମକ ଜନୈକ କୁଚ୍ ବିହାର ବାସୀ ବୈଷ୍ଣବ ସଂକୀର୍ତ୍ତନ ଶୈଳୀରେ ଗୀତଗୋବିନ୍ଦର ଗୋଟିଏ ପଦ୍ୟାନୁବାଦ ମଧ୍ୟ କରିଥିଲେ ।

ବଙ୍ଗଳା ରାମ ସାହିତ୍ୟରେ ହରିଶଙ୍କର ମୁନିକୃତ ଗୀତଗୋବିନ୍ଦ ଅନୁସରଣରେ ଲିଖିତ 'ଗୀତ ରାଘବମ୍' ଓ ହରି ଆଚାର୍ଯ୍ୟ ବିରଚିତ 'ଜାନକୀ ଗୀତଂ' ଦୁଇଟି ପ୍ରଧାନ ଭକ୍ତି ଶାସ୍ତ୍ର । ଏ ଉଭୟରେ ଗୀତଗୋବିନ୍ଦର ଗଭୀର ପ୍ରଭାବ ରହିଥିବା କଥା ଗବେଷକମାନେ ମତବ୍ୟକ୍ତ କରିଛନ୍ତି ।

ବଙ୍ଗୀୟ ବିଦ୍ୱାନ ନାରାୟଣ ଶର୍ମା 'ସର୍ବାଙ୍ଗ ସୁନ୍ଦରୀ' ନାମକ ଗୀତଗୋବିନ୍ଦର ଏକ ବିସ୍ତୃତ ଟୀକା ଲେଖିଛନ୍ତି । ଏହା ଖ୍ରୀ:୧୭୨୮ରେ ରଚିତ ହୋଇଥିଲା । ଏହି ଗ୍ରନ୍ଥଟି ସଂସ୍କୃତ ଭାଷାରେ ବଙ୍ଗଳା ଅକ୍ଷରରେ ରଚିତ ହୋଇଅଛି । ଏହାର ମଙ୍ଗଳାଚରଣରେ ନିମ୍ନୋକ୍ତ ମତେ ଲେଖାଯାଇଛି -

'ପ୍ରଣମ୍ୟ ଜଗତାମୀଶଂ କୃଷ୍ଣରୂପ ସନାତନମ୍ ।
କ୍ରିୟତେ ଗୀତୋଗୋବିନ୍ଦଟୀକା ସର୍ବାଙ୍ଗସୁନ୍ଦରୀ ।।''

ବଙ୍ଗୀୟ ବୈଷ୍ଣବ ସନ୍ଥ ରମାକାନ୍ତ ଗୀତଗୋବିନ୍ଦର ଏକ ଅତୀବ ବିଦ୍ୱାନ ଟୀକା ରଚନା କରିଥିଲେ, ଯାହାର ନାମ 'ଗୀତଗୋବିନ୍ଦ ପ୍ରବୋଧ'।

ରାଧାକୃଷ୍ଣ ଉପାସନା ମଣିପୁର ରାଜ୍ୟର ଏକ ବିଶେଷତ୍ୱ । ଏଠାରେ ହୋଲି ବସନ୍ତୋତ୍ସବ ପାଞ୍ଚଦିନ ବ୍ୟାପୀ ପଳିତ ହୁଏ । ମଣିପୁରୀ ପାଲା ସଂକୀର୍ତ୍ତନରେ ମଧ୍ୟ ରାଧାକୃଷ୍ଣ ଯୁଗଳ ରସର ଅବତାରଣା ହୁଏ । ମଣିପୁର ନରେଶ ଭାଗ୍ୟଚନ୍ଦ୍ର ବୈଷ୍ଣବ ଧର୍ମ ଗ୍ରହଣ କରି ତାଙ୍କ ରାଜତ୍ୱ କାଳ ଖ୍ରୀ:୧୭୬୪ରୁ ୧୭୯୮ ମଧ୍ୟରେ ନିଜର ଇଷ୍ଟ ଠାକୁର ଗୋବିନ୍ଦ ଜୀଉଙ୍କର ସେବା ନିମିତ୍ତ ନିଜର ସମସ୍ତ ରାଜ୍ୟକୁ ଉତ୍ସର୍ଗ କରିଥିଲେ । ଗୀତଗୋବିନ୍ଦ ଗାନ ବିଷୟକ 'ଗୋବିନ୍ଦ ସଙ୍ଗୀତ ଲୀଳାବିଳାସ' ନାମକ ଏକ ଗ୍ରନ୍ଥ ରଚନା କରିଥିଲେ । ମଣିପୁରର କୃଷ୍ଣ ମନ୍ଦିର ଓ ବିଷ୍ଣୁ ମନ୍ଦିରଗୁଡ଼ିକରେ ଏହି ଗ୍ରନ୍ଥର ନାଟକୀର୍ତ୍ତନ ଅନୁଷ୍ଠିତ ହୋଇଥାଏ । ଗୀତଗୋବିନ୍ଦର ଦଶଟି ନିର୍ଦ୍ଦିଷ୍ଟ ଅଷ୍ଟପଦୀର ତାଳେ ତାଳେ ମନ୍ଦିର ମାନଙ୍କରେ ବସନ୍ତ ଉତ୍ସବ ପାଳିତ ହୋଇଥାଏ । ଇମ୍ଫାଲ ସ୍ଥିତ ଗୋବିନ୍ଦଜୀ ଓ ବିଜୟ ଗୋବିନ୍ଦ ମନ୍ଦିରରେ ହୋଲି ଉତ୍ସବ ଅବସରରେ ଏହି ନାଟ କୀର୍ତ୍ତନ ହୋଇଥାଏ । ମଣିପୁର ରାଜଦରବାର ମଧ୍ୟରେ ଚୈତ୍ର ପୂର୍ଣ୍ଣିମା ତିଥିରେ ବସନ୍ତୋତ୍ସବ ଅଭିନୀତ ହୁଏ । ମଣିପୁରୀ ପାଲାରେ ଗୀତଗୋବିନ୍ଦର ଅଷ୍ଟପଦୀଗାନ ଏକ ବିଧିରୂପରେ ଅନୁସୃତ । ଇମ୍ଫାଲ ରଥଯାତ୍ରାରେ ଦଶାବତାର ସମେତ କୃଷ୍ଣଲୀଳାର ଗୀତଗୋବିନ୍ଦ ଅଷ୍ଟପଦୀମାନ ଗାନ କରାଯାଏ। ମଣିପୁରୀ ସାହିତ୍ୟ, ସଂସ୍କୃତି ଓ ଜନଜୀବନ ଏହି ଗୀତଗୋବିନ୍ଦ ପ୍ରଭାବରେ କିପରି ପ୍ରଭାବିତ ହୋଇପାରିଛି ଏଥିରୁ ତାହା ଜଣାପଡ଼େ ।

ଆନ୍ଧ୍ର ପଣ୍ଡିତ ଯତୀନ୍ଦ୍ର ନାରାୟଣ ତୀର୍ଥ ଶ୍ରୀକ୍ଷେତ୍ର ଅବସ୍ଥାନ କାଳରେ ଗୀତଗୋବିନ୍ଦ ଦ୍ୱାରା ବିଶେଷ ପ୍ରଭାବିତ ହୋଇଥିଲେ । ସେ 'ଶ୍ରୀକୃଷ୍ଣଲୀଳା ତରଙ୍ଗିଣୀ' ନାମକ ଏକ ଦ୍ୱାଦଶ ସର୍ଗାତ୍ମିକା ଗୀତାକାବ୍ୟ ରଚନା କରିଥିଲେ ଯାହା ଗୀତଗୋବିନ୍ଦର ଏକ ସାର୍ଥକ ଅନୁକୃତି । ଏଥିରେ ୧୫୩ଟି ପ୍ରବନ୍ଧ ସ୍ଥାନିତ । ସେ ଏହି ଗ୍ରନ୍ଥର ମଙ୍ଗଳାଚରଣରେ ଶ୍ରୀଜଗନ୍ନାଥଙ୍କୁ ସ୍ତୁତି କରିଛନ୍ତି । ଏହି ଗ୍ରନ୍ଥ ତେଲୁଗୁ ସନ୍ଥମାନଙ୍କ ମଧ୍ୟରେ ଏପରି ଆଦୃତ ହେଲା ଯେ ଯତୀନ୍ଦ୍ର ନାରାୟଣ ତୀର୍ଥଙ୍କୁ ଆନ୍ଧ୍ରପ୍ରଦେଶରେ ବିଲ୍ୱ ମଙ୍ଗଳ ଓ ଜୟଦେବ ରୂପରେ ଗଣନା କରାଯାଏ । ଯତୀନ୍ଦ୍ର ନାରାୟଣ ତୀର୍ଥଙ୍କର ଶିଷ୍ୟମାନଙ୍କ ମଧ୍ୟରେ ସିଦ୍ଧେନ୍ଦ୍ର ଯୋଗୀ ଅନ୍ୟତମ । ସେ ମଧ୍ୟ ଗୀତଗୋବିନ୍ଦ ଅନୁକରଣରେ 'ଭାମାକଳାପମ୍' ନାମକ ଏକ ଗ୍ରନ୍ଥ ଲେଖିଛନ୍ତି, ଯେଉଁଥିରେ ନାୟିକା ଶ୍ରୀରାଧା ନହୋଇ ସତ୍ୟଭାମା ଅଟନ୍ତି । ସେ ମଧ୍ୟ କୁଚିପୁଡ଼ି ଗ୍ରାମରେ ନୃତ୍ୟ ଶୈଳୀରେ ଗୀତଗୋବିନ୍ଦର ଦଶାବତାର ଅଭିନୟକୁ ନାଟ୍ୟଶୈଳୀରେ ପ୍ରଚଳନ କରାଇଥିଲେ । ସୁବ୍ରମନ୍ୟମ୍‌ଙ୍କର 'କୀର୍ତ୍ତନାବଳୀ' ଓ ତ୍ୟାଗରାଜଙ୍କର 'ନୌକାଚରିତମ୍'ରେ ମଧ୍ୟ ଗୀତଗୋବିନ୍ଦର ପ୍ରଭାବ ସୁସ୍ପଷ୍ଟ । ଏହି ଭାବଧାରାର ପ୍ରଣେତା ସିଦ୍ଧେନ୍ଦ୍ର ଯୋଗୀଙ୍କୁ ଦାକ୍ଷିଣାତ୍ୟର ଜୟଦେବ ରୂପରେ ମଧ୍ୟ ଅଭିହିତ କରାଯାଇଥାଏ ।

ମରାଠା ବିଦ୍ୱାନ ସଦାଶିବ ଦୀକ୍ଷିତ୍ ତାଞ୍ଜୋର ରାଜ୍ୟର ସଭାକବି 'ଗୀତସୁନ୍ଦରମ୍' ନାମକ ଏକ ସଙ୍ଗୀତ ଶାସ୍ତ୍ର ରଚନା କରିଥିଲେ । ତାଙ୍କର ସମସାମୟିକ ରଙ୍ଗନାଥ ଆରଡେ ଗୀତଗୋବିନ୍ଦ ଉପରେ ଏକ 'ମାଧୁରୀ' ଟୀକା ପ୍ରଣୟନ କରିଥିଲେ, ସେ ଲେଖିଛନ୍ତି -

ଧ୍ୟାୟଂ ଧ୍ୟାୟଂ ଗୁରୁପଦଯୁଗଂ ଗୀତଗୋବିନ୍ଦ ଟୀକାଂ
ମାଧୁର୍ଯ୍ୟଖ୍ୟାଂ ଅତିମିତପଦାଂ ରଙ୍ଗନାଥୋ ବିଧତେ ।।
କୃଷ୍ଣଲୀଳାରସପ୍ରେମଭାଜାଂ ସତ୍ତାଂ ।
ଗୀତଗୋବିନ୍ଦ ମାଧୁର୍ଯ୍ୟେସୌ ସ୍ୟାନମୁଦେ ।।

ମହାକବି ଶ୍ରୀ ଜୟଦେବଙ୍କ ପ୍ରଣୀତ ଗୀତଗୋବିନ୍ଦ ସତ୍‌କାବ୍ୟର ମାଧୁରୀସମୀକ୍ଷା ଲେଖିଥିବାରୁ ସେ ନିଜକୁ ଧନ୍ୟ ମନେକରିଛନ୍ତି ।

ମହୀଶୂର ନରେଶ ନଞ୍ଜରାଜ ଖ୍ରୀ:୧୭୩୯ରୁ ୧୭୬୦ ଗୀତଗୋବିନ୍ଦଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇ 'ସଙ୍ଗୀତ ଗଙ୍ଗାଧର' ନାମକ ଏକ ଗ୍ରନ୍ଥ ରଚନା କରିଥିଲେ । ଏଥିରେ ତାଙ୍କ ରାଜପରିବାରର ଇଷ୍ଟ ଦେବତା ଭ୍ରଦାଚଳ ନିବାସୀ ଶ୍ରୀକଣ୍ଠେଶ୍ୱର ଶିବଙ୍କର ଋଷିପତ୍ନୀମାନଙ୍କ ସହିତ ରାସଲୀଳା କଥା

ବର୍ଣ୍ଣିତ । ଏହି ଷଟ୍ ଅଧ୍ୟାୟ କାବ୍ୟରେ ଚବିଶଟି ପ୍ରବନ୍ଧ ସନ୍ନିବେଶିତ । ଏହାର ଭାଷା ଲାଲିତ୍ୟ ବିଶେଷ ଭାବରେ ହୃଦୟସ୍ପର୍ଶୀ । କନ୍ନଡ କବି କାଶୀପତି ଏହା ଉପରେ ଏକ ସାରଗର୍ଭକ ଟୀକା ରଚନା କରିଥିଲେ । ଯାହା ଶ୍ରବଣ ନନ୍ଦିନୀ ଟିକା ନାମରେ ସୁପରିଚିତ ।

ରାଜସ୍ଥାନ ଜୟପୁର ରାଜା ଈଶ୍ୱର ସିଂହ ଖ୍ରୀ:୧୭୪୩ରୁ ୧୭୫୦ଙ୍କ ସଭାକବି କୃଷ୍ଣଭଟ୍ଟ ଶ୍ରୀରାମସୀତାଙ୍କ ରାସଲୀଳା କଥାବସ୍ତୁ ହନୁମଦ୍ ସଂହିତାସ୍ଥ 'ମହାରାସୋତ୍ସବ ପ୍ରକରଣ'ରୁ ଆହରଣକରି ଗୀତଗୋବିନ୍ଦ ଶୈଳୀରେ ତ୍ରୟୋଦଶ ସର୍ଗାତ୍ମିକା ଏକ ଆଦି ରସାତ୍ମକ କଳିତକୋମଳ କାବ୍ୟ 'ଗୀତରାଘବ' ରଚନା କରିଥିଲେ । ରାଜସ୍ଥାନ ଅଞ୍ଚଳରେ ରାମାନନ୍ଦୀ ବୈଷ୍ଣବମାନଙ୍କ ମଧ୍ୟରେ ଏହାର ବହୁଳ ପ୍ରଚଳନ ଦୃଷ୍ଟିଗୋଚର ହୋଇଥାଏ ।

**ଊନବିଂଶ ଶତାବ୍ଦୀ :**

ରେୱା ନରପତି ବିଶ୍ୱନାଥ ସିଂହଙ୍କ ପୃଷ୍ଠପୋଷକତାରେ ବୁନ୍ଦେଲଖଣ୍ଡର କବି ପ୍ରିୟା ଦାସ ଗୀତଗୋବିନ୍ଦ ଅନୁକରଣରେ ଖ୍ରୀ:୧୮୩୨ରେ 'ସଙ୍ଗୀତ ରଘୁନନ୍ଦନମ୍' ଶାସ୍ତ୍ର ପ୍ରଣୟନ କରିଥିଲେ । ଏଥିରେ ମୋଟ୍ ଏଗାରଟି ସର୍ଗ ରହିଛି ଓ ଏହା ଗୀତଗୋବିନ୍ଦର ଏକ ଅନୁକୃତି । ରାମସୀତାଙ୍କର ବସନ୍ତରାସ, ଦୋଳବର୍ଣ୍ଣନ ଇତ୍ୟାଦି ପ୍ରସଙ୍ଗ ଏଥିରେ ସ୍ଥାନୀତ ।

ମରାଠୀ କବି ଗଙ୍ଗାଧର ନାଗପୁର ଭୋନ୍ସଲାଙ୍କ ଦରବାରର ସଭାକବି । ସେ ଖ୍ରୀ:୧୮୬୪ରେ 'ସଙ୍ଗୀତ ରାଘବମ୍' ଗ୍ରନ୍ଥ ରଚନା କରିଥିଲେ । ଏଥିରେ ମୋଟ ଛଅଟି ସର୍ଗ ଓ ଗୀତଗୋବିନ୍ଦ ତୁଲ୍ୟ ମାଧବ ଅନୁରୂପ ରାଘବଙ୍କର ବର୍ଣ୍ଣନା ଯଥା- ସମୁଦିତ ରାଘବ, ପ୍ରବାସୀ ରାଘବ, ବିରହୀ ରାଘବ, ଉଦ୍ୟୁକ୍ତ ରାଘବ ଓ ସାନନ୍ଦ ରାଘବ ପ୍ରଭୃତି ଭାବଗର୍ଭକ ବର୍ଣ୍ଣନା ଦୃଷ୍ଟିଗୋଚର ହୁଏ । ଏହି ଗ୍ରନ୍ଥ ଉପରେ ମଧ୍ୟ ଗୀତଗୋବିନ୍ଦର ସୁଦୂର ପ୍ରସାରୀ ପ୍ରଭାବ ପରିଲକ୍ଷିତ ହୋଇଥାଏ ।

ଏହି ଶତାବ୍ଦୀରେ ଭାରତରେ ବ୍ରିଟିଶ ସାମ୍ରାଜ୍ୟର ଔପନିବେଶିକ ଶାସନ ଦୃଢ଼ୀଭୂତ ହେବାରୁ ସମୟକ୍ରମେ ବ୍ରିଟିଶ୍ ଓ ଅନ୍ୟାନ୍ୟ ୟୁରୋପୀୟ ବିଦ୍ୱାନ ମଣ୍ଡଳୀ ଏହି ମହନୀୟ କୃତି ବିଷୟରେ ଅବଗତ ହେଲେ । ସେହି ବିଦ୍ୱାନମାନଙ୍କ ମଧ୍ୟରୁ ସାର୍ ୱିଲିଅମ୍ ଜୋନ୍ସ ଖ୍ରୀ - ୧୮୦୭ ଗୀତଗୋବିନ୍ଦର କଥାବସ୍ତୁ ଶ୍ଳୋକ ପୟାର ପ୍ରବନ୍ଧ ଅନୁକ୍ରମରେ ଏକ ଇଂରାଜୀ ଗଦ୍ୟାନୁବାଦ ପ୍ରସ୍ତୁତ କରି ପାଶ୍ଚାତ୍ୟ ଜଗତରେ ଏହାର ସାହିତ୍ୟିକ ମୂଲ୍ୟବୋଧକୁ ଲୋକଲୋଚନକୁ ଆଣିପାରିଥିଲେ । ଖ୍ରୀ:୧୮୩୬ରେ ଲାସେନ୍ ଏହାର ଲାଟିନ୍ ଭାଷାରେ ପଦ୍ୟାନୁବାଦ ଓ ଖ୍ରୀ:୧୮୩୭ରେ ଏନ୍‌ରିକ୍ ରୁକର୍ଟ ଏହାର ଜର୍ମାନୀ ଭାଷାରେ ପଦ୍ୟାନୁବାଦ ପ୍ରସ୍ତୁତ କରିଥିଲେ । ବ୍ରିଟିଶ୍ ସମାଲୋଚକ ସାର ଏଡ୍‌ୱିନ୍ ଆର୍‌ନୋଲ୍‌ଡ୍ ଖ୍ରୀ:୧୮୭୫ରେ ଗୀତଗୋବିନ୍ଦର ଇଂରାଜୀ ପଦ୍ୟାନୁବାଦ ସହ ଟୀକା ଓ ସମୀକ୍ଷାତ୍ମକ ଆଲୋଚନା ପ୍ରକାଶ କରିଥିଲେ । ଫରାସୀ ବିଦ୍ୱାନ୍ ଜି. କୋର୍ଟିଲିୟର୍ ଖ୍ରୀ:୧୯୦୪ରେ ଗୀତଗୋବିନ୍ଦର ଫରାସୀ ଭାଷାରେ ଅନୁବାଦ ସହ ଟୀକା ପ୍ରସ୍ତୁତ କରିଥିଲେ । ଏହିସବୁ ମହନୀୟ ଉଦ୍ୟମ ଫଳରେ ଏହି ଗ୍ରନ୍ଥ ସାରାବିଶ୍ୱରେ କ୍ରମଶଃ ପରିଚିତ ହେବାକୁ ଲାଗିଲା । ସାର୍ ଏଡୱିନ୍ ଆର୍‌ନୋଲ୍‌ଡ୍ ଏହି ଗୀତଗୋବିନ୍ଦର କାବ୍ୟିକ ମାଧୁର୍ଯ୍ୟରେ ଏପରି ମନ୍ତ୍ରମୁଗ୍ଧ ହୋଇ ଯାଇଥିଲେ ଯେ, ସେ ଏହି କାଳଜୟୀ କୃତିର ଇଂରାଜୀ ନାମକରଣ କରିବାକୁ ଯାଇ ଗୀତଗୋବିନ୍ଦକୁ 'The Indian Song of Songs' ରୂପେ ନାମକରଣ କରିଛନ୍ତି । ବିଶ୍ୱସ୍ତରରେ ଭାରତୀୟ କାବ୍ୟମାନଙ୍କ ଭିତରେ ଏହା ପ୍ରକୃତରେ ଏକ ମୁକୁଟମଣି ନୁହେଁ କି ?

ଏହାବ୍ୟତୀତ କେତେକ ଟୀକା ଗ୍ରନ୍ଥ ଆବିଷ୍କୃତ ହୋଇଥିଲେ ହେଁ, ସେହିସବୁର କାଳ ନିରୂପଣ ସମ୍ଭବ ହୋଇ ପାରିନାହିଁ କାରଣ ସେହି ଗ୍ରନ୍ଥଗୁଡ଼ିକରେ ରଚନା କାଳ ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ଉଲ୍ଲେଖ ନାହିଁ ବା ପରୋକ୍ଷ ଭାବରେ ତାହା କେଉଁ ଶାସକଙ୍କ ସମୟରେ ଅଥବା ରାଜତ୍ୱର କେତେ ଅଙ୍କରେ ଲିଖିତ ସେ ବିଷୟରେ ଉଲ୍ଲେଖ ନାହିଁ । ଗୁରୁତ୍ୱପୂର୍ଣ୍ଣ ବିବେଚିତ ହେଉଥିବା ପୁଷ୍ପିକା ମଧ୍ୟ କେତେକରେ ସନ୍ନିବେଶିତ ନଥିବାରୁ ସେହି ଟୀକାଗୁଡ଼ିକର ପ୍ରକୃତ ରଚୟିତା କିଏ, ତାହା ମଧ୍ୟ ନିରୂପଣ କରିବା ଗବେଷକ ମାନଙ୍କ ପକ୍ଷରେ ସମ୍ଭବ ହୋଇପାରିନାହିଁ । ଏହଭଳି କେତେକ ଟୀକାର ବିବରଣୀ ନିମ୍ନରେ ଦିଆଗଲା ।

ଅଜ୍ଞାତ କବିଙ୍କଦ୍ୱାରା ଚରିତ ବଚନ ମାଳିକା, ଚୈତନ୍ୟ ଦାସ ବାବାଜୀକୃତ ଅର୍ଥରତ୍ନାବଳୀ, ପଣ୍ଡିତ ରୂପଦେବକୃତ ସାନନ୍ଦ ଗୋବିନ୍ଦ, ବିଠ୍‌ଠଲ ଦୀକ୍ଷିତ୍ କୃତ ଗୀତଗୋବିନ୍ଦ ବିବୃତ୍ତି, ବାଣେଶ୍ୱର ତର୍କବାଚସ୍ପତି କୃତ ଶ୍ରୁତିରଞ୍ଜନୀ, ହୃଦୟାଭରଣ କୃତ ଗୀତଗୋବିନ୍ଦ ତିଳକୋତ୍ତମ, କୁମାର ଖାନ୍ନା ପ୍ରଣୀତ ସନ୍ଦେହ ଭେଦିକା, ରତ୍ନାକର ଭଟ୍ଟ ବିରଚିତ ରସ ସନ୍ଦିପନୀ, ଅଜ୍ଞାତ କବି ବିରଚିତ ଭାବ ପ୍ରବୋଧିନୀ, ଭାବାଚାର୍ଯ୍ୟ କୃତ ମାଧୁରୀ, ରାମଦତ୍ତ ପ୍ରଣୀତ ସାନନ୍ଦ ଗୋବିନ୍ଦ, ବଂଶୀ ଦାସଙ୍କ ଗୀତଗୋବିନ୍ଦ ଭାଷ୍ୟ, ଭରତ ସେନ୍‌ଙ୍କ ସୁବୋଧା ଟୀକା, ରାମରାୟ ପ୍ରଣୀତ ତତ୍ତ୍ୱ ଦୀପିକା, ରତ୍ନାକର କନ୍ଦଲୀଙ୍କର ସାର ଦୀପିକା, ଗୋପାଳ କୃତ ଦୀପିକା, ପ୍ରଭୃତି

କେତେକ ଟୀକାର ଉପଲବ୍ଧି ହୋଇଥିଲେ ହେଁ ଏଗୁଡିକର କାଳ ନିରୁପଣ ହୋଇପାରିନାହିଁ । ଭାରତବର୍ଷରେ କେତେ ଯେ ଏହିପରି ପୋଥି ଗଚ୍ଛିତ ନଥବି ବା ରକ୍ଷଣା ବେକ୍ଷଣ ଅଭାବରୁ କୀଟ ଦ୍ରଂଷ୍ଟ ହୋଇ ନଷ୍ଟ ହୋଇ ନଥିବ ତା କିଏ କହିବ ।

**ବିଂଶ ଶତାବ୍ଦୀ :**

ଏହି ଶତାବ୍ଦୀ ବିଶେଷତଃ ଗବେଷଣାର ଶତାବ୍ଦୀ । ପୂର୍ବ ସୁରୀମାନଙ୍କର ଅକ୍ଷୟ ସାହିତ୍ୟକୃତିଗୁଡିକୁ ମୁଦ୍ରାଯନ୍ତ୍ର ସାହାଯ୍ୟରେ ପୁନଃ ମୁଦ୍ରଣ କରି ଏହି ଗୀତଗୋବିନ୍ଦ ସମ୍ପର୍କିତ ସାହିତ୍ୟର ପ୍ରଚାର ଓ ପ୍ରସାର ଯଥାର୍ଥ ଭାବରେ ଏହି ଶତକରେ ହୋଇ ପାରିଲା । ଗବେଷକମାନେ ବିଭିନ୍ନ ସଂଗ୍ରହାଳୟ, ଲାଇବ୍ରେରୀ, ମଠ ମନ୍ଦିର ଓ ବ୍ୟକ୍ତି ବିଶେଷଙ୍କଠାରୁ ଗଚ୍ଛିତ ଏହି ସାହିତ୍ୟକୁ ଅନୁସନ୍ଧାନ କରି ଏହା ଉପରେ ଗବେଷଣା କରି ନିବନ୍ଧମାନ ସଂକଳନ କରି ବିଭିନ୍ନ ପତ୍ରପତ୍ରିକାମାନଙ୍କରେ ଏହାର ମୁଦ୍ରଣ ଓ ସମୀକ୍ଷା ପ୍ରଭୃତି ଲେଖିବାକୁ ଲାଗିଲେ । ଫଳତଃ, ଏହି ସାହିତ୍ୟର ଧାରା ଗତାନୁଗତକି ଟୀକା, ବାର୍ତ୍ତିକ, ଅନୁକୃତି, ସମୀକ୍ଷାରେ ସୀମିତ ନରହି କ୍ରମଶଃ ଗବେଷଣାତ୍ମକ ସିଦ୍ଧାନ୍ତମାନ ପରିସ୍ଫୁଟ ହେବାକୁ ଲାଗିଲା ।

ଏହି ଶତାବ୍ଦୀରେ ଯେଉଁ କେତେଜଣ ଯୋଗଜନ୍ମା ଦିବଂଗତ ଓ ସତୀର୍ଥ ମହାନ୍ ସାହିତ୍ୟ ସାଧକ ଓ ଐତିହାସିକ ତଥା ଗବେଷକ ଗଣ ଏହି ମର୍ମରେ ନିଜର ବଳିଷ୍ଠ ଅବଦାନ ଦେଇଛନ୍ତି ସେମାନଙ୍କ ମଧ୍ୟରେ ଐତିହାସିକ ଜଗବନ୍ଧୁ ସିଂହ, ପରମ ବୈଷ୍ଣବ ପାର୍ବତୀ ଚରଣ ଦାସ, ପ୍ରାବନ୍ଧିକ ଭଗବାନ ପତି, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ଡଃ କରୁଣାକର କର, ପଣ୍ଡିତ ସଦାଶିବ ରଥଶର୍ମା, ଐତିହାସିକ ଡଃ ନବୀନ କୁମାର ସାହୁ, ଡଃ ପରମାନନ୍ଦ ଆଚାର୍ଯ୍ୟ, ଅଧ୍ୟାପକ କୁଳମଣି ମିଶ୍ର ଶର୍ମା, ବିମଳ କିଶୋର ମିଶ୍ର, ଐତିହାସିକ ଚକ୍ରଧର ମହାପାତ୍ର, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ନୀଳମଣି ଚାନ୍ଦ, ଗୋପାଳଚନ୍ଦ୍ର ପ୍ରହରାଜ, ବିଚ୍ଛନ୍ଦ ଚରଣ ପଟ୍ଟନାୟକ, କେଦାରନାଥ ମହାପାତ୍ର, ନୀଳମଣି ମିଶ୍ର, ରାଧାମୋହନ ମହାପାତ୍ର, ଡଃ ମହେଶ ପ୍ରସାଦ ଦାଶ, ଡଃ ରବିନାରାୟଣ ଦାଶ, ଡଃ ଭଗବାନ୍ ପଣ୍ଡା, ଡଃ ଗଙ୍ଗାଧର ବଳ, ଅଧ୍ୟାପକ ପଠାଣି ପଟ୍ଟନାୟକ, ଡଃ ବୈଷ୍ଣବ ଚରଣ ସାମଲ, ଡଃ ଗୋପୀନାଥ ମହାପାତ୍ର, ଡଃ ନଗେନ୍ଦ୍ର କୁମାର ପ୍ରଧାନ, ଡଃ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ଘନଶ୍ୟାମ ରଥ, ଡଃ ପ୍ରମୋଦ ଚନ୍ଦ୍ର ମିଶ୍ର, ଅଧ୍ୟାପକ ପ୍ରଫୁଲ୍ଲ କୁମାର ତ୍ରିପାଠୀ, ସଚ୍ଚିଦାନନ୍ଦ ମିଶ୍ର, ବାବାଜୀ ଫକୀର ମୋହନ ଦାସ, ଡଃ ମାୟାଧର ମାନସିଂହ, ଡଃ ସତ୍ୟନାରାୟଣ ରାଜଗୁରୁ, ଲକ୍ଷ୍ମୀନାରାୟଣ ମିଶ୍ର, ବେଣୀମାଧବ ପାଢ଼ୀ, ଶ୍ରୀନିବାସ ଉଦ୍‌ଗାତା, ପଣ୍ଡିତ ଅନ୍ତଯର୍ୟାମୀ ମିଶ୍ର ପ୍ରଭୃତି ପ୍ରାତଃ ସ୍ମରଣୀୟ ।

ବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ, ଶ୍ରୀ ଜୟଦେବ ଫାଉଣ୍ଡେସନ୍ ସ୍ଥାପିତ ହୋଇ ଶ୍ରୀଯୁକ୍ତ ଅଜିତ୍ କୁମାର ତ୍ରିପାଠୀ ଏବଂ ଅନ୍ୟମାନଙ୍କର ଉତ୍ସର୍ଗୀକୃତ ଉଦ୍ୟମ ଫଳରେ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ସହରରେ, ରାଜ୍ୟ ଓ ରାଜ୍ୟ ବାହାରେ, ଦେଶବିଦେଶରେ ଗୀତଗୋବିନ୍ଦ ସନ୍ଧ୍ୟା ଆୟୋଜିତ ହେଉଛି ଓ ଏହି ସଂସ୍କୃତିର ପ୍ରଚାର ଓ ପ୍ରସାର ନିମିତ୍ତ ନିରନ୍ତର ଚେଷ୍ଟା କରାଯାଉଛି । ପ୍ରତିବର୍ଷ ଏହି ଟ୍ରଷ୍ଟ ତରଫରୁ ଅକ୍ଷୟ ତୃତୀୟା ଦିନ ମହାକବି ଜୟଦେବଙ୍କ ଜନ୍ମ ତିଥିରେ ଏକ ସଂକୀର୍ତ୍ତନ ଦଳ ଭୁବନେଶ୍ୱରସ୍ଥ ଅନନ୍ତ ବାସୁଦେବ ମନ୍ଦିରରୁ ବାହାରି କବିଙ୍କ ଜନ୍ମସ୍ଥାନ କେନ୍ଦୁଲୀଠାରେ ଏକ ଜୟଦେବ ସଂସ୍କୃତି ଭବନ, ସଂଗ୍ରହାଳୟ ଓ ପାର୍କ ନିର୍ମିତ ହୋଇ ବିଶ୍ୱଦରବାରରେ ଏହାର ପ୍ରଚାର ପ୍ରସାର ନିମିତ୍ତ ନିର୍ଦ୍ଦିଷ୍ଟ ଭାବରେ ପଦକ୍ଷେପ ନିଆଯାଉଛି । ରାଜ୍ୟ ସରକାରଙ୍କ ପକ୍ଷରୁ ପ୍ରକାଶ ପାଉଥିବା ଉତ୍କଳ ପ୍ରସଙ୍ଗର ଅକ୍ଷୟ ତୃତୀୟା ସଂଲଗ୍ନ ସଂଖ୍ୟାଟିକୁ ଜୟଦେବ ବିଶେଷାଙ୍କ ରୂପେ ଉତ୍ସର୍ଗ କରିବା ଆନନ୍ଦର କଥା । ବିଶ୍ୱସ୍ତରର ଏହି ପ୍ରଭାବଶାଳୀ କବିଙ୍କୁ ଯେତେ ଶ୍ରଦ୍ଧାସୁମନ ଦେଲେ ମଧ୍ୟ ଏହା ତାଙ୍କ ପ୍ରତି ଓ ତାଙ୍କ ପ୍ରତିଭାପ୍ରତି ଏକ ନଗଣ୍ୟ ଉପହାର ମାତ୍ର । ଏହି ଜାତୀୟ କର୍ତ୍ତବ୍ୟ କଲାବେଳେ କାହାର ମଧ୍ୟ ଆତ୍ମତୃପ୍ତି ନ ଆସୁ ଓ ଉତ୍ତରୋତ୍ତର ଅଧିକ କରିବା ପାଇଁ ଉତ୍ସାହ ବଢୁ ।

ପରିଶେଷରେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ରଚିତ ଶ୍ରୀ ଗୀତଗୋବିନ୍ଦ ପୁସ୍ତକର ପୃ-୮୫ରେ ଉଦ୍ଧୃତ ପରମଭକ୍ତ ଦାଦୁରଙ୍କ ଉକ୍ତି ସହିତ ସୂଚୀତ କରୁଛି -

ବାସ୍ କହେ ହମ୍ ଫୁଲ୍‌କୋ ପାଉଁ, ଫୁଲ କହେ ହମ୍ ବାସ୍,
ଭାଷ୍ କହେ ହମ୍ ସତ୍‌କୋ ପାଉଁ, ସତ୍ କହେ ହମ୍ ଭାଷ୍ ।
ରୂପ୍ କହେ ହମ୍ ଭାବ୍‌କୋ ପାଉଁ, ଭାବ୍ କହେ ହମ୍ ରୂପ୍
ଆପସ୍ ମେଁ ଦଉଁ ଭୂଜନ ଚାହେଁ, ପୂଜା ଅଗାଧ ଅନୁପ୍ ॥

ଅର୍ଥାତ୍, ସୁଗନ୍ଧ କହେ- ମୁଁ ଚାହେଁ ଫୁଲ, ଅନ୍ୟଥା ମୋର ପ୍ରକାଶର ଉପାୟ ନାହିଁ ?

ଅନ୍ୟପକ୍ଷରେ ଫୁଲ କହେ- ମୁଁ ତ ସ୍ଥୂଳବସ୍ତୁ, ସୁଗନ୍ଧି ବିନା ମୋ ଜୀବନର ସାର୍ଥକତା କାହିଁ ?

ଭାଷା କହେ- ମୁଁ ସତ୍ୟର ଅପେକ୍ଷାକରେ, ସତ୍ୟ ବିନା ମୁଁ ଅବା କିଏ ?

ପୁଣି ସତ୍ୟ କହେ- ମୁଁ ଚାହେଁ ଭାଷାର ସଙ୍ଗ, ତା'ବିନା ମୋର ଯେ ପ୍ରକାଶର ଉପାୟ ନାହିଁ ।

ରୂପ କହେ - ମୁଁ ଭାବ ଚାହେଁ, ଭାବ ବିନା ମୁଁ ଯେ ପ୍ରାଣହୀନ ।

ଭାବ କହେ - ରୂପର ସଙ୍ଗ ନ ପାଇଲେ ମୋର ଆନନ୍ଦ ଆସିବ କେଉଁଠୁ ?

ନୈସର୍ଗିକ ନାୟକ ନାୟିକା ରାଧାକୃଷ୍ଣଙ୍କର ମିଳନ ବିରହଭରା ଏହି 'ଶ୍ରୀ ବାସୁଦେବ ରତି କେଳି କଥା ପ୍ରବନ୍ଧ' ପୂର୍ବୋକ୍ତ ପ୍ରାକୃତିକ ନିୟମର ଏକ ବ୍ୟତିକ୍ରମ । ଯୁଗ ଯୁଗ ଧରି ଏହା ନିଜର ଆଧ୍ୟାତ୍ମିକ, ସାଂସ୍କୃତିକ, ଭାବଗତ, ସାରସ୍ୱତ ଓ ସାଙ୍ଗୀତିକ ସୌରଭରେ ଭକ୍ତ ରସଗ୍ରାହୀ ଜନମାନସକୁ ପ୍ରଭାବିତ କରି ଚାଲିଛି ଓ ଚାଲିଥିବ । ଲଳିତ ମଧୁର ସଙ୍ଗୀତର ମୂର୍ଚ୍ଛନା ଭାଷାର ପ୍ରତିବନ୍ଧକ ମାନେନା । ଏଥିପାଇଁ ଗୀତଗୋବିନ୍ଦ ସର୍ବଭାଷା ବୋଧଗମ୍ୟ ହେବା ସହିତ ସର୍ବ ନୃତ୍ୟ ଶୈଳୀରେ ଗାନ ନର୍ତ୍ତନ ହୋଇ ପାରିଛି । ଓଡିଶୀର ଜନନୀ ମାହାରୀ ନୃତ୍ୟରେ ଏହାର ସୃଷ୍ଟି ହେଲେ ହେଁ ଏହା ଅତ୍ୟନ୍ତ ସଫଳଭାବେ ହିନ୍ଦୁସ୍ତାନୀ, ଭୋଜପୁରୀ, ରାଜସ୍ଥାନୀ, କର୍ଣ୍ଣାଟକୀ, ମଣିପୁରୀ, ବିହୁ, କଥାକଳି, କୁଚିପୁଡି, ଭାରତନାଟ୍ୟମ୍ ପ୍ରଭୃତି ସମସ୍ତ ଭାରତୀୟ ପ୍ରାନ୍ତୀୟ ନୃତ୍ୟ ଶୈଳୀରେ ଅତ୍ୟନ୍ତ ସଫଳ ଭାବରେ ଅଭିନୀତ ହୋଇ ଏହାର ସାର୍ବଜନୀନତା ପ୍ରାମାଣିକ ଭାବରେ ପ୍ରତିପାଦନ କରିପାରିଛି । ଆନ୍ତର୍ଜାତୀୟସ୍ତରରେ ମଧ୍ୟ ଗୀତଗୋବିନ୍ଦର ଲୀଳାଭିନୟ ଓ ଗାନନର୍ତ୍ତନ ଶ୍ରୋତା ଓ ଦର୍ଶକଙ୍କୁ ଶତତ ଅବିଭୂତ କରିଥାଏ । ଏହା ହିଁ ସାହିତ୍ୟର ସାର୍ଥକତା ଓ ଏହି ଆନ୍ତର୍ଜାତୀୟ ବୋଧଗମ୍ୟତା ହେଉଛି ମହାକବି ଶ୍ରୀ ଜୟଦେବଙ୍କର ବାସ୍ତବ ସଫଳତା । ଏହି ଆଲୋକବର୍ତ୍ତିକା ଯୁଗ ଯୁଗ ଧରି ସାହିତ୍ୟ ଓ ସଙ୍ଗୀତକୁ ଦିଗ୍‌ଦର୍ଶନ ଦେଉଥିବ ।

ଭୂ-ଅର୍ଜନ ଅଧିକାରୀ
ଅନୁଗୋଳ



# ଅଲୌକିକ ଜୟଦେବ ଓ ଗୀତଗୋବିନ୍ଦ

**ଜୟଦେବ ଓ ପଦ୍ମା**

ଉତ୍କଳଖଣ୍ଡର କେନ୍ଦୁବିଲ୍ୱ ଗ୍ରାମରେ ସେତେବେଳେ ଜୟଦେବ ନାମରେ ଜଣେ ପରମ ବୈଷ୍ଣବ ଭକ୍ତ କୁଳୀନ ବ୍ରାହ୍ମଣ ଘରେ ଜନ୍ମ ହୋଇଥିଲେ । ସେ ଥିଲେ ପରମ ବିଷ୍ଣୁଭକ୍ତ, ମହାପଣ୍ଡିତ, ଜିତେନ୍ଦ୍ରିୟ, ବିରକ୍ତ, ନିଃସଙ୍ଗ, ଉଦାସୀ । ସେ ଦିନେ ଶ୍ରୀକ୍ଷେତ୍ରରେ ପ୍ରବେଶ କରି ଏକ ବିଶାଳ ବଟବୃକ୍ଷ ତଳେ ରହି ଶ୍ରୀଜଗନ୍ନାଥଙ୍କ ସେବା କରିବାରେ ଲାଗିଲେ ।

ସେହି ସମୟରେ ଦକ୍ଷିଣ ଦେଶରେ ଜଣେ ଅପତ୍ୟବିହୀନ ବ୍ରାହ୍ମଣ ରହୁଥିଲେ । ସନ୍ତାନସନ୍ତତି କାମନା କରି ସେ ଶ୍ରୀକ୍ଷେତ୍ର ଆସି ଜଗନ୍ନାଥଙ୍କୁ ସେବା କଲେ । ତାଙ୍କର ପୁତ୍ର ଅଥବା କନ୍ୟା ଯାହା ହେବ ସେ ତାହାଙ୍କୁ ଶ୍ରୀଜଗନ୍ନାଥଙ୍କ ସେବାରେ ସମର୍ପଣ କରିଦେବେ ବୋଲି ମହାପ୍ରଭୁ ବ୍ରହ୍ମରାଶିଙ୍କୁ ଜଣାଇଲେ । ଏହାର କିଛିଦିନ ପରେ ତାହାଙ୍କର କନ୍ୟାଟିଏ ଜାତ ହେଲା । କନ୍ୟାଟି ଯୁବତୀ ହୋଇଯିବା ପରେ ସେହି ଦକ୍ଷିଣି ବ୍ରାହ୍ମଣ କନ୍ୟାକୁ ଜଗନ୍ନାଥଙ୍କୁ ସମର୍ପଣ କରି ଦେଲେ । ମହାପ୍ରଭୁ ଶ୍ରୀଜଗନ୍ନାଥ ସ୍ୱପ୍ନରେ ବ୍ରାହ୍ମଣକୁ ଆଜ୍ଞା ଦେଲେ, 'ତୋ କନ୍ୟାକୁ ଦାସୀ ରୂପେ ଆମେ ଅଙ୍ଗୀକାର କଲୁ । ହେଲେ ଆମର ଜଣେ ପରମପ୍ରିୟ ଉଦାସୀ ଦାସ ବଟବୃକ୍ଷ ମୂଳରେ ବସିଛି । ତା'ର ନାମ ଜୟଦେବ । ତୁ ତୋ' କନ୍ୟାରତ୍ନକୁ ଜୟଦେବକୁ ଦାନ କର ।'

ଦକ୍ଷିଣି ବିପ୍ର ମହାପ୍ରଭୁଙ୍କର ଆଦେଶ ପାଇବା ମାତ୍ରେ ପ୍ରସନ୍ନ ହୋଇଗଲେ । ସେ କନ୍ୟାକୁ ଧରି ଜୟଦେବଙ୍କ ପାଖକୁ ଗଲେ । ଆଉ ଗତ ରାତିରେ ପାଇଥିବା ପ୍ରଭୁଙ୍କ ଆଜ୍ଞା ଜଣାଇଲେ । ଜୟଦେବ ଏହା ଶ୍ରବଣ କରିବା ମାତ୍ରେ ଚମକି ପଡ଼ିଲେ । ସେ କହିଲେ, 'ମହାଶୟ, ପ୍ରଭୁଙ୍କ ଏପରି ଆଜ୍ଞା ପାଳନ କରିବାକୁ ମୋର ବଳ ନାହିଁ ।' ଏହାଶୁଣି ଦକ୍ଷିଣି ବୃଦ୍ଧ ବିପ୍ର କହିଲେ, 'ଏହା ପ୍ରଭୁଙ୍କ ଆଜ୍ଞା । ଏହାକୁ ଅବଜ୍ଞା କାହିଁକି କରୁଛ !'

ଜୟଦେବ କହିଲେ, 'ନାଇଁ ଆଜ୍ଞା, ମୁଁ ପାରିବି ନାହିଁ । ତୁମେ ଆଉ ଅଧିକ କଟାଳ କର ନାହିଁ । ତୁମେ ଯଦି ମୋତେ ବାଧ କରିବ ତେବେ ମୁଁ ଶ୍ରୀକ୍ଷେତ୍ର ଛାଡ଼ି ପଳାଇଯିବି ସିନା, ତୁମ କଥା ରଖିପାରିବି ନାହିଁ ।' ଏହାଶୁଣି ସେହି ବୃଦ୍ଧ ବିପ୍ର ଚିଡ଼ିଗଲେ । ସେ ତାଙ୍କ ଯୁବତୀ କନ୍ୟାକୁ କହିଲେ, 'ଆଲୋ ପଦ୍ମାବତି ! ଇଏ ତୋର ବର । ପ୍ରଭୁ କହିଛନ୍ତି, ତୁ ଏହାକୁ ଆଦର କରି ଏହିଠାରେ ରହ'- ଏପରି କନ୍ୟାକୁ କହି ସେ ତାଙ୍କ ଦେଶକୁ ଚାଲିଗଲେ ।

ସାଧୁ ଜୟଦେବଙ୍କ ପାଖରେ କନ୍ୟା ପଦ୍ମାବତୀ ମୌନରେ ବସି ରହିଲା । ପଦ୍ମାବତୀ ଅତି ଗୁଣବତୀ ଓ ପଦ୍ମିନୀ ଜାତିର ଜଣେ ପ୍ରଭୁଭକ୍ତା ନାରୀ ଥିଲେ । ଜୟଦେବ ଯେତେ ପ୍ରକାର ଭାବରେ ତାକୁ ବୁଝାଇ ବିଦା କଲେ, ସେ କିଛି ନ ଶୁଣି କେବଳ କହିଲେ, 'ପିତା ମୋତେ ତୁମ ପାଖରେ ସମର୍ପଣ କରିଯାଇଛନ୍ତି । ମୋର ଗତ୍ୟନ୍ତର ନାହିଁ । ତୁମେ ହେଉଛ ମୋର ପ୍ରାଣବଲ୍ଲଭ । ମହାପ୍ରଭୁ ମଧ ଏ କଥା କହିଛନ୍ତି । ଏ ଦେହ ଓ ପ୍ରାଣର ଅଧିକାରୀ ତୁମେ । ମୋତେ ଗୋଡ଼ରେ ଠେଲି ପେଲି ଦେଲେ ମୁଁ ପୁଣି ମୁଣ୍ଡ ପୋତି ପୋତି ତୁମ ପାଖରେ ନିଶ୍ଚେ ପଶିବି ।'

ଏ କଥା ଶୁଣି ଜୟଦେବ ମନେ ମନେ ଭାବିଲେ, 'ଏହି ରୂପସୀ ମୋର ସଙ୍ଗିନୀ ରୂପେ ମୋର ମୋହପାଶ ହେଲା । ଯାହା ଜଗନ୍ନାଥଙ୍କର ଇଚ୍ଛା । ମୁଁ ବା କିଏ ଯେ କ'ଣ କରିପାରନ୍ତି ?' ଏପରି ସ୍ଥିର କରି ପଦ୍ମାଙ୍କୁ ସ୍ୱୀକାର କଲେ । ସେ ସେହିଠାରେ ଏକ କୁଟୀର ନିର୍ମାଣ କଲେ । ଶ୍ରୀରାଧାମାଧବଙ୍କୁ ଆଣି ସ୍ଥାପନା କଲେ, ଆଉ ତାଙ୍କର ପାଦ ସେବାର ଭାର ପଦ୍ମାଙ୍କୁ ଅର୍ପଣ କଲେ । ଏହି ପଦ୍ମାବତୀ ମଧ ଅନେକ ଅଲୌକିକ ଗୁଣର ଅଧିକାରିଣୀ ହୋଇଥିଲେ ।

**ମାଧବ ପଦ୍ମାଙ୍କ ହାତରନ୍ଧା ଖାଇଲେ :**

ଜୟଦେବ ସାଧୁଙ୍କ ମହିମା ଯେତେ ଲେଖିଲେ ବି ସରିବ ନାହିଁ । ଭଗବାନ ବି କେଡ଼େ କଉତୁକିଆ । ଦିନେ ମାଧବଙ୍କର

ପଦ୍ମାବତୀଙ୍କ ହାତ ରାନ୍ଧଣା ଖାଇବାକୁ ମନହେଲା । ସେ ଦିନ ଜୟଦେବ ଦୂର ଗାଁକୁ ଯାଇଥିଲେ । ମାଧବ କପଟରେ ଜୟଦେବଙ୍କ ରୂପ ଧରି ଘରେ ପହଞ୍ଚିଗଲେ । ଆଉ ପଦ୍ମାବତୀଙ୍କ ହାତରନ୍ଧା ରୋଷେଇ ଭୋଜନ କରି ପରମ ତୃପ୍ତ ହେଲେ । ଜୟଦେବ ଆସିବା ବେଳକୁ ସେ ଘରୁ ପଳାଇଥିଲେ । ଜୟଦେବଙ୍କ ଭଳି ସାଧୁ ଆଉ ପଦ୍ମାବତୀଙ୍କ ଭଳି ସାଧ୍ୱୀଙ୍କ ସହିତ ମାଧବ ଏହିପରି ନାନା କୌତୁକ କରୁଥିଲେ ।

**ମାଳିନୀ ଓ କହ୍ନେଇ :**

ଥରେ ବନମାଳୀପୁର ଗ୍ରାମର ଚାଷୀ ଝିଅ ଗୀତଗୋବିନ୍ଦ ଗାଇ ଗାଇ ଅତି ଉଲ୍ଲାସରେ ତା'ର ବାଇଗଣ କିଆରିରେ ପଶି ବାଇଗଣ ତୋଳୁଥିଲା । ଏହି ଗୀତଗୋବିନ୍ଦ ଶୁଣି ଶୁଣି କହ୍ନେଇ ତା' ପଛେ ପଛେ ନାଚି ନାଚି ଚାଲିଥିଲେ । ତାଙ୍କ ପାଦ ଖାଲଖମାଣ, କଣ୍ଟାଝଟାରେ ପଡୁଥିଲେ ବି ସେ ଅତିଶୟ ପ୍ରେମରେ ବାଳିକାର ପଛେ ପଛେ ବଂଶୀ ବଜାଇ ବଜାଇ ଚାଲିଥିଲେ । ବାଇଗଣ ଗଛର କଣ୍ଟା ଲାଗି କହ୍ନେଇଙ୍କର ପୀତାମ୍ବର ବସ୍ତ୍ର ଓ ଉତ୍ତରୀୟ ଚିରି ଯାଇଥିଲା । ଜଗନ୍ନାଥେ ତ କହ୍ନେଇଙ୍କ ରୂପରେ ଯାଇଥିଲେ । ସମୟ ହୋଇଯିବାରୁ ସେ ଶ୍ରୀମନ୍ଦିରକୁ ଫେରି ଆସିଲେ । ପଣ୍ଡାମାନେ ସେତେବେଳେ ଜଗନ୍ନାଥଙ୍କ ଓଢ଼ଣି ଉତ୍ତରୀୟ ଚିରିଥିବା, ବାଇଗଣ କଣ୍ଟା ଓ ପତ୍ର ଲାଗିଥିବା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ।

ପ୍ରଭୁଙ୍କ ବସ୍ତ୍ରରେ ଏ ସବୁ କୁଆଡୁ ଆସିଲା ? ପଣ୍ଡା ପଢ଼ିଆରୀମାନେ ଭୟରେ ଥରି ଥରି ରାଜାଙ୍କୁ ଏହା ଜଣାଇଲେ । ମହାରାଜ ଏ ଖବର ପାଇ ପ୍ରଭୁଙ୍କ ପାଖକୁ ଆସି ପ୍ରତ୍ୟକ୍ଷରେ ସବୁ ଦେଖିଲେ । ସେ ମହାପ୍ରଭୁ ଜଗନ୍ନାଥଙ୍କୁ ଅତି ଭକ୍ତିରେ ସ୍ତୁତି କରିବାରେ ଲାଗିଲେ, ''ଆହେ ଜଗତ ଠାକୁର, ଏହି ବୈକୁଣ୍ଠପୁର ଛାଡ଼ି କାହିଁକି ବଣକୁ ଯାଇଥିଲ । ଆପଣଙ୍କ ଶ୍ରୀଅଙ୍ଗରେ କ୍ଷତ, ବସ୍ତ୍ର ଚିରିବା ଦୃଶ୍ୟ ଅସହ୍ୟ ହେଉଛି । ମୋ' ଭଳି ଭୃତ୍ୟ ଥାଉ ଥାଉ ଜଗତପ୍ରାଣଙ୍କର କେଉଁ ଦ୍ରବ୍ୟର ଆବଶ୍ୟକ ପଡ଼ିଲା ଯେ ନିଜେ ସେଥିପାଇଁ ବିଜେ ହୋଇଗଲେ । ମୋତେ ତ ଆଜ୍ଞା ଦେଇଥିଲେ ଇନ୍ଦ୍ର ବ୍ରହ୍ମା ଚନ୍ଦ୍ରଙ୍କୁ ଆପଣଙ୍କ ସେବାରେ ଖଟାଇବା ପାଇଁ ବାନ୍ଧିଆଣି ଥାଆନ୍ତି ! ଆପଣ ଖାଲି ପାଦରେ ଚାଲି ଚାଲି ଯାଇଥିଲେ । ଆହା, ଆପଣଙ୍କ ସୁକୋମଳ ପାଦରେ ସତେ କେତେ କଣ୍ଟା ନ ଫୁଟିଛି !'' ରାଜା ଏହିପରି ବିକଳରେ କାନ୍ଦି କାନ୍ଦି ପ୍ରଭୁଙ୍କ ପାଦ ତଳେ ଲୋଟିଗଲେ ।

ଏହି ସମୟରେ ମନ୍ଦିର ଗହ୍ୱରରେ ଶୂନ୍ୟ ବାଣୀ ପ୍ରତିଧ୍ୱନିତ ହେଲା, ''ହେ ରାଜା ଶୁଣ ! ମାଳିନୀ ନାମରେ ଚଷା ଝିଅଟିଏ ବଡ଼ ସୁନ୍ଦର ଭାବ ଓ ତାଳରେ ଶ୍ରୀଗୀତଗୋବିନ୍ଦ ଗାନ କରୁଥିଲା । ସେ ଗୀତ ବୋଲୁଥାଏ ଓ ବାଇଗଣ ତୋଳୁଥାଏ । ମୁଁ ତା' ଗୀତଗୋବିନ୍ଦ ଶୁଣିବାକୁ ତା' ପଛେ ପଛେ ଯାଇ ଏପରି ଦଶା ହୋଇଛି ।''

ରାଜା ଏପରି ମହାପ୍ରଭୁଙ୍କ ବାକ୍ୟ ଶୁଣି ସହସା ମାଳିନୀ କନ୍ୟାକୁ ଆଣିବା ପାଇଁ ଶିବିକା ପଠାଇଦେଲେ । ମାଳିନୀ ଆସିବାମାତ୍ରେ ଜଗମୋହନରେ ଗୀତଗୋବିନ୍ଦ ପଢ଼ିବାକୁ ମହାରାଜା ତାକୁ କହିଲେ । ତାହାଠାରୁ ଗୀତଗୋବିନ୍ଦ ଶୁଣି ମହାପ୍ରଭୁ ମହାନନ୍ଦ ଲଭିଲେ । ମହାରାଜା ସେହି ବାଳିକା ପାଇଁ ଶ୍ରୀକ୍ଷେତ୍ରରେ ଗୃହ, ଖଞ୍ଜା, ଭୂମି, ଖାଇ ଇତ୍ୟାଦି ଖଞ୍ଜି ଦେଲେ । ସେହି ଦିନଠାରୁ ପ୍ରତ୍ୟହ ପ୍ରଭୁଙ୍କ ସାନ୍ନିଧ୍ୟରେ ଗୀତଗୋବିନ୍ଦ ଗାଇ ଶୁଣାଇବାକୁ ସନନ୍ଦ କରିଦେଲେ । ଆଜି ପର୍ଯ୍ୟନ୍ତ ତା'ର ବଂଶଧରମାନେ ଶ୍ରୀମନ୍ଦିରରେ ଗୀତଗୋବିନ୍ଦ ଗାଉଛନ୍ତି ।

**ଯବନର ଭକ୍ତିଭାବ :**

ମହାରାଜା ସେହି ଦିନଠାରୁ ସମଗ୍ର ରାଜ୍ୟରେ ଆଦେଶ ଘୋଷଣା କରିଦେଲେ କେହି ଯେପରି କୁତ୍ସିତ ସ୍ଥାନରେ, ଗମନାଗମନ ବେଳେ ବା କୌଣସି ସ୍ଥାନରେ ବସିରହି ଗୀତଗୋବିନ୍ଦ ଗାଇବେ ନାହିଁ ।

ଏହିପରି କେତେ ଦିନ ଗଲା । ଦିନେ ଜଣେ ଯବନ ଏହି ଘୋଷଣା ଶୁଣିଲା । ସେ ଏହାକୁ ବେଖାତିର କରି ଘୋଡ଼ାରେ ବସି ଗୀତଗୋବିନ୍ଦ ବୋଲି ବୋଲି ଚାଲିଲା । କିଛି ବାଟ ଯିବାପରେ ସେ ତା' ପଛପଟେ ବଂଶୀର ସ୍ୱର ଶୁଣିବାକୁ ପାଇଲା । ସତେ ଯେପରି କେହି ଜଣେ ତା' ପଛରେ ବଂଶୀ ବଜାଉଛି । ସେ ପଛକୁ ବୁଲି ଚାହିଁଲା । ଦେଖିଲା ତା' ପଛରେ କେହି ନାହିଁ । ତେଣୁ ଏହାକୁ ମିଥ୍ୟା ପ୍ରଚାର ବୋଲି ମନେ ମନେ ଭାବି ମୁହଁ ବୁଲାଇ ଦେବା ମାତ୍ରେ ଦେଖିଲା ସମ୍ମୁଖରେ ଭାବଗ୍ରାହୀ ଠିଆ ହୋଇଛନ୍ତି । ଭାବଗ୍ରାହୀଙ୍କର ଅତୀବ ରମଣୀୟ ଶ୍ୟାମଳ ସୁନ୍ଦର ରୂପ ଦେଖି ଯବନର ଅଜାଣତରେ ଅଶ୍ରୁ ଝରିବାରେ ଲାଗିଲା । ସେ ଜାଣିଲା ହରିଙ୍କର ପରାପର କେହି ନାହିଁ କି ତାଙ୍କ ବିଚାରରେ ଯବନ, ଚଣ୍ଡାଳ ଆଦି କେହି ନାହାନ୍ତି । ସେହି ଦେବରାୟ ହେଉଛନ୍ତି ଭକ୍ତବତ୍ସଳ ଶ୍ରୀଜଗନ୍ନାଥ । ତାଙ୍କୁ ଯିଏ ଭଜେ, ସେ ପାଏ ।

**କୁଷ୍ଠରୋଗରୁ ମୁକ୍ତ :**

ଭଗବାନ ପ୍ରକୃତରେ ହେଉଛନ୍ତି ଅତ୍ୟଧିକ ଭଜନପ୍ରିୟ । ଭଜନ-କୀର୍ତ୍ତନ ବୋଲିବାଦ୍ୱାରା ଭାବର ଉଦୟ ହୁଏ । ଆଉ

ଭଗବାନ ହେଉଛନ୍ତି ଭାବ ବିନୋଦିଆ । ଜାତି ଫାତି, ଧନୀ ଗରିବ, ରୋଗୀ ଭୋଗୀ ସେ କିଛି ଦେଖନ୍ତି ନାହିଁ । ମନ୍ତ୍ର, ଧ୍ୟାନ, ଜପ, ତପ, ଯଜ୍ଞ, ଦାନ ଯେତେ କଲେ ବି ଭଗବାନଙ୍କୁ ସହଜରେ ପାଇ ହୁଏ ନାହିଁ । ତାଙ୍କୁ ତାଙ୍କର ପ୍ରିୟ ଭଜନ ଶୁଣିବାକୁ ଯେତେ ଭଲ ଲାଗେ ତା' ତୁଳନାରେ ଅନ୍ୟ କୌଣସି ଥିରେ ସେ ପ୍ରସନ୍ନ ହୁଅନ୍ତି ନାହିଁ ।

ଢେଙ୍କାନାଳ ଜିଲ୍ଲାରେ କୁଆଳ ନାମରେ ଗୋଟିଏ ଗ୍ରାମ ଅଛି । ସେହି ଗ୍ରାମରେ ଗୋଟିଏ ଶିବ ମନ୍ଦିର ଅଛି । କୁଆଳ ଗ୍ରାମରେ ଜଣେ କୁଷ୍ଠରୋଗୀ ରହୁଥାଏ । ତାକୁ ଗ୍ରାମବାସୀମାନେ ଗାଁ ବାହାରେ ରହିବାକୁ କହିଲେ । ସେ ଗାଁ ମୁଣ୍ଡରେ, ଗୋଟିଏ ନିମଗଛ ମୂଳରେ, କୁଡ଼ିଆଟିଏ କରି ରହିଥାଏ ।

ସେହି କୁଷ୍ଠରୋଗୀ ଜଣକ ବଡ଼ ଦୁଃଖୀ ଲୋକ ଥିଲା । କିନ୍ତୁ ସେ ଅନ୍ୟମାନଙ୍କଠାରୁ ଶୁଣିଥିଲା ଯେ, ଭଗବାନ ଶ୍ରୀ ଜୟଦେବଙ୍କ ରଚିତ ଗୀତଗୋବିନ୍ଦ ଶୁଣିବାକୁ ଭାରି ଭଲ ପାଆନ୍ତି । ଭଗବାନଙ୍କୁ ଗୀତଗୋବିନ୍ଦ ଶୁଣାଇଲେ ସେ ପ୍ରସନ୍ନ ହେବେ ଓ ତା' ରୋଗ ଭଲ କରିଦେବେ - ଏ କଥା ଜାଣିଲେ କ'ଣ ହେବ, ସେ ତ ବଡ଼ରୋଗୀ, ଦିନବେଳେ ମନ୍ଦିରକୁ ଲୋକମାନେ ଯା'ଆସ କରନ୍ତି, ସେ ଯାଇପାରିବ ନାହିଁ । ତେଣୁ ସେ ପ୍ରତିଦିନ ରାତିରେ ସେହି ଶିବ ମନ୍ଦିର ପଛପଟକୁ ଯାଇ, ମନ୍ଦିର ଆଡ଼କୁ ଚାହିଁ ଗୀତଗୋବିନ୍ଦ ଗାଇବାରେ ଲାଗିଲା । ତା' ଭାଇ ସବୁଦିନ ରାତିରେ ତାକୁ ନେଇ ଶିବ ମନ୍ଦିର ପଛପାଖରେ ଛାଡ଼ି ଦେଇ ଆସେ । ପୁଣି ଅଧରାତିରେ ନେଇ ଆସେ । କୁଷ୍ଠରୋଗୀ ସେ, ମନ୍ଦିରର ସିଂହଦ୍ୱାର ତା' ପାଇଁ ମନା ।

ଲୋକଟିକୁ କୁଷ୍ଠରୋଗ ହୋଇଥିଲେ କ'ଣ ହେବ, ତା' କଣ୍ଠ ସ୍ୱର ଥିଲା ଉତ୍ତମ ଓ ସେ ସୁନ୍ଦର ଭଜନ ଗାଇ ପାରୁଥିଲା । ଗୀତଗୋବିନ୍ଦକୁ ମୁଖସ୍ଥ କରି, ସେ ସବୁଦିନ ରାତିର ନିରୋଳାରେ ଶିବ ମନ୍ଦିର ପଛପଟେ ବସି ଗାଇବାରେ ଲାଗିଥାଏ । ଅନ୍ଧାର ରାତି, ଜଙ୍ଗଲ ଘେରା ପରିବେଶ, ନିର୍ଜନ ସ୍ଥାନ, ଜଙ୍ଗଲରେ ପଶୁ, ସାପ, ବିଛା ଥାଆନ୍ତି । ସେମାନଙ୍କପ୍ରତି ତା'ର କୌଣସି ପ୍ରକାର ଭୟ ନଥାଏ । ସେ ଜାଣିଥିଲା ଯେ, ଗୀତଗୋବିନ୍ଦ ଗାନ କରୁଥିବା ଲୋକର କେହି କେବେ କିଛି କ୍ଷତି କରିପାରନ୍ତି ନାହିଁ । ଓଡ଼ିଶାର ମହାନ୍ କବି ଜୟଦେବଙ୍କ ବିଷୟରେ ସେ ଅନେକ ଗପ ଶୁଣିଥାଏ । ଏହିପରି ସେ ନିର୍ଭୀକ ଭାବେ ଭଗବାନ ଶିବଶଙ୍କରଙ୍କୁ ମନ୍ଦିରର ପଛପଟରୁ ସୁନ୍ଦର ସ୍ୱରରେ ଗୀତଗୋବିନ୍ଦ ଶୁଣାଇବାରେ ଲାଗିଥାଏ । କେତେଦିନ ଧରି ସେ ଏଭଳି ନିଷ୍ଠାର ସହିତ ଆକୁଳ ହୃଦୟରେ ଗାଇବାରେ ଲାଗିଥାଏ । ଦିନେ ରାତିରେ ହଠାତ୍ ମନ୍ଦିର ଭିତରୁ ଶୁଣାଗଲା- 'ଆରେ ସେ କିଏ କେଉଁଠି ମୋର ପ୍ରିୟ ଭଜନ ଗୀତଗୋବିନ୍ଦ ବୋଲୁଛି । ମୋତେ ଭାରି ଭଲ ଲାଗୁଛି । ମୋ' ସାମ୍ନାକୁ ଆସି ବୋଲ । ମୁଁ ଶୁଣିବି ।'

ଏହା ଶୁଣିବା ସଙ୍ଗେ ସଙ୍ଗେ କୁଷ୍ଠରୋଗୀ ଜଣକ କହିଲା, ''କିଏ ସେ, ସେ ଗୀତଗୋବିନ୍ଦ ଶୁଣିବାକୁ କହୁଛନ୍ତି, ସେ ମୋ' ସାମ୍ନାକୁ ଆସନ୍ତୁ, ମୁଁ ଖଣ୍ଡିଆ ରୋଗୀ, ମୋର ପାଦ ନାହିଁ, ମୁଁ ଚାଲି ଚାଲି ଯାଇପାରିବି ନାହିଁ ।''

ଏତିକି କଥା କହିଛି କି ନାହିଁ ହଠାତ୍ ଏକ ଭୀଷଣ ଗର୍ଜନ ଶୁଣାଗଲା । ଆଉ ତା' ସଙ୍ଗେ ସଙ୍ଗେ ମନ୍ଦିର ଖୁଣ୍ଟ ମୂଳଦୁଆ ସହିତ ଘନ ଘର୍ଘର ନାଦ କରି ଅର୍ଦ୍ଧବୃତ୍ତାକାରରେ ବୁଲିଗଲା । କୁଷ୍ଠରୋଗୀ ଯେଉଁ ଆଡ଼େ ମୁହଁ କରିଥିଲା ସିଆଡ଼େ ମନ୍ଦିରର ସିଂହଦ୍ୱାର ଛିଡ଼ା ହୋଇଗଲା । କବାଟ ମେଲା ଓ କୁଷ୍ଠରୋଗୀ ଦେଖିପାରୁଥିବା ଭଳି ମନ୍ଦିର ଗମ୍ଭୀରା ଭିତରେ ଥିବା ଲିଙ୍ଗଙ୍କ ଉପରେ ବିଜୁଳି ଚମକିଲା ଭଳି ତେଜିୟାନ ଜ୍ୟୋତି ଦେଖାଗଲା । ଆଉ ଠିକ୍ ସେହି ସମୟରେ କୁଷ୍ଠରୋଗୀର ରୋଗ ସମ୍ପୂର୍ଣ୍ଣ ଭଲ ହୋଇଗଲା । ସେ ଦଣ୍ଡବତ ପ୍ରମାଣେ ତଳେ ସାଷ୍ଟାଙ୍ଗ ପଡ଼ି ଗୀତଗୋବିନ୍ଦ ଗାନ କରିବାରେ ଲାଗିଥାଏ । ଏପରି ପ୍ରଚଣ୍ଡ ଗର୍ଜନ ଓ ମନ୍ଦିର ଚକଡ଼ା ଘୁରୁଥିବା ସମୟରେ ଯେଉଁ ପ୍ରଚଣ୍ଡ ଘର୍ଘର ନାଦ ହୋଇଥିଲା, ସେଥିରେ କୁଆଳ ଗ୍ରାମ ଦୋହଲି ଯାଇଥିଲା । ଗ୍ରାମବାସୀମାନେ ଶବ୍ଦ ଆସୁଥିବା ମନ୍ଦିର ଆଡ଼କୁ ଦୌଡ଼ିଲେ । ସେମାନେ ଦେଖିଲେ, ମନ୍ଦିରଟି ବୁଲିଯାଇଛି । କୁଷ୍ଠରୋଗୀ ଜଣକ ସାଷ୍ଟାଙ୍ଗ ପ୍ରଣାମ କରି ଗୀତଗୋବିନ୍ଦ ଗାଇବାରେ ଲାଗିଛି । ସେ ସମ୍ପୂର୍ଣ୍ଣ ସୁସ୍ଥ ହୋଇଯାଇଛି ।

ଗ୍ରାମବାସୀଗଣ ସେତେବେଳେ ଆନନ୍ଦରେ ଗ୍ରାମଦେବତା ହରହର ମହାଦେବଙ୍କ ଜୟ ଜୟକାର କରିବା ସହିତ ଜୟ ଗୀତଗୋବିନ୍ଦ, ଜୟ ଜୟଦେବ, ଜୟ ଜୟ ଜଗନ୍ନାଥ ଉଚ୍ଚ ସ୍ୱରରେ ଜୟ ଜୟକାର କରିବାରେ ଲାଗିଲେ । ଗୀତଗୋବିନ୍ଦ ଭଜନର ପ୍ରଭାବରେ ଭଗବାନ ତ ପ୍ରସନ୍ନ ହେଲେ, ଜଡ଼ ପଥର ମଧ୍ୟ ଜୀବନ୍ତ ହୋଇ ଘୁରି ଯାଇଥିଲା ।

ଏହିପରି ଅନେକ କଥା ଭକ୍ତକବି ଜୟଦେବଙ୍କ ଅଲୌକିକ ମହିମାକୁ ବର୍ଣ୍ଣାଢ଼୍ୟ କରିଛି ।

ସୌଜନ୍ୟ : ସୂଚନା ଓ ଲୋକ ସଂପର୍କ ବିଭାଗ

# ଜୟଦେବ : ଏକ ପକ୍ଷପାତ

ଗୁରୁକଲ୍ୟାଣ ମହାପାତ୍ର

**ଭା**ରତୀୟ ସାହିତ୍ୟ ଓ ସଂସ୍କୃତିକୁ ଓଡ଼ିଶାର ଅବଦାନ ଅତୁଳନୀୟ । ମଧ୍ୟଯୁଗୀୟ ସଂସ୍କୃତ ସାହିତ୍ୟକୁ ଓଡ଼ିଶାର ଅବଦାନ ବିଷୟରେ ଅନେକ ଗବେଷଣା ହୋଇଛି । ଅନେକ ଗବେଷଣା ପ୍ରସୂତ ନିବନ୍ଧ ଓ ଗ୍ରନ୍ଥ ମଧ୍ୟ ଲିଖିତ ହୋଇଛି । ମାତ୍ର 'ଗୀତଗୋବିନ୍ଦ' ଶୀର୍ଷକ ସଂସ୍କୃତ କାବ୍ୟ ରଚନା କରି ଜୟଦେବ ଓଡ଼ିଶାର ବିଦ୍ୱାନ, ସାହିତ୍ୟପ୍ରେମୀ ଓ ସଂସ୍କୃତି ସଚେତନ ବ୍ୟକ୍ତିଙ୍କ ମଧ୍ୟରେ ଯେପରି ଆଦୃତ ହୋଇଛନ୍ତି, ଅନ୍ୟତ୍ର ସେପରି ଦେଖାଯାଏ ନାହିଁ ।

ଜୟଦେବଙ୍କ ଆବିର୍ଭାବ ଓଡ଼ିଶା ମାଟିରେ ବା ବଙ୍ଗଳା ମାଟିରେ, ସେ ନେଇ ଅନେକ ଦ୍ୱନ୍ଦ୍ୱ ଉପୁଜିଥିଲେ ମଧ୍ୟ ଜୟଦେବ ଓଡ଼ିଶାର ବୋଲି ଓଡ଼ିଶାର ଗବେଷକ, ଲେଖକ ଓ ସଂସ୍କୃତ ଭାଷାର ବିଦ୍ୱାନମାନେ ପ୍ରତିପାଦିତ କରିଛନ୍ତି ।

ବଙ୍ଗୀୟ ସାହିତ୍ୟିକ ଓ ପ୍ରସିଦ୍ଧ ଭାଷାତତ୍ତ୍ୱବିତ୍ ସ୍ୱର୍ଗୀୟ ସୁନୀତି କୁମାର ଚାଟାର୍ଜୀ, ୧୯୬୪ରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପକ୍ଷରୁ ନିମନ୍ତ୍ରିତ ହୋଇ ଆସିଥିଲେ - ପ୍ରଥମ ଆର୍ତ୍ତବଲ୍ଲଭ ମହାନ୍ତି ସ୍ମାରକୀ ବକ୍ତୃତାମାଳା ପ୍ରଦାନ କରିବା ପାଇଁ । ସେହି ବକ୍ତୃତାରେ ଗୋଟିଏ ସ୍ଥାନରେ ସେ ଉଲ୍ଲେଖ କରିଛନ୍ତି - 'Jayadeva, the author of Gitagovinda has been claimed by the scholars of Orissa as belonging to Orissa itself. I need not enter into the merits of controversy here.' (ଗୀତଗୋବିନ୍ଦର ରଚୟିତା ଜୟଦେବ ଓଡ଼ିଶାର ବୋଲି ଓଡ଼ିଶାର ବିଦ୍ୱାନମାନେ ଦାବି କରିଛନ୍ତି, ମୁଁ କିନ୍ତୁ ସେହି ବିବାଦ ମଧ୍ୟକୁ ପ୍ରବେଶ କରିବାକୁ ଚାହୁଁ ନାହିଁ ...)

ଜୟଦେବ ଓ ତାଙ୍କ ରଚିତ 'ଗୀତଗୋବିନ୍ଦ' ସଂପର୍କରେ ରହିଥିବା ଅନେକ ତଥ୍ୟ ଓ ସୂଚନା ସଂପର୍କରେ ଆମେ ସାଧାରଣତଃ ଅବଗତ ନୋହୁଁ । ସେ ଦୃଷ୍ଟିରୁ ସାମାନ୍ୟ ସୂଚନା ପ୍ରଦାନ କରିବା ଏହି ଲେଖାର ଉଦ୍ଦେଶ୍ୟ ।

ଓଡ଼ିଶାର ସୁପରିଚିତ କବି ଓ ନାଟ୍ୟକାର ସ୍ୱର୍ଗୀୟ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଜୟଦେବଙ୍କ ଏହି ଗୀତଗୋବିନ୍ଦ ସଂପର୍କରେ ତାଙ୍କ ଆତ୍ମଜୀବନୀ 'କୁମ୍ଭାରଚକ'ରେ ଏହିପରି ଲେଖିଛନ୍ତି, ଯାହା ଅତ୍ୟନ୍ତ ସୁଖପାଠ୍ୟ । ତାହାର ଶୀର୍ଷକ ହେଉଛି - 'ଗୀତଗୋବିନ୍ଦ ସମାରୋହ' (ଦିଲ୍ଲୀ ତା.୧୫.୩.୬୭) କବିଚନ୍ଦ୍ର ଲେଖିଛନ୍ତି - 'ପିଲାଟି ଦିନରୁ ବୋଉ ତୁଣ୍ଡରୁ 'ପ୍ରିୟେ ଚାରୁଶୀଳେ' ଗୀତଟି ଶୁଣି ଶୁଣି ଗୀତଗୋବିନ୍ଦ ପ୍ରତି ମୋ' ମନରେ ଅଦ୍ଭୁତ ମାୟା ବଳି ଥିଲା । ସେଇଦିନୁ ଗୀତଗୋବିନ୍ଦର ବିଭିନ୍ନ ଟୀକା, କବିବର ଜୟଦେବଙ୍କ ଜୀବନୀ ଇତ୍ୟାଦି ସୁବିଧା ସୁଯୋଗ ପାଇଲେ ବରାବର ପଢ଼େଁ । ମୋର ସାକ୍ଷୀଗୋପାଳ ନାଟ୍ୟସଂଘ ଚାଲୁଥିଲାବେଳେ ମୁଁ 'ଗୀତଗୋବିନ୍ଦ'ର ସ୍ୱରଛନ୍ଦ ଓ ତାଳ ଅନୁସାରୀ ଓଡ଼ିଆ ଅନୁବାଦ କରି ନାଟ୍ୟରୂପ ଦେଇ ପରଶି ଥିଲି, ତା.୨୧.୮.୩୫ରେ । ଜୟଦେବଙ୍କୁ ବଙ୍ଗଳାର ବୋଲି ବଙ୍ଗୀୟ କେତେକ କବି, ଲେଖକ ପ୍ରଚାର କରୁଥିବାରୁ, ବାସ୍ତବ ତଥ୍ୟ ଆହରଣ କରି 'ଜୟଦେବ' ନାଟକ ଲେଖି ତାହାର ପ୍ରଚାର କଳ୍ପେ ମଞ୍ଚସ୍ଥ କରାଇଲି ମୋର ଓଡ଼ିଶା ଥିଏଟରସ୍ ଚାଲୁଥିବା ବେଳେ, ୧୯୪୩ ସାଲରେ । ଯୋଗକୁ ୧୯୬୭ ମସିହା ମାର୍ଚ୍ଚ ମାସରେ ଦିଲ୍ଲୀ ସଙ୍ଗୀତ ନାଟକ ଏକାଡ଼େମୀ ଦ୍ୱାରା ଅନୁଷ୍ଠିତ ଗୀତଗୋବିନ୍ଦ ସେମିନାରରେ ଯୋଗଦେବା ପାଇଁ ଡାକରା ପାଇ ମନ ଆନନ୍ଦରେ ନାଚି ଉଠିଲି । ସେ ସମାରୋହରେ ପଢ଼ିବା ପାଇଁ ମୁଁ ଇଂରାଜୀରେ 'Gitagovinda in Odissi dance' ନାମରେ ଖଣ୍ଡିଏ ପୁସ୍ତିକା ଲେଖିଲି । ଏଇଠାରେ 'ମେଘୈର୍ମେଦୁର' ଶ୍ଳୋକର ମୋ' ଓଡ଼ିଆ ଅନୁବାଦ ପାଠ ଓ 'ଲଳିତ ଲବଙ୍ଗ ଲତା', 'ଦଶାବତାର ଗୀତ', 'ରତି ସୁଖସାରେ' ଏବଂ 'ପଶ୍ୟତି ଦିଶିଦିଶି' ପ୍ରଭୃତି ଗୀତର ରାଗ ଓ ତାଳ ଲକ୍ଷଣ ଇତ୍ୟାଦି ବୁଝାଇ କହିଥିଲି । ତହିଁପରେ ଶ୍ରୀ ବାଳକୃଷ୍ଣ ଦାସ 'ବଦସି ଯଦି କିଞ୍ଚିଦର୍ପ' ଗୀତର ମୋ' ଦ୍ୱାରା ସ୍ୱର ଛନ୍ଦାନୁସାରୀ ଅନୁବାଦିତ ଓଡ଼ିଶୀ ସଂଗୀତ ଗାଇ ଉପସ୍ଥିତ ସୁଧୀବୃନ୍ଦଙ୍କୁ ମୁଗ୍ଧ କରିଥିଲେ । ଏତିକିରେ ବୈଠକ ଶେଷ ହେଲା । ସନ୍ଧ୍ୟା ସାତଟାରେ ଏକାଡ଼େମୀ ହତା ଭିତରେ ନିର୍ମିତ ଏକ ମନୋରମ ରଂଗମଞ୍ଚରେ ଗୀତ ନୃତ୍ୟ ପରିବେଷିତ ହୋଇଥିଲା ।

ଏଠାରେ କୁମାରୀ କୁଙ୍କମ ଦାସ (ଏବେ ଶ୍ରୀମତୀ କୁଙ୍କୁମ ମହାନ୍ତି ବୋଲି ପଢ଼ିବାକୁ ହେବ) ଓଡ଼ିଶୀ ଶୈଳୀରେ ଗୀତଗୋବିନ୍ଦର 'ଲଳିତ ଲବଙ୍ଗ ଲତା', 'ରତି ସୁଖସାରେ' ଏବଂ 'ପଶ୍ୟତି ଦିଶି ଦିଶି' ନୃତ୍ୟ ପରିବେଷଣ କଲେ । କଟକରୁ ଯାଇଥିବା ଗାୟକ ଓ ଯନ୍ତ୍ରୀମାନେ ସୁନ୍ଦର ଭାବେ ନୃତ୍ୟର ସହଯୋଗ କରିଥିଲେ । ସେଠାରେ ପରିବେଶିତ ବିଭିନ୍ନ ଶୈଳୀର ନୃତ୍ୟ ବହୁ ପ୍ରଶଂସା ଇଂରାଜୀ ଓ ଓଡ଼ିଆ ପତ୍ରପତ୍ରିକାମାନଙ୍କରେ ପ୍ରକାଶିତ ହୋଇ ଚହଳ ପକାଇ ଦେଇଥିଲା । ଯଶ ମାନ ଅର୍ଜନ କରି ଆମେମାନେ ଆନନ୍ଦରେ କଟକ ବାହୁଡ଼ିଲୁଁ । ସେଥିରେ ମଧ ମୋର ଗୀତଗୋବିନ୍ଦର ଓଡ଼ିଆ ଅନୁବାଦର ଅଳ୍ପ କେତେକ ଅଂଶ ଲେଖି ଗୋଟିଏ କ୍ଷୁଦ୍ର ପୁସ୍ତିକା ଛପାଇ ଦିଲ୍ଲୀ ନେଲି ଓ ମୋ' ଦ୍ୱାରା ସଂଗୃହୀତ ଅତି ପୁରାତନ ଖଣ୍ଡିଏ ତାଳପତ୍ର ପୋଥିର କେତେଗୋଟି ଚିତ୍ରର ଫଟୋ ଗ୍ରହଣ କରାଇ ବ୍ଲକ୍ କରି ସେହି କ୍ଷୁଦ୍ର ପୁସ୍ତକରେ ସନ୍ନିବେଷିତ କଲି । ଦିଲ୍ଲୀ ଗୀତଗୋବିନ୍ଦ ସେମିନାରରେ ଓଡ଼ିଶୀ ନୃତ୍ୟ ମାଧମରେ ଗୀତଗୋବିନ୍ଦ ପ୍ରଦର୍ଶନ ଲାଗି କୁମାରୀ କୁଙ୍କୁମ ଦାସ, ନୃତ୍ୟଗୁରୁ ଶ୍ରୀ କେଳୁଚରଣ ମହାପାତ୍ର (ଏବେ ସ୍ୱର୍ଗରେ) ବେହେଲା ବାଦକ ଶ୍ରୀ ଭୁବନେଶ୍ୱର ମିଶ୍ର ଓ ନୃତ୍ୟ ସହିତ ଗାଇବା ପାଇଁ ଶ୍ରୀ ରାଖାଲ ମହାନ୍ତି ମୋ' ସହିତ ଦିଲ୍ଲୀ ଗଲେ । ମୋ' ସନ୍ଦର୍ଭ ପାଠ ସହିତ ସ୍ୱତନ୍ତ୍ର ଭାବେ ଗାଇବାକୁ ଶ୍ରୀ ବାଳକୃଷ୍ଣ ଦାସ (ଏବେ ସ୍ୱର୍ଗରେ)ଙ୍କୁ ସାଙ୍ଗରେ ନେଲି । ଆମେମାନେ ତା.୧୫.୩.୬୭ରିଖରେ ଦିଲ୍ଲୀ ଗଲୁ ।

କବିଚନ୍ଦ୍ର ତାଙ୍କ ଆତ୍ମଜୀବନୀରେ ବିସ୍ତୃତ ଭାବେ ଗୀତଗୋବିନ୍ଦ ଓ ଓଡ଼ିଶୀ ନୃତ୍ୟ ମଧରେ ରହିଥିବା ସାମଞ୍ଜସ୍ୟକୁ ପ୍ରତିପାଦନ କରି ସାରା ଭାରତରେ ଦୃଷ୍ଟି ଆକର୍ଷଣ କରିଥିଲେ । ତେବେ ସ୍ୱର୍ଗୀୟ ଡଃ ସୁନୀତି କୁମାର ଚାଟାର୍ଜୀ ଏହି ବିବଦମାନ ବିଷୟରୁ ଦୂରେଇ ରହି ଜୟଦେବ ଓଡ଼ିଶାର କି ପଶ୍ଚିମବଙ୍ଗର ତାହା ସ୍ପଷ୍ଟ ଭାବେ ତାଙ୍କ ବକ୍ତୃତାରେ କହି ନଥିଲେ ।

କିନ୍ତୁ ଜୟଦେବ ଓଡ଼ିଶାର ବୋଲି ବିଭିନ୍ନ ତଥ୍ୟଦ୍ୱାରା ପ୍ରମାଣିତ କରିଥିବା ଓଡ଼ିଶାର ବିଶିଷ୍ଟ ଲେଖକ ଓ ଗବେଷକମାନେ ହେଲେ ଜଗବନ୍ଧୁ ସିଂ, ପଣ୍ଡିତ ଗୋପବନ୍ଧୁ ବିଦ୍ୟାଭୂଷଣ, ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ପଣ୍ଡିତ ଭଗବାନ ପତି, ପ୍ରଫେସର ବାନାମ୍ବର ଆଚାର୍ଯ୍ୟ, ପଣ୍ଡିତ କୁଳମଣି ମିଶ୍ର, ଡଃ କାହ୍ନୁଚରଣ ମିଶ୍ର, ପଣ୍ଡିତ ଚକ୍ରଧର ମହାପାତ୍ର, ପଣ୍ଡିତ କେଦାରନାଥ ମହାପାତ୍ର, ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ, ପଣ୍ଡିତ କରୁଣାକର କର, ପଣ୍ଡିତ ସଦାଶିବ ରଥଶର୍ମା, ପଣ୍ଡିତ ନୀଳମଣି ମିଶ୍ର, ପ୍ରଫେସର ଡଃ ନଗେନ୍ଦ୍ର ନାଥ ପ୍ରଧାନ, ଡଃ ମହେଶ ପ୍ରସାଦ ଦାସ, ଡଃ ପ୍ରମୋଦ ଚନ୍ଦ୍ର ମିଶ୍ର, ଡଃ ଦୁଃଖିଶ୍ୟାମ ପଟ୍ଟନାୟକ, ଡଃ ଭଗବାନ ପଣ୍ଡା, ଡଃ ବିଜୟ ରଥ, ଶ୍ରୀ ପ୍ରଫୁଲ୍ଲ କୁମାର ତ୍ରିପାଠୀ, ଶ୍ରୀ ଅଜିତ କୁମାର ତ୍ରିପାଠୀ, ଶ୍ରୀ ସୁବାଷଚନ୍ଦ୍ର ପାଣି, ଡଃ କୈଳାସଚନ୍ଦ୍ର ଦାଶ ଓ ଶ୍ରୀ ତପନ ଶତପଥୀ ପ୍ରଭୃତି ।

ଜୟଦେବଙ୍କ ଉପରେ ଗବେଷଣା କରୁଥିବା ସୁ-ଲେଖକ ଓ ପ୍ରଶାସକ ଶ୍ରୀ ଅଜିତ କୁମାର ତ୍ରିପାଠୀ, ଓଡ଼ିଶା ରିଭ୍ୟୁ, ମଇ ୧୯୮୮ ସଂଖ୍ୟାରେ 'Jayadeva and Gitagovinda' (ଜୟଦେବ ଓ ଗୀତଗୋବିନ୍ଦ) ଶୀର୍ଷକରେ ଯେଉଁ ନିବନ୍ଧ ପ୍ରକାଶ କରିଛନ୍ତି, ତହିଁରେ ସେ ଉଲ୍ଲେଖ କରିଛନ୍ତି - Thus it has been conclusively established by research that Mahakavi Jayadeva was born in Kenduli in Utkal, learnt and later taught literature, music and dance at the school in Kurma-Pataka in Kalinga, was invited to Puri with a danace troupe during the reign of Chodagangadeva, settled there, composed Gitagovinda in Sri Jagannath temple ...(ଅର୍ଥାତ୍, ଶେଷରେ ଗବେଷଣାରୁ ପ୍ରତିପାଦିତ ହୋଇଛି ଯେ ମହାକବି ଜୟଦେବ ଉତ୍କଳର କେନ୍ଦୁଲିଠାରେ ଜନ୍ମଗ୍ରହଣ କରି ଶିକ୍ଷାପ୍ରାପ୍ତ ହେବା ପରେ ସାହିତ୍ୟ, ସଙ୍ଗୀତ ଓ ନୃତ୍ୟ ପ୍ରଭୃତି କଳିଙ୍ଗର କୁର୍ମାପାଟକଠାରେ ପଢ଼ାଇଥିଲେ, ଚୋଡ଼ଗଂଗ ଦେବଙ୍କ ରାଜତ୍ୱ କାଳରେ ତାଙ୍କୁ ତାଙ୍କର ନୃତ୍ୟ ଦଳ ସହ ପୁରୀକୁ ନିମନ୍ତ୍ରିତ କରାଯାଇଥିଲା । ସେ ସେଠାରେ ରହିଯାଇ ଶ୍ରୀଜଗନ୍ନାଥ ମନ୍ଦିରରେ ଗୀତଗୋବିନ୍ଦ ରଚନା କରିଥିଲେ ।)

ଜୟଦେବ ଓ ଗୀତଗୋବିନ୍ଦ ସଂପର୍କରେ ଉଭୟ ଓଡ଼ିଆ ଓ ଇଂରାଜୀରେ ଇତିମଧରେ ବହୁ ତଥ୍ୟମୂଳକ ପ୍ରାମାଣିକ ଗ୍ରନ୍ଥ ରଚନା କରାଗଲାଣି । ବିଭିନ୍ନ ସମ୍ବାଦପତ୍ର ଓ ପତ୍ରପତ୍ରିକାମାନଙ୍କରେ ମଧ ଅନେକ ଉପାଦେୟ ଆଲୋଚନା ସ୍ଥାନ ପାଇଛି । ମାତ୍ର ସେସବୁର ସଂକଳନ ଓ ସଂରକ୍ଷଣ ପାଇଁ ସରକାରୀ, ଅର୍ଦ୍ଧ-ସରକାରୀ ଓ ବେସରକାରୀ ସଂସ୍ଥାଗୁଡ଼ିକ ପକ୍ଷରୁ ଉଦ୍ୟମ ଆରମ୍ଭ ହେଉ । ସାଧାରଣ ଲୋକଙ୍କ ଧାରଣା ହେବା ପରି ପୁସ୍ତକ ଓ ଲେଖା ଅଧିକରୁ ଅଧିକ ସଂଖ୍ୟାରେ ପ୍ରସ୍ତୁତ ହେଉ । ଓଡ଼ିଆ, ହିନ୍ଦୀ ଓ ଇଂରାଜୀ ଭାଷାରେ ନାଟକ ଓ ଚଳଚ୍ଚିତ୍ର ଜୟଦେବ ଓ ତାଙ୍କ ଗୀତଗୋବିନ୍ଦ ଉପରେ ଆଧାରିତ ହୋଇ ପ୍ରସ୍ତୁତ ହେଉ ।

ଡି: ୧୦/୫, ୟୁନିଟ୍-୮
ଭୁବନେଶ୍ୱର-୧୨

ସ୍ମୃତିଲେଖ

# ଆମ କବି ଜୟଦେବ

**ଯ**ଦି ଆମ କବି ଜୟଦେବଙ୍କ ସଂପର୍କରେ ପଚରାଯାଏ, ତେବେ ଅନେକ ତାଙ୍କର ନାମ ହୁଏତ ଶୁଣିଥିବେ, କିନ୍ତୁ ଭଲ ଭାବରେ ଚିହ୍ନି ନଥିବେ ନିଶ୍ଚୟ । ତଥାପି ଜୟଦେବ ବଞ୍ଚି ରହିଛନ୍ତି ରାସ୍ତାଘାଟରେ, ମିଟିଙ୍ଗ ହଲ୍‌ରେ, ନଚେତ୍ ସଭାମଞ୍ଚ, ଶୋଭାଯାତ୍ରା ବା କୀର୍ତ୍ତନ ମଣ୍ଡଳୀରେ । ସଂସ୍କୃତ ଭାଷାରେ କବି ଜୟଦେବଙ୍କ 'ଗୀତଗୋବିନ୍ଦ' କାବ୍ୟ ଏକଦା ରସାମୋଦୀ ଶିକ୍ଷିତ ପାଠକ ଓ ପାଠିକାମାନଙ୍କୁ ହୁଏତ ଆକୃଷ୍ଟ କରୁଥିଲା । ସାଧାରଣ ଲୋକେ ତାଙ୍କୁ କିନ୍ତୁ ଚିହ୍ନୁ ଥିଲେ ଦଶାବତାର କୀର୍ତ୍ତନରୁ । ଅତୀତରେ ଗାଁଗହଳରେ ଦଶାବତାର କୀର୍ତ୍ତନ ପ୍ରତ୍ୟହ ମନ୍ଦିରମାନଙ୍କରେ ବୋଲା ଯାଉଥିଲା । ଏବେବି ସେହି କୀର୍ତ୍ତନର ସ୍ୱର ଅନେକ ଗାଁରେ ଶୁଣିବାକୁ ମିଳିଥାଏ । ସହରମାନଙ୍କରେ ଓଡ଼ିଶୀ ନୃତ୍ୟାଭିନୟ ମଧ୍ୟରେ ଦଶାବତାର ନୃତ୍ୟ ବେଶ୍ ମନୋମୁଗ୍ଧକର । ତଥାପି କବି ଜୟଦେବଙ୍କ ପରିଚୟ ରହିଯାଇଛି ଅଧିକାଂଶଙ୍କ ଅଲକ୍ଷ୍ୟରେ । ଅନେକ ତ ଜାଣନ୍ତି ନାହିଁ ଜୟଦେବ ବା ତାଙ୍କ କୃତିତ୍ୱ ସଂପର୍କରେ ।

ଜୟଦେବ ଥିଲେ ଦ୍ୱାଦଶ ଶତାବ୍ଦୀରେ ପ୍ରସିଦ୍ଧ କବି । ସଂସ୍କୃତ ଭାଷାରେ ତାଙ୍କର କାନ୍ତ କୋମଳ ପଦାବଳୀ ହିଁ ତାଙ୍କୁ ସେ ସମୟରେ ପ୍ରସିଦ୍ଧ କରି ପାରିଥିଲା । ସେତେବେଳେ ତାଙ୍କୁ 'କାନ୍ତକବି' ମଧ୍ୟ କୁହାଯାଉଥିଲା । ଅବଶ୍ୟ ଆଧୁନିକ କାଳରେ ସେ କେବଳ ମହାକବି ବା କବି ଜୟଦେବ ଭାବେ ଶିକ୍ଷିତ ସାହିତ୍ୟିକ ବା କଳାକାର ମହଲରେ ପରିଚିତ ହେଲେ । ବରଂ ଓଡ଼ିଆ ଭାଷା ଓ ସାହିତ୍ୟରେ କାନ୍ତ କୋମଳ ପଦାବଳୀ ପାଇଁ ଆଧୁନିକ ଯୁଗରେ ଲକ୍ଷ୍ମୀକାନ୍ତ ମହାପାତ୍ର ହିଁ 'କାନ୍ତକବି' ଭାବେ ପରିଚିତ ହେଲେ । ସେହିପରି ବଙ୍ଗଳା ଭାଷା ଓ ସାହିତ୍ୟରେ ରଜନୀକାନ୍ତ ସେନ୍ ମଧ୍ୟ 'କାନ୍ତକବି' ଭାବେ ପରିଚିତ ଥିଲେ ।

କବି ଜୟଦେବ ଓଡ଼ିଶାର ହୋଇଥିଲେ ହେଁ ସେ ପଶ୍ଚିମବଙ୍ଗ ବା ତତ୍କାଳୀନ ବଙ୍ଗଦେଶର ବୋଲି ଅନେକ ଦିନ ଧରି ବିବାଦ ଚାଲିଥିଲା । ଅବଶ୍ୟ ସେ ବିବାଦର ଜୁଆରରେ ଏବେ ଭଟ୍ଟା ପଡ଼ିଯାଇଛି ।

ଓଡ଼ିଶାର ପୁରୀ ଜିଲ୍ଲାରେ (ଏବର ଖୋର୍ଦ୍ଧା ଜିଲ୍ଲା ଅନ୍ତର୍ଗତ) କେନ୍ଦୁବିଲ୍ୱ ବା କେନ୍ଦୁଲି ତାଙ୍କର ପବିତ୍ର ଜନ୍ମସ୍ଥାନ ବୋଲି ପ୍ରତିପାଦିତ ହେବା ପରେ ଅବଶ୍ୟ ଏପରି ବିବାଦର ଅବସାନ ଘଟିଛି ବୋଲି କୁହାଯାଇପାରେ । କାରଣ ବଙ୍ଗଳା ଓ ଓଡ଼ିଆ ଭାଷା ମଧ୍ୟରେ ପୂର୍ବବତ୍ ଆଉ ତିକ୍ତତା ଥିବାପରି ମନେ ହେଉନାହିଁ । ପ୍ରସିଦ୍ଧ ଭାଷାତତ୍ତ୍ୱବିତ୍ ସ୍ୱର୍ଗୀୟ ସୁନୀତି ଚାଟାର୍ଜୀ ମଧ୍ୟ ଜୟଦେବ ଓଡ଼ିଶାର ବୋଲି ପରୋକ୍ଷରେ ମାନିଛନ୍ତି ।

ଏବର କମ୍ପ୍ୟୁଟର ଓ ଇଣ୍ଟରନେଟ୍ ଯୁଗରେ ଯେତେବେଳେ ଆମେମାନେ ଆପଣାର ମାତୃଭାଷା ଓଡ଼ିଆକୁ ଭୁଲିଯାଇ ଇଂରାଜୀ ବା ହିନ୍ଦୀମିଶା ଓଡ଼ିଆରେ କଥାବାର୍ତ୍ତା ହେଉଛୁଁ ବା ଲେଖାଲେଖି କରୁଛୁଁ, ସେତେବେଳେ କବି ଜୟଦେବ କିଏ ବୋଲି ପଚାରିବାରେ କୌଣସି ବୈଚିତ୍ର୍ୟ ନାହିଁ । କିନ୍ତୁ କବି ଜୟଦେବଙ୍କ 'ଗୀତଗୋବିନ୍ଦ' ପରବର୍ତ୍ତୀ କାଳରେ ସାହିତ୍ୟ ସାଧକମାନଙ୍କୁ ଯେ ଗଭୀରଭାବେ ଅନୁପ୍ରାଣିତ କରିଛି, ଏଥିରେ ସନ୍ଦେହ ନାହିଁ ।

'ଗୀତଗୋବିନ୍ଦ'ର ପ୍ରଭାବ ତତ୍କାଳୀନ ପୁରୀ ଗଜପତି ପୁରୁଷୋତ୍ତମ ଦେବଙ୍କ 'ଅଭିନବ ଗୀତଗୋବିନ୍ଦ' ଉପରେ ବି ପଡ଼ିଥିଲା । ସଂସ୍କୃତ ଭାଷାର ପ୍ରସିଦ୍ଧ କବି ରାୟ ରାମାନନ୍ଦ ପଟ୍ଟନାୟକଙ୍କ ରଚିତ 'ଜଗନ୍ନାଥ ବଲ୍ଲଭ' ନାଟକ ବା କବିଚନ୍ଦ୍ର କମଳଲୋଚନ-ଖଡ଼୍‌ଗରାୟଙ୍କ ରଚିତ 'ବ୍ରଜଯୁବ ବିଳାସ' କାବ୍ୟ ଉପରେ ମଧ୍ୟ ଗୀତଗୋବିନ୍ଦର ପ୍ରଭାବ ପରିସ୍ଫୁଟ ।

କବି ଜୟଦେବଙ୍କ ଉପରେ ଓଡ଼ିଆ ଓ ଇଂରାଜୀ ଭାଷାରେ ଅନେକ ଲେଖା ପ୍ରକାଶ ପାଇଲାଣି । ଅନେକ ଗ୍ରନ୍ଥ ଲୋକଲୋଚନକୁ ଆସିଲାଣି । ତଥାପି ସାଧାରଣ ଲୋକଙ୍କଠାରୁ ଯେପରି ସେ ଏବେ ଦୂରେଇ ଯାଇଛନ୍ତି । ସେ ଦ୍ୱାଦଶ ଶତାବ୍ଦୀର କବି ସତ, କିନ୍ତୁ ତାଙ୍କର ଫଟୋଚିତ୍ର ସେତେବେଳେ ନଥିଲା । ତେଣୁ କାଳ୍ପନିକ ଫଟୋଚିତ୍ର, ପ୍ରତିଛବି ବା ପ୍ରତିମୂର୍ତ୍ତିରେ କିମ୍ବା ପୋଥିପତ୍ରର ଛବିରେ ଜୟନ୍ତୀ ବେଳେ (ଅକ୍ଷୟ ତୃତୀୟା ଦିନ) ତାଙ୍କ ପ୍ରତିମୂର୍ତ୍ତି ବା ଫଟୋଚିତ୍ରରେ ଆମେ ଶ୍ରଦ୍ଧାସୁମନ ଦେଇ ଯେପରି ତାଙ୍କର ଜୟନ୍ତୀ ପାଳନ କରିଥାଉଁ, ତାହା ପ୍ରକୃତରେ ଆନନ୍ଦର କଥା ।

ମୋର ମନେହୁଏ, କାବ୍ୟ ସାଧନାରେ ନିମଜ୍ଜିତ ଥିବାବେଳେ ସମ୍ଭବତଃ ତାଙ୍କୁ କେହି ପଚାରୁ ନଥିଲେ । ମାତ୍ର ସେ ଦେହତ୍ୟାଗ କରିବାର ଏତେ ବର୍ଷ ପରେ ମଧ୍ୟ ତାଙ୍କ ପରିବାରବର୍ଗଙ୍କ ସହଯୋଗ ଉପରେ ନିର୍ଭର ନକରି ଯେଉଁମାନେ ତାଙ୍କର ଜୟନ୍ତୀ ପାଳନ କରିବା କ୍ଷେତ୍ରରେ (ସରକାରୀ ବା ବେସରକାରୀ ଉଦ୍ୟମରେ ହେଉପଛେ) ଆଗଭର ହୋଇଛନ୍ତି, ସେମାନେ ସମସ୍ତେ ଆମର ଧନ୍ୟବାଦାର୍ହ ।

ଏତେ ଦିନ ପରେ ଭାରତ ସରକାରଙ୍କ ଡାକ ବିଭାଗ ଆନୁକୂଲ୍ୟରେ ଓ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସଂପର୍କ ବିଭାଗର ସହଯୋଗରେ କବି ଜୟଦେବଙ୍କ ଉପରେ ଡାକ ଟିକଟ ଉନ୍ମୋଚିତ ହେଉଥିବାରୁ ଆମେମାନେ ଗର୍ବିତ । ସୁଲେଖକ ଓ ଜୟଦେବ-ଗବେଷକ ଶ୍ରୀ ଅଜିତ କୁମାର ତ୍ରିପାଠୀଙ୍କ ଅକ୍ଲାନ୍ତ ଉଦ୍ୟମ ଓ ବିଶିଷ୍ଟ ଲେଖକ ତଥା ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଆନ୍ତରିକତାରୁ ଏହା ବିଳମ୍ବରେ ହେଲେ ମଧ୍ୟ ସମ୍ଭବ ହୋଇପାରିଛି ।

ଓଡ଼ିଶାର ସଂସ୍କୃତି ହେଉଛି ଜଗନ୍ନାଥ ସଂସ୍କୃତି । ପୂର୍ବେ ଶ୍ରୀମନ୍ଦିରରେ ଗୀତଗୋବିନ୍ଦ ବୋଲାଯିବା ଓ ମାହାରୀମାନେ ନୃତ୍ୟ କରିବାର ଯେଉଁ ଅନନ୍ୟ ପରମ୍ପରା ଆମର ରହିଥିଲା, ତାହାକୁ ଅକ୍ଷୁର୍ଣ୍ଣ ରଖାଯାଇ ପାରିନାହିଁ । କିନ୍ତୁ ତାହାର ପୁନରୁଦ୍ଧାର ଦିଗରେ ଉଦ୍ୟମ ହେବା ଦରକାର ।

ଗତ ବର୍ଷ ୨୦୦୭ ଅକ୍ଷୟ ତୃତୀୟାରେ କବି ଜୟଦେବଙ୍କ ପବିତ୍ର ଜନ୍ମ ଦିବସରେ ପଣ୍ଡିତ ହାଡ଼ିବନ୍ଧୁ ନାୟକ 'କହେ ଜୟଦେବ କବି' ନାମରେ ୧୩୦ ପୃଷ୍ଠାବିଶିଷ୍ଟ ଏକ ମନୋଜ୍ଞ ପୁସ୍ତକ ପ୍ରକାଶ ପାଇଛି । ବଡ଼ ବିଚିତ୍ର କଥା ଯେ ପଣ୍ଡିତ ନାୟକଙ୍କ ଜନ୍ମ ମଧ୍ୟ ସେହି କେନ୍ଦୁବିଲ୍ୱ ଗ୍ରାମରେ । ସେ କୌଣସି ଚାକିରି କରି ନାହାନ୍ତି କି ଉଚ୍ଚଶିକ୍ଷା ପ୍ରାପ୍ତ ମଧ୍ୟ ନୁହେଁ । ମାତ୍ର ଜୟଦେବଙ୍କ ଜୀବନୀ ତଥା କୃତିକୁ ସେ ଗଭୀର ଭାବେ ଅଧ୍ୟୟନ କରିବା ପରେ ଜୟଦେବଙ୍କୁ ନାୟକ କରି ଆତ୍ମଜୀବନୀ ଢଙ୍ଗରେ ଏକ ଭିନ୍ନ ଶୈଳୀରେ ସେ ଏ ଯେଉଁ ପୁସ୍ତକ ରଚନା କରିଛନ୍ତି, ତାହା ଯେ ସୁଖପାଠ୍ୟ, ଏଥିରେ ସନ୍ଦେହ ନାହିଁ ।

ଏବେ ତ ପୁସ୍ତକ ପଠନର ସ୍ପୃହା କମି ଆସିଲାଣି । କେବଳ ଆବଶ୍ୟକତା ଦୃଷ୍ଟିରୁ ସମ୍ବାଦପତ୍ର ପଠନର ସ୍ପୃହା କମି ନାହିଁ । ସେଥିପାଇଁ ଓଡ଼ିଆ ଓ ଇଂରାଜୀ ଭାଷାର ସମ୍ବାଦପତ୍ରମାନଙ୍କର ଚାହିଦା ବୃଦ୍ଧି ପାଇଛି । କିନ୍ତୁ ଆମର ଦୁର୍ଭାଗ୍ୟ ଯେ ଅନେକ ସମ୍ବାଦପତ୍ରରେ ଓଡ଼ିଶାର ବରପୁତ୍ରମାନଙ୍କର ଜୟନ୍ତୀ ବା ଶ୍ରାଦ୍ଧ ଉପଲକ୍ଷେ ଲେଖା ବା ଫଟୋଚିତ୍ରମାନ ପ୍ରକାଶ ପାଇପାରୁନାହିଁ । ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିକୁ କିପରି ଭବିଷ୍ୟତରେ ରକ୍ଷା କରାଯାଇପାରିବ ସେ ବିଷୟରେ ସଚେତନ ଓଡ଼ିଆମାନେ ଗଭୀର ଭାବେ ଚିନ୍ତା କରିବା ଉଚିତ ।

ସ୍ୱଳ୍ପ ସମୟ ମଧ୍ୟରେ ଏହି ସ୍ୱତନ୍ତ୍ର ସଂଖ୍ୟାର ପ୍ରକାଶନ ଏକ ଦୁରୂହ କାର୍ଯ୍ୟ ହୋଇଥିଲେ ହେଁ ସୂଚନା ଓ ଲୋକ ସଂପର୍କ ବିଭାଗର ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ସାମଲ, ସଂସ୍କୃତି ବିଭାଗର ମନ୍ତ୍ରୀ ଶ୍ରୀ ଦେବୀ ପ୍ରସାଦ ମିଶ୍ର, ରାଜ୍ୟର ମୁଖ୍ୟ ଶାସନ ସଚିବ ଶ୍ରୀ ଅଜିତ୍ କୁମାର ତ୍ରିପାଠୀ, ଉନ୍ନୟନ କମିଶନର ତଥା ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ତରୁଣକାନ୍ତି ମିଶ୍ର, ଓଡ଼ିଶାର ମୁଖ୍ୟ ମହାଡାକପାଳ ଶ୍ରୀମତୀ ଯଶୋଧାରା ମେନନ୍, ସୂଚନା ଓ ଲୋକ ସଂପର୍କ ବିଭାଗର ଶାସନ ସଚିବ ଶ୍ରୀ ରବୀନ୍ଦ୍ର ନାଥ ଦାଶ, ସରକାରୀ ପ୍ରେସ୍‌ର ନିର୍ଦ୍ଦେଶକ ଶ୍ରୀ ଭି. ତ୍ୟାଗରାଜନ୍, ଲୋକ ସଂପର୍କ ବିଭାଗର ନିର୍ଦ୍ଦେଶକ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତି ଓ ଯୁଗ୍ମ ନିର୍ଦ୍ଦେଶକ ଶ୍ରୀ ଶଶାଙ୍କ ଶେଖର ପଣ୍ଡାଙ୍କ ସଦିଚ୍ଛା ଓ ମୋର ସହକର୍ମୀମାନଙ୍କ ସହଯୋଗକୁ ମୁଁ ଭୁଲିପାରିବି ନାହିଁ ।

[signature]

# ଉତ୍କଳ ପ୍ରସଙ୍ଗ

**The Utkal Prasanga : July 2009**

**ଜୟଦେବ ଓ ଗୀତଗୋବିନ୍ଦ (ସ୍ୱତନ୍ତ୍ର ବିଶେଷାଙ୍କ)**

| ୬୫ ଭାଗ | ସ୍ୱତନ୍ତ୍ର ସଂଖ୍ୟା | ଆଷାଢ଼-ଶ୍ରାବଣ | ଜୁଲାଇ - ୨୦୦୯ |
|---|---|---|---|

**ଅଜିତ୍ କୁମାର ତ୍ରିପାଠୀ**

ମୁଖ୍ୟ ଶାସନ ସଚିବ

**ତରୁଣକାନ୍ତି ମିଶ୍ର**

ଉନ୍ନୟନ କମିଶନର ତଥା ଅତିରିକ୍ତ ମୁଖ୍ୟ ଶାସନ ସଚିବ

**ରବିନ୍ଦ୍ର ନାଥ ଦାଶ**

କମିଶନର ତଥା ଶାସନ ସଚିବ

**ବୈଷ୍ଣବ ପ୍ରସାଦ ମହାନ୍ତି**

ନିର୍ଦ୍ଦେଶକ

**ଗୁରୁକଲ୍ୟାଣ ମହାପାତ୍ର**

ମୁଖ୍ୟ ସଂପାଦକ

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
**ମାନସ ନାୟକ**

ସମ୍ପାଦନା ସହଯୋଗୀ
**ଗୋବିନ୍ଦଚନ୍ଦ୍ର ମଲ୍ଲିକ**
**ସଚ୍ଚିଦାନନ୍ଦ ବାରିକ**

କମ୍ପ୍ୟୁଟର ସେଟିଂ ଓ ଡ଼ିଜାଇନିଂ
**ମନୋଜ କୁମାର ପାତ୍ର**
**ହେମନ୍ତ କୁମାର ସାହୁ**

**ପ୍ରତିଖଣ୍ଡ : ଟ.୫.୦୦**


---

ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସଂପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।


ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।



ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧

*Chief Editor : Gurukalyan Mohapatra*

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.orissagov.nic.in

ଫୋନ : ୦୬୭୪-୨୫୩୦୨୧୧

ଜୁଲାଇ ୨୦୦୯

(ଜୟଦେବ ବିଶେଷାଙ୍କ)

# ସୂଚୀ



ପୋଥିରେ ଗୀତଗୋବିନ୍ଦର ଭାବଚିତ୍ର : ରାଧାଙ୍କ ପାଇଁ ଶ୍ରୀକୃଷ୍ଣଙ୍କ ବଂଶୀ ବାଦନ